# ଜୀବନର ଦୋଳାପଥେ
# କିଛି କଥା କିଛି ବ୍ୟଥା

ଲେଖକ : ଭାସ୍କର ଚନ୍ଦ୍ର ନାୟକ



ଲେଖକ : ଇଂ. ଭାସ୍କର ଚନ୍ଦ୍ର ନାୟକ

ଅବିଭକ୍ତ ବାଲେଶ୍ୱର ଜିଲ୍ଲା ସୋରୋ ଥାନା ଅନ୍ତର୍ଗତ ଗୁଡ଼ ଗ୍ରାମରେ ଜନ୍ମ ୧୯୩୨ ମସିହା ଜୁନ୍ ୨୨ ତାରିଖରେ । ପିତା ସ୍ୱର୍ଗତ ଭୀମଚରଣ ନାୟକ ଓ ମାତା ସ୍ୱର୍ଗତା ଫୁଲରାଣୀ ନାୟକ । କେରଳ ବିଶ୍ୱବିଦ୍ୟାଳୟରୁ ୧୯୫୭ ମସିହାରେ କୃତିତ୍ୱର ସହିତ ଇଞ୍ଜିନିୟରିଂ ଡ଼ିଗ୍ରି ପ୍ରାପ୍ତ ଏବଂ ସରକାରୀ କାର୍ଯ୍ୟକାଳ ମଧ୍ୟ ରୁରକି ବିଶ୍ୱବିଦ୍ୟାଳୟରୁ ମାଷ୍ଟର ଅଫ୍ ଇଞ୍ଜିନିୟରିଂ ଡିଗ୍ରି ଲାଭ । ଓଡ଼ିଶା ସରକାର ଅଧୀନରେ ୧୯୫୮ ମସିହାରେ ଆସିଷ୍ଟାଣ୍ଟ ଇଂଜିନିୟର ଭାବରେ ଯୋଗଦାନ କରି ୧୯୯୧ ମସିହାରେ ଚିଫ୍ ଇଞ୍ଜିନିୟର (ଜଳସେଚନ) ଭାବରେ ଅବସର ଗ୍ରହଣ ।

ଛାତ୍ରାବସ୍ଥାରେ ନାନାବିଧ ଆର୍ଥିକ ସମସ୍ୟାର ସମ୍ମୁଖୀନ ହେବା ସତ୍ତ୍ୱେ ଗଭୀର ଆତ୍ମବିଶ୍ୱାସ, କର୍ତ୍ତବ୍ୟ ନିଷ୍ଠା, ଧୈର୍ଯ୍ୟ ଓ ଈଶ୍ୱର ବିଶ୍ୱାସ ଫଳରେ ସେ ଉଚ୍ଚତର ସୋପାନରେ ଅଧିଷ୍ଠିତ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ନିଜର ଚାକିରି କାଳ ମଧ୍ୟରେ ସେ ବହୁ କ୍ଷୁଦ୍ର, ମଧ୍ୟମ ଏବଂ ବୃହତ୍ ଜଳସେଚନ ଗୁଡ଼ିକର ଯୋଜନା ଏବଂ ନିର୍ମାଣ ଦାୟିତ୍ୱରେ ଥାଇ ସେ ନିଜର କର୍ମକୁଶଳତାର ପ୍ରକୃତ ପରିଚୟ ଦେଇଥିଲେ ।

ଉଚ୍ଚପଦରେ ଅଧିଷ୍ଠିତ ସନ୍ତାନ ସନ୍ତତିମାନଙ୍କର ସେବା ଓ ଯତ୍ନ ଫଳରେ ନାୟକ ଦମ୍ପତି ଅଧୁନା ଭୁବନେଶ୍ୱରରେ ଅବସରକାଳୀନ କର୍ମମୟ ଜୀବନଯାପନ କରୁଛନ୍ତି ।

# ଜୀବନର ଚଲାପଥେ
# କିଛି କଥା କିଛି ବ୍ୟଥା

## (ଆତ୍ମଜୀବନୀ)



ଲେଖକ :
ଇଂ. ଭାସ୍କର ଚନ୍ଦ୍ର ନାୟକ
ଅବସରପ୍ରାପ୍ତ ମୁଖ୍ୟଯନ୍ତ୍ରୀ (ଜଳସେଚନ)
ଓଡିଶା

# ଜୀବନର ଚଲାପଥେ
# କିଛି କଥା କିଛି ବ୍ୟଥା

ଲେଖକ : ଇଂ. ଭାସ୍କର ଚନ୍ଦ୍ର ନାୟକ

ପ୍ରକାଶକ: ଶ୍ରୀମତୀ ଉମା ନାୟକ
୭୫୪/୧, ଜୟଦେବ ବିହାର
ଭୁବନେଶ୍ୱର -୭୫୧୦୧୩

ପ୍ରଥମ ସଂସ୍କରଣ : ଫେବୃୟାରୀ, ୨୦୧୨

ମୁଦ୍ରଣ : ଡୁଡୁଲି ପ୍ରସେସ୍ ଆଣ୍ଡ୍ ଅଫସେଟସ୍
୨୩୧, ବାପୁଜୀ ନଗର, ଭୁବନେଶ୍ୱର -୭୫୧୦୦୯

ମୂଲ୍ୟ: ଟ ୨୫୦/- (ଦୁଇଶହ ପଚାଶ ଟଙ୍କା ମାତ୍ର)

## JEEBANARA CHALAPATHE
## KICHHI KATHA KICHHI BYATHA

**Written by :** *Er. Bhaskar Chandra Nayak*

**Published by :** *Smt. Uma Nayak*
754/1, Jayadev Vihar,
Bhubaneswar - 751013

**First Published :** *February, 2012*

**Pinted :** *Duduly Process & Offset*
231, Bapuji Nagar,
Bhubaneswar-751009

**Price :** *Rs. 250/-*
(Rupees two hundred fifty only)



**ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ**
ମାନ୍ୟବର ରାଜ୍ୟପାଳ
ଆସାମ

**ରାଜଭବନ**
ଗୁଆହାଟି
ତା ୧୪.୦୧.୨୦୧୨

# ଅଭିମତ

ଇଂଜିନିୟର ଭାସ୍କର ଚନ୍ଦ୍ର ନାୟକ ଜୀବନର ଚଲାପଥେ କିଛି କଥା କିଛି ବ୍ୟଥା ନାମରେ ନିଜର ଆତ୍ମ ଜୀବନୀ ପ୍ରକାଶ କରିଛନ୍ତି। ନିଜ ଗ୍ରାମ ସ୍କୁଲରେ ପାଠ ପଢିବା ଠାରୁ ଆରମ୍ଭ କରି ତିରୁବନ୍ତପୁରମ୍‌ରେ ଇଂଜିନିୟରିଂ ଏବଂ ଓଡିଶାରେ ନିଜର ଇଂଜିନିୟର ଜୀବନର କଥା ଅତି ଭାବମୟ ସରଳ ଭାଷାରେ ସେ ପ୍ରକାଶ କରିଛନ୍ତି ଓ ଜୀବନରେ ବହୁ ସମସ୍ୟାର ସମ୍ମୁଖୀନ ହୋଇ ସେ କିପରି ସଫଳତାର ସହିତ ତାର ସାମନା କରିଛନ୍ତି ତାହା ଅତି ସୁନ୍ଦର ମନୋଜ୍ଞ ଭାବରେ ସେ ବର୍ଣ୍ଣନା କରିଛନ୍ତି।

ପ୍ରତ୍ୟେକ ସଫଳ ଜୀବନ ପଛରେ ଥାଏ ଏକ ଗଭୀର ଆତ୍ମବିଶ୍ୱାସ, ଅସୀମ ଧୈର୍ଯ୍ୟ ଓ ନିଷ୍ଠା। ଶ୍ରୀ ନାୟକଙ୍କ ଜୀବନରେ ତାହାହିଁ ଘଟିଛି।

ଓଡିଶାରେ କ୍ଷୁଦ୍ର ଏବଂ ମଧ୍ୟମ ଜଳସେଚନ ଯୋଜନା ନିର୍ମାଣ କ୍ଷେତ୍ରରେ ସେ ଜଣେ ଦାୟିତ୍ୱବାନ ଇଂଜିନିୟର ଭାବେ କାର୍ଯ୍ୟ କରି ଆସିଛନ୍ତି। କେବଳ ବୈଷୟିକ ସମସ୍ୟା ମାନଙ୍କର ସମାଧାନ ନୁହେଁ, ଗଭୀର ଆତ୍ମବିଶ୍ୱାସ ଓ ଧୈର୍ଯ୍ୟ ତାଙ୍କୁ ସଫଳତା ଆଣିଦେଇଛି। ତାଙ୍କର ଇଂଜିନିୟର କାର୍ଯ୍ୟକାଳର ବର୍ଣ୍ଣନା ଉଭୟ ତଥ୍ୟ ଓ କର୍ମକୌଶଳଭିତ୍ତିକ। ଇଂଜିନିୟରିଂ କ୍ଷେତ୍ରରେ କାର୍ଯ୍ୟ କରୁଥିବା ଯୁବକ ଇଂଜିନିୟରମାନଙ୍କ ପାଇଁ ଏହା ଏକ ସୁଖପାଠ୍ୟ ଓ ଶିକ୍ଷାପ୍ରଦ ପୁସ୍ତକ ରୂପେ ଗୃହୀତ ହେବ।

ଆତ୍ମଜୀବନୀ ସାହିତ୍ୟରେ ଶ୍ରୀ ନାୟକଙ୍କର ଏହି ସଫଳ ଉଦ୍ୟମ ପାଇଁ ମୁଁ ତାଙ୍କୁ ସାଧୁବାଦ ଜଣାଇବା ସଂଗେ ସଂଗେ ପାଠକମାନଙ୍କ ମଧ୍ୟରେ ଏହାର ବହୁଳ ପ୍ରସାର ଆଶା କରୁଛି।

ଜାନକୀବଲ୍ଲଭ ପଟ୍ଟନାୟକ
(ଜାନକୀବଲ୍ଲଭ ପଟ୍ଟନାୟକ)

# ଉତ୍ସର୍ଗ



ମୋ ଜୀବନରେ ପ୍ରେରଣାର ଉତ୍ସ ଶିକ୍ଷାଗୁରୁ ଜ୍ଞାନଗୁରୁ ଧର୍ମଗୁରୁ ଆଜୀବନ ବ୍ରହ୍ମଚାରୀ ଏବଂ ପରମବୈଷ୍ଣବ ଦିବଂଗତ କିଶୋରୀ କିଙ୍କର ଦାସ ତାଙ୍କର ଆଧ୍ୟାତ୍ମିକ ଶକ୍ତି ବଳରେ ନିପଟ ମଫସଲରେ ଜନ୍ମଗ୍ରହଣ କରିଥିବା ମୋ ପରି ଗୋଟିଏ ତୃଣ ତୁଲ୍ୟ ଶିଶୁକୁ ଶାଖାପ୍ରଶାଖା ବହୁଳ ଏକ ବିରାଟ ଦ୍ରୁମରେ ପରିଣତ କରିଛନ୍ତି । ସେହି ସ୍ୱର୍ଗୀୟ ଛାତ୍ରବତ୍ସଳ ଗୁରୁଦେବଙ୍କ ଚରଣ କମଳରେ ଏହି ପୁସ୍ତକଟିକୁ ସମର୍ପଣ କରି ନିଜକୁ କୃତାର୍ଥ ମନେ କରୁଛି । ଇତି

ଭାସ୍କର

# ଉପହାର



*"Behind every successful man there is a woman who tells him whatever you are doing is wrong".*

ସମସ୍ୟା ବହୁଳ ଜୀବନର ଚଲାପଥରେ ସମ୍ମୁଖୀନ ହେଉଥିବା ଘଟଣାଗୁଡ଼ିକର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ପରେ ସେଥିରେ ଥିବା ଦୋଷ ତ୍ରୁଟିର ସମୀକ୍ଷା କରି ବିପଦସଂକୁଳ ପଥ ଅତିକ୍ରମ କରିବା ପାଇଁ ମୋତେ ଯେଉଁ ମହିୟସୀ ମହିଳା ଏ ଯାବତ୍ ସାହସ, ଧୈର୍ଯ୍ୟ ଏବଂ ପ୍ରେରଣା ଦେଇ ଆସିଛନ୍ତି, ସେ ହେଉଛନ୍ତି ମୋର ପ୍ରିୟତମା ଅର୍ଦ୍ଧାଙ୍ଗିନୀ ଜୀବନସଙ୍ଗିନୀ ଉମା।

ବିବାହର ସୁବର୍ଣ୍ଣ ଜୟନ୍ତୀ ଅବସରରେ ମୁଁ ତାଙ୍କର କରକମଳରେ ଅର୍ପଣ କରୁଛି ଏହି ଅକିଞ୍ଚନ ଉପହାର - ମୋର ଜୀବନ ଆଲେଖ୍ୟ।

- ଭାସ୍କର

# ଉପକ୍ରମଣିକା

ସରକାରୀ ଚାକିରୀରୁ ଅବସର ଗ୍ରହଣ ପରେ ସମବୟସ୍କ ଅବସରପ୍ରାପ୍ତ ପାଞ୍ଚଜଣ ଇଂଜିନିୟର ବନ୍ଧୁ ମଝିରେ ମଝିରେ ଜଣକ ଘରେ ବନ୍ଧୁମିଳନରେ ମିଳିତ ହେବାର ସୁଯୋଗ ମିଳିଛି। ସେଠାରେ ଜୀବନର ବିଭିନ୍ନ ବିଷୟରେ ଚର୍ଚ୍ଚାଠାରୁ ଆରମ୍ଭ କରି ରାଜନୈତିକ ଓ ସାମାଜିକ ସମସ୍ୟା ଆଲୋଚନା ହୁଏ। ଏହି ଅବସରରେ ଥରେ ମୁଁ ମୋ ଜୀବନର କେତୋଟି ବିଶିଷ୍ଟ ଘଟଣା ବର୍ଣ୍ଣନା କଲି। ବିଶେଷ କରି ହାତରେ ପଇସା ନ ଥାଇ ମୋ ଜୀବନର ପ୍ରେରଣାର ଉତ୍ସ ଶିକ୍ଷାଗୁରୁ କିଶୋରବାବୁଙ୍କ ପରାମର୍ଶ ଅନୁସାରେ ସରକାରଙ୍କଠାରୁ ଅଗ୍ରିମ ବୃତ୍ତି ଆଶା କରି ରାଜ୍ୟ ବାହାର ଇଞ୍ଜିନିୟରିଂ କଲେଜରେ ନାମଲେଖାଇବା ନିମନ୍ତେ ଯେଉଁ ଦୁଃସାହସିକ ପଦକ୍ଷେପ ନେଇଥିଲି ତାହା ମୋର ବନ୍ଧୁମାନଙ୍କୁ ଚକିତ କରିଥିଲା। ସେହିପରି ସାତଶଙ୍ଖ ଠାରେ ଶୀତଳଭଣ୍ଡାରର ନିର୍ମାଣ କାହାଣୀ ଓ ମୋର ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ପଦବୀକୁ ପଦୋନ୍ନତି ସମୟର ନାଟକ ଶୁଣି ବନ୍ଧୁମାନେ ସ୍ତମ୍ଭୀଭୂତ ହୋଇପଡ଼ିଥିଲେ। କେତେକ ବନ୍ଧୁ ପରାମର୍ଶ ଦେଲେ ଯେ ତୁମ ଜୀବନର ଏହି ଅଭିଜ୍ଞତା ଗୁଡ଼ିକ ଗୋଟିଏ ପୁସ୍ତକରେ ଲିପିବଦ୍ଧ କଲେ ତାହା ଭବିଷ୍ୟତ ପିଢିପାଇଁ ପଥପ୍ରଦର୍ଶକ ହେବ। ସେଦିନ ବନ୍ଧୁମାନଙ୍କର ଏହି ପରାମର୍ଶ ମୋତେ ଏହି ଆତ୍ମଜୀବନୀ ଲେଖାପାଇଁ ପ୍ରଥମ ପ୍ରେରଣା ଯୋଗାଇ ଥିଲା।

ଆତ୍ମଜୀବନୀ ଲେଖିବା ଆପାତତଃ ସହଜସାଧ୍ୟ ମନେ ହେଉଥିଲେ ହେଁ ଏହା ଏକ ଦୁରୂହ ବ୍ୟାପାର। ପ୍ରଥମତଃ ସୁଦୂର ଅତୀତର ସ୍ମୃତିକୁ ରୋମନ୍ଥନ କରି ତାହାକୁ ଭାଷା ମାଧ୍ୟମରେ ପ୍ରକାଶ କରିବା ଏତେଟା ସହଜ ନୁହେଁ। ମାତ୍ର ସବୁଠାରୁ କଷ୍ଟସାଧ୍ୟ ହେଉଛି ନିଜର ମାନସିକ ପ୍ରସ୍ତୁତି । ଜୀବନରେ ଅଙ୍ଗେ ଲିଭେଇଥିବା ନାନାବିଧ ଘଟନାଚକ୍ରରେ ଯଶ, ପ୍ରଶଂସା, ଖ୍ୟାତି, କୃତବିଦ୍ୟତା ଇତ୍ୟାଦି ସହିତ ନିଜର ଦୋଷଦୁର୍ବଳତା, ଅହମିକା, ଆତ୍ମଶ୍ଳାଘା ଓ ଅପଯଶ ଇତ୍ୟାଦି ମଧ୍ୟ ନିହିତ ଥାଏ। ନିଜ ଆତ୍ମଜୀବନରେ ଉଭୟ ଦୋଷ ଓ ଗୁଣ, ନିନ୍ଦା ପ୍ରଶଂସା, ମାନ ଅପମାନ ଯଶ ଅପଯଶର ହିସାବ ନ ଲେଖିଲେ ତାହା ପ୍ରକୃତରେ ଆତ୍ମଜୀବନୀ ହୁଏ ନାହିଁ। ତେଣୁ ଏଇ ମାନସିକ ପ୍ରସ୍ତୁତି ସହିତ ମୁଁ ଆତ୍ମଜୀବନୀ ଲେଖିବାରେ ମନୋନିବେଶ କଲି।

ଆତ୍ମଜୀବନୀ ଲେଖା ପାଇଁ ବହୁତ ଗୁଡ଼ିଏ ତଥ୍ୟର ଆବଶ୍ୟକତା ପଡ଼େ। ସୌଭାଗ୍ୟବଶତଃ ଏତେବର୍ଷ ପରେ ସେଗୁଡ଼ିକ ଆପେ ଆପେ ଗୋଟିଏ ପରେ ଗୋଟିଏ ମୋର ସ୍ମୃତିପଟରେ ଉନ୍ମୋଚିତ ହୋଇଗଲା। ପ୍ରାଥମିକ ବିଦ୍ୟାଳୟରେ ପଢ଼ାଠାରୁ ଆରମ୍ଭ କରି ରୁରକି ବିଶ୍ୱବିଦ୍ୟାଳୟରେ ମାଷ୍ଟର ଡିଗ୍ରୀ ଅଧ୍ୟୟନ ପର୍ଯ୍ୟନ୍ତ, ବୁଢ଼ାବୁଢ଼ୀଆଣୀ ଯୋଜନାର ସର୍ଭେଠାରୁ ଆରମ୍ଭ କରି ସୁବର୍ଣ୍ଣରେଖା ବୃହତ ଜଳସେଚନ ଯୋଜନାର ନିର୍ମାଣ ସମସ୍ୟା ଇତ୍ୟାଦି ସ୍ମୃତିସଂକୁଳ ଅନେକ ଘଟଣା ମାନସପଟରେ ଅବିସ୍ମରଣୀୟ ହୋଇ ରହିଥିଲା। ପାଣ୍ଡୁଲିପିଟି ଜଣେ ବନ୍ଧୁଙ୍କୁ ସଂଶୋଧନ ପାଇଁ ଦେଇଥିଲି। ସେ ପଚାରିଲେ ଏଥିରେ ଲେଖାଥିବା ତଥ୍ୟଗୁଡ଼ିକ କଣ ଗୋଟିଏ ଡାଇରୀରେ ଲେଖି ରଖିଥିଲ ? ମୁଁ କହିଲି ନା, ଏଗୁଡ଼ିକ ଆପେ ଆପେ ଆସି ଆତ୍ମପ୍ରକାଶ କରିଛନ୍ତି। ତେଣୁ ଭାବିଲି ଏହି ଲେଖା ପାଇଁ ପ୍ରେରଣା ଆସିଛି ମୋର ସ୍ୱର୍ଗୀୟ ଗୁରୁ କିଶୋରୀ ବାବୁଙ୍କଠାରୁ।

ଏହି ପୁସ୍ତକ ପ୍ରକାଶନରେ ଯେଉଁ ବନ୍ଧୁ ଓ ଗୁରୁଜନ ମୋତେ ପ୍ରେରଣା ଯୋଗାଇ ଆସିଛନ୍ତି ସେମାନଙ୍କ ମଧ୍ୟରେ ଅଗ୍ରଜତୁଲ୍ୟ ବନ୍ଧୁ ନିମାଇଁ ଚରଣ ପାଣି ଅଗ୍ରଗଣ୍ୟ। ସେ ମୋତେ ସଦାବେଳେ ଉତ୍ସାହ ଦେବା ସହିତ, ପାଣ୍ଡୁଲିପିଟିକୁ ଆମୂଳଚୂଳ ସଂଶୋଧନ ସହିତ ଆଲୋଚନା ଏବଂ ପର୍ଯ୍ୟାଲୋଚନା ମାଧ୍ୟମରେ ସୁଚିନ୍ତିତ ପରାମର୍ଶ ଦେଇ ପୁସ୍ତକଟିକୁ ଯଥାସମ୍ଭବ ପଠନଯୋଗ୍ୟ କରିଛନ୍ତି ବୋଲି ମୋର ବିଶ୍ୱାସ। ଏତଦ୍‌ବ୍ୟତୀତ ମୋର ବାଲ୍ୟଗୁରୁ ମୁକ୍ତକାନ୍ତ ରାୟ (ସ୍ୱଗତଃ) ଏଥିରେ କେତେକ ଅନୁଚ୍ଛେଦ ସଂଯୋଗ କରିବାର ସୁଚିନ୍ତିତ ପରାମର୍ଶ ଦେଇ ଏହାକୁ ଉପାଦେୟ କରିଛନ୍ତି।

ମୋର ଆଶା ଓ ବିଶ୍ୱାସ ମୋର ଆତ୍ମଜୀବନୀ ଭବିଷ୍ୟତ ପୀଢ଼ି ପାଇଁ ପ୍ରେରଣାଦାୟକ ଏବଂ ପଥ ପ୍ରଦର୍ଶକ ହେବ। ମୋ ପରି ସେମାନେ ବିଫଳତାକୁ ସଫଳତାରେ ପରିଣତ କରିବାକୁ ଯେଉଁ ସାହସ, ଶକ୍ତି, ଧୈର୍ଯ୍ୟ ଏବଂ ଭଗବତ୍ ବିଶ୍ୱାସ ଆବଶ୍ୟକ ତାହା ମୋର ଆତ୍ମଜୀବନୀ **'ଜୀବନର ଚଲାପଥେ କିଛି କଥା କିଛି ବ୍ୟଥା'** ପଢ଼ିବା ଦ୍ୱାରା ଯଦି ସେମାନଙ୍କର ଜୀବନରେ ସେଗୁଡ଼ିକ ପ୍ରତିଫଳିତ ହେଲା ତେବେ ମୋର ଲେଖନୀ ସାର୍ଥକ ହେଲା ବୋଲି ମନେ କରିବି।

ପରିଶେଷରେ ଏହି ପୁସ୍ତକ ସମ୍ବନ୍ଧରେ ଓଡିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକ ତଥା ଆସାମର ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକଙ୍କର ମହାର୍ଘ ଅଭିମତ ପାଇଁ ମୁଁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି।

୭୫୪/୧ ,ଜୟଦେବ ବିହାର, ।। ଇତି ।

ଭୁବନେଶ୍ୱର-୭୫୧୦୧୩ ବିନୀତ ଲେଖକ

# ସୂଚୀପତ୍ର



ପରିଣତ ବୟସରେ ଲେଖକ ଓ ତାଙ୍କର ଧର୍ମପତ୍ନୀ ଶ୍ରୀମତୀ ଉମା ନାୟକ (୨୦୧୦)



ସପରିବାର ଲେଖକ ଆଗ୍ରାର ତାଜମହଲ ସମ୍ମୁଖରେ (୧୯୭୧ ମସିହା)
ଲେଖକ, ପତ୍ନୀ - ଶ୍ରୀମତୀ ଉମା, ବଡ଼ପୁଅ ଶୁଭେନ୍ଦୁ, ବଡ଼ଝିଅ ଈପ୍ସିତା,
ସାନଝିଅ ଲିପିକା ଓ ସାନପୁଅ ସଂବୀତ୍



ଫୁଲବାଣୀ ଜିଲ୍ଲା କ୍ଷୁଦ୍ର ଜଳସେଚନ ଯୋଜନା ପରିଦର୍ଶନ ଅବସରରେ ମନ୍ତ୍ରୀ ଶ୍ରୀ ବୃନ୍ଦାବନ ନାୟକଙ୍କ ଗହଣରେ ଲେଖକ ( ୧୯୮୦ )



ଶ୍ରୀନଗର (କାଶ୍ମୀରରେ) ଲେଖକ ଦମ୍ପତି (୧୯୭୧)




ସମ୍ବଲପୁରସ୍ଥିତ କ୍ଷୁଦ୍ର ଜଳସେଚନ ଯୋଜନା ବିଶ୍ରାମ ଗୃହ ଉଦ୍‌ଘାଟନ ଉତ୍ସବରେ
ମନ୍ତ୍ରୀ ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକଙ୍କ ସହ ଲେଖକ



ପରିପୂର୍ଣ୍ଣ ସଂସାର - ଧର୍ମପତ୍ନୀ, ପୁଅ, ବୋହୂ, ଝିଅ, ଜ୍ୱାଇଁ, ନାତି ନାତୁଣୀ ସହ ଲେଖକ (୨୦୧୦)

# ପ୍ରଥମ ପରିଚ୍ଛେଦ

## ଜନ୍ମ ଓ ବଂଶ ପରିଚୟ

ନିପଟ ଛୋଟ ପଲ୍ଲୀଟିଏ ହେଲେ ବି ନାମ ତା'ର 'ଗୁଡ଼', ସେ ମୋର ପବିତ୍ର ଜନ୍ମଭୂମି। ସେଠାରେ ମହାପ୍ରଭୁ ବଳଦେବ ଜୀଉଙ୍କ ପ୍ରାଚୀନ ମନ୍ଦିର ଯୋଗୁଁ ପଲ୍ଲୀଟି ଖଣ୍ଡମଣ୍ଡଳରେ ବିଖ୍ୟାତ। ତା'ଛଡ଼ା, ଏହାର ଭୌଗୋଳିକ ପରିସ୍ଥିତି ଅତି ମନୋରମ। ଅଦୂରରେ କାଂଶବାଂଶ ନଦୀର ମୃଦୁ ମନ୍ଥର ଗତ, ଚତୁଃପାର୍ଶ୍ୱରେ ଦିଗନ୍ତ ବିସ୍ତାରୀ ଶସ୍ୟକ୍ଷେତ୍ର। ମାତୃଗର୍ଭରୁ ଆସି ମୋର କୋମଳ ଅଙ୍ଗପ୍ରତ୍ୟଙ୍ଗ ପ୍ରଥମେ ଏହି ଗାଁର ମା'ଟି ଛୁଇଁ ଥିଲା, ଏଇଠି ରଚିତ ହୋଇଥିଲା ମୋର ଷଠୀଘର।

ଜେଜେବାପାଙ୍କ ଅମଳରେ ସୋରୋ କେଦାରପୁର ନିକଟସ୍ଥ କବିରପୁର ଗ୍ରାମରୁ ଏହି ଗୁଡ଼ ଗ୍ରାମକୁ ଆମର ପରିବାର ସ୍ଥାନାନ୍ତରିତ ହୋଇଥିଲା। ବୋଧହୁଏ, ନଅଙ୍କ ଦୁର୍ଭିକ୍ଷ ବର୍ଷ ଉଦରର ତାଡ଼ନାରେ ଜେଜେବାପା ତାଙ୍କ ଭାଇମାନଙ୍କ ସହିତ ସ୍ଥାନ ପରିବର୍ତ୍ତନ ପୂର୍ବକ କାଂଶବାଂଶ ନଦୀର ଏହି ଶସ୍ୟଶ୍ୟାମଳା ତ୍ରିକୋଣଭୂମିକୁ ନିଜର ବାସସ୍ଥାନ ପାଇଁ ଉପଯୁକ୍ତ ମନେ କରିଥିଲେ। ଜେଜେବାପାଙ୍କର ଦୁଇପୁଅ ବରଜୁ ନାୟକ ଓ ଭୀମଚରଣ ନାୟକ। ବରଜୁ ନାୟକ ସୁଶିକ୍ଷିତ ଓ ପାଲା ଗାୟକ ଥିଲେ। ମାତ୍ର ୩୨ ବର୍ଷ ବୟସରେ ହଇଜା ରୋଗରେ ତାଙ୍କର ମୃତ୍ୟୁ ହୋଇଥିଲା। ଭୀମ ନାୟକ ମୋ ବାପା। ବାପାଙ୍କ ଦାଦାପୁଅ ଭାଇଙ୍କର ସ୍ୱଳ୍ପ ବୟସରେ ଅକାଳ ବିୟୋଗ ହେବା ଫଳରେ ତିନୋଟି ପରିବାରର ଦାୟିତ୍ୱ ବାପାଙ୍କ ଉପରେ ପଡ଼ିଥିଲା।

ପାଠ ନ ପଢ଼ିଥିଲେ ମଧ୍ୟ ବାପା ଥିଲେ ଜଣେ କର୍ମଠ, ଗଭୀର ଈଶ୍ୱର ବିଶ୍ୱାସୀ, ବୁଦ୍ଧିମାନ ଓ ସଂସ୍କୃତିସଂପନ୍ନ ବ୍ୟକ୍ତି। ସେ ନିଜ ଜମି ଚଷ କରିବା ସହିତ ଭେଡ଼ା ଅଞ୍ଚଳରେ ଭାଗଚଷ କରି ଯଥେଷ୍ଟ ରୋଜଗାର କରିପାରୁଥିଲେ। ବାପାଙ୍କର ଯୁବକ ବୟସ ବେଳେ ଇରମଠାରୁ ଚାନ୍ଦବାଲି ପର୍ଯ୍ୟନ୍ତ ବିରାଟ ବେଳାଭୂମି ପଡ଼ିଆ ପଡ଼ିଥିଲା। ତାହା ଜନବସତି ବିରଳ ଅଞ୍ଚଳ ଥିଲା। ଲୋକେ ବର୍ଷା ୨/୩ ମାସ ପରିଶ୍ରମ କରି ବହୁତ ଜମି ଚଷ କରିପାରୁଥିଲେ। ସେତେବେଳେ ଓଡ଼ିଶାରେ କୋଷ୍

କେନାଲ୍‌ରେ ଡଙ୍ଗା ଓ ଷିମର୍ ଚାଲୁଥିଲା । ଅଳ୍ପ ପରିଶ୍ରମରେ କୃଷିଜାତ ଦ୍ରବ୍ୟ ଯଥା:- ଧାନ, ନଡ଼ା ଆଦି ଲୋକେ କୋଷ୍ଟ କେନାଲ୍‌ରେ ଆଣିପାରୁଥିଲେ । ମୋ ବାପା ନିଜର ବଡ଼ଭାଇ ଓ ଦାଦାପୁଅ ଭାଇଙ୍କୁ ହରାଇ ସେମାନଙ୍କ ପରିବାର ଦୁଇଟିର ପୂର୍ଣ୍ଣ ଦାୟିତ୍ୱ ବହନ କରିଥିଲେ ମଧ୍ୟ ତାଙ୍କ ମନରେ ଗ୍ଳାନିର ଲେଶମାତ୍ର ଚିହ୍ନ ନଥିଲା ।

ବାପା ଭୀମଚରଣ ଓ ମାତା ଫୁଲରାଣୀଙ୍କର ଗୋଟିଏ ମାତ୍ର ଚିନ୍ତା ରହିଥିଲା, ତାହା ଥିଲା ପୁତ୍ର ସନ୍ତାନର ଅଭାବ । ବିବାହର ପନ୍ଦର ବର୍ଷ ମଧ୍ୟରେ ଲାଗଲାଗ ୩ଟି ଝିଅ ଜନ୍ମ ହେବାପରେ ପୁତ୍ରସନ୍ତାନ ଜନ୍ମ ନ ହେବାରୁ ଦୁଇଜଣ ମନଦୁଃଖରେ ଭାଙ୍ଗି ପଡ଼ିଲେ । ସବୁଠାରୁ ବେଶୀ ଦୁଃଖ ଥିଲା ମା'ଙ୍କର ।

ମା'ଙ୍କ ଦୁଃଖର ଅନ୍ୟ ଏକ କାରଣ ଥିଲା, ଶାଶୁଙ୍କ ସହିତ ମନାନ୍ତର । ଜେଜେମା' ଓ ମା'ଙ୍କ ମଧ୍ୟରେ ବହୁତ ପାର୍ଥକ୍ୟ ରହିଥିଲା । ଜେଜେମା' ଥିଲେ ଗୌରବର୍ଣ୍ଣା, ଦୀର୍ଘକାୟା, କର୍ମନିପୁଣା ଓ ଗୃହର ସର୍ବେସର୍ବା । ମା' ଥିଲେ ଶ୍ୟାମଳୀ, କ୍ଷୁଦ୍ରକାୟା ଓ ଗୃହର ଜଣେ ସାଧାରଣ ମହିଳା ପରି (ସେତେବେଳେ ଗୁରୁଜନ ଓ ଲଘୁଜନଙ୍କ ମଧ୍ୟରେ ଏପରି ଭେଦଭାବ ସ୍ୱାଭାବିକ ଥିଲା ସମାଜରେ ।) ଏକାନ୍ନବର୍ତ୍ତୀ ପରିବାରରେ ଶାଶୁ ବୋହୂଙ୍କ ମଧ୍ୟରେ ଯେଭଳି ସମ୍ପର୍କ ରହିବା କଥା ତାହା ଆମ ଘରେ ବିରାଜମାନ କରୁଥିଲା । କିନ୍ତୁ ବୋହୂକୁ ଅତି ହୀନଦୃଷ୍ଟିରେ ଶାଶୁ ଦେଖୁଥିଲେ, ଯେହେତୁ ବୋହୂ ପୁତ୍ରସନ୍ତାନର ଜନନୀ ହୋଇପାରିନଥିଲେ । ତାହାହିଁ ଥିଲା ମା'ଙ୍କ ପାଇଁ ମର୍ମନ୍ତୁଦ ଦୁଃଖର କାରଣ । ସବୁଦୋଷ ଯେପରି ମା'ଙ୍କର । ସେ ଭାବୁଥିଲେ ଯେପରି ସେ ବାପାଙ୍କର ଅନୁପଯୁକ୍ତା । ଜେଜେମାଙ୍କର ବୋହୂ ହେବା ପାଇଁ ମଧ୍ୟ ସେ ଅନୁପଯୁକ୍ତା । ବୋଉଙ୍କର ଜଣେ ସାନ ଜା' ଥିବାରୁ ତାଙ୍କୁ ରୋଷେଇ କରିବାକୁ ପଡୁନଥିଲା । ତେଣୁ ଜେଜମା'ଙ୍କ ଭାଷାରେ ବୋଉ ଥିଲେ ଘରର ଜଣେ ଅନାବଶ୍ୟକ ମହିଳା ।

ଏଭଳି ପରିସ୍ଥିତିର ତାଡ଼ନାରେ ବାପା ଓ ବୋଉ ଆମ ଗ୍ରାମର ଜଣେ ପଣ୍ଡିତ ନିଧି ଦାଶଙ୍କ ପରାମର୍ଶ ଅନୁସାରେ ଗ୍ରାମ ମହାଦେବ ତାଡ଼କେଶ୍ୱରଙ୍କ ଶରଣାପନ୍ନ ହେଲେ । ପଣ୍ଡିତଙ୍କ ପରାମର୍ଶ ଅନୁସାରେ ବାପା ବୋଉ ଗୋଟିଏ ଓଳି ଅରୁଆ ଅନ୍ନ ଭୋଜନ କରି ଓ ଦୁଇଓଳି ଦେବଦର୍ଶନ କରି ଦୀର୍ଘ ଏକ ବର୍ଷ ସାଧନାର ଫଳସ୍ୱରୂପ

ମୋର ଜନ୍ମ। ମହାଭାରତର କାହାଣୀ ଅଧ୍ୟୟନ କଲେ ଜଣାଯାଏ ଯେ ଦେବତାଙ୍କ ଆଶୀର୍ବାଦରୁ ଜନ୍ମ ପଣ୍ଡୁଙ୍କର ପାଞ୍ଚ ପୁତ୍ର ଥିଲେ ପୁଣ୍ୟବନ୍ତ, ଯୋଦ୍ଧା ଓ ନ୍ୟାୟବାନ। ପ୍ରଥମ ପାଣ୍ଡବ ଯୁଧିଷ୍ଠିର ଧର୍ମର ଅବତାର, ଭୀମ, ଅର୍ଜୁନ, ନକୁଳ, ସହଦେବ ପ୍ରତ୍ୟେକ ଏକ ଏକ ଐଶ୍ୱରିକ ଶକ୍ତିର ଆଧାର। ରାମାୟଣରେ ବର୍ଣ୍ଣିତ ହୋଇଅଛି ଯେ ଦଶରଥ ପୁତ୍ର ଲାଭ ପାଇଁ ଧର୍ମଯଜ୍ଞର ଆୟୋଜନ କରି ଚାରିପୁତ୍ର ଲାଭ କରିଥିଲେ। ଚାରିଜଣ ଯାକ ପୁତ୍ର ନୀତିବାନ, ଧର୍ମପରାୟଣ ଓ ପ୍ରଜାବତ୍ସଳ। ଚାରିଭାଇଙ୍କ ମଧ୍ୟରେ ଜ୍ୟେଷ୍ଠ ଥିଲେ ଚଳନ୍ତି ବିଷ୍ଣୁ ପ୍ରତିମା। ଯିଶୁଙ୍କ ଜନ୍ମ ସେହିପରି ଏକ ଦୈବୀ ଶକ୍ତି ବଳରେ ସମ୍ଭବ ହୋଇପାରିଥିଲା। ବିବେକାନନ୍ଦଙ୍କ ମାତା ଭୁବନେଶ୍ୱରୀ ଦେବୀ ଶିବପୂଜା କରି ତାଙ୍କୁ ପାଇଥିଲେ। ବାପା-ମାଙ୍କର ଦୀର୍ଘ ଏକବର୍ଷର ତପସ୍ୟାର ଫଳସ୍ୱରୂପ ପରବର୍ତ୍ତୀ କାଳରେ ଗ୍ରାମର ଧର୍ମାନୁଷ୍ଠାନ ଓ ଶିକ୍ଷାନୁଷ୍ଠାନ ସହିତ ଜଡ଼ିତ ହେବା ପାଇଁ ବୋଧହୁଏ ତାଡ଼କେଶ୍ୱର ମୋତେ ୧୯୩୨ ମସିହା ଜୁନ୍ ୨୨ ତାରିଖ ଆଷାଢ଼ କୃଷ୍ଣପକ୍ଷ ପଞ୍ଚମୀ ରେ ଏହି ଧରାଧାମକୁ ପଠାଇଥିଲେ। ହିନ୍ଦୁ ମାନଙ୍କର ବିଶ୍ୱାସ ଯେ ଦେବତାଙ୍କ ପୂଜା ଆରାଧନାରୁ ପ୍ରାପ୍ତ ସନ୍ତାନ ସତ୍‌ପୁତ୍ର ବା ସୁକନ୍ୟା ହୋଇଥାଏ।

ମହାଦେବଙ୍କ ଉପାସନା ପରେ ଜନ୍ମ ହୋଇଥିବାରୁ ମୋର ନାମ ଶିବ, ମହାଦେବ, ଶଙ୍କର ବା ଏଭଳି କିଛି ରଖାଯିବ ବୋଲି ସମସ୍ତେ ଭାବିଥିଲେ। କିନ୍ତୁ ସମସ୍ତଙ୍କୁ ଚମତକୃତ କରି ବାପା ମା ନାମ ରଖିଲେ 'ଭାସ୍କର'। ସୂର୍ଯ୍ୟ ହେଉଛନ୍ତି ସବୁ ଶକ୍ତିର ଆଧାର। ସୂର୍ଯ୍ୟଙ୍କ ପାଖରେ ଥିବା ସମସ୍ତ ଶକ୍ତି ନେଇ ତାଙ୍କର ପୁତ୍ର ପୃଥିବୀରେ ନାମ ଅର୍ଜନ କରୁ, ଏହା ବୋଧହୁଏ ଆଶା କରି ବାପା ମା' ଏହି ନାମ ଦେଇଥିଲେ। ଏହି ନାମ କରଣ ବେଳୁ ବାପା ମା' ସନ୍ତାନ ମାନଙ୍କ ଉପରେ ତାଙ୍କ ଆଶୀର୍ବାଦର କଳସ ଢାଳି ଦେଇଥାନ୍ତି। ପିଲାଟିଏ ଜନ୍ମ ହେଲେ ବିଶେଷ କରି ସେ ଯଦି ଈଶ୍ୱର ପୂଜାରୁ ଲବ୍ଧ ଫଳ ହୋଇଥାଏ, ବାପା ମା ତାର ଶୁଭକାମନା କରି ନାମକରଣ କରନ୍ତି। ଏହି ନାମକରଣରେ ବାପା, ମା ପୁଅର ଭବିଷ୍ୟତ ପାଇଁ ତାଙ୍କ ମନର ନିଭୃତ କୋଣରେ ଥିବା ଆକାଂକ୍ଷା ପ୍ରକାଶ କରିଥାନ୍ତି।

ମୋର ଜନ୍ମ ପରେ ଆମର ପରିବାରରେ ଏକ ଅଭୂତପୂର୍ବ ପରିବର୍ତ୍ତନ ଆସିଲା। ଜେଜେମା'ଙ୍କର ହୃଦୟରେ ମୋ ମା'ଙ୍କ ପ୍ରତି ଥିବା ବିଦ୍ୱେଷ ମୋ ପାଇଁ ବାତ୍ସଲ୍ୟର ଫଲଗୁରେ ପରିଣତ ହେଲା। ମୋର ଜନ୍ମର ଅଳ୍ପକେତେଦିନ ପରେ ଜେଜେମା ମୋର ସବୁ ଦାୟିତ୍ୱ ଆନନ୍ଦରେ ଗ୍ରହଣ କରିବାକୁ ଆଗଭର ହୋଇଆସିଲେ। ତାଙ୍କରି ଶୟନକକ୍ଷରେ ମୋର ଶେଯ ପଡ଼ିବା ସ୍ଥିର କଲେ। ତାଙ୍କର ସ୍ୱପ୍ନକୁ ସାର୍ଥକ କରି ମା'ଙ୍କର ରୂପ ନନେଇ ତାଙ୍କ ସ୍ୱରୂପର ଅନେକ ସାମଞ୍ଜସ୍ୟ ନେଇ ମୁଁ କୁଆଡ଼େ ଜନ୍ମ ଗ୍ରହଣ କରିଥିଲି। ମୋ ଉପରେ ଥିବା ତିନି ଭଉଣୀଙ୍କ ମଧ୍ୟରେ ମଧ୍ୟମ ଭଉଣୀ ସୁମ ଅପା ମଧ୍ୟ ଜେଜେମା'ଙ୍କ ସହ ସାମଞ୍ଜସ୍ୟ ନେଇ ଜନ୍ମ ଗ୍ରହଣ କରିଥିଲେ। ବଡ଼ବାପା ବରଜୁ ନାୟକଙ୍କ ଅକାଳ ବିୟୋଗ ବେଳକୁ ତାଙ୍କ ପୁଅର ବୟସ ମୋଟେ ଦୁଇ ମାସ। ପୁଣି ଆଉ ବର୍ଷକ ଭିତରେ ବଡ଼ ମା' ମଧ୍ୟ ଚାଲିଗଲେ। ତେଣୁ ତାଙ୍କ ପୁଅ ପ୍ରାଣବନ୍ଧୁଙ୍କର ଲାଳନପାଳନ ଦାୟିତ୍ୱ ମଧ୍ୟ ଜେଜେମା'ଙ୍କ ଉପରେ ପଡ଼ିଥିଲା। ପ୍ରାଣଭାଇ, ସୁମ ଅପା ଓ ମୁଁ ଜେଜେମା'ଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଧୀରେ ଧୀରେ ବଢ଼ିବାକୁ ଲାଗିଲୁ।

ବାପା, ମା', ଜେଜେମା ଓ ସୁମ ଅପାଙ୍କର ଅତ୍ୟଧିକ ସ୍ନେହ ମୋର ଜିଦ୍‌ଖୋର ସ୍ୱଭାବକୁ ବହୁତ ଗୁଣରେ ବଢ଼ାଇ ଦେଲା। ପିଲାଦିନେ ମୁଁ ଭୀଷଣ ରାଗି ଥିଲି। ମୋର ଇଚ୍ଛାପୂରଣ ନ ହେଲେ ମୁଁ ରାଗରେ ହତଜ୍ଞାନ ହୋଇଯାଉଥିଲି। ସେ ସମୟରେ କେହି ମୋ ସହିତ କଥାବାର୍ତ୍ତା କରିବାକୁ କିମ୍ବା ଶାସନ କରିବାକୁ ମଧ୍ୟ ସାହସ କରନ୍ତି ନାହିଁ। ମୁଁ ମଧ୍ୟ କାହାରି ଶାସନକୁ ଭ୍ରୂକ୍ଷେପ କରୁନଥିଲି। ରାଗ ସମୟରେ ମନକୁ ଯାହା ଆସେ ତାହା ମୁଁ କରିଯାଉଥିଲି। ପିଲାବେଳେ ରାଗରେ ଜର୍ଜରିତ ହୋଇ ଆସବାବପତ୍ର, ଏପରିକି ବଢ଼ା ଭାତ ଥାଳି ଫିଙ୍ଗି ଦେଇଛି। ଏହି ଜିନିଷପତ୍ର ଭାଙ୍ଗୁଥିବା ବେଳେ କେହି ପ୍ରତିବାଦ କରନ୍ତି ନାହିଁ। ପ୍ରତିବାଦ କଲେ ମୋର ରାଗ ଦ୍ୱିଗୁଣିତ ହୁଏ। ଏହା ଦେଖି ବାପା ଓ ମା ଅତ୍ୟନ୍ତ ଚିନ୍ତିତ ହୋଇପଡ଼ିଥିଲେ। କିନ୍ତୁ ଜଣେ ଅସୀମ ଧୈର୍ଯ୍ୟର ସହିତ ମୋର ରାଗକୁ ସହାସ୍ୟ ବଦନରେ ସହିଯାଆନ୍ତି। ସେ ସୁମଅପା, ମୋ ଠାରୁ ୯ ବର୍ଷ ବଡ଼ ହେବେ। ସେ ସମୟରେ ଗାଁରେ କୋବି, ଆଳୁ, ମଟର, ବିନ୍ ଆଦି ପରିବା ମିଳୁ ନଥିଲା। ବଜାର

କହିଲେ ୧୬ କି.ମି. ଦୂରରେ ଥିବା ସୋରୋ ବଜାରକୁ ବୁଝାଉଥିଲା। ସାପ୍ତାହିକ ହାଟରେ ବାଇଗଣ, ଜହ୍ନି, ଭେଣ୍ଡି, ବୋଇତାଳୁ ଆଦି ପରିବା ବିକ୍ରୟ ହେଉଥିଲା। ମାଛ ବିଶେଷ କରି ସମୁଦ୍ର ମାଛ ପ୍ରଚୁର ପରିମାଣରେ ମିଳୁଥିଲା। ତା ବ୍ୟତୀତ ଗାଁ ଜମି ଓ ପୋଖରୀରୁ ମଧ ବାପା ଓ ଘରର ହଳିଆ ଯଥେଷ୍ଟ ମାଛ ସଂଗ୍ରହ କରି ଆଣୁଥିଲେ। ସେ ମାଛଗୁଡ଼ିକୁ ଶୁଖୁଆ କରି ବର୍ଷସାରା ଖିଆଯାଉଥିଲା। ସକାଳେ ଚୂଡ଼ାମୁଢ଼ି ବା ପଖାଳ ପିଲାମାନେ ଖାଆନ୍ତି। ଏତେ ସକାଳରୁ ତରକାରି ପ୍ରସ୍ତୁତ ହେବା ସମ୍ଭବପର ନୁହେଁ, ତେଣୁ ସକାଳ ଜଳଖିଆ ପାଇଁ ଖଟା, ଆଚାର ବା ଶୁଖୁଆ ପୋଡ଼ାରେ ପିଲାମାନଙ୍କ ଖାଇବା ଚଳିଯାଏ। କିନ୍ତୁ ଏଭଳି ଖାଇବା ମୋର ଚଳେ ନାହିଁ। ତରକାରୀ ନ ହେଲେ ମୋର ଜଳଖିଆ ଓ ପଖାଳ ଖିଆ ବନ୍ଦ। ମୁଁ ରାଗରେ କାନ୍ଦିକାନ୍ଦି ଅଥୟ ହୋଇଯାଏଁ, ମୋର ଏ ଜିଦ୍‌ଖୋର୍ ସ୍ୱଭାବ ଦେଖି ସୁମଅପା ତାଙ୍କ ପାଇଁ ଉଦ୍ଦିଷ୍ଟ ତରକାରିରୁ ବାହାର କରି ପୂର୍ବ ରାତ୍ରିରୁ ରଖି ଦିଅନ୍ତି ଓ ମୋତେ ସକାଳେ ସେହି ତରକାରୀ ସହ ଜଳଖିଆ ବା ପଖାଳ ଖାଇବାକୁ ଦିଅନ୍ତି। ମୁଁ ବହୁତ ଖୁସିରେ ଖାଇ କରି ଚାଲିଯାଏ। ମୁଁ କେଉଁଠାରେ କଳି କରୁଥିଲେ, ସଙ୍ଗେ ସଙ୍ଗେ ସୁମ ଅପା ହାଜର ହୋଇଯାନ୍ତି। ବୋଧହୁଏ ମୋର ଜିଦ୍‌ଖୋର ସ୍ୱଭାବ ଯୋଗୁଁ ସେ ମୋ ଉପରେ ନଜର ରଖିଥାନ୍ତି। ସଙ୍ଗେ ସଙ୍ଗେ ମୋତେ ନିଜ ଛାତି ପାଖକୁ ଆଉଜାଇ ଆଣି, ବାପାରେ ଧନରେ କହି ଘରକୁ ନେଇ ଆସନ୍ତି। ତାଙ୍କର ରାଣ ନିୟମ ଦେଇ, ମୋତେ କାଖେଇ ବୁଲେଇ ମୋର ମନକୁ ଭୁଲାଇ ଦିଅନ୍ତି। କ୍ରମେ ସୁମ ଅପାଙ୍କର ଏହି ସ୍ନେହ ମୋତେ ନମନୀୟ କରିପକାଇଲା। ମନକୁ ଯେତେ ରାଗ ଅଭିମାନ ଆସିଲେ ବି ତାଙ୍କୁ ଦେଖିଦେଲେ ମୋର ରାଗ ପାଣି ଫୋଟକା ଭଳି କୁଆଡ଼େ ମିଳେଇ ଯାଏ। ତାଙ୍କର ହସହସ ମୁହଁ ଦେଖିଲେ ସାପୁଆକେଳା ସାପକୁ ମନ୍ତ୍ରମୁଗ୍ଧ କଲାପରି ମୁଁ ତାଙ୍କର ବଶ ହୋଇଯାଏ ଓ ମୋର ରାଗରାଗ ମୁହଁରେ ଉକୁଟି ଉଠେ ହସ।

ଦିନେ ଖରାବେଳେ ମୁଁ ଶୋଇପଡ଼ିଥିଲି। ସେଦିନ ଆମ ଘରେ ଇଲିସି ମାଛ ତରକାରୀ ହୋଇଥିଲା। ସନ୍ଧ୍ୟାବେଳେ ପିଲାମାନଙ୍କୁ ଖାଇବାକୁ ଦିଆଗଲା। ଖରାବେଳେ ଶୋଇ ପଡ଼ିଥିବାରୁ ମୋତେ ନିଦ ହୋଇନଥାଏ, ରାତି ଦଶଟା ବେଳକୁ ବୋଉ, ଖୁଡ଼ି, ସୁମ ଅପା ଖାଇବସିଲେ। ମୁଁ ଜିଦ୍ କଲି ଆଉ ଥରେ ଅପା ସଙ୍ଗେ

ଖାଇବି। ସେ ଖୁସିରେ ଡାକିଲେ। ମୁଁ ଖାଉଥିବା ସମୟରେ ଲକ୍ଷ୍ୟ କଲି ଆଉ ଗୋଟିଏ ବାଟି ଆଣି ସେ ତାଙ୍କ ତରକାରିରୁ ଅଧାରୁ ଅଧିକ ଅଲଗା କରି ରଖିଲେ। ବାକି ଅଧାକ ମୋତେ ଖୁଆଇ ଦେଉଥାନ୍ତି। ମୋର ସେତେବେଳକୁ ୫/୬ ବର୍ଷ, ମୁଁ ମଧ ସୁମ ଅପାଙ୍କୁ ମଝିରେ ମଝିରେ ଖୁଆଇ ଦେଉଥାଏ। ସେ କିନ୍ତୁ ବେଶୀ ସମୟ ଖାଲିଭାତ ବା ଖଟାରୁ କିଛି ଖାଇବାରେ ଲାଗିଥାନ୍ତି। ମୁଁ ଯେତେବେଳେ କହିଲି, "ଅପା, ତୁମେ କାହିଁକି ମାଛ ଖାଉନ?" ଖୁଡ଼ି କହି ପକାଇଲେ, "ସେ କଣ ତରକାରୀ ଖାଏ? ସବୁ ପରା ତୋ ପାଇଁ ରଖିଦିଏ। ତୁ ସକାଳେ ଅଝଟ କରୁଛୁ ବୋଲି ସେ ରାତିରେ ତରକାରି ଖାଇବା ଛାଡ଼ି ଦେଲାଣି, କହିଲେ ଚଳେ।" ମୁଁ ନିରୀହ ଦୃଷ୍ଟିରେ ବଲବଲ କରି ଅପା ମୁହଁକୁ ଅନାଇ ରହିଲି। ଦୁଃଖରେ ଆଖି ମୋର ଛଳ ଛଳ ହୋଇ ଉଠିଲା। ମୁଁ ସଙ୍ଗେ ସଙ୍ଗେ କହିଲି "ଅପା ଆଉ କେବେ ମୁଁ ଅଝଟ କରିବିନି, ତୁମେ ମାଛ ଖାଅ"। ସେ ତାଙ୍କ ସ୍ୱଭାବ ସୁଲଭ ବାତ୍ସଲ୍ୟ ସ୍ନେହଭରା କଣ୍ଠରେ କହିଲେ ନାହିଁରେ, ଖୁଡ଼ି ମିଛ କହୁଛନ୍ତି। ମୋତେ ତରକାରୀ ଭଲ ଲାଗେନି। ମୁଁ କାହିଁକି ତୋ ପାଇଁ ତରକାରି ଛାଡ଼ିଦେବି। ସେହିଦିନଠାରୁ ମୋର ଜିଦ୍‌ଖୋର ସ୍ୱଭାବ ଅନେକ ଅଂଶରେ କମିଗଲା। ଏଥିରୁ ଏହା ସୂଚିତ ହେଉଛି ଯେ ମାଟିପିଣ୍ଡୁଳା ତୁଲ୍ୟ ସରଳ ଶିଶୁ ମନର କ୍ରୋଧକୁ କ୍ରୋଧ ଦ୍ୱାରା ନୁହେଁ, ସ୍ନେହ, ମମତା ରୂପ ଅମୃତର ସ୍ପର୍ଶ ଦେଇ ଶାନ୍ତ କରାଯାଇପାରେ।

ସୁମ ଅପା ଯେ କେବଳ ମୋ ପାଇଁ ଭଲ ଥିଲେ, ସେତିକି ନୁହେଁ। ସେ ଥିଲେ ଆମ ଏକାନ୍ନବର୍ତ୍ତୀ ପରିବାରର ମଉଡ଼ମଣି ତୁଲ୍ୟ। ତିନୋଟି ପରିବାରର ଗୁରୁ ଦାୟିତ୍ୱ ବହନ କରିଥାନ୍ତି ବାପା, ମୋ ପରେ ଆଉ ଦୁଇଟି ପୁତ୍ର ସନ୍ତାନ ଓ ଗୋଟିଏ କନ୍ୟା ରତ୍ନ ମା'ଙ୍କର କୋଳମଣ୍ଡନ କଲେ। ବଡ଼ ବାପା ଓ ଦାଦାଙ୍କ ଅକାଳ ବିୟୋଗ ଫଳରେ ତାଙ୍କ ପିଲାମାନଙ୍କ ଦାୟିତ୍ୱ ବାପାଙ୍କ ଉପରେ ପଡ଼ିଥାଏ। ବଡ଼ ବାପା ଓ ଦାଦାଙ୍କର ସନ୍ତାନସନ୍ତତି ସହ ଆମେ ଭାଇଭଉଣୀ ମିଶି ମୋଟରେ ହେଲୁଁ ବାର ଜଣ, ବାପା ମା, ଖୁଡ଼ି, ଜେଜେମା ମିଶି ଘରର ଲୋକସଂଖ୍ୟା ଷୋହଳ ଜଣ। ଏତେ ଲୋକ ଏକତ୍ର ରହିଲେ ପରସ୍ପର ମଧ୍ୟରେ ମନାନ୍ତର ଓ ମତାନ୍ତର ହେବା ସ୍ୱାଭାବିକ। କିନ୍ତୁ ଏତେ ବଡ଼ ପରିବାରକୁ ଏକତ୍ର କରି ରଖିଥିଲା ତିନିଟି ଶକ୍ତି, ବାପାଙ୍କର ଈଶ୍ୱର

ବିଶ୍ୱାସ ଓ ତ୍ୟାଗ, ଜେଜେମା'ଙ୍କର କର୍ତ୍ତୃତ୍ୱ ଓ ସୁମ ଅପାଙ୍କର ହୃଦୟ ସରୋବରରେ ସମସ୍ତଙ୍କ ପାଇଁ ଥିବା ଅମାପ ସ୍ନେହ, ମମତାର ମହକ। ବୋଉ ଖୁଡ଼ିଙ୍କ ମଧ୍ୟରେ ମତାନ୍ତର ହେଲେ, ଜେଜେମା' ଓ ବୋଉଙ୍କର ଝଗଡ଼ା ହେଲେ, ଛୋଟ ଛୋଟ ପିଲାଙ୍କ ମଧ୍ୟରେ କଳି ମାଡ଼ ମରାମରି ହେଲେ ସଙ୍ଗେ ସଙ୍ଗେ ସୁମ ଅପା କଲ୍ୟାଣମୟୀ ଦେବୀ ପରି ପହଞ୍ଚି ସବୁ ମେଣ୍ଟାଇ ଦିଅନ୍ତି। ତାଙ୍କର ସେହି ହସ ହସ ମୁହଁରେ କି ଯାଦୁକରି ଶକ୍ତି ଥିଲା କେଜାଣି, ପଦେ ଦୁଇପଦ କଥାରେ ସେ ସବୁ ସମାଧାନ କରି ଦିଅନ୍ତି। ଛୋଟ ଛୋଟ ଭାଇଭଉଣୀଙ୍କୁ ପେଟ ତଳେ ଜାକି ଧରି ନେଇ ଯାଆନ୍ତି। ଯେପରି ସମସ୍ତେ ତାଙ୍କ ପାଖରେ ଭଲ। ଜେଜେ ମା'ଙ୍କ ଭଳି କଡ଼ା ଅଭିଭାବକ ମଧ୍ୟ ସୁମ ଅପା ପରି ପିଲାଟା ପାଖରେ ବିଷହରା ସର୍ପ ପରି ଶାନ୍ତ ପାଲଟି ଯାଆନ୍ତି। ସୁମ ଅପା ପାଖରେ ସେ ଯେପରି ଗାତର ମୂଷା, ସେ ଯଦି କାହା ଉପରେ ରାଗୁଥିବେ ସୁମ ଅପାଙ୍କୁ ଡାକିଦେଲେ ସେ ସଙ୍ଗେ ସଙ୍ଗେ ଚୁପ୍। ଭଗବାନ ବଡ଼ ନିର୍ଦ୍ଦୟ। ମୋତେ ଯେତେବେଳେ ୯/୧୦ ବର୍ଷ, ଅଳ୍ପ କେତେଦିନ ରୋଗ ଭୋଗିଲା ପରେ, ଘରର ଏହି ଉଜ୍ଜ୍ୱଳ ତାରକାଟି ଚିରଦିନ ପାଇଁ ଅସ୍ତମିତ ହୋଇଗଲା। ତାଙ୍କର ଅକାଳ ବିୟୋଗ ମୋ'ପାଇଁ ଯେ କେଡ଼େ ବଡ଼ ଦୁଃଖଦାୟକ ହୋଇଥିଲା ତାହା ସେ ସମୟରେ ଯେ ଦେଖିଛି ଅନୁଭବ କରିଛି। ଅପାଙ୍କର କ'ଣ ହେଲା ? ସେ କାହିଁକି ଘରେ ନାହାନ୍ତି ? ମୁଁ କିଛି ବୁଝି ପାରୁନଥିଲି। ମୁଁ କାନ୍ଦୁ ନଥିଲି କି କାହା ସହିତ ମାସେ ପର୍ଯ୍ୟନ୍ତ କଥା କହୁ ନଥିଲି। ଖାଲି 'ସୁମ ଅପା କାହାନ୍ତି ? ସେ କାହିଁକି ଆସୁନାହାନ୍ତି ବୋଲି ସମସ୍ତଙ୍କୁ ପଚାରୁଥିଲି।" ତାଙ୍କ ଶୋଇବା ଖଟ, ବିଛଣା, ଶାଢ଼ୀ ସବୁକୁ ବାରମ୍ବାର ନିରେଖି ଦେଖୁଥିଲି। ସୁମ ଅପାଙ୍କର ବିୟୋଗରେ ମୁଁ ନିଜର ବଡ଼ଭଉଣୀଙ୍କୁ ହରାଇ ନଥିଲି; ମୋତେ ଜଣାଗଲା ସତେ ଯେପରି ମୁଁ ମୋର ନିଜ ମା'ଙ୍କୁ ହରାଇଛି। ହାୟଃ, ସେ ଯଦି ଅଜି ବଞ୍ଚିଥାନ୍ତେ ତ ଦେଖିଥାନ୍ତେ ଯେଉଁ ଶିଶୁ ଗଛଟିକୁ ଆଦରରେ ବଢ଼ାଇଥିଲେ ସେ ଆଜି ତାର ଡାଳପତ୍ର ମେଲି ଏକ ବିରାଟ ବୃକ୍ଷରେ ପରିଣତ ହୋଇଛି, ତାଙ୍କରି ଆଶୀର୍ବାଦର ଫଳ ନେଇ ଚାକିରୀର ସର୍ବୋଚ୍ଚ ସୀମାରେ ଉପନୀତ ହୋଇପାରିଛି, ସେ କେତେ, ଖୁସି ନ ହୁଅନ୍ତେ ? ମୋର ପିଲାମନ ନେଇ ସେତେବେଳେ ମୃତ୍ୟୁ ଯେ ଏକ ଚିରବିଚ୍ଛେଦର ରେଖା ଟାଣିଦିଏ, ତାହା ଭଲ ରୂପେ ବୁଝିପାରିନଥିଲି।

ଏଣୁ ମୋ ମନରେ ଉଦିତ ହୋଇଥିଲା, ଅସୁମାରୀ ପ୍ରଶ୍ନ ଓ ସନ୍ଦେହର ଘନ-କଳା-ବାଦଲ।

ସୁମ ଅପାଙ୍କ ମୃତ୍ୟୁ ପରେ ବୋଧହୁଏ ତାଙ୍କର ଅଭାବ ଯେପରି ମୁଁ ଅନୁଭବ ନ କରେ, ସେଥିପାଇଁ ବୋଉ ଓ ଜେଜେମା ଅତ୍ୟନ୍ତ ତତ୍ପର ହୋଇ ଉଠିଲେ। ଏ ପର୍ଯ୍ୟନ୍ତ ବୋଉ ମୋର ସମୁଦାୟ ଦାୟିତ୍ୱ ସୁମ ଅପା ଉପରେ ଛାଡ଼ିଦେଇ ନିଶ୍ଚିନ୍ତ ଥିଲେ। ସେ ମୋ ପରେ ଜନ୍ମ ହୋଇଥିବା ଭାଇଭଉଣୀଙ୍କମାନଙ୍କ ଦାୟିତ୍ୱ ବେଶୀ ବୁଝୁଥିଲେ। କିନ୍ତୁ ସୁମ ଅପାଙ୍କ ଅକାଳ ବିୟୋଗ ତାଙ୍କୁ ବହୁତ ବାଧିଥିଲେ ମଧ୍ୟ ସେ ଦ୍ୱିଗୁଣ ଉତ୍ସାହରେ ସମସ୍ତଙ୍କ ତତ୍ତ୍ୱ ନେବାରେ ଲାଗିଲେ। ଜେଜେମା ମଧ୍ୟ ମୋର ଖାଇବା ବିଷୟରେ ଅଧିକ ତତ୍ପର ହୋଇଉଠିଲେ। ସେ ଟିକିଏ ଡେରିରେ ଉଠନ୍ତି। କିନ୍ତୁ ବାପା ଓ ହଳିଆ ବିଲକୁ ଯିବା ପୂର୍ବରୁ ପାନ ଭାଙ୍ଗି ରଖିଥିବେ। ଘରର କ'ଣ ତରକାରି ହେବ, କେଉଁଦିନ କି ସଉଦା ହେବ ସବୁ ସେ ତଦାରଖ କରନ୍ତି। ସୁମ ଅପାଙ୍କ ମୃତ୍ୟୁ ବେଳକୁ ଜେଜେମା'ଙ୍କୁ ପ୍ରାୟ ୭୨ ବର୍ଷ। କିନ୍ତୁ ସେ ଅତ୍ୟନ୍ତ କର୍ମଠ ଥିବାରୁ ନିଜେ ସବୁ କାମ କରିପାରନ୍ତି। ସୁମ ଅପାଙ୍କର ମୃତ୍ୟୁପରେ ଯେଉଁ ଅଭାବ ଦେଖାଦେଇଥିଲା ତାହା କିଛି ଅଂଶରେ ପୂରଣ କଲା, ମୋର ସାନ ଭଉଣୀ ଯାଡ଼ି। ସୁମ ଅପାଙ୍କର ମୃତ୍ୟୁବେଳକୁ ତାର ବୟସ ମୋଟେ ଚରି ବର୍ଷ। ଆଉ ୩/୪ବର୍ଷ ମଧ୍ୟରେ ସୁମ ଅପାଭଳି ଆଉ ଗୋଟିଏ ସ୍ନେହମୟୀ ଭଉଣୀ ମୁଁ ତା ମଧ୍ୟରେ ଦେଖିପାରିଲି। ସୁମ ଅପାଙ୍କୁ ପାଇଥିଲି ବଡ଼ଭଉଣୀ ରୂପରେ। ଯାଡ଼ିକୁ ପାଇଲି ସାନଭଉଣୀ ରୂପରେ। ଆଶ୍ଚର୍ଯ୍ୟର କଥା ତାକୁ ଯେତେବେଳେ ମାତ୍ର ୧୧/୧୨ ବର୍ଷ ବୟସ, ସେ ମୋର ଅନେକ ଦାୟିତ୍ୱ ନେବାକୁ ଆରମ୍ଭ କରିଦେଲା। ଭାଇ ସକାଳେ କଣ ଖାଇବେ, ଭାଇଙ୍କୁ ବେଶୀ ଝୋଳ ତରକାରି ଭଲ ଲାଗିବନି, ଭାଇ କେଉଁ ଘରେ, କେଉଁ ଖଟରେ ଶୋଇବେ। ସବୁ ସେ ବୁଝିବାକୁ ଆରମ୍ଭ କରିଦେଲା। ପିଲାଟି ଦିନୁ ମୁଁ ଅଲଣା ତରକାରୀ ଖାଇବାକୁ ଭଲପାଏ। ତାକୁ ୧୧/୧୨ ବର୍ଷ ହେବାବେଳକୁ ସେ ମୋ ପାଇଁ ଅଲଗା ତରକାରୀ ରାନ୍ଧିବା, ମୋ ଲୁଗା ଓ ବହି ସଜାଡ଼ିବା ଆରମ୍ଭ କରିସାରିଥାଏ। ତାର ଏ ସ୍ନେହ ଓ କର୍ମ କୁଶଳତା ବଳରେ ସେ ସମସ୍ତଙ୍କ ମନକୁ କିଣି ପକାଇଲା। ତାର ସ୍ନେହ ଆଦର ପାଇ ଜେଜେମା, ବାପା ଓ

ବୋଉ ସୁମ ଅପାଙ୍କୁ କିଛି ଅଂଶରେ ଭୁଲିଗଲେ। ଭାଇମାନଙ୍କ ମଧ୍ୟରେ ଅନ୍ୟ ଏକ ସ୍ନେହକାଙ୍ଗାଳ ଭାଇ ହୋଇଛନ୍ତି ମୋର ଦାଦାଙ୍କ ପୁଅ ବାଇଧର ଭାଇ। ସେ ବୟସରେ ମୋଠାରୁ ମାତ୍ର ଦୁଇ ବର୍ଷ ବଡ଼। ସେତେବେଳେ ଅତ୍ୟନ୍ତ ମେଧାବୀ ଓ ପ୍ରତିଭାବାନ ଛାତ୍ର କେବଳ ଉଚ୍ଚଶିକ୍ଷା ପାଇବାକୁ ସକ୍ଷମ ହେଉଥିଲେ। ତେଣୁ ପ୍ରାଥମିକ ଶିକ୍ଷା ପରେ ତାଙ୍କ ଶିକ୍ଷାରେ ଡୋରିବନ୍ଧାଗଲା। କିନ୍ତୁ ମୁଁ ବୃତ୍ତି ପାଇ ଉଚ୍ଚଶିକ୍ଷା ପାଇବାକୁ ସକ୍ଷମ ହେଲି। ସେଥିପାଇଁ ତାଙ୍କ ମନରେ ଗ୍ଲାନି ଆଦୌ ନଥିଲା। ମୋର କୃତିତ୍ୱ ଦେଖି ସେ ଆନନ୍ଦରେ ବିଭୋର ହୋଇପଡନ୍ତି ଓ ସଦାବେଳେ ବାପାଙ୍କୁ ଅନୁନୟ କରି କୁହନ୍ତି ବାପା ଯାହା ଅସୁବିଧା ହେଉ ପଛେ ଭାସ୍କରର ପଢ଼ା ବନ୍ଦ କରନି। ସେ ନିଶ୍ଚୟ ଜଣେ ବଡ଼ ମଣିଷ ହେବ ଓ ଆମ ବଂଶର ନାମ ରଖିବ। ଭାଇ, ଭଉଣୀଙ୍କ ମଧ୍ୟରେ ଏପ୍ରକାର ଉଦାରତା, ସ୍ନେହ ପ୍ରବଣତା, ଆତ୍ମୋତ୍ସର୍ଗ ଏ ଯୁଗରେ ବିରଳ।

ସେତେବେଳେ ଗ୍ରାମ୍ୟ ଜୀବନ ବଡ଼ ସରଳ ଥିଲା। ଅଧିକାଂଶ ଲୋକଙ୍କ ବାଡ଼ିରେ କରଞ୍ଜ ଓ ନିମଗଛ ଥାଏ। ତାର ମଞ୍ଜିକୁ ପେଶି ଦେହରେ ମାଲିସ୍ କରନ୍ତି ଓ ତା' ତେଲରେ ଦୀପ ଜାଳନ୍ତି। ବାଡ଼ିରେ ଫଳୁଥିବା ତେନ୍ତୁଳିରୁ ନାନା ଜାତୀୟ ଆଚାର ପ୍ରସ୍ତୁତ କରି ବର୍ଷକର ଆବଶ୍ୟକତା ପୂରଣ କରନ୍ତି। ଆମ୍ବଗଛର ଆମ୍ବଗୁଡ଼ିକୁ କଞ୍ଚାବେଳେ ତୋଳି ଆମ୍ବୁଲ ଓ ଆଚାର ପ୍ରସ୍ତୁତ କରନ୍ତି ଓ ବର୍ଷକ ପାଇଁ ସାଇତି ରଖନ୍ତି।

'ଗୁଡ଼' ଓ 'ସୁଆଁ' ଦୁଇଟି ଭିନ୍ନଭିନ୍ନ ଗ୍ରାମ। ଗୋଟିଏ ବାଲେଶ୍ୱର ସବ୍‌ଡ଼ିଭିଜନ ଅନ୍ତର୍ଗତ ଓ ଅନ୍ୟଟି ଭଦ୍ରକ ସବ୍‌ଡ଼ିଭିନଜନର। କିନ୍ତୁ ଗୋଟିଏ ମା'ର ଗର୍ଭଜାତ ଯମଜ ସଂନ୍ତାନ ପରି, ଦୁଇଟି ସ୍ନେହମୟୀ ଭଉଣୀ ପରି ଥିଲେ ଏହି ଦୁଇଟି ଗାଁ। ଦୁଇ ଗ୍ରାମବାସୀଙ୍କ ମଧ୍ୟରେ ଏପରି ମେଳ ଥିଲା ଯେ ଗ୍ରାମଦୁଇଟିକୁ ଅଲଗା କରିଦେବା ସମ୍ଭବ ନଥିଲା। ଦୁଇ ଗ୍ରାମରେ ବ୍ରାହ୍ମଣ, ଖଣ୍ଡାୟତ, ଗଉଡ଼, ଭଣ୍ଡାରୀ, ପାଣ, ଧୋବା, କେଉଟ, ଚମାର, କୁମ୍ଭାର ଆଦି ବହୁ ଜାତିର ଲୋକ ବାସ କରୁଥିଲେ। ସେମାନଙ୍କ ଭିତରେ ଯଥେଷ୍ଟ ସଦ୍‌ଭାବ ରହିଥିଲା। ଯିଏ ଯେଉଁ ଜାତିର ହୁଅନ୍ତୁନା କାହିଁକି ବୟସର ତାରତମ୍ୟ ଦୃଷ୍ଟିରୁ ପ୍ରତ୍ୟେକ ପ୍ରତ୍ୟେକଙ୍କୁ ମଉସା, ମାଉସୀ, ପୁତୁରା, ଝିଆରୀ, ଭାଇ, ଅପା, ସମ୍ବୋଧନ କରୁଥିଲେ। ବଳଦେବଙ୍କ ପାଖରେ ହେଉଥିବା ପ୍ରଧାନପର୍ବ ରଥଯାତ୍ରା, ଦେବସ୍ନାନ ପୂର୍ଣ୍ଣିମା, ସୁଆଁ ସିଦ୍ଧେଶ୍ୱରୀଙ୍କ ପଣା ସଂକ୍ରାନ୍ତି ଯାତ୍ରା, ଶିବରାତ୍ରି,

ଦୋଳଯାତ୍ରା ସମୟରେ ସମସ୍ତେ ଏକତ୍ର ହୋଇ ଚାନ୍ଦା କରି ଉତ୍ସବ ଗୁଡ଼ିକ ସମାପନ କରନ୍ତି। ଗ୍ରାମ ଦୁଇଟିର ଲୋକସଂଖ୍ୟା ମିଶି ସେ ସମୟରେ ପ୍ରାୟ ୮/୧୦ ହଜାର ହେବ। ଗ୍ରାମରେ ତେଜରାତି ଦୋକାନ, ଲୁଗା ଦୋକାନ, ମନୋହରୀ ଦୋକାନ ରହିଥିଲା। ସୁଆଁହାଟ ସପ୍ତାହରେ ଦୁଇଥର ଓ ଗୁଡ଼ ଛତୁର୍ଗା ହାଟ ସପ୍ତାହରେ ଦୁଇଥର ବସୁଥିଲା। ଗ୍ରାମବାସୀମାନେ ସେମାନଙ୍କର ଆବଶ୍ୟକୀୟ ପରିବା ଓ ମାଛ ଇତ୍ୟାଦି ହାଟରୁ କିଣି ଆଣନ୍ତି। ଅଧିକାଂଶ ଜିନିଷ ଗ୍ରାମରେ ମିଳିଯାଉଥିଲା।

ସେତେବେଳେ ଗ୍ରାମଠାରୁ ମାତ୍ର ୩ କି.ମି. ଦୂର ସମୁଦ୍ର ଉପକୂଳ ଏକ ଝୁଆରିଆ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା। ସମୁଦ୍ର ଉପକୂଳ କର୍ଦ୍ଦମଯୁକ୍ତ। ଏହି କର୍ଦ୍ଦମ ଉପରେ ଜୁଆର ବାରମ୍ବାର ମାଡ଼ି ଏହାକୁ ଲବଣାକ୍ତ କରି ପକାଏ। ଲୋକେ ଏହି ଲବଣାକ୍ତ ମାଟିକୁ ନେଇ ଆସି ଝରା ବସାନ୍ତି। ଝରାରୁ ଝରିଥିବା ଜଳରୁ ସମୁଦ୍ର କୂଳରେ ଥିବା ବନିଗଛକୁ ଜାଳି ଲୁଣ ବାହାର କରନ୍ତି। ବାଡ଼ିରେ ଫଳୁଥିବା ସୋରିଷରୁ ତେଲ ବାହାର କରି ବର୍ଷକ ଚଳାଇ ନିଅନ୍ତି। ବାଡ଼ି ଲଙ୍କାକୁ ଶୁଖାଇ ବର୍ଷକର ଚାହିଦା ମେଣ୍ଟାନ୍ତି।

ବଜାରକୁ କେବଳ ପାନ, ଗୁଆ, ଧୂଆଁପତ୍ର ସୋରିଷ ତେଲ କିଣିବାକୁ ଯାଆନ୍ତି। ସେତେବେଳେ ଲୋକଙ୍କର ଆବଶ୍ୟକତା ବହୁତ କମ ଥିଲା। ତୁଳାରୁ ସୂତା କାଟି ଗାଁ ତନ୍ତିଙ୍କ ହାତରେ ବୁଣାଇ ଦିଅନ୍ତି। ଗାଁରେ କେତେକ କୁଶଳୀ କାରିଗର ତନ୍ତିମାନେ ବୁଣୁଥିବା ଲୁଗାରେ ଜାମା ଓ କୋଟ ତିଆରି କରନ୍ତି। ବ୍ରିଟିଶ ଶାସନ ଗାଁର ଅର୍ଥନୀତିକୁ ଚୁର୍‌ମାର କରି ଦେବାପରେ ବି - ଗ୍ରାମ୍ୟ ଅର୍ଥନୀତି କେତେକ ପରିମାଣରେ ଲୋକମାନଙ୍କୁ ଆତ୍ମନିର୍ଭରଶୀଳ କରିଥିଲା।

ଗାଁ ମଝି ଦେଇ ଯାଉଛି ନିମିକି ସଡ଼କ। ବହୁଦିନରୁ ଆମ ଗ୍ରାମ ନିକଟବର୍ତ୍ତୀ ଇରମର ସମୁଦ୍ର ଉପକୂଳ ଲବଣ ଆମଦାନୀ ପାଇଁ ପ୍ରସିଦ୍ଧି ଲାଭ କରିଆସିଥିଲା। ଏହି ଲବଣର ରପ୍ତାନୀ ପାଇଁ ବାଲେଶ୍ୱରଠାରୁ ଭଦ୍ରକ ପର୍ଯ୍ୟନ୍ତ ସମୁଦ୍ର ଉପକୂଳରେ ତିଆରି ହୋଇଥିବା ସଡ଼କର ନାମ ଦିଆଯାଇଥଲା ନିମିକି ସଡ଼କ। ଏହି ସଡ଼କରେ ଦକ୍ଷିଣଦିଗକୁ ଗଲେ, ଆମେ ଗ୍ରାମଠାରୁ ବାସୁଦେବପୁର ଡାକ୍ତରଖାନା ୬ କି.ମି. ଦୂର। ସଡ଼କରେ ଅଂସଖ୍ୟ ଘାଇ। ବର୍ଷା ଚାରି ମାସ ସଡ଼କ ପଥରେ ଯାତାୟତ ଆୟସସାଧ। ଖରାଦିନେ ମଧ ଲୋକେ ସଡ଼କରେ ନ ଯାଇ ବିଲରେ ଶଗଡ଼ ଗୁଳାରେ ଯାତାୟତ

କରନ୍ତି କାରଣ ସଡ଼କରେ ଥିବା ଘାଇରେ ବୈଶାଖ ଜ୍ୟେଷ୍ଠ ପର୍ଯ୍ୟନ୍ତ ପାଣି ଥାଏ। ରୋଗ ହେଲେ ଲୋକେ ଡାକ୍ତରଖାନାକୁ ନ ଯାଇ ଗ୍ରାମ ବୈଦ୍ୟଙ୍କର ସାହାଯ୍ୟ ଲୋଡ଼ନ୍ତି। ଜ୍ୱର ଯେ କୌଣସି କାରଣରୁ ହୋଇଥିଲେ ମଧ୍ୟ ବୈଦ୍ୟମାନେ ଶୃଙ୍ଗରହାର ପତ୍ର ରସ ପିଇବାକୁ ପରାମର୍ଶ ଦିଅନ୍ତି। କାଶ ହେଲେ ଅସଙ୍ଗ ଛଡ଼ାର ମୂତ୍ର, ବାଉଁଶ ପତ୍ର ରସ, କାଛୁହେଲେ ନିମପତ୍ର ଛାଲିକୁ ଗରମ ପାଣିରେ ସିଝାଇ ଘା' ଧୋଇବାକୁ ପରାମର୍ଶ ଦିଅନ୍ତି। ଚେର ମୂଳ ଔଷଧରେ ଲୋକମାନେ ଆରୋଗ୍ୟ ଲାଭ କରନ୍ତି। ଲୋକେ ଡାକ୍ତରଖାନା ଯିବାର ଆବଶ୍ୟକତା ଅନୁଭବ କରନ୍ତି ଯେତେବେଳେ ରୋଗୀ ମୁମୁର୍ଷୁ ଅବସ୍ଥାରେ ପହଞ୍ଚେ। ରୋଗୀକୁ ଖଟିଆରେ ଶୁଆଇ ଦୁଇ ଜଣ ଲୋକଙ୍କୁ ସବାରୀ ରୂପେ ବ୍ୟବହାର କରି ସ୍ଥାନାନ୍ତର କରନ୍ତି। ଏଭଳି ଅବସ୍ଥାରେ ଅଧିକାଂଶ ରୋଗୀ ଆଉ ଡାକ୍ତରଖାନାରୁ ଫେରନ୍ତି ନାହିଁ। ତେଣୁ ଗ୍ରାମରେ ପ୍ରବାଦ ଥାଏ ବାସୁଦେବପୁର ଓ ସୋର ଡାକ୍ତରଖାନାକୁ ଯେ ଯାଏ ସେ ଫେରେନି। ତେଣୁ ଗ୍ରାମର ଅଧିକାଂଶ ଲୋକ ଡାକ୍ତରଖାନାକୁ ରୋଗୀକୁ ଚିକିତ୍ସା ପାଇଁ ସ୍ଥାନାନ୍ତର କରିବାରେ ବିଶେଷ ଆଗ୍ରହ ପ୍ରକାଶ କରନ୍ତି ନାହିଁ।

ଦୁର୍ଭାଗ୍ୟକୁ ବାପାଙ୍କର ଯେତେବେଳେ ୨୨ ବର୍ଷ ବୟସ, ତାଙ୍କୁ ଫାଇଲେରିଆ ରୋଗ ଆକ୍ରମଣ କଲା। ସେ ସମୟରେ ଫାଇଲେରିଆ ହେବା ଅର୍ଥ ଲୋକର ଜୀବନ ନଷ୍ଟ ହେବା ସଙ୍ଗେ ସମାନ। ଦୁଇଗୋଡ଼ ଫୁଲି ଲୋକଙ୍କୁ ବିକଳାଙ୍ଗ ଓ ପଙ୍ଗୁ କରିଦିଏ। ବାପା ଅତ୍ୟନ୍ତ ବ୍ୟସ୍ତ ହୋଇ ଗ୍ରାମର ଜଣେ ବୈଦ୍ୟଙ୍କ ଆଶ୍ରୟ ନେଇଥିଲେ। ତାଙ୍କ ପରାମର୍ଶ ଅନୁସାରେ ଗୋଟିଏ ଓଳି ଭାତ ଗୋଟିଏ ଓଳି ପୋଡ଼ ପିଠା ଓ ସକାଳ ନାଲିଚ ଖାଇବା ଅଭ୍ୟାସ କରିଥିଲେ। ତା' ସାଙ୍ଗକୁ ମାସରେ ଦୁଇଟି ଏକାଦଶୀ, ପୂର୍ଣ୍ଣମୀ ଓ ଅମାବାସ୍ୟା ଏପରି ୪ଟି ଉପବାସ। ଉପବାସ ଦିନ ଗୋଟିଏ ଥର କିଛି ମୁଗସିଝା, କିମ୍ବା ସୁଜି ଭୋଜନ କରନ୍ତି। ଏକ କଠୋର ବ୍ରତ ନେଇ ସେ ୮୫ ବର୍ଷ ବଞ୍ଚିଲେ। ବିଜ୍ଞାନର ଏତେ ଉନ୍ନତି ସତ୍ତ୍ୱେ ଆଜି ମଧ୍ୟ ଫାଇଲେରିଆ ଉପସମ ନିମନ୍ତେ ଔଷଧ ବାହାରି ନାହିଁ ଓ ସାମୟିକ ଉପବାସ ଏହାର ଉପଯୁକ୍ତ ପ୍ରତିଷୋଧକ ବୋଲି ଆଜି ମଧ୍ୟ ଡାକ୍ତରମାନଙ୍କ ମତ।



## ଦ୍ୱିତୀୟ ପରିଚ୍ଛେଦ

# ବିଦ୍ୟା ଅଧ୍ୟୟନ ଆରମ୍ଭ

୧୯୩୮ ମସିହା ଜାନୁୟାରୀ ମାସ ମୋର ଗୁଡ଼ ବଳଭଦ୍ର ନିମ୍ନ ପ୍ରାଥମିକ ସଂସ୍କୃତ ବିଦ୍ୟାଳୟରେ ନାମଲେଖା ହେଲା। ସେତେବେଳେ ନିମ୍ନ ପ୍ରାଥମିକ ସ୍କୁଲରେ ୪ଟି ଶ୍ରେଣୀ ଥିଲା। ଶିଶୁ, ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ। ଶିକ୍ଷକ ତିନି ଜଣ। ହେଡ୍‌ପଣ୍ଡିତ ଥିଲେ ଶିବ ପ୍ରସାଦ ପୁହାଣ, ୨ୟ ଶିକ୍ଷକ ଦିବାକର ନାୟକ ଓ ସଂସ୍କୃତ ଶିକ୍ଷକ କୃପାସିନ୍ଧୁ ମିଶ୍ର। ଶିବ ମାଷ୍ଟ୍ରେ ଆମ ଗ୍ରାମର ଘରେ ଘରେ ପରିଚିତ। ଗ୍ରାମରେ ୧୯୨୫ ମସିହାରେ ପ୍ରାଥମିକ ସ୍କୁଲ ପ୍ରତିଷ୍ଠା ଦିନଠାରୁ ସ୍କୁଲ ସହିତ ସେ ସଂଶ୍ଳିଷ୍ଟ। ଗ୍ରାମର ଅଧିକାଂଶ ଲୋକ ତାଙ୍କର ଛାତ୍ର। ୨ୟ ଶିକ୍ଷକ ଦିବାକରବାବୁ ଥିଲେ ତାଙ୍କର ଜ୍ୱାଇଁ।

୧୯୩୮ ବେଳକୁ ଭାରତର ପୁରାତନ ଶିକ୍ଷା ପ୍ରଣାଳୀ ପରିବର୍ତ୍ତେ ଆଧୁନିକ ଶିକ୍ଷା ପ୍ରଣାଳୀର ସଂପୂର୍ଣ୍ଣ ପ୍ରଚଳନ ହୋଇସାରିଥାଏ। ପୁରାତନ ପଦ୍ଧତିରେ ପ୍ରଚଳିତ ଚଟଶାଳୀ ଶିକ୍ଷା ଲୋପ ହେବା ଉପରେ। କିନ୍ତୁ ତାର ସମ୍ପୂର୍ଣ୍ଣ ବିଲୟ ଘଟି ନଥାଏ। ଆମ ଗ୍ରାମର ପୂଜାରୀ ସାହିରେ ଗୋଟିଏ ଚଟଶାଳୀ ଥାଏ। ମୋର ଶିକ୍ଷା ଆଧୁନିକ ପ୍ରଣାଳୀରେ ଆରମ୍ଭ କଲେ ଶିବ ମାଷ୍ଟର। ସିଲଟ୍ ଉପରେ ତିନୋଟି ମୁଣ୍ଡୁଳା କାଟିଦେଲେ। ମୁଣ୍ଡୁଳା ଓ ଗାର ସାହାଯ୍ୟରେ କିପରି ଅକ୍ଷର ଲେଖିବାକୁ ହେବ ତାହା ସେ ପ୍ରଥମେ ଶିଖାଇ ଥିଲେ।

ଗୁଡ଼ ବଳଭଦ୍ର ପ୍ରାଥମିକ ସ୍କୁଲର ତିନି ବଖରା ଘରେ ଚରିଟି ଶ୍ରେଣୀର ପିଲାଙ୍କୁ ଶିକ୍ଷା ଦିଆଯାଉଥିଲା। ୩ୟ ଶ୍ରେଣୀ ଶିକ୍ଷକ ହେଡ଼ ପଣ୍ଡିତ ଶିବ ପ୍ରସାଦ ପୁହାଣ ୨ୟ ଶ୍ରେଣୀର ଶିକ୍ଷକ ଦିବାକର ନାୟକ ଓ ୧ମ ଶ୍ରେଣୀ ଶିକ୍ଷକ ସଂସ୍କୃତ ପଣ୍ଡିତ କୃପାସିନ୍ଧୁ ମିଶ୍ର। ଶିଶୁ ଶ୍ରେଣୀର ଛାତ୍ରମାନେ କେତେବେଳେ ୨ୟ ଶ୍ରେଣୀ ସହିତ ତ କେତେବେଳେ ୩ୟ ଶ୍ରେଣୀ ସହ ମିଶି ପଢ଼ନ୍ତି। ପ୍ରାଥମିକ ଶିକ୍ଷା ବ୍ୟତୀତ ସଂସ୍କୃତ ଶିକ୍ଷାଦାନ ପାଇଁ ଗୁଡ଼ ସ୍କୁଲ ସେ ଅଞ୍ଚଳରେ ଖ୍ୟାତି ଲାଭ କରିଥିଲା। ୩ୟ ଶ୍ରେଣୀରେ

ଅଧ୍ୟୟନ ପରେ କେତେ ଜଣ ଛାତ୍ର ସଂସ୍କୃତ ଅଧ୍ୟୟନ କରନ୍ତି। ତା ବ୍ୟତୀତ ପ୍ରଥମ ଶ୍ରେଣୀଠାରୁ ଆରମ୍ଭ କରି ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପ୍ରତି କ୍ଲାସ୍‌ରେ ଗୋଟିଏ ସଂସ୍କୃତ ପିରିୟଡ୍ ଥାଏ। ସେହି ପିରିୟଡ୍‌ରେ ଅମରକୋଷ ଆବୃତ୍ତି ଶିକ୍ଷା ଦିଆଯାଉଥିଲା। ଉମା, କାତ୍ୟାୟନୀ, ଗୌରୀ କ୍ଷଣଜା, କ୍ଷପଣା, କ୍ଷପା ଭଳି ପାର୍ବତୀଙ୍କ ନାମ ଉଚ୍ଚାରଣ କରି ଆମେ ଆବୃତ୍ତି କରୁଥିଲୁ। ଅର୍ଥ ନ ବୁଝି ମଧ୍ୟ ଯେତିକି ଆବୃତ୍ତି କରୁଥିଲୁଁ ଏହା ସ୍କୁଲର ପିଲାଙ୍କର ସ୍ମୃତିଶକ୍ତି ବୃଦ୍ଧିରେ ସାହାଯ୍ୟ କରୁଥିଲା ଏବଂ ସମ୍ଭବତଃ ପିଲାଙ୍କ ଅଜ୍ଞାତସାରରେ ସେମାନଙ୍କ ଅନ୍ତର ମଧ୍ୟରେ ପ୍ରାଚ୍ୟ ସଂସ୍କୃତିର ଏକ ଛାପ ଆଙ୍କି ପାରୁଥିଲା।

ସ୍କୁଲର ପରିଚାଳନା ପ୍ରଣାଳୀ ପୁରାତନ ଓ ନୂତନର ଏକ ମଧୁର ସମ୍ମିଶ୍ରଣରେ ଅଦ୍ଭୁତ ରୂପନେଇ ଚାଲୁଥିଲା। ସ୍କୁଲରେ ଉପସ୍ଥାନଖାତା ରହିଥିଲେ ମଧ୍ୟ ସମୟାନୁବର୍ତ୍ତିତାକୁ ଉତ୍ସାହିତ କରାଯାଉଥିଲା। ଯେଉଁ ପିଲା ଆଗେ ସ୍କୁଲକୁ ଆସୁଥିଲା ତା ହାତରେ ବେତକୁ ଛୁଆଁଇ ଦିଆଯାଉଥିଲା। ଏହାକୁ ଶୂନ କୁହାଯାଉଥିଲା। ତାପରେ ଯେଉଁମାନେ ଯେତେ ବିଳମ୍ବରେ ଆସୁଥିଲେ ସେମାନେ ଏକ ଦୁଇ, ତିନି, ଚାରି ଆଦି ମୃଦୁ ବେତ ପ୍ରହାର ପାଉଥିଲେ। ସ୍କୁଲ ଘଣ୍ଟା ବାଜିବା ପୂର୍ବରୁ ଆସିଥିବା ପିଲାଙ୍କୁ ହାତରେ ବେତଟିକୁ ଆସ୍ତେ ଲଗାଇ ଦିଆଯାଉଥିଲା। କିନ୍ତୁ ସ୍କୁଲ ଘଣ୍ଟା ବାଜିବା ପରେ ଆସୁଥିବା ପିଲାଙ୍କୁ ଜୋରରେ ତାଙ୍କର ନମ୍ବର ଅନୁଯାୟୀ ପ୍ରହାର ସହିବାକୁ ପଡୁଥିଲା। ତା ବ୍ୟତୀତ ପାଠରେ ଭୁଲ୍ କଲେ ବେତ୍ରାଘାତ ସହିବାକୁ ପଡୁଥିଲା। ପିଲାମାନଙ୍କୁ କୁହାଯାଇଥାଏ, ମାଡ଼ ଖାଇ ଘରେ କହିଲେ ପାଠ ହେବ ନାହିଁ। ତେଣୁ ବେତ୍ରାଘାତରେ ପିଠି ଫାଟି ରକ୍ତ ବୋହିଯାଉଥିଲେ ମଧ୍ୟ ପିଲାମାନେ ପାଠ ନ ହେବା ଭୟରେ ଘରେ କିଛି କହନ୍ତି ନାହିଁ। ଶିକ୍ଷକ ମାନଙ୍କ ଦରମା ସେତେବେଳେ ବହୁତ କମ ଥିଲା। ହେଡ୍ ପଣ୍ଡିତଙ୍କ ଦରମା ମାସକୁ ଟ୧୦.୦୦ ଓ ୨ୟ ଶିକ୍ଷକଙ୍କ ଦରମା ମାତ୍ର ସାତଟଙ୍କା, ଅବଶ୍ୟ ୧୯୪୨ ମସିହାରେ ଶିକ୍ଷକ ମାନଙ୍କ ହରତାଳ ଫଳରେ ଏହା ଟ ୩୦.୦୦ ଓ ଟ. ୨୨.୦୦ କୁ ବୃଦ୍ଧି ପାଇଲା। ଏହି ଦରମା ଶିକ୍ଷକମାନେ ଡ଼ିଷ୍ଟ୍ରିକ୍ଟ ବୋର୍ଡ଼ରୁ ପାଆନ୍ତି। ତା’ ବ୍ୟତୀତ ପ୍ରତ୍ୟେକ ପିଲା ମାସକୁ ଏକ ସେର ଲେଖାଏଁ ଚାଉଳ ଚାନ୍ଦା ଦିଅନ୍ତି। ଗରିବ ମେଧାବୀ ଛାତ୍ରମାନଙ୍କୁ ମାସିକ ଏହି ଚାଉଳ ଚାନ୍ଦା

ଛାଡ଼ି ଦିଆଯାଏ। ସେତେବେଳେ ପ୍ରାଇମେରୀ କ୍ଲାସ୍‌ରେ ଅପେକ୍ଷାକୃତ ବୟସ୍କ ଛାତ୍ରମାନେ ଅଧ୍ୟୟନ କରୁଥିଲେ। ତା ବ୍ୟତୀତ ଗୁଡ଼ ବଳଭଦ୍ର ପ୍ରାଥମିକ ସ୍କୁଲରେ ସଂସ୍କୃତ ଶିକ୍ଷାଦାନର ସୁବିଧା ଥିବାରୁ ପ୍ରାଇମେରୀ ପାଠର ସମାପ୍ତି ପରେ ପିଲାମାନେ ୨/୩ ବର୍ଷ ସଂସ୍କୃତ ଶିକ୍ଷା କରନ୍ତି। ତେଣୁ ସେତେବେଳେ ଆମ ସ୍କୁଲରେ ୧୪/ ୧୫ ବର୍ଷ ବୟସର ପିଲା ମଧ ଦେଖିବାକୁ ମିଳୁଥିଲେ। ବଡ଼ ବଡ଼ ପିଲାମାନେ ଉପର ଓଳି ସ୍କୁଲ ବଗିଚାରେ କାମ କରନ୍ତି। ଫୁଲ ବଗିଚା ଓ ପନିପରିବା ବଗିଚା ପାଇଁ ଗୁଡ଼ ସ୍କୁଲ ସେ ଅଞ୍ଚଳରେ ପ୍ରସିଦ୍ଧିଲାଭ କରିଥିଲା। ପିଲାମାନଙ୍କ ଠାରୁ ଆଦାୟ ହେଉଥିବା ଚାଉଳ ଓ ବଗିଚାର ପରିବାରେ ତିନି ଜଣ ଶିକ୍ଷକଙ୍କର ଖାଇବା ଖର୍ଚ୍ଚ ପ୍ରାୟ ଚଳିଯାଏ।

ସ୍କୁଲରେ ଦିନକୁ ଦୁଇଥର ପଢ଼ାହୁଏ। ସକାଳ ୮ଟାରୁ ୧୨ଟା ପର୍ଯ୍ୟନ୍ତ ଓ ଉପର ଓଳି ୩ଟାରୁ ୫ଟା ପର୍ଯ୍ୟନ୍ତ। ସକାଳ ଓଳି ଗଣିତ, ରଚନା, ଓଡ଼ାଙ୍କ ଫେଡ଼ାଙ୍କ, ପଣିକିଆ, ପ୍ରକୃତି ପର୍ଯ୍ୟବେକ୍ଷଣ ଓ ସ୍ୱାସ୍ଥ୍ୟ ରକ୍ଷା ପଢ଼ାଯାଏ। ଉପର ଓଳି ସାହିତ୍ୟ,ପଦ୍ୟ ଆବୃତ୍ତି, ଅମରକୋଷ ଶ୍ଳୋକ ଆବୃତ୍ତି ଶିକ୍ଷା ଦିଆଯାଏ। ସମ୍ମିଳିତ କଣ୍ଠରେ ପଦ୍ୟ ଆବୃତ୍ତି, ଅମର କୋଷ ଶ୍ଳୋକ ଆବୃତ୍ତି ଶିକ୍ଷାଦିଆଯାଏ। ସମ୍ମିଳିତ କଣ୍ଠରେ ପଦ୍ୟ ଆବୃତ୍ତି ଗ୍ରାମର କେନ୍ଦ୍ରସ୍ଥଳରେ ଥିବା ଏହି ବିଦ୍ୟାଳୟକୁ ଏକ ଆକର୍ଷଣୀୟ ଅନୁଷ୍ଠାନରେ ପରିଣତ କରିଥାଏ। ପ୍ରଥମ ଦୁଇବର୍ଷ ମଧରେ ପଣିକିଆ ଓ ବର୍ଣ୍ଣବୋଧ ମୋର ପୁରା ମୁଖସ୍ଥ ହୋଇସାରିଥାଏ। ମଧୁସୂଦନ ରାଓଙ୍କ ରଚିତ ବର୍ଣ୍ଣବୋଧରୁ ଅକ୍ଷର, ଯୁକ୍ତାକ୍ଷର ଓ ବନାନ ଶିକ୍ଷା ଦିଆଯାଉଥିଲା। ବାଲ୍ୟକାଳରେ ଏହି ବର୍ଣ୍ଣବୋଧ ଶିକ୍ଷା ପରବର୍ତ୍ତୀ ଜୀବନରେ ବହୁତ ସହାୟକ ହୋଇଛି। ଆଜିକାଲିକାର ପିଲାଙ୍କର ବନାନ ଅଶୁଦ୍ଧି ଦେଖିଲେ ମନେହୁଏ ପ୍ରାଥମିକ ଶିକ୍ଷାର ବର୍ଣ୍ଣବୋଧର ମାହାତ୍ମ୍ୟ କେତେ? ୧୯୩୯-୪୦ ମସିହା ବେଳକୁ ୨ୟ ବିଶ୍ୱଯୁଦ୍ଧ ଭୟଙ୍କର ଆକାର ଧାରଣ କରିଥାଏ। କିରୋସିନି ତେଲ ସ୍ୱପ୍ନ ପ୍ରାୟ ହୋଇସାରିଥାଏ। ଘରେ ଜଳୁଥିବା ଚୁଲି ଏକ ମାତ୍ର ଆଲୋକସ୍ଥଳୀ। କରଞ୍ଜ ବା ଜଡ଼ା ତେଲରେ ଦୀପ ଜାଳି ଲୋକମାନେ ରାତ୍ରଭୋଜନ କରନ୍ତି। ଅନ୍ୟ ସବୁ ସମୟ ଘରଗୁଡ଼ିକ ଅନ୍ଧକାର ଥାଏ। ମୁଁ ଚୁଲି ଆଲୁଅ ପାଖରେ ବସି ମୋର ପଢ଼ା କରେ। ଏତେ କ୍ଷୀଣ ଆଲୁଅରେ ଅଧ୍ୟୟନ ମୋର ଆଖିଦୁଇଟି

ଉପରେ ବହୁତ କୁପ୍ରଭାବ ପକାଇଥିଲା। ବର୍ଷର ଅଧିକାଂଶ ସମୟ ମୁଁ ଚକ୍ଷୁରୋଗରେ ପୀଡ଼ିତ ହେଉଥିଲି। ସେତେବେଳେ ଏହି ରୋଗ ଚିକିତ୍ସା ପାଇଁ ଅର୍ଦ୍ଧଶିକ୍ଷିତ ବୈଦ୍ୟଙ୍କ ଉପରେ ନିର୍ଭର କରିବାକୁ ପଡୁଥିଲା। ପ୍ରଥମେ କରବୀର ଫୁଲର କ୍ଷୀର୍ ଦେଇ ବୈଦ୍ୟ ମୋର ଚକ୍ଷୁ ରୋଗ ଭଲ କରିବାକୁ ଚେଷ୍ଟା କଲେ। ସେଥିରେ ବିଫଳ ହେବାରୁ ଘିଅ, ମହୁ ଓ ଅଫିମ ଆଦିର ମିଶ୍ରଣରେ ଏକ ଅଞ୍ଜନ ଦେଲେ। କିନ୍ତୁ ଏସବୁରେ ମୋର ଉପକାର ନ ହେବାରୁ ମୋର ଆଖିରେ ଦୁଇଥର ଅପରେସନ୍ ହେଲା। ସେ ଅପରେସନ୍ ଅତ୍ୟନ୍ତ ଯନ୍ତ୍ରଣାଦାୟକ ଓ ମାରାତ୍ମକ। ଆଜି ସେ ଅପରେସନ୍ କଥା ଭାବିଲେ ଏବେ ମଧ ଦେହ ଶିତେଇ ଉଠେ ଓ ମୁଁ ଯେ ଏତେ ଅପଘରରେ ବି ମୋର ଆଖି ଦୁଇଟିକୁ ହରାଇ ନାହିଁ, ଏହା ମୋତେ ଏହି ସୃଷ୍ଟିକୁ ଆଣିଥିବା ତଡ଼େକେଶ୍ୱରଙ୍କର ଅସୀମ ଦୟା କହିଲେ ଅତ୍ୟୁକ୍ତି ହେବନାହିଁ। ଆଖିର ତଳପତା ଓ ଉପର ପତାରେ ଜମିଥିବା ଦୁଇଟି ରକ୍ତ ପିଣ୍ଡୁଳାକୁ ବାଇଗଣ ଫୁଲରେ ଥିବା ସୂକ୍ଷ୍ମ କଣ୍ଟା ସାହାଯ୍ୟରେ କାଟି ସେଥିରୁ ରକ୍ତ ବାହାର କରିଦେଇ ଅଞ୍ଜନ ଲଗାଇ ଦେଇ ଗ୍ରାମ ବୈଦ୍ୟ, ତାଙ୍କର ଜ୍ଞାନ ଓ ହସ୍ତକୌଶଳର ପରାକାଷ୍ଠା ଦେଖାଇଥିଲେ। ଅବଶ୍ୟ ଏହି ଚିକିତ୍ସା ଫଳରେ ମୋର ଚକ୍ଷୁରୋଗ କିଛି ଅଂଶରେ ଭଲ ହୋଇଥିଲା। କିନ୍ତୁ ଆଖି ଭିତରେ ସଂକ୍ରାମକ ଜୀବାଣୁର ବିଘଟଣ ନ ଘଟିବାରୁ ଏହି ରୋଗ ମୋତେ ବାରମ୍ବାର ଆକ୍ରମଣ କରୁଥିଲା। ରାତ୍ରିର କ୍ଷୀଣ ଆଲୋକରେ ପଣିକିଆ ଆବୃତ୍ତି ଓ ପଦ୍ୟ ଆବୃତ୍ତି ଏକ ଦୈନନ୍ଦିନ ଅଭ୍ୟାସରେ ପରିଣତ ହୋଇଯାଇଥିଲା। ଏଥିପାଇଁ ମୋତେ ସବୁଠାରୁ ଅଧିକ ପ୍ରେରଣା ଯୋଗାଉଥିଲେ ସୁମଅପା। ସ୍କୁଲରେ ସବୁ ଛାତ୍ରଙ୍କ ମଧ୍ୟରେ ମୁଁ ଆଗୁଆ ଥାଏ। ଶିକ୍ଷକମାନେ ମୋର ବହୁତ ପ୍ରଶଂସା କରନ୍ତି। ଏ ପ୍ରଶଂସା ଶୁଣି ମୋର ଜେଜେମାଙ୍କ ମନରେ ଏକ ମିଶ୍ର ପ୍ରତିକ୍ରିୟା ସୃଷ୍ଟି ହୁଏ। ତାଙ୍କ ଆଦରର ନାତି ସ୍କୁଲରେ ଭଲ ପଢୁଛି। ସେ ଦିନେ ବଡ଼ମଣିଷ ହେବ ଏକଥା ଶୁଣି ସେ ବେଳେବେଳେ ଭାବ ଗଦଗଦ ହୋଇପଡ଼ନ୍ତି, ଅନ୍ୟ ସମୟରେ ତାଙ୍କର ମୁଖମଣ୍ଡଳରେ ଏକ ବିଷାଦର ଛାଇ ଖେଳିଯାଏ। ମୋର ବଡ଼ବାପା ଆମ ଗ୍ରାମର ଅଳ୍ପ କେତେଜଣ ଶିକ୍ଷିତ ବ୍ୟକ୍ତିଙ୍କ ମଧ୍ୟରେ ଥିଲେ ଅନ୍ୟତମ। ସେ ଥିଲେ ଜଣେ ପାଲା ଗାୟକ। ମାତ୍ର ୩୨ ବର୍ଷ ବୟସରେ ହଇଜା ରୋଗରେ ତାଙ୍କର ଅକାଳ

ବୟୋଗ ମୋର ଜେଜେମା'ଙ୍କ ମନରେ ଏକ ଆତଙ୍କ ସୃଷ୍ଟି କରିଥିଲା। ତାଙ୍କର ଧାରଣା ବଦ୍ଧମୂଳ ହୋଇଥିଲା ଯେ ଭଲ ପାଠ ପଢୁଆ ପିଲାମାନେ ଅଳ୍ପାୟୁ। ମୋର ପୂରା ମନେ ଅଛି, ସେ ଶିବ ମାଷ୍ଟରଙ୍କୁ କେତେଥର ପଚାରିଛନ୍ତି ଭାସ୍କରକୁ କାହିଁକି ପଢ଼ିବାକୁ ବାଧ କରୁଛ ? ସେ ଅଳ୍ପ ପଢ଼ି ତାର କୌଳିକ ବୃତ୍ତି ଋଷ କାର୍ଯ୍ୟକୁ ଫେରି ଆସୁ। ସେ ଯେତେ ପାଠ ପଢ଼ିବ ତାର ଆୟୁଷ ସେତେ କମିବ। ଆଜି ଜେଜେ'ମାଙ୍କର ସେହିଦିନର ମନର ଭାବ କଥା ଭାବିଲେ ଫକୀରମୋହନଙ୍କର ରଚିତ 'ରେବତୀ' ଗଳ୍ପ ସ୍ୱତଃ ମନକୁ ଆସେ। ବ୍ୟାସକବି ଫକୀର ମୋହନ ମୋର ଜେଜେ ମା'ଙ୍କ ଭଳି ରକ୍ଷଣଶୀଳ ପରିବାରର ଚରିତ୍ରଟିକୁ ଚୟନ କରି ରେବତୀ ଗଳ୍ପରେ ବାସ୍ତବ ରୂପ ଦେଇ ସେ ସମୟର ଓଡ଼ିଶା ସଂସ୍କୃତିର ଏକ ନିଖୁଣ ଚିତ୍ର ଆଙ୍କି ଯାଇଛନ୍ତି। ଏହା ଭାବିଲେ ତାଙ୍କ ପ୍ରତି ପ୍ରତ୍ୟେକ ଓଡ଼ିଆର ମୁଣ୍ଡ ଭକ୍ତିରେ ନଇଁ ଆସେ।

ପର୍ଶୁ ମୋର ମାମୁଁଙ୍କ ପୁତୁରା। ମାମୁଁ ଘର ଆମ ଗାଁଠାରୁ ଏକ କି.ମି. ଦୂର। ମାମୁଁଙ୍କ ପୁତୁରା ପର୍ଶୁ ଓ ପୁଅ ଭାସ୍କର ମୋର ସମବୟସୀ। ତିନିଜଣ ଯାକ ଏକ ଶ୍ରେଣୀରେ ବିଭିନ୍ନ ସ୍କୁଲରେ ଅଧ୍ୟୟନ କରୁଥାଉଁ। ବର୍ଷକୁ ୨/୩ ଥର ଆମେ ମାମୁଁ ଘରେ ଏକତ୍ର ହେଉଁ। ସେ ଦିନ ଋଲେ ଆମର ପଣିକିଆ ଓ ପଦ୍ୟାନ୍ତ ପ୍ରତିଯୋଗିତା। ସେ ସମୟରେ ପଣିକିଆ ଆଜିକାର ପଣିକିଆ ଭଳି ସହଜ ଓ ସରଳ ନଥିଲା। ଆଜିକାଲି ଟଙ୍କାକ ଶହେ ପଇସା ହେବା ଫଳରେ ପଣିକିଆ ଅପେକ୍ଷାକୃତ ସହଜ ହୋଇଯାଇଛି। ସେତେବେଳେ ଥିଲା ଟଙ୍କାକ ୧୬ ଅଣା ଓ ଅଣାକ ୪ ପଇସା। ସେତେବେଳେ ୧୧ ସୋ ୬୬ ଅଣା ୪ ଟଙ୍କା ୨ ଅଣା, ୨୩ ସତାଁ ୨୦୭ ଅଣା, ୧୨ ଟଙ୍କା ୧୫ ଅଣା। ଏଭଳି ମୁଖସ୍ତ କରିବାକୁ ପଡୁଥିଲା। ପଚିଶିକ ପର୍ଯ୍ୟନ୍ତ ପଣିକିଆ ସମ୍ପୂର୍ଣ୍ଣ ଭାବରେ ମୋର ମୁଖସ୍ଥ ଥାଏ। ପଣିକିଆରେ କେହି ମୋତେ ପାରନ୍ତି ନାହିଁ। କିନ୍ତୁ ପଦ୍ୟାନ୍ତ ପ୍ରତିଯୋଗିତାରେ ମୁଁ ଟିକେ ଦବିଯାଏ। ମୋର କଣ୍ଠସ୍ୱର ମଧୁର ହୋଇ ନଥିବାରୁ ନିର୍ଭୁଲ ଭାବେ ମୁଁ ପଦ୍ୟ ଉଚ୍ଚାରଣ କରିପାରିଲେ ମଧ ପର୍ଶୁ ଓ ମାମୁଁ ପୁଅ ଭାଇ ଭାସ୍କରର ପଦ୍ୟ ଆବୃତ୍ତି ଅଧିକ ଆମୋଦଦାୟକ ହୁଏ।

ଆଉ ଦିନକର ଘଟଣା । ୧୯୪୧ ମସିହା ହେମନ୍ତ ଋତୁ, ମୋର ସେତେବେଳକୁ ଦ୍ୱିତୀୟ ଶ୍ରେଣୀ । ଆମ ଗ୍ରାମ ପୂଜାରୀ ସାହିରେ ଏକ ଚଟଶାଳୀ ଥାଏ । ଚଟଶାଳୀରେ ଜଣେ ମାଟି ବଂଶ ଅବଧାନ ଥାଆନ୍ତି । ଏହି ମାଟି ବଂଶ ଅବଧାନ ମାନେ ପୁରଷାନୁକ୍ରମରେ ଗ୍ରାମାଞ୍ଚଳରେ ପ୍ରାଥମିକ ଶିକ୍ଷାଦାନ କରିଥାନ୍ତି । ସେ ପିଲାମାନଙ୍କୁ କେତେକ ନିର୍ଦ୍ଦିଷ୍ଟ ଗଣିତ ଶିକ୍ଷା ଦେଇଥାନ୍ତି । ସେ ଭଳି ଗଣିତ ପ୍ରଶ୍ନ ତାଙ୍କ ପିଲାମାନେ ସହଜରେ ସମାଧାନ କରିଦିଅନ୍ତି । ସାମାନ୍ୟ ଜଟିଳ ପ୍ରଶ୍ନ ପଡ଼ିଲେ ସେମାନେ ତାହା ସମାଧାନ କରିପାରନ୍ତି ନାହିଁ । ତାଙ୍କ ଚାଟଶାଳୀର କେତେ ଜଣ ମେଧାବୀ ଛାତ୍ରଙ୍କୁ ଧରି ସେ ଦିନେ ଆମ ସ୍କୁଲକୁ ଆସିଥାନ୍ତି । ଆଧୁନିକ ଶିକ୍ଷାଦାନ ଓ ପୁରାତନ ଚଟଶାଳୀ ପଦ୍ଧତିରେ ଶିକ୍ଷାଦାନ ମଧ୍ୟରେ ଏକ ତୁଳନାତ୍ମକ ଆଲୋଚନା ଚାଲିଥାଏ । ସେତେବେଳକୁ ଆମ ସ୍କୁଲରୁ ହେଡ୍‌ପଣ୍ଡିତ ଶିବପ୍ରସାଦ ପୁହାଣ ବିଦାୟ ନେଇ ତାଙ୍କ ଗାଁ ପାଖ ସ୍କୁଲକୁ ଚାଲିଯାଇସାରିଥାନ୍ତି । ତାଙ୍କ ବଦଳରେ ଆସିଥାନ୍ତି କୈଳାସ ଚନ୍ଦ୍ର ବେହେରା ଓ ଦ୍ୱିତୀୟ ଶିକ୍ଷକ ହିସାବରେ ଯୋଗ ଦେଇଥାନ୍ତି ଦୈତାରୀ ସାମଲ । କଥା ଛଳରେ ଅବଧାନ ଆମ ହେଡ୍‌ପଣ୍ଡିତ କୈଳାସବାବୁଙ୍କୁ ଆକ୍ଷେପ କରି କହିଲେ "ତୁମ ପିଲା ଖାଲି ମିଶାଣ, ଫେଡ଼ାଣ, ଗୁଣନ ଓ ହରଣ ଆଦି ସାଧାରଣ ଅଙ୍କ କଷି ପାରିବେ । ବୁଦ୍ଧି ଖଟାଇ କୌଣସି ଅଙ୍କ କଷି ପାରିବେ ନାହିଁ ।" ଏଥିରେ କୈଳାସବାବୁ ଏକମତ ନ ହୋଇ କହିଲେ, ଆପଣ ଇଚ୍ଛା କଲେ ଆମ ପିଲାଙ୍କୁ ତାଙ୍କ ବୟସ ତୁଳନାରେ ଅଙ୍କ ଦେଇ ପରୀକ୍ଷା କରିପାରନ୍ତି । ସେ ବୋଧହୁଏ ଏହି ସୁଯୋଗ ଖୋଜୁଥିଲେ । ସଙ୍ଗେ ସଙ୍ଗେ ୩ୟ ଓ ୨ୟ ଶ୍ରେଣୀ ଛାତ୍ରମାନଙ୍କୁ ଗୋଟିଏ ରୁମକୁ ଡକାଇ ପ୍ରଶ୍ନ କଲେ । ରାମ ଓ ଶ୍ୟାମ ଯଥାକ୍ରମେ ୫ଟି ଓ ୩ଟି ପିଠା ଧରି ମେଳାକୁ ଯାଉଥିଲେ । ବାଟରେ ଯଦୁ ତାଙ୍କ ସହ ମିଶିଲା । ଭୋକ ହେବାରୁ ୩ ଜଣ ମିଶି ପିଠାତକ ସମାନ ଭାଗ କରି ଖାଇଲେ । ଖାଇସାରିଲା ପରେ ଯଦୁ ସେମାନଙ୍କୁ ୮ ପଇସା ଦେଇ ଚାଲିଗଲା । ପଇସା ବାଣ୍ଟିବା ପାଇଁ ଦୁଇଜଣଙ୍କ ମଧ୍ୟରେ କଳି ଲାଗିଲା, ରାମ କହିଲା ମୋର ୫ଟି ପିଠା ତେଣୁ ମୁଁ ୫ ପଇସା ନେବି ଓ ତୋର ୩ଟି ପିଠା ତୁ ୩ ପଇସା ନେବୁ । ଶ୍ୟାମ କହିଲା ତାହା କିପରି ହେବ ତୋର ୪ ପଇସା ଓ ମୋର ୪ ପଇସା । ତୁମେ ଏହି ୮ ପଇସାକୁ ଠିକ୍ ଭାବରେ ବାଣ୍ଟି

ଦିଅ। ମୁଁ ପ୍ରାଥମିକ ଶ୍ରେଣୀରେ ପଢୁଥିବାବେଳେ ପୂର୍ବରୁ ପଢ଼ାଯାଉଥିବା ବାଳସହଚର ଓ ଅନ୍ୟ ବହି ଯାହା ମିଳେ ପଢ଼ି ପକାଏ। ସେଭଳି କହିଲେ ଏହିଭଳି ଗୋଟିଏ ଗଛ ପଢ଼ିଥିଲି। ଭାବିଲି ପ୍ରତି ପିଠାକୁ ଯଦି ୩ ଖଣ୍ଡ କରାଯାଏ ତେବେ ସମୁଦାୟ ହେବ ୨୪ ଖଣ୍ଡ ରାମର ୫ ପିଠା ହେବ ୧୫ ଖଣ୍ଡ। ସେ ଖାଇଥିବ ୮ ଖଣ୍ଡ ଓ ଯଦୁକୁ ଦେଇଥିବା ୭ ଖଣ୍ଡ, ଶ୍ୟାମର ପିଠା ହୋଇଥିବ ୯ ଖଣ୍ଡ ଓ ସେ ନିଜେ ଖାଇ ଯଦୁକୁ ଦେଇଥିବ ଖଣ୍ଡେ। ତେଣୁ ରାମ ପାଇବ ୭ ପଇସା ଓ ଶ୍ୟାମ ପାଇବ ୧ ପଇସା। ସ୍କୁଲର ଅନ୍ୟ କୌଣସି ପିଲା ଉତ୍ତର ଠିକ୍ ଭାବେ ଦେଇ ପାରି ନଥିଲେ ମଧ ମୋର ଉତ୍ତର ଶୁଣି ମାଟି ବଂଶ ଅବଧାନଙ୍କ ମୁଖମଣ୍ଡଳରେ ଆନନ୍ଦ ଓ ବିଷାଦର ଏକ ମିଶ୍ରିତ ପ୍ରତିକ୍ରିୟା ଦେଖିବାକୁ ମିଳିଲା। ସେ ଭାବିଲେ ସାମାନ୍ୟ ଶିଶୁଟିଏ ତାଙ୍କର ଗର୍ବ ଭାଙ୍ଗି ଦେଉଛି। ତେଣୁ ସେ ଅଧିକ ଜଟିଳ ୨ୟ ପ୍ରଶ୍ନଟି ପଚାରିଲେ, ଷାଠିଏ ମହଣ ଗୁଡ଼ କଳସା, ଜନ୍ଦା ପିମ୍ପୁଡ଼ି କଲେ ବସା, ଦିନକୁ ଖାଇଲେ ଅଢେଇ ମଶା, କେତେଦିନେ ସରିବ ଗୁଡ଼ କଳସା। ସ୍ଲେଟ୍ ବା କାଗଜର ସାହାଯ୍ୟ ନେଇ ଏ ପ୍ରଶ୍ନଟିର ଉତ୍ତର ଦେବାକୁ କହିଲେ। ସେତେବେଳେ ମହଣ ସେର ଛଟାଙ୍କି ଆଦି ଚାଲୁଥାଏ। ମହଣଙ୍କ ୪୦ ସେର ସେରକ ୮୦ ଭରି, ଭରିକ ୮ ରତି ଓ ରତିକ ୧୦ ମସା। ପ୍ରଶ୍ନଟି ଅତ୍ୟନ୍ତ ଜଟିଳ ମନେ ହେଲା। ପ୍ରଥମେ ଭାବିଲି ଏ ପ୍ରଶ୍ନଟିର ଉତ୍ତର ଦେଇ ହେବନି ବୋଲି କହିଦେବି। ତାପରେ ଭାବିଲି ଅବଧାନେ ଯେତେବେଳେ କହୁଛନ୍ତି ଏହାର ଉତ୍ତର ଦେବାକୁ ନିଶ୍ଚୟ କିଛି ବାଟ ଥିବ, ୬୦ ମହଣକୁ ମସାରେ ପରିଣତ କଲେ ବହୁତ ବଡ଼ ଅଙ୍କ ଆସିଯିବ ଭାବି ପଛ ଆଡୁ ଅଗ୍ରସର ହେବାକୁ ସ୍ଥିର କଲି। ଗୋଟିଏ ରତିକୁ ୪ ଦିନ ଖାଇଲେ ଭରିକୁ ଖାଇବେ ୩୨ ଦିନ ବା ୧ ମାସ ୨ ଦିନ। ସେରକୁ ଖାଇବେ ୮୫ ମାସ ୧୦ ଦିନ ବା ୭ ବର୍ଷ ୧ ମାସ ୧୦ ଦିନ। ମାସ ଓ ବର୍ଷ ସହିତ ୧୨ ଓ ୩୦ର ସମ୍ପର୍କ ଥିବାରୁ ପ୍ରଥମେ ଏହାକୁ ୪୦ରେ ନ ଗୁଣି ୬୦ରେ ଗୁଣିବାକୁ ସ୍ଥିରି କଲି। ତାର ୬୦ ଗୁଣକୁ ୪୨୬ ବର୍ଷ ୮ ମାସ । ତାର ୪୦ ଗୁଣ ହେବ ୧୭,୦୬୬ବର୍ଷ। ୮ ମାସ। ଏହା ଶୁଣି ମାଟି ବଂଶ ଅବଧାନଙ୍କ ଭଳି ଗର୍ବୀ ଋଟଶଳୀ ଶିକ୍ଷକ ମୋ ପାଖକୁ ଚାଲି ଆସି ଆଶୀର୍ବାଦ କରିପକାଇଲେ। ତାପରେ ଆମ ଶିକ୍ଷକ ତାଙ୍କ ପିଲାଙ୍କୁ କେତୋଟି ପ୍ରଶ୍ନ ପଚାରିଲେ।

ଅବଧାନଙ୍କ ପ୍ରଶ୍ନରେ କେତୋଟି ପରିବର୍ତ୍ତନ କରି ଯେତେବେଳେ କୈଳାସବାବୁ ଘଟଶାଳୀ ପିଲାଙ୍କୁ କେତୋଟି ଗଣିତ ପ୍ରଶ୍ନ ପଚାରିଲେ ସେମାନେ ତାର ଉତ୍ତର ଦେଇପାରିଲେ ନାହିଁ। କହିବା ବାହୁଲ୍ୟ ଯେ ଏହି ଦିନଟି ଆମ ଗ୍ରାମର ପୂଜାରୀ ସାହି ପିଲାଙ୍କର ଭାଗ୍ୟ ପରିବର୍ତ୍ତନ ପାଇଁ ଏକ ଶୁଭ ଦିନ ଥିଲା। ଏହାପରେ ପୂଜାରୀ ସାହିର ଅଭିଭାବକମାନେ ଗୁଡ଼ ବଳଭଦ୍ର ସ୍କୁଲରେ ତାଙ୍କ ପିଲାଙ୍କୁ ପଢ଼ାଇବାକୁ ଅଧିକ ଆଗଭର ହେଲେ। ସେଦିନ ଆମ ଗ୍ରାମରେ ପ୍ରଚାର ହୋଇଗଲା ଯେ ଘଟଶାଳୀର ଅବଧାନ ଜଣେ ୨ୟ ଶ୍ରେଣୀ ପିଲାଙ୍କଠୁଁ ଅଙ୍କରେ ହାରିଗଲେ।

ସେଦିନ କୈଳାସ ମାଷ୍ଟରଙ୍କ ଗର୍ବ ଦେଖେ କିଏ। ଗର୍ବରେ ତାଙ୍କର ଛାତି କୁଣ୍ଢେମୋଟ। ଗାଁ ସାରା ବୁଲି କହି ବୁଲିଲେ ଆମେ କିଭଳି ପିଲା ତିଆରି କରିଛୁ ଦେଖ। ଅଙ୍କରେ ସେ ମାଟି ବଂଶ ଅବଧାନକୁ ହରାଇ ଦେଲା। ମୋର ସୁମଅପା, ପାଠ ପଢ଼ି ନ ଥିଲେ। କିନ୍ତୁ ପାଠର ମହତ୍ୱ ସେ ଠିକ୍ ହୃଦୟଙ୍ଗମ କରିଥିଲେ। ଖବରଟି କାହାଠାରୁ ଶୁଣିଲେ କେଜାଣି ଦଉଡ଼ି ଦଉଡ଼ି ଆସି ଘରେ କହିଲେ ମୋ ଭାଇ ଆଜି ଅବଧାନଙ୍କୁ ହରାଇ ଦେଇଛି। ସେଦିନେ ନାୟକ ବଂଶର ନାମ ଉଜ୍ଜ୍ୱଳ କରିବ। ଗୁଡ଼ ବଳଭଦ୍ର ନିମ୍ନ ପ୍ରାଥମିକ ସ୍କୁଲ ୧୯୨୫ ମସିହାରୁ ପ୍ରତିଷ୍ଠିତ ହୋଇ ସେ ଅଞ୍ଚଳରେ ଏକ ଆଦର୍ଶ ସ୍କୁଲ ଭାବେ ପରିଚିତ ହୋଇସାରିଥିଲେ ମଧ୍ୟ ଶିକ୍ଷକ ଓ ଗ୍ରାମବାସୀ ଗୋଟିଏ ଅଭାବ ଅନ୍ତରର ସହିତ ଅନୁଭବ କରୁଥିଲେ। ସ୍କୁଲରୁ ଗୋଟିଏ ହେଲେ ଛାତ୍ର ସେ ପର୍ଯ୍ୟନ୍ତ ବୃତ୍ତି ପାଇ ନଥାଏ। ୧୯୪୦ ମସିହାରେ ସୁଆଁ ସିଦ୍ଧେଶ୍ୱରୀ ନିମ୍ନ ପ୍ରାଥମିକ ସ୍କୁଲରୁ ବୈଦ୍ୟନାଥ ମହାପାତ୍ର (ଯେ କି ପରବର୍ତ୍ତୀ କାଳରେ ଇଲେକ୍ଟ୍ରିକାଲ ମୁଖ୍ୟ ଯନ୍ତ୍ରୀ ଭାବେ ଅବସର ଗ୍ରହଣ କଲେ) ବୃତ୍ତି ପାଇଥାନ୍ତି। ଗୁଡ଼ ଓ ସୁଆଁ ଗ୍ରାମରେ ଦୁଇ ସ୍କୁଲ ମଧ୍ୟରେ ପ୍ରବଳ ପ୍ରତିଯୋଗିତା। ସୁଆଁ ସ୍କୁଲରୁ ଜଣେ ଛାତ୍ର ବୃତ୍ତି ପାଇ ଗଲା। ଗୁଡ଼ରୁ କେହି ବୃତ୍ତି ପାଇନାହାନ୍ତି। ଏହା ଗୁଡ଼ ଗ୍ରାମର ଲୋକଙ୍କ ହୃଦୟରେ ଏକ କ୍ଷତସ୍ଥାନ ଭଳି ରହିଥାଏ। ସମୁଦାୟ ବାଲେଶ୍ୱର ଜିଲା ପାଇଁ ମାତ୍ର ୧୦ଟି ଛାତ୍ର ବୃତ୍ତିର ବ୍ୟବସ୍ଥା ଥାଏ। ସେଥିରୁ ସବର୍ଣ୍ଣ ପିଲାଙ୍କ ଭାଗରେ ୬ଟି ବୃତ୍ତି। ଉପରୋକ୍ତ ଘଟଣାଟି ପରେ ସ୍କୁଲର ଶିକ୍ଷକମାନଙ୍କ ମନରେ ଏକ ଆଶାର ସଞ୍ଚାର ହେଲା ଯେ ଭାସ୍କର ନିଶ୍ଚୟ ନିମ୍ନ ପ୍ରାଥମିକ ବୃତ୍ତି ପାଇ ସ୍କୁଲର ନାମ ରଖିବ। କିନ୍ତୁ

କୈଳାସ ବାବୁ ମୋର ବୃତ୍ତି ପାଇବା ଦିଗରେ କୌଣସି ସନ୍ଦେହ ରଖିବାକୁ ଚାହୁଁ ନଥିଲେ। ସେଥିପାଇଁ ୨ୟ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତୀର୍ଣ୍ଣ ହୋଇଥିବା ଛାତ୍ରଟିକୁ ସେହି ୨ୟ ଶ୍ରେଣୀରେ ଆଉ ବର୍ଷେ ଅଟକାଇ ଦିଆଗଲା। ତା ପରବର୍ଷ ମୁଁ ୩ୟ ଶ୍ରେଣୀରେ ଅଧ୍ୟୟନ କଲି। କିନ୍ତୁ ନାମ ମୋର ରହିଲା ୨ୟ ଶ୍ରେଣୀରେ। କ୍ଲାସ୍‌ରେ ଉପସ୍ଥାନ ସମୟରେ ମୋର ନାମ ଡକା ନ ଯିବା ଦେଖି ମୁଁ ପ୍ରଥମେ ବିସ୍ମିତ ହେଲି। ପ୍ରାୟ ୨ ମାସ ପରେ ମୋତେ ଏତିକି କେବଳ ଜଣାଇ ଦିଆଗଲା ଯେ ବୃତ୍ତି ପାଇବାର ସୁବିଧା ପାଇଁ ମୋର ନାମ ୨ୟ ଶ୍ରେଣୀରେ ରଖାଯାଇଛି।

ତାପରେ ଆରମ୍ଭ ହେଲା ମୋର ବୃତ୍ତି ପାଇବା ପାଇଁ ଯୋଜନା। କୈଳାସବାବୁ ଓ ୨ୟ ଶିକ୍ଷକ ଦୈତାରି ବାବୁ ଏକ ବିଧିବଦ୍ଧ ଯୋଜନା କରି ମୋର ପଢ଼ାର ଦାୟିତ୍ୱ ଗ୍ରହଣ କଲେ। କୈଳାସବାବୁ ନିଜେ ପଢ଼ାନ୍ତି ଗଣିତ ଓ ସାହିତ୍ୟ, ଦୈତାରୀ ବାବୁ ପଢ଼ାନ୍ତି ଇତିହାସ, ଭୂଗୋଳ, ସ୍ୱାସ୍ଥ୍ୟ ରକ୍ଷା । ସେତେବେଳକୁ ୨ୟ ବିଶ୍ୱଯୁଦ୍ଧ ଭୟଙ୍କର ଆକାର ଧାରଣ କରିଥାଏ। କିରୋସିନି ଦାମ ଆକାଶଛୁଆଁ। କାଗଜ ବଜାରରେ ଦେଖିବାକୁ ସ୍ୱପ୍ନ। ଏଭଳିକି ଲୋକଙ୍କର ନିତ୍ୟବ୍ୟବହାର୍ଯ୍ୟ ଗୁଆ ବଜାରରେ ଦେଖିବାକୁ ମିଳୁ ନଥାଏ। ଲୋକେ ତାଳମଞ୍ଜିକୁ ଶୁଖାଇ ଗୁଆ ତିଆରି କରି ଅଭ୍ୟାସ ଚରିତାର୍ଥ କରୁଥାନ୍ତି। ହଠାତ୍ ଦିନେ କୈଳାସ ମାଷ୍ଟ୍ରେ ମୋତେ ସ୍କୁଲ ନିକଟସ୍ଥ କଚେରୀକୁ ନେଇଗଲେ। ସେଠାରେ ଗଜେନ୍ଦ୍ର ଦାସ ଥାଆନ୍ତି ପ୍ରସନ୍ନ ଦାସ ଜମିଦାରଙ୍କ ଖଜଣା ଆଦାୟକାରୀ। କୈଳାସବାବୁଙ୍କ ପରାମର୍ଶ କ୍ରମେ ମୁଁ ଗଜବାବୁଙ୍କୁ ଧର୍ମବାପା ରୂପେ ଗ୍ରହଣ କଲି। ଗଜବାବୁ ଜଣେ ଅତି ଅମାୟିକ ସରଳ ପ୍ରବୃତ୍ତିର ବ୍ୟକ୍ତି। ସେତେବେଳକୁ ସେ ନୂତନ ବିବାହିତ। କଚେରିରେ ତାଙ୍କ ପରିବାର ସହିତ ଭାଉଜ ଓ ପୁତୁରା ଝିଆରି ମାନେ ମଧ୍ୟ ରହୁଥିଲେ। ତାଙ୍କର ଭାଉଜ ଅତ୍ୟନ୍ତ ଉଦାରମନା ଓ ଧର୍ମପରାୟଣା। କୈଳାସ ମାଷ୍ଟ୍ରଙ୍କ ଠାରୁ ମୋର ପ୍ରତିଭା ବିଷୟ ଶୁଣି ସେ ଖୁସିରେ ମୋତେ ସାହାଯ୍ୟ କରିବାକୁ ଆଗଭର ହୋଇଆସିଲେ। କଚେରି ତରଫରୁ ମୋତେ କାଗଜ କାଳି କିରୋସିନି ଓ ବହି କିଣିବା ପାଇଁ କିଛି କିଛି ଅର୍ଥ ସାହାଯ୍ୟ ମିଳିଲା। ତେଣୁ ୧୯୪୨ ଓ ୧୯୪୩ ଦୁଇବର୍ଷ ମୁଁ ଖୁବ୍ ସୁବିଧାରେ ପାଠ ପଢ଼ିପାରିଲି। ଏଣେ କୈଳାସ ମାଷ୍ଟ୍ରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ, ଗଜବାବୁଙ୍କର ଉତ୍ସାହ ଓ ସାହାଯ୍ୟ,

ବାପା, ବୋଉ, ଜେଜେମା ଓ ସୁମ ଅପାଙ୍କ ପ୍ରେରଣା ମୋ ପ୍ରତିଭାର ବିକାଶରେ ସହାୟକ ହେଲା। କିନ୍ତୁ ୧୯୪୨ ମସିହା ବସନ୍ତ ଋତୁରେ ସୁମ ଅପାଙ୍କ ଅକାଳ ବିୟୋଗ ମୋର ମନକୁ ଏକ ଦାରୁଣ ଧକ୍କା ଦେଲା। ଅବଧାନଙ୍କ ସହିତ ପ୍ରତିଯୋଗିତା ଦିନ ତାଙ୍କ ମୁଖ ନିସୃତ ବାଣୀ ସାରାଜୀବନ ମୋତେ ପ୍ରେରଣା ଦେଇ ଆସିଛି। ମୋ ଭାଇ ଦିନେ ନାୟକ ବଂଶର ନାମ ଉଜ୍ଜ୍ୱଳ କରିବ। ସୁମ ଅପାଙ୍କର ଅଭାବ ମୁଁ ଅନ୍ତର ସହିତ ଅନୁଭବ କରୁଥିଲେ ମଧ ତାଙ୍କର ଏଇ ଅନ୍ତିମ ଇଚ୍ଛା ପୂରଣ କରିବା ପାଇଁ ଏକ ଅନ୍ତର୍ନିହିତ ପ୍ରେରଣା ମୁଁ ମୋ ଚଲାପଥରେ ସତତ ଅନୁଭବ କରୁଥାଏ।

୧୯୪୩ ମସିହା ଓଡ଼ିଶାର ବାଲେଶ୍ୱର ଓ ବଙ୍ଗଳାର ମେଦିନପୁର ଜିଲ୍ଲାର ବାତ୍ୟା ଓ ବନ୍ୟା ଆମ ଅଞ୍ଚଳର ଲୋକଙ୍କର ମେରୁଦଣ୍ଡ ଦୋହଲାଇ ଦେଲା। ଚାଉଳ ଦର ଅତ୍ୟଧିକ ମାତ୍ରାରେ ବୃଦ୍ଧି ପାଇଲା। ଏଣେ ଭାରତର ପୂର୍ବପାର୍ଶ୍ୱ ଓ ପଡ଼ୋଶୀ ବ୍ରହ୍ମଦେଶରେ ଜାପାନର ରଣ ହୁଙ୍କାର ବଙ୍ଗପ୍ରଦେଶରେ ବାତ୍ୟା ଓ ବନ୍ୟା ଜନିତ ଦୁର୍ଭିକ୍ଷ ପରିସ୍ଥିତି ଜର୍ମାନ ଓ ବ୍ରିଟିଶ ମଧ୍ୟରେ ଘମାଘୋଟ ଲଢ଼େଇ ଏ ସବୁର ଅର୍ଥ ଆମ ଅର୍ଦ୍ଧ ଶିକ୍ଷିତ ଗ୍ରାମବାସୀ ବୁଝୁନଥିଲେ ମଧ ଏହାର ପ୍ରଭାବ ଯୋଗୁଁ ଆକାଶଛୁଆଁ ଦରଦାମରେ ସେମାନେ ଶିକାର ହୋଇଥାନ୍ତି। ଚାଉଳ ଦର ଏତେ ବଢ଼ିଗଲା ଯେ ଅନେକ ଅଭିଭାବକ ମାସିକିଆ ପାଳି ସେରେ ଚାଉଳ ଦେଇ ନ ପାରି ପିଲାମାନଙ୍କୁ ସ୍କୁଲରୁ ଉଠାଇନେଲେ। ଆମ ୩ୟ ଶ୍ରେଣୀରେ ମୋତେ ମିଶାଇ ମୋଟ ଛାତ୍ର ସଂଖ୍ୟା ଥାଏ ମାତ୍ର ୧୦ ଜଣ। କିନ୍ତୁ ନିୟମିତ ଆସୁଥାଉ, ମୁଁ, ଶଙ୍କର୍ଷଣ ପଣ୍ଡା ଓ ରାମଚନ୍ଦ୍ର ପଣ୍ଡା, ଛାତ୍ର ସଂଖ୍ୟା କମିଯିବାରୁ ଶିକ୍ଷକ ମାନଙ୍କର ଖାଇବା ପାଇଁ ଆସୁଥିବା ଚାଉଳ କମିଗଲା। ତେଣୁ ମ୍ୟାନେଜିଙ୍ଗ କମିଟି ସ୍ଥିର ଯେ ଶିକ୍ଷକ ମାନେ ପାଳି କରି ଛାତ୍ର ଓ ଅନ୍ୟ ଉଦାର କମିଟି ମେମ୍ବରଙ୍କ ଘରେ ଖାଇବେ। ଦାଦାଙ୍କର ଅକାଳ ବିୟୋଗ, ବାରମ୍ବାର ବନ୍ୟା ଫଳରେ ଆମ ଘରର ଆର୍ଥିକ ମାନଦଣ୍ଡ ଭାଙ୍ଗି ପଡ଼ିଥାଏ। ତଥାପି ମୁଁ ଦେଖିଛି ଜେଜେମା ବାପାଙ୍କୁ କହିଥାନ୍ତି, ରାତ୍ରିରେ ଶିକ୍ଷକଙ୍କୁ କେହି ନ ଡାକିଲେ ତୁ ଆମ ଘରକୁ ଡାକି ଆଣିବୁ। ଯାହା ଶାଗ ପଖାଳ ଥିବ ଖାଇ ଯିବେ। କୈଳାସ ବାବୁ ଓ ଦୈତାରି ବାବୁ ଦିବାକର ବାବୁ ଓ ଶିବ ମାଷ୍ଟ୍ରେ ଅନେକଥର କହିଛନ୍ତି, 'ତୋ ବୁଢ଼ୀମା'ଙ୍କ ସ୍ନେହ ପାଖରେ ଆମେ କିଣି ହୋଇ ଯାଉଛୁ। ତୁମ ଘରର ଶାଗ

ପଖାଳ ଓ ଶୁଖୁଆ ପୋଡ଼ାର ସୁଆଦ ଆଉ କେଉଁଠି ମିଳିବନି।' ୧୯୪୩ ମସିହାର କରାଳ ଦୁର୍ଭିକ୍ଷ ସାଙ୍ଗକୁ ଆସିଲା ମହାମାରୀ ହଇଜା। ଗାଁରେ ଲୋକେ ପୋକମାଛି ଭଳି ମରିଗଲେ। ସଠିକ ଭାବେ ମୋର ମନେ ଅଛି ସ୍କୁଲରେ ବସି ଆମେ ଦେଖୁଥାଉଁ ଗୋଟିଏ ଶବକୁ ନେଇ ଶବବାହକମାନେ ଫୋପାଡ଼ି ଦେଇ ଆସିବା ପରେ ପରେ ଆଉ ଗୋଟିଏ ଶବର ଶୋଭାଯାତ୍ରା। ସ୍କୁଲରେ ବସି ଦିନକୁ ୧୦/୧୨ଟି ଶବର ଶୋଭାଯାତ୍ରା ସବୁ ସ୍କୁଲ ଛାତ୍ରଙ୍କ ମନରେ ଏକ ବିଷାଦ ଓ ଆତଙ୍କର ଛାଇ ଖେଳାଇ ଦେଇଥାଏ। ତା ସାଙ୍ଗକୁ ସ୍କୁଲ ଛାତ୍ର ସଂଖ୍ୟା ହ୍ରାସ, ସ୍କୁଲରେ ଏକ ବିଷାଦର ବାତାବରଣ ସୃଷ୍ଟି କରିଥାଏ। ଅନେକ ଥର ଶିକ୍ଷକମାନେ କଥାବାର୍ତ୍ତା ହେବା ଶୁଣିଛି, ଏଭଳି ପରିସ୍ଥିତି ଯଦି ଗାଁରେ ଋଲେ, ସ୍କୁଲ ବୋଧହୁଏ ବନ୍ଦ ହୋଇଯିବ। କିନ୍ତୁ ଧୈର୍ଯ୍ୟ ହରାଇ ନଥାନ୍ତି କୈଳାସ ବାବୁ। ତାଙ୍କର ଉତ୍ସାହରେ ଯେପରି ଅନ୍ତ ନାହିଁ। ସମୁଦାୟ ସ୍କୁଲର ଛାତ୍ର ସଂଖ୍ୟା ୨୦କୁ କମି ଆସିଲା। ଅଭିଭାବକମାନେ ବହୁତ ଦିନରୁ ଋଉଳ ଋନ୍ଦା ଦେବା ବନ୍ଦ କରି ଦେଇଥିଲେ। ଏବେ ମାଷ୍ଟରଙ୍କର ଖାଇବା ପାଳି ବନ୍ଦ କରିଦେଲେଣି। ଗ୍ରାମରେ ହଇଜା ଓ ଦୁର୍ଭିକ୍ଷର କରାଳ ବିଭୀଷିକା, କିନ୍ତୁ କୈଳାସ ମାଷ୍ଟରଙ୍କ ବିଶ୍ୱାସ ଓ ସଂକଳ୍ପ - ଏ ବର୍ଷ ଗୁଡ଼ ସ୍କୁଲକୁ ପ୍ରଥମ ବୃତ୍ତି ଆସିବ।

ଶେଷରେ କୈଳାସ ବାବୁଙ୍କ ସ୍ୱପ୍ନକୁ ସାର୍ଥକ କରି ମୁଁ ଓ ଶଙ୍କର୍ଷଣ ପଣ୍ଡା ବୃତ୍ତି ପାଇଁ ନିର୍ବାଚନ ପରୀକ୍ଷା ଦେବା ନିମନ୍ତେ ନଭେମ୍ବର ମାସ ସୋରୋ ଅଭିମୁଖେ ଯାତ୍ରା କଲୁ। ଅର୍ଥ କେଉଁଠୁ ଆସିବ । କୈଳାସ ବାବୁ ସ୍ଥିର କଲେ ଆମେ ଦୁଇ ଜଣ ତାଙ୍କ ଘରେ ରହିବୁ । ପ୍ରତିଦିନ ସୋରୋ ଯାଇ ପରୀକ୍ଷା ଦେଇ ଫେରିବୁ । ତାଙ୍କ ଘରଠାରୁ ସୋରୋ ୫କି.ମି ରାସ୍ତା । ଦୁଇ ଦିନ ପରୀକ୍ଷା ଚାଲିଲା । ମୋର ଶିକ୍ଷକଙ୍କ ପୂର୍ଣ୍ଣ ବିଶ୍ୱାସକୁ ରୂପ ଦେଇ ମୁଁ ସବୁ ପରୀକ୍ଷାରେ ଭଲ କରିଛି ବୋଲି କହିଲି । ୧୦/୧୨ ଦିନ ପରେ ନିର୍ବାଚନ ପରୀକ୍ଷା ଫଳ ବାହାରିଲା । ବୃତ୍ତି ପରୀକ୍ଷା ଦେବା ପାଇଁ ମୁଁ ନିର୍ବାଚିତ ହୋଇଛି ବୋଲି ଖବର ଆସିଲା । ଏହା ଭିତରେ ବଡ଼ ଦିନ ଛୁଟି ପାଇଁ ୨୦ଦିନ ସ୍କୁଲ ବନ୍ଦ ହୋଇଗଲା । କୈଳାସ ବାବୁ ମଧ୍ୟ ସ୍କୁଲକୁ ଆସିବା ପ୍ରାୟ ବନ୍ଦ କରି ଦେଇଥାନ୍ତି । ମୋତେ ତାଙ୍କର ଉପଦେଶ ଥାଏ, ସମୟ ନଷ୍ଟ ନକରି ସ୍କୁଲରେ ଏକୁଟିଆ ବସି ପଢାପଢି କରୁଥିବୁ । ତୋତେ ଅଧିକ ପଢାଇବାର

ଆବଶ୍ୟକତା ନାହିଁ । ନିଜେ ନିଜେ ପାଠ ଗୁଡ଼ିକର ପୁନରାବୃତ୍ତି କରିପକା । ଡ଼ିସେମ୍ବର ମାସର ଶେଷ ସପ୍ତାହରେ ସୋରୋରେ ବୃତ୍ତି ପରୀକ୍ଷା ଦେବା ପାଇଁ ମୁଁ ଗଲି । କୈଳାସବାବୁଙ୍କ ଭାଇ ତାଙ୍କୁ ପଚାରିଲେ, କଇ, ତୁ ତ ମାସେ ହେଲା ସ୍କୁଲ ଯାଇନୁ । ଭାସ୍କରକୁ ପଢାଇଲା କିଏ ? ସେ କହିଲେ ତାକୁ ପଢାଇବା ଦରକାର କଣ ? ତାର ତ ସବୁ ମୁଖସ୍ଥ । ସେ ତ ମନରୁ ଭାବି କେତେ ନୂଆ କଥା ଲେଖି ପକାଇବ । ପରୀକ୍ଷା ଦେଲି । ଗଣିତ, ସାହିତ୍ୟ, ଇତିହାସ ଓ ଭୂଗୋଳ ସବୁ ବିଷୟରେ ଭଲ କରିଛି ବୋଲି କହିଲି । ମାଷ୍ଟ୍ରେ ପଚାରିଲେ, ରଚନା କଣ ଲେଖିଲୁ । ଆଖୁ ଚାଷ ନା ଧାନଚାଷ । ମୁଁ କହିଲି ଧାନଚାଷ। ସେ କହିଲେ, ଆଖୁ ଚାଷ ରଚନା ଭଲ ହୋଇଥାନ୍ତା। ଆଖୁ ଚାଷ ପ୍ରଣାଳୀ, ଅମଳ ଓ ବ୍ୟବହାର ବିଷୟରେ ମୁଁ ତୋତେ ଅନେକ କଥା କହିଥିଲି। ମୁଁ କହିଲି ଧାନଚାଷ ମୋତେ ଭଲ ଲାଗିଲା । ଭାରତରେ ଧାନ ପ୍ରଧାନ ଫସଲ । ଏହି ଚାଷ ଉପରେ ଦେଶର ମାନଦଣ୍ଡ ନିର୍ଭର କରୁଛି। ଏହି ଚାଷ ପାଇଁ କେନାଲ ପାଣିର ସୁବିଧା ଭାରତରେ ନାହିଁ । ବନ୍ୟା ପ୍ରତିକାର ପାଇଁ ଯଥେଷ୍ଟ ପଦକ୍ଷେପ ନିଆଯାଉନାହିଁ । ୧୯୪୨ ମସିହା ମରୁଡ଼ି ଓ ୧୯୪୩ ମସିହା ବନ୍ୟା ଫଳରେ ଧାନ ଚାଷ ନଷ୍ଟ ହୋଇ ଆମ ଓଡ଼ିଶା ଓ ବଙ୍ଗଳାରେ କିଭଳି ଦୁର୍ଭିକ୍ଷର କରାଳ ବିଭୀଷିକା ଦେଖାଦେଇ ଲୋକଙ୍କର ମାନଦଣ୍ଡ ଦୋହେଲାଇ ଦେଇଛି ଓ ଏହାର ପ୍ରତିକାର ପାଇଁ କିଭଳି ସରକାରଙ୍କ ସହଯୋଗ ଆବଶ୍ୟକ ଓ ଭାରତ ଏକ ପରାଧୀନ ଦେଶ ହୋଇଥିବାରୁ ଏ ଦିଗରେ ଯଥେଷ୍ଟ ପଦକ୍ଷେପ ନିଆଯାଇପାରୁନାହିଁ । ଆମ ଦେଶ ସ୍ୱାଧୀନ ହେଲେ ସରକାରଙ୍କ ସହଯୋଗରେ ନଦୀର ଜଳକୁ ନିୟନ୍ତ୍ରଣ କରି ଜମିରେ ମଡ଼ାଯାଇପାରିବ ଓ ଦେଶର ଦୁର୍ଭିକ୍ଷ ଚିରଦିନ ପାଇଁ ଲୋପ ପାଇବ । ଏ ବିଷୟଟିକୁ ବିଷଦ ଭାବେ ଲେଖି ମୁଁ ୪ପୃଷ୍ଠା ବ୍ୟାପୀ ଏକ ଧାନଚାଷ ରଚନା ଲେଖିଦେଇ ଆସିଲି । କୈଳାସ ମାଷ୍ଟ୍ରେ ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ ଏଭଳି ଭାବନା ତୁ କେଉଁଠୁ ଆଣିଲୁ । ମୁଁ ତ ତୋତେ ଏ ବିଷୟ କହିନାହିଁ । ମୁଁ କହିଲି, ସ୍ୱାଧୀନତା ଆନ୍ଦୋଳନ ପାଇଁ ଆମ ନେତାମାନେ ଯେଉଁ ବକ୍ତୃତା ଦେଉଛନ୍ତି ମୁଁ ସେଥିରୁ ଏହି ତଥ୍ୟ ସଂଗ୍ରହ କରିଛି । ବାହାରୁ ଶୁଣିଥିବା ବିଷୟବସ୍ତୁକୁ ପାଠ ପାଇଁ ବ୍ୟବହାର ମୋର ଅଭ୍ୟାସରେ ପରିଣତ ହୋଇଥାଏ ।

# ଭାରତ ଇତିହାସର ଦ୍ୱିତୀୟ ଜାଲିଆନାବାଗ୍ ରକ୍ତତୀର୍ଥ ଇରମ

ଆମ ଗ୍ରାମ ଓ ପାଖ ଗ୍ରାମ ଇରମ ସ୍ୱାଧୀନତା ଆନ୍ଦୋଳନର ଏକ କେନ୍ଦ୍ରସ୍ଥଳରେ ପରିଣତ ହୋଇଥାଏ । ମହାତ୍ମା ଗାନ୍ଧିଙ୍କ ଆହ୍ୱାନରେ ସମଗ୍ର ଭାରତରେ ଅସହଯୋଗ ଆନ୍ଦୋଳନର ଏକ ସ୍ରୋତ ପ୍ରବାହିତ ହୋଇଥାଏ । ସ୍କୁଲରେ କଂଗ୍ରେସ କର୍ମୀମାନେ ଅନେକ ସମୟରେ ରୋଷାଇ କରି ଖାଆନ୍ତି । ଗାଁରେ ଅନେକ ସମୟରେ ସଭାସମିତି ହୁଏ । ସେ ଅଞ୍ଚଳରେ ପ୍ରଧାନ ନେତା ଥାନ୍ତି କମଳାକାନ୍ତ କର । ୧୯୪୨ ମସିହାର ଅଗଷ୍ଟ ବିପ୍ଲବ ବ୍ରିଟିଶ ସରକାରଙ୍କ ମେରୁଦଣ୍ଡକୁ ଦୋହଲାଇ ଦେଇଥାଏ । ଦେଶର ଏହି ବିରାଟ ସମୁଦ୍ର ଉପକୂଳ ବନି ନାମକ ଏକ ସମୁଦ୍ର କୂଳିଆ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଲୋକେ ସମୁଦ୍ର ମାଡ଼ି ଯାଉଥିବା ବେଳାଭୂମିର ମାଟିକୁ ଝର ବସାଇ ତାର ପାଣିକୁ ବନି କାଠ ଦ୍ୱାରା ଉତ୍ତପ୍ତ କରି ଲୁଣ ଆମଦାନୀ କରୁଥିଲେ । ତେଣୁ ଆମ ଗ୍ରାମବାସୀ ମଧ୍ୟ ବେଳାଭୂମିର ମାଟିକୁ ଝର ବସାଇ ତାର ପାଣିକୁ ବନି କାଠ ଜାଳି ଉତ୍ତପ୍ତ କରି ଲୁଣ ଆମଦାନୀ କରୁଥିଲେ । ତେଣୁ ଆମ ଗ୍ରାମ ମଧ୍ୟ ଦେଇ ଯାଉଥିବା ସଡ଼କର ନାମ ନିମିକି ସଡ଼କ ନାମରେ ପରିଚିତ ଥିଲା । ବ୍ରିଟିଶ ସରକାର ଲୁଣ ଅମଦାନୀକୁ ନିଷେଧ କରିଥିବାରୁ ଆମ ଅଞ୍ଚଳରେ ପ୍ରବଳ ଜନ ଅସନ୍ତୋଷ ଦେଖାଦେଇଥାଏ । ବିଭିନ୍ନ ସ୍ଥାନରେ ସଭା ସମିତିମାନ ବସି ବ୍ରିଟିଶ ସରକାରଙ୍କ ନୀତିକୁ ସମାଲୋଚନା କରାଯାଉଥାଏ । ୧୯୪୨ ମସିହା ସେପ୍ଟମ୍ବର ୨୮ ତାରିଖ । ସେତେବେଳକୁ ଦେଶର ବଡ଼ ବଡ଼ ନେତାମାନେ ଜେଲରେ । ସ୍ଥିର ହୋଇଥାଏ ଇରମ ମେଲଣ ପଡ଼ିଆରେ ଏକ ବିରାଟ ସଭା ହେବ । ନେତାମାନେ ଗାଁ ଗାଁ ବୁଲି ପ୍ରଚାର କରିଥାନ୍ତି, ଆଜି ସଭାରେ ସ୍ୱାଧୀନତା ଘୋଷଣା କରାଯିବ । ପ୍ରତ୍ୟେକ ଘରୁ ଜଣେ ଲେଖାଏଁ ଲୋକ ଗୋଟିଏ ଲେଖାଏଁ ଠେଙ୍ଗା ଧରି ସଭାସ୍ଥଳକୁ ଯିବେ । ବ୍ରିଟିଶ ସରକାରଙ୍କ କର୍ମଚାରୀ ଆମକୁ ବାଧା ଦେଲେ ଆମେ ଠେଙ୍ଗା ସାହାଯ୍ୟରେ ପ୍ରତିଶୋଧ ନେବା । ଆମ ଗାଁର ସ୍ତ୍ରୀଲୋକମାନଙ୍କୁ କୁହାଯାଇଥାଏ ଯେ ଶଙ୍ଖ ଶୁଣିବ ସେ ଶଙ୍ଖ ବଜାଇବ । ଏହା ଥିଲା ବ୍ରିଟିଶ ବିରୁଦ୍ଧରେ ଆମ ଅଞ୍ଚଳରେ ଯୁଦ୍ଧ ଭେରୀ

। ସତକୁ ସତ ସଂଧ୍ୟା ୫ଟା ବେଳକୁ ଶଙ୍ଖ ନାଦରେ ଆମ ଅଞ୍ଚଳରେ ଗଗନ ପବନ ପ୍ରକମ୍ପିତ ହୋଇ ଉଠିଲା। ପ୍ରତ୍ୟେକ ଘରୁ ଜଣେ ଲେଖାଏଁ ଲୋକ ଠେଙ୍ଗା ଧରି ସଭାସ୍ଥଳକୁ ବାହାରି ପଡ଼ିଲେ । ସରକାର ଇରମଠାରେ ଗୋଟିଏ ବିରାଟ ସଭା ହୋଇ ସ୍ୱାଧୀନତା ଘୋଷଣା କରାଯିବ ବୋଲି ଖବର ପାଇ ସାରିଥାନ୍ତି । ସେଥିପାଇଁ ବାଲେଶ୍ୱରରୁ ଡ଼ି.ଏସ.ପି କୁଞ୍ଜ ବିହାରୀ ମହାନ୍ତି ସଦଳ ବଳେ ମିଲିଟାରୀ ଫୋର୍ସ ଧରି ଆସିଥାନ୍ତି । ବର୍ଷାଦିନ ଜଗନ୍ନାଥ ସଡ଼କର ଜାମୁଝାଡ଼ିଠାରୁ ଇରମ ପର୍ଯ୍ୟନ୍ତ ପ୍ରାୟ ୨୫କି.ମି ରାସ୍ତା ବର୍ତ୍ତମାନ ଭଳି ପିଚୁ ରାସ୍ତା ନଥିଲା । ଏହା ଏକ କର୍ଦ୍ଦମଯୁକ୍ତ ସଡ଼କ ମାତ୍ର ଥିଲା। ପାଖ ପାଖ ଗ୍ରାମର ଚୌକିଦାର ମାନଙ୍କ ସହାୟତାରେ ଡ଼ି.ଏସ.ପି ସାହେବ ତାଙ୍କର ଫୋର୍ସ ଧରି ଆସି ପହଞ୍ଚିଲେ ଗମେଇ ନଦୀ କୂଳ ଶାଶୁ ବୋହୂ ଘାଟ ପାଖରେ । ଗମେଇ ନଦୀକୁ ତାଳଡ଼ଙ୍ଗାରେ ପାରିହେବେ । ମାତ୍ର କଂଗ୍ରେସ ନେତାମାନଙ୍କ ପ୍ରରୋଚନାରେ ଲୋକମାନେ ପୋଲିସ୍‌ଙ୍କର ବିଛଣାତକ ଛଡ଼େଇ ଆଣି ମେଳନ ପଡ଼ିଆ (ବର୍ତ୍ତମାନ ସହୀଦ ପଡ଼ିଆ) ରେ ସଭା ପାଇଁ ପଡ଼ିଥିବା ଖଟ ଉପରେ ପକାଇଲେ । ତା ଉପରେ ଠିଆ ହୋଇ ନେତାମାନେ ଭାଷଣ ଦେଲେ । ସେହି ସଭାରେ କମଳାବାବୁ ଅନ୍ୟ ନେତାମାନେ ଭାଷଣ ଦେଲେ । ସେହି ସଭାରେ କମଳାବ୍ବାବୁ ଭାଷଣ ଦେଇ ଆମେ ଆଜି ଠାରୁ ସ୍ୱାଧୀନ ବୋଲି ଘୋଷଣା କଲେ । ଏହା ଭିତରେ ଡ଼ି.ଏସ.ପି ସାହେବ ଆସି ଇରମ ଜମିଦାର ରାଧାକାନ୍ତ ପାଢିଙ୍କ ଘରେ ଆସ୍ଥାନ ଜମାଇ ଜମିଦାରଙ୍କ ମଧ୍ୟସ୍ଥତାରେ ସମସ୍ୟାର ସମାଧାନ କରିବାକୁ ଚେଷ୍ଟା କରି ବିଫଳ ହେବାରୁ ବ୍ଲାଙ୍କ୍ ଫାୟାର କରି ଲୋକଙ୍କୁ ଘଉଡ଼ାଇ ଦେବାକୁ ଚେଷ୍ଟା କଲେ। ସେ ଦିନ ଲୋକମାନେ ବିଛଣା ଛଡ଼ାଇ ଆଣି ସ୍ୱାଧୀନତାର ପ୍ରଥମ ସ୍ୱାଦ ଚାଖିସାରିଥାନ୍ତି । ଏଥିରେ ସେମାନେ ଡରିବେ କିପରି ? ପୁଣି ସମସ୍ତଙ୍କର ହାତରେ ଠେଙ୍ଗା। ହତଭାଗ୍ୟ ନିରୀହ ଜନତା, ତୁମେ ବୁଝିବ କେଉଁଠୁ ଆଧୁନିକ ଯୁଗର ବନ୍ଧୁକ ତୁମର ଠେଙ୍ଗାଠାରୁ କେତେ ଶକ୍ତିଶାଳୀ। ଏହି ସମୟରେ ଜଣେ କଂଗ୍ରେସ ନେତା ମଞ୍ଚଉପରକୁ ଆସି କହିଦେଲେ ବ୍ରିଟିଶ ସରକାରଙ୍କ ବନ୍ଧୁକରୁ ଗୁଳି ସରିଗଲା । ତୁମେ ବର୍ତ୍ତମାନ ଠେଙ୍ଗାରେ ଫୌଜଙ୍କୁ ପିଟି ତାଙ୍କଠାରୁ ବନ୍ଧୁକ ଛଡ଼ାଇ ଆଣ ।

ନିରୀହ ଜନତା ଆଗେଇଗଲା । ହଠାତ୍ ଡ଼ି.ଏସ.ପି. ଆଦେଶ ଦେଲେ, "ଫାୟାର ଫାୟାର ଫାୟାର" ତା ପରେ ଆରମ୍ଭ ହୋଇଗଲା ଇରମର ମେଲଣ ପଡ଼ିଆରେ ଭାରତର ଜାଲିଆନାବାଗର ପୁନରାବୃତ୍ତି । ମେଲଣପଡ଼ିଆର ତିନି ପାଖରେ ବିରାଟ ବିରାଟ କିଆବୁଦା । ପୂର୍ବ ପାଖ ସଡ଼କକୁ ଆବଦ୍ଧ କରି ଠିଆ ହୋଇଛି ବନ୍ଧୁକଧାରୀ ଗୁର୍ଖା ଫୌଜ । ବନ୍ଧୁକ ଗୁଳିରେ ଟଳି ପଡ଼ିଲେ ୨୯ଟି ମୂଲ୍ୟବାନ ଜୀବନ । ୧୫୦ଜଣ ଭୀଷଣ ଭାବେ ଆଘାତପ୍ରାପ୍ତ ହୋଇ ଡାକ୍ତରଖାନାକୁ ବୁହାହେଲେ । ସେଦିନ ଥାଏ ଆମର ଶ୍ରାଦ୍ଧ । ରାତି ପ୍ରାୟ ୮ଟା ହେବ, ଆମ ସାହିର ବୈରାଗୀ ନାୟକ ଧଇଁ ସଇଁ ହୋଇ ଦଉଡ଼ି ଆସି କହିଲେ ବନ୍ଧୁକ ଗୁଳିରେ ସମସ୍ତେ ଟଳି ପଡ଼ିଲେଣି । କେବଳ ମୁଁ କିଆବୁଦା ଭିତରେ ଗଳି ଦଉଡ଼ି ପଳାଇ ଆସିଛି । ଘରେ ଘରେ କାନ୍ଦବୋବାଳି ପଡ଼ିଗଲା । ଭାଗ୍ୟକୁ ଆମ ଗ୍ରାମରୁ ପରି ଦାସ ନାମକ ଜଣେ ମରିଥିଲେ, କାଶୀନାଥ ଦାଶ ଓ ରତ୍ନାକର ବିଶ୍ୱାଳ ଗୁରୁତର ଭାବେ ଆଘାତ ପାଇଥିଲେ । ଏତ ଗଲା ସେପ୍ଟେମ୍ବର ମାସ ୨୮ତାରିଖର ପର୍ବ । ତା ପରବର୍ତ୍ତୀ ଘଟଣା ଆହୁରି ଲୋମହର୍ଷଣକାରୀ । ଦିନବେଳା ଗାଁରେ ଗୋଟିଏ ଲୋକ ଘରେ ରହନ୍ତି ନାହିଁ । ସମସ୍ତେ ଧାନ ବିଲରେ ଲୁଚନ୍ତି । ଗାଁରେ କେତୋଟି ପିଲା ଓ ସ୍ତ୍ରୀ ଲୋକଙ୍କୁ ଛାଡ଼ିଦେଲେ ଆଉ କେହି ନଥାନ୍ତି । ପୋଲିସମାନେ ଗାଁରେ ପଇଁତରା ମାରନ୍ତି । ଯାହା ଘରେ ଛେଳି କୁକୁଡ଼ା ଥାଏ, ତାହା ସଙ୍ଗେ ସଙ୍ଗେ ବିନା ମୂଲ୍ୟରେ ନେଇଯାଆନ୍ତି । କଖାରୁ, କାକୁଡ଼ି, ବାଇଗଣ, ଜହ୍ନି, ଭେଣ୍ଡି ଯାହା କିଛି ଲୋକମାନଙ୍କ ବାଡ଼ିରେ ଫଳିଥିଲା ସଙ୍ଗେ ସଙ୍ଗେ ନେଇ ଯାଆନ୍ତି । ବୁଢାଲୋକମାନଙ୍କୁ ଡାକି ନେଇ ସବାରୀ କାନ୍ଧାଇ ଗାଁ ସାରା ବୁଲାଇବା ଓ ବାସୁଦେବପୁର ପର୍ଯ୍ୟନ୍ତ ସବାରୀ କାନ୍ଧାଇ ନେଇଯିବାର ଦୃଶ୍ୟ ଅତ୍ୟନ୍ତ ମର୍ମନ୍ତୁଦ । ଥରେ ପୋଲିସ୍ କନେଷ୍ଟବଳ ଜଣେ ବୁଢା ବ୍ରାହ୍ମଣଙ୍କୁ ସବାରୀ କାନ୍ଧେଇ ଗାଁ ବୁଲାଉଥିବାର ଦୃଶ୍ୟ ଦେଖି ଅନେକଙ୍କ ଚକ୍ଷୁ ଲୋତକପୂର୍ଣ୍ଣ ହୋଇଯାଇଥିଲା । ଏ ସବୁର କିଛି ମାତ୍ରାରେ ପ୍ରତ୍ୟକ୍ଷଦର୍ଶୀ ଥାଇ ଓ ବେଶୀଭାଗ ବୟସ୍କ ବ୍ୟକ୍ତିଙ୍କ ଠାରୁ ଶୁଣି ଶୁଣି ମୋର ପିଲାମନରେ ବି ସ୍ୱାଧୀନତାର ସୂତା ବସା ବାନ୍ଧିଥାଏ । ଇଂରେଜ ସରକାରଙ୍କ ଅତ୍ୟାଚାର ମୋ ମନରେ ବିଦ୍ରୋହର ଅଗ୍ନି ସଂଚାରଣ କରୁଥାଏ ।

ତେବେ ମୁଁ ଛୋଟ ପିଲାଟିଏ ଏବଂ ପାଠପଢ଼ି ମୋ ଜୀବନ ଗଢ଼ିବାର ନିଶା ମୋତେ ଖୁବ୍‌ବେଶୀ ଘାରିଥିବାରୁ ମୁଁ ପ୍ରତ୍ୟକ୍ଷ ସଂଗ୍ରାମରେ କେବେ ଭାଗ ନେଇନାହିଁ । କିନ୍ତୁ ମୋ ଗ୍ରାମର ନିରିହ ଅଧିବାସୀ ଭାରତର ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ଥିବାରୁ ଏବଂ ବହୁ ଅନ୍ୟାୟ ଓ ଅତ୍ୟାଚାର ଭୋଗ କରିଥିବାରୁ ମୋ ମନରେ ଗର୍ବ ଆସୁଥାଏ ।



## ତୃତୀୟ ପରିଚ୍ଛେଦ

# ଆମ ଗାଁ ଠାକୁର ବଳଦେବ ଜୀଉ

(୧୯୯୦ ମସିହାରେ ଦେବ ଲାଙ୍ଗଳୀ ପତ୍ରିକାରେ ପ୍ରକାଶିତ)

ସନାତନ ଧର୍ମରେ ବହୁ ଦେବ ଦେବୀଙ୍କର ପୂଜା ଆରାଧନାର ପ୍ରଚଳନ ରହିଛି-କିନ୍ତୁ ସବୁ ଦେବ ଦେବୀଙ୍କର ମାହାତ୍ମ୍ୟର ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ କଲେ ଗୋଟିଏ ବିଷୟ ପ୍ରତୀୟମାନ ହୁଏ, ତାହା ହେଉଛି ସେମାନଙ୍କର ମର୍ତ୍ତ୍ୟରେ ଆବିର୍ଭାବ ଉଦ୍ଦେଶ୍ୟ ଓ ସୃଷ୍ଟି ପାଇଁ ସେମାନଙ୍କର କର୍ତ୍ତବ୍ୟ । ଏହି ପରିପ୍ରେକ୍ଷୀରେ ସବୁ ଦେବ ଦେବୀଙ୍କୁ ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଓ ସଂହାରକର୍ତ୍ତା ଭାବେ ଗଣନା କରାଯାଇପାରେ-କେତେବେଳେ ସେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ଅନ୍ୟ ସମୟରେ ରାମ, ଲକ୍ଷ୍ମଣ, ସୀତା ପୁଣି ସେ ବଳରାମ ଶ୍ରୀକୃଷ୍ଣ, ଶ୍ରୀରାଧା ଅଥବା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ରୂପରେ ଆର୍ବିଭାବ ହୋଇଛନ୍ତି - ତ୍ରେତୟାଯୁଗରେ ରାମଚନ୍ଦ୍ର, ଦ୍ୱାପରଯୁଗରେ ଶ୍ରୀକୃଷ୍ଣ ଓ କଳିଯୁଗରେ ଜଗନ୍ନାଥଙ୍କ ଚରିତ୍ର ଏକ ଓ ଅଭିନ୍ନ । ସେ ପରମ୍ ବ୍ରହ୍ମ ସହନଶୀଳ,ଧୈର୍ଯ୍ୟର ଅବତାର । ରାମ ଅବତାରରେ ସେ ଶବରୁଣୀର ଅଇଁଠା କୋଳି ଖାଇ, ବାନର ରାଜା ସୁଗ୍ରୀବଙ୍କର ମିତ୍ର ହୋଇ ଶ୍ରୀକୃଷ୍ଣ ଅବତାରରେ କ୍ଷତ୍ରିୟ ପରିବାରରେ ଜନ୍ମ ହୋଇ ଗୋପାଳ ଘରେ ବଢି, ଜଗନ୍ନାଥ ଅବତାରରେ ଶ୍ରୀମନ୍ଦିରରେ ଏକତ୍ର ଆଚାଣ୍ଡାଳ ବ୍ରାହ୍ମଣ ଭୋଜନର ବ୍ୟବସ୍ଥା ଓ ବ୍ରାହ୍ମଣ ମନ୍ତ୍ରୀ ବିଦ୍ୟାପତି ସହ ଶବର କନ୍ୟା ଲଳିତାର ବିବାହ କରାଇ ମନୁଷ୍ୟ ମନୁଷ୍ୟ ମଧ୍ୟରେ ପାର୍ଥକ୍ୟ ନଥିବାର ସତ୍ୟ ପ୍ରତିଷ୍ଠା କରିଯାଇଛନ୍ତି । ସେହିପରି ତ୍ରେତୟା ଯୁଗରେ ସୀତା, ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ଅନ୍ୟ ଏକ ରୂପ ନେଇ ଧୈର୍ଯ୍ୟ କର୍ତ୍ତବ୍ୟ ଓ ମାତୃ ଜାତିର ଆଦର୍ଶ ପ୍ରତିପାଦନ କରିଅଛନ୍ତି। ଦ୍ୱାପର ଯୁଗରେ ସେ ହୋଇଛନ୍ତି ଭକ୍ତି ରସ ପ୍ରେମିକା ରାଧା ଓ ଜଗତର ପାଳନକର୍ତ୍ତା ଶ୍ରୀକୃଷ୍ଣଙ୍କୁ ସୃଷ୍ଟି ରକ୍ଷା ପାଇଁ ସେ ତାଙ୍କର ଭକ୍ତିପୂର୍ଣ୍ଣ ପ୍ରେମ ପ୍ରେରଣା ଯୋଗାଇ ଆସିଛନ୍ତି। କଳିଯୁଗରେ ସେ ଜଗତର ପାଳନକର୍ତ୍ତା ଓ ସଂହାରକର୍ତ୍ତାଙ୍କର ଭଗ୍ନୀ ରୂପରେ

ବିରାଜମାନ ହୋଇ ସୃଷ୍ଟି ରକ୍ଷା ପାଇଁ ପ୍ରେରଣା ଦେଇଛନ୍ତି। ଜଗତର ସଂହାରକର୍ତ୍ତା, ମହାଯୋଗୀ ମହେଶ୍ୱର ସନ୍ୟାସୀ ଶ୍ମଶାନବାସୀ, ତ୍ରେତୟା ଯୁଗରେ ଅଧର୍ମର ବିନାଶ କରି ଧର୍ମ ଓ ସତ୍ୟର ପ୍ରତିଷ୍ଠା ପାଇଁ ସାନଭାଇ ସୌମିତ୍ରୀ ରୂପରେ ଅବତୀର୍ଣ୍ଣ ହୋଇଛନ୍ତି । ଦୀର୍ଘ ବାରବର୍ଷ ଅନାହାର ଓ ନିଦ୍ରା ପରିତ୍ୟାଗ କରି ଇନ୍ଦ୍ରଜିତ୍‌କୁ ସଂହାର କରିବାକୁ ସକ୍ଷମ ହୋଇଛନ୍ତି। ଲକ୍ଷ୍ମଣଙ୍କ ଭଳି ସଂଯମୀ ଓ ତ୍ୟାଗୀ ଭାଇ ପାଇ ନଥିଲେ ରାମାୟଣ ବୋଧହୁଏ ଅପୂର୍ଣ୍ଣ ରହିଥାନ୍ତା। ଦ୍ୱାପର ଯୁଗରେ ବଳରାମ ନିର୍ବିକାର ପୁରୁଷ, ଭାଇ ଭାଇଙ୍କ ମଧ୍ୟରେ ଯୁଦ୍ଧ ଏକ ପରିବାର ମଧ୍ୟରେ କଳହ ସେ ସହି ପାରି ମହାଭାରତ ଯୁଦ୍ଧରୁ ଦୂରରେ ରହି ଅଛନ୍ତି । କିନ୍ତୁ ମହାଭାରତ ଯୁଦ୍ଧପରେ ଯେତେବେଳେ ସେ ପାଣ୍ଡବ ଓ କୌରବଙ୍କ ଯୁଦ୍ଧରେ ଘଟିଥିବା କଳିରୁ ବଂଶ ଧ୍ୱଂସ ହେବା ଦୃଶ୍ୟ ଦେଖୁଛନ୍ତି, ସେ ଲଜ୍ଜା ଓ ଅପମାନରେ ଯୋଗସୀନ ହୋଇ ନିମ୍ନଗାମୀ ହୋଇଛନ୍ତି । କଳିଯୁଗରେ ସେ କୃଷକ ସମାଜକୁ ତାଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ କରିବା ପାଇଁ ନିରବ ସାଧନାରେ ନିମଗ୍ନ ।

ସେହି ସତ୍ୟଯୁଗର ଯୋଗୀ ମହେଶ୍ୱର ତ୍ରେତୟା ଯୁଗର ତ୍ୟାଗୀ ସଂଯମୀ, ବୀର, ସୌମିତ୍ରୀ, ଦ୍ୱାପର ଯୁଗର ବୀର ହଳଧର, ବଳଭଦ୍ର ରୂପରେ ବିଭିନ୍ନ ସ୍ଥାନରେ ନିଜକୁ ପରିପ୍ରକାଶ କରିଆସିଛନ୍ତି । କେତେକ ସ୍ଥାନରେ ବଳଦେବ, ଦାରୁବ୍ରହ୍ମ ରୂପରେ ଆତ୍ମପ୍ରକାଶ କରିଥିଲେ ମଧ୍ୟ ବାଲେଶ୍ୱର ଜିଲ୍ଲା, ସୋରୋ ଥାନା ଅନ୍ତର୍ଗତ ଗୁଡ଼ ଗ୍ରାମରେ ଶ୍ରୀ ଶ୍ରୀ ବଳଦେବ ନିକଟସ୍ଥ କୁସୁମା ପୋଖରୀ ମଧ୍ୟରେ ପ୍ରସ୍ତରର ମୂର୍ତ୍ତୀ ରୂପରେ ଚାରିଶହ ବର୍ଷ ପୂର୍ବେ ଦେଖା ଦେଇଥିଲେ। କିମ୍ବଦନ୍ତୀ କହେ ବଳଦେବଙ୍କ ମନ୍ଦିର ପ୍ରତିଷ୍ଠା ତାର ରକ୍ଷାଣାବେକ୍ଷଣ ଓ ଉତ୍ତରୋତ୍ତର ଉନ୍ନତି କେବଳ ତାଙ୍କର ଇଚ୍ଛା ଅନୁସାରେ ପରିଚାଳିତ ହେଉଅଛି ।

କୁସୁମା ପୋଖରୀ ମଧ୍ୟରେ ଭାସମାନ ଶିଳା ବ୍ରହ୍ମର ଆତ୍ମପ୍ରକାଶ, ଦୁଧିଆଳୀ ଗାଈ ଶିଳା ବ୍ରହ୍ମକୁ କ୍ଷୀର ଦାନ, ପ୍ରତ୍ୟୁଷରେ ଜଗୁଆଳ ପିଲାମାନଙ୍କ ଶିଳା ବ୍ରହ୍ମକୁ କୂଳକୁ ବହନ ଓ ବୃକ୍ଷରେ ବନ୍ଧନ ଏବଂ ତାର ପୋଖରୀ ମଧ୍ୟକୁ ପ୍ରତ୍ୟହ ପ୍ରତ୍ୟାବର୍ତ୍ତନ, ଆଙ୍କୁଡ଼ା ପ୍ରଗନା ଓ ବାଙ୍ଗାସ ପ୍ରଗନା ଜମିଦାର ଦ୍ୱୟଙ୍କ କଳହ, ଶିଳା ବ୍ରହ୍ମ ବହନ ସମୟରେ ଶଗଡ଼ ଭଗ୍ନ ଏବଂ ଗୁଡ଼ ଗ୍ରାମର ତୁଳସୀ ଓ କୁଶ

ବନରେ ବଳଦେବଙ୍କ ଅବସ୍ଥାନର ଅଧ୍ୟୟନ, କେବଳ ଗୋଟିଏ କଥାର ସତ୍ୟତା ପ୍ରତିପାଦନ କରୁଅଛି, ତା ହେଉଛି ଗୁଡ଼୍ ଗ୍ରାମକୁ ଶ୍ରୀ ଶ୍ରୀ ବଳଦେବଙ୍କ ଆଗମନ ତାଙ୍କରି ଇଚ୍ଛା ଅନୁସାରେ ହେଉଅଛି ।

କାଂଶବାଂଶ ଓ ଶାଖା ଗମେଇ ନଦୀ ଦୁଇଟିର ଅବବାହିକାକୁ ନିଜର କର୍ମ କ୍ଷେତ୍ର ରୂପେ ବାଛି ଦେବାରେ ହଳଧରଙ୍କର ବୋଧ ହୁଏ ଅନ୍ୟ ଉଦ୍ଦେଶ୍ୟ ରହିଥିଲା। କାଂଶବାଂଶ ନଦୀରେ ବନ୍ୟା ଆସିଲେ ତାର ଅବବାହିକାରେ ଉର୍ବର ପଟୁ ଜମା ହୋଇ ଏ ଅଞ୍ଚଳକୁ ଏକ ଉର୍ବର କ୍ଷେତ୍ରରେ ପରିଣତ କରି ରଖିଥିଲା । କିନ୍ତୁ ଜନ ବସତିର ସ୍ୱଚ୍ଛତା ଫଳରେ ଏହାର ସଦ ଉପଯୋଗ ହୋଇ ପାରୁନଥିଲା । ଶ୍ରୀ ଶ୍ରୀ ବଳଦେବଙ୍କ ମହିମାରୁ ଉର୍ବର ଶସ୍ୟକ୍ଷେତ୍ରରେ ପରିଣତ ହୋଇଥିଲା । ତାଙ୍କ ମହିମାରୁ ଏ ଅଞ୍ଚଳ ମରୁଡ଼ି କଣ ଜାଣି ନଥିଲା । ପ୍ରଳୟକାରୀ ବନ୍ୟା ଆସେ ସତ,ମାତ୍ର ତିନି ଚାରି ଦିନ ମଧ୍ୟରେ ତା ବାଟେ ବାଟେ ଚାଲିଯାଏ। ଜଳ ନିଷ୍କାସନ ପାଇଁ ଥିଲା କାଂଶ ବାଂଶ ମୁହାଣ ଗମେଇ ମୁହାଣ, ରାମଗାହାଣ ନଦୀ ବା ରିକେଟ କେନାଲ ଓ କୋଷ୍ଟ କେନାଲ ଓ କାଂଶବାଂଶ ଗମେଇ ମଧ୍ୟବର୍ତ୍ତୀ ଅଞ୍ଚଳର ବିରାଟ ବେଳାଭୂମି । କିନ୍ତୁ ରାଜନୈତିକ ବ୍ୟକ୍ତିମାନଙ୍କ ହସ୍ତକ୍ଷେପ ଓ କେତେକ ଅପରିଣାମଦର୍ଶୀ ସରକାରୀ କର୍ମଚାରୀଙ୍କ ଉପଯୁକ୍ତ ଚିନ୍ତାର ଅଭାବ ଫଳରେ ଗମେଇନଦୀର ମୁହାଣର ଡାହାଣ ପଟେ ବନ୍ଧାଯାଇଛି ବିରାଟ ମାଟି ବନ୍ଧ ଓ ତା ସଙ୍ଗେ ସଙ୍ଗେ ବନ୍ଦ ହୋଇଛି ରିକେଟ କେନାଲ ଓ କୋଷ୍ଟ କେନାଲ । ଗମେଇ ମୁହାଣ ଠାରୁ କାଂଶ ବାଂଶ ମୁହାଣ ପର୍ଯ୍ୟନ୍ତ ବନ୍ୟା ଜଳ ପ୍ରତିରୋଧ କରୁଛି ଲୁଣାବନ୍ଧ । ଗମେଇ ନଦୀ ଉପରେ ଶାଶୁ ବୋହୁ ଘାଟ ନିକଟରେ ନିର୍ମିତ ପୋଲର ପୁକାର ସଂକୀର୍ଣ୍ଣ ହୋଇଥିବାରୁ ଓ ତା ନିକଟରେ ଥିବା କଜୱେର ଚଉଡ଼ାକୁ ସଂକୁଚିତ କରାଯାଇଥିବାରୁ ଜଳନିଷ୍କାସନର ପଥ ରୁଦ୍ଧ ହୋଇ ହଳଧରଙ୍କ ପ୍ରିୟ କୃଷିକ୍ଷେତ୍ର ପ୍ରାୟ କୋଡ଼ିଏ ହଜାର ଏକର ଜମିରେ ପ୍ରତି ବର୍ଷ ପ୍ରାୟ ଦଶକୋଟି ଟଙ୍କାର ଫସଲ ନଷ୍ଟ ହେଉଛି । ଏହା ସେ ନିଜେ ଦେଖୁଛନ୍ତି । ମାତ୍ର କଳିଯୁଗରେ ସେ ମୂକ ଅବସ୍ଥାରେ ସବୁ ଦେଖି ନୀରବ ହୋଇ ରହିଛନ୍ତି । କିନ୍ତୁ ସେ ବେଶୀଦିନ ଆଉ ନୀରବ ରହିବେ ନାହିଁ । ମହାଯୋଗୀ ସଂହାରକର୍ତ୍ତା ଶ୍ରୀ ଶ୍ରୀ ବଳଦେବ ନିଶ୍ଚୟ

ଏ ଅମାନବିକ ଅବିଚାରର ପ୍ରତିକାର କରି ତାଙ୍କରି ପ୍ରିୟ କୃଷି କ୍ଷେତ୍ରକୁ ଉଦ୍ଧାର କରିବେ ।

ଅନ୍ୟ ଏକ କିମ୍ବଦନ୍ତୀ ଅନୁସାରେ ବାଲେଶ୍ୱରର ଚୈତନ୍ୟ ଚରଣ ଦେ ନାମକ ଜନୈକ ସୌଦାଗରର ପାଲଟଣା ଜାହାଜକୁ ଶ୍ରୀ ଶ୍ରୀ ବଳଦେବ ଜୀଉ ଏକ ପ୍ରବଳ ଝଡ଼ରୁ ମୁକ୍ତ କରିଥିଲେ । ବଣିକ ମହାଶୟଙ୍କ ମାନସିକ ଅନୁସାରେ ଗୁଡ଼୍ ଗ୍ରାମରେ ସନ ୧୨୯୨ ସାଲ ବା ୧୮୮୫ ମସିହାରେ ବର୍ତ୍ତମାନର ମନ୍ଦିରଟି ନିର୍ମିତ ହୋଇଥିଲା । ଦୀର୍ଘ ଦିନ ଧରି ମରାମତି ଅଭାବରୁ ମନ୍ଦିରଟିର ବହୁତ ଅଂଶ ନଷ୍ଟ ହେବାକୁ ବସିଥିଲା ହଠାତ୍ ୧୯୬୭-୬୮ ମସିହା ବେଳକୁ ଗ୍ରାମରେ ପହଞ୍ଚିଥିଲେ କମ୍ଭୁ ବିଶ୍ୱାଳ । ସେ ବାଲେଶ୍ୱର ଜିଲାର ଜଣେ ନାମଜାଦା ଡାକୁ । ସେ ଇଚ୍ଛା କଲେ ଭଗ୍ନ ମନ୍ଦିର ମରାମତି ହେବା ଦରକାର । ତାଙ୍କରି ଚେଷ୍ଟା ଫଳରେ ସୁପ୍ତ ସେବକ ପଣ୍ଡାଦଳ ହଠାତ୍ ଜାଗ୍ରତ ହୋଇ ଉଠିଲେ । ମନ୍ଦିର ମରାମତି ଲକ୍ଷ୍ୟରେ ଚାନ୍ଦା ଦେବା ପାଇଁ ଗ୍ରାମର ବହୁ ଲୋକ ଏପରିକି ସୋରୋ, କୁପାରୀ ଓ ବାସୁଦେବପୁର ଥାନାର ଲୋକେ ଆଗଭର ହୋଇ ଆସିଲେ । ମନ୍ଦିର ମରାମତି କାର୍ଯ୍ୟ ଚାଲିଲା, ଭଗ୍ନ ଅବସ୍ଥାକୁ ଆସିଥିବା ମନ୍ଦିରଟି ତାର ପୂର୍ବ ରୂପ ଫେରି ପାଇଲା । କାହିଁ ଦୁର୍ଦ୍ଦାନ୍ତ କମ୍ଭୁ ଡକାୟତ, କାହିଁ ଶ୍ରୀ ଶ୍ରୀ ବଳଦେବ ଜୀଉଙ୍କ ମନ୍ଦିର ମରାମତି ? ଏହା ସେହି ବଳିଆର ଭୁଜର ନିର୍ଦ୍ଦେଶ ନୁହେଁ ତ ଆଉ କାହାର ? ପୁନଶ୍ଚ ସେ ଦିନର ଦୁର୍ଦ୍ଦାନ୍ତ କମ୍ଭୁ ଡକାୟତ, ଆଜିର ସୁପ୍ରତିଷ୍ଠିତ କଣ୍ଟ୍ରାକଟର ଓ ସମାଜସେବୀ । ସଂଭବତଃ ବଳଦେବ ଜୀଉଙ୍କ କୃପାଦୃଷ୍ଟିରୁ ଏହା ସମ୍ଭବ ହୋଇଛି ।

ମୁଁ ଏଇ ଗାଁ ପାଣି ପବନରେ ବଢ଼ିଛି । ପିଲାଟି ଦିନୁ ବୁଢ଼ା ବଳିଆକୁ ଦେଖିଆସିଛି । ଦୂରରୁ ତାର ଚକାଚକା ଆଖି ନାଲି ନାଲି ଓଠ ଓ ପ୍ରଲମ୍ବ ବାହୁ ଯୁଗଳ ଦେଖିଲେ ମନରେ ଭୟ ସଞ୍ଚାର ହୁଏ । କିନ୍ତୁ ତା ପାଖକୁ ଯାଇ ପ୍ରାଣ ଖୋଲି ନିବେଦନ କଲେ ସେ ଯେ କେତେ କୋମଳ ଅନୁଭବ କରିହୁଏ । ମନରେ ଦମ୍ଭ ଆସେ, ସେତେବେଳେ ଜଣାପଡ଼େ ସେ ଭକ୍ତ ପାଖରେ ଏକ ବିରାଟ ସ୍ତମ୍ଭ ହୋଇ ଠିଆ ହୋଇଛନ୍ତି । ୧୯୪୨ ମସିହା କଥା, ସେ ବର୍ଷ ମୁଁ ଏକ ସାଂଘାତିକ

ଚକ୍ଷୁ ରୋଗରେ ପୀଡ଼ିତ। ଦୁଇ ଆଖିରେ ଦୁଇଟି ମାଂସ ପିଣ୍ଡୁଳା ଜମିଥାଏ। ମଫସଲି ଭାଷାରେ ଏହାକୁ 'କୁଥ' କହନ୍ତି। ସେତେବେଳେ ଗ୍ରାମରେ କୌଣସି ଚିକିତ୍ସାର ବ୍ୟବସ୍ଥା ନଥିଲା। ଜେଜେମାଙ୍କର ବୁଢ଼ା ବଳିଆଙ୍କ ଉପରେ ଅଗାଧ ବିଶ୍ୱାସ। ସେ ମାନସିକ କରିଥାଆନ୍ତି। ଭାସ୍କରର ଆଖି ଭଲ ହୋଇଗଲେ ସେ ଘରଠାରୁ ଠାକୁର ମନ୍ଦିର ପର୍ଯ୍ୟନ୍ତ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ରାସ୍ତାରେ ଗାର କାଟି କାଟି ଯିବ ଓ ବାଡ଼ିରେ ଫଳିଥିବା ପାଟକପୁରା କଦଳୀ କାନ୍ଦିକ ବଳିଆକୁ ଲାଞ୍ଚ ଦିଆଯିବ - କିଏ କେତେପ୍ରକାର ଚିକିତ୍ସାର ବ୍ୟବସ୍ଥା କଲେ, କିଏ କହିଲା କରବୀରର କ୍ଷୀର ଲଗା, କିଏ କହିଲା ଘିଅ, ମହୁ, ଅଫିମ ମିଶା ଅଞ୍ଜନ ଲଗାଅ। କୌଣସିରେ ଭଲ ହେଲା ନାହିଁ। ଶେଷରେ ଆର୍ତ୍ତୁଂ ଗାଦିରେ ଥିବା ଜଣେ ବାବାଜୀ ବାଇଗଣ ଫୁଲର କଣ୍ଟା ସାହାଯ୍ୟରେ ଅପରେସନ୍ କଲେ। ଅପରେସନ୍ ଦିନ ଜେଜେମାଙ୍କର ବୁଢ଼ା ବଳିଆ ପାଖରେ ଆକୁଳ ମିନତୀ ଏବେ ମଧ୍ୟ ମୋର କର୍ଣ୍ଣ ଗହ୍ୱରରେ ପ୍ରତିଧ୍ୱନିତ ହେଉଛି। ବଳିଆ ଜେଜେମାଙ୍କ କଥା ଶୁଣିଲେ। ଅପରେଶନ୍‌ରେ ମୋର ଆଖି ଭଲ ହୋଇଗଲା ଆଉ ମୁଁ ସାଷ୍ଟଙ୍ଗ ପ୍ରଣିପାତ (ଦଣ୍ଡୁଆସି) ସହିତ ଠାକୁର ମନ୍ଦିରକୁ ଯାଇ ସ୍ୱଚକ୍ଷୁରେ ତାଙ୍କୁ ଦର୍ଶନ କଲି ଓ ଭୋଗ ବାଣ୍ଟିଲି। ବାଇଗଣ ଫୁଲ କଣ୍ଟାରେ ଆଖି ଅପରେସନ୍‌ରେ ମୁଁ ସୁସ୍ଥ ହୋଇ, ପାଠପଢ଼ି ମଣିଷ ହୋଇଛି, ଏହା ତାଙ୍କରି ଆଶୀର୍ବାଦ ନୁହେ ତ ଆଉ କାହାର ?

୧୯୪୭ ମସିହା ଏପ୍ରିଲ ମାସ। ସପ୍ତମ ଶ୍ରେଣୀ ପରୀକ୍ଷା ମାତ୍ର ଆଠ ଦିନ ଥାଏ। ହଠାତ୍ ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ଘରକୁ ଆସିଲି। ସେତେବେଳେ ବସନ୍ତ ରୋଗକୁ ଲୋକେ ଠାକୁରାଣୀ ଭାବି ରୋଗୀକୁ ଘର ଭିତରେ ରଖୁଥିଲେ। ପାଠ ପଢ଼ାପଢ଼ି ବନ୍ଦ। ବୁଢ଼ାବଳିଆକୁ ସ୍ମରଣ କରି ଘରେ ଶୋଇ ରହିଥାଏ। ସମସ୍ତେ ଭାବିଲେ ଭାସ୍କର ଆଉ ପରୀକ୍ଷା ଦେଇପାରିବ ନାହିଁ କି ସପ୍ତମ ଶ୍ରେଣୀର ବୃତ୍ତି ପାଇବ ନାହିଁ। ବୁଢ଼ା ବଳିଆଙ୍କ ମହିମାରୁ ୭ ଦିନ ଭିତରେ ଆରୋଗ୍ୟ ଲାଭ କରି ବିନା ପ୍ରସ୍ତୁତିରେ ପରୀକ୍ଷା ଦେଇ ୪ଟି ବିଷୟରେ ଡିଷ୍ଟଙ୍କସନ୍ ସହ ବୃତ୍ତି ପାଇଲି। ଏହା ସେହି ବୁଢ଼ା ବଳିଆଙ୍କ ଲୀଳା ନୁହେଁ ତ ଆଉ କାହାର ?

କମ୍ପୁ ବିଶ୍ୱାଳଙ୍କ ଆଗ୍ରହ ଓ ଗ୍ରାମବାସୀଙ୍କ ପ୍ରଚେଷ୍ଟା ରେ ମନ୍ଦିର ମରାମତି ହେଲା। ମନରେ ଗୋଟିଏ ଅବଶୋଷ ରହିଥାଏ ମୁଁ ଆମର ବୁଢ଼ା ବଳିଆଙ୍କ ପାଇଁ

କିଛି କରିପାରିଲି ନାହିଁ। ବଲାଙ୍ଗୀର ଓ ସମ୍ବଲପୁରରେ ମନ୍ଦିର ଚଟାଣ ଗୁଡ଼ିକରେ ପଡ଼ିଥିବା କାର୍ଡ଼ପା ପଥର ଦେଖି ମନରେ ଆଗ୍ରହ ଆସିଲା। ଏଥିରୁ କିଛି ପଥର ଗଲେ ଆମ ମନ୍ଦିର ଚଟାଣଟି ସର୍ବାଙ୍ଗ ସୁନ୍ଦର ହୋଇ ପରନ୍ତାନାହିଁ ? କିନ୍ତୁ କାର୍ଡ଼ପା ପଥରର ଉତ୍ପତ୍ତିସ୍ଥଳ ମଧ୍ୟପ୍ରଦେଶର ମହାସମ୍ୱନ୍ଦସ୍ଥ ମହାନଦୀ ଗର୍ଭରେ। ପଥରର ଦାମ ଖୁବ୍ ଅଳ୍ପ। କିନ୍ତୁ କାହିଁ ମଧ୍ୟ ପ୍ରଦେଶର ମହାସମ୍ୱନ୍ଦ ଓ କାହିଁ ବାଲେଶ୍ୱର ଜିଲାର ଏକ ପଲ୍ଲି ଗ୍ରାମ ଗୁଡ଼। ଏତେ ବାଟ ପଥର ଯିବ କିପରି ? ସେ ତାର ବ୍ୟବସ୍ଥା କଲେ - ଆସିଲା ଗୋଟିଏ ଟ୍ରିପ୍ କିନ୍ତୁ ସାତସମୁଦ୍ରକୁ ଶଙ୍ଖେପାଣି। ଦରକାର ହେଲା ଆଉ ଦୁଇ ଟ୍ରିପ୍। ତାଙ୍କର ଇଚ୍ଛା ଅନୁସାରେ ଆପେ ଆପେ ଆସି ତାଙ୍କ ପାଖରେ ପହଞ୍ଚିଲା। - ତାଙ୍କର ବଜ୍ର ସଂକଳ୍ପ ଅନ୍ୟଥା ହେବାର ନୁହେଁ। ବହୁ ଦିନରୁ ମନ୍ଦିର ମଧ୍ୟରେ ଥିବା ବର ଓ ପିଝଳ ବୃକ୍ଷର ଘରିପଟେ ପକ୍‌କା ଆସନ ହେଲେ କର୍ମକ୍ଳାନ୍ତ ଯାତ୍ରୀମାନଙ୍କର ଆଶ୍ରୟ ସ୍ଥଳ ହୁଅନ୍ତା ମନ୍ଦିରଟିର ବୟସ ଶହେ ବର୍ଷରୁ ଅଧିକ ହେଲାଣି, ତାର ଚଟାଣଟି ମାର୍ବଲ ପଥରରେ ନିର୍ମିତ ହେଲେ ସୁନ୍ଦର ଦିଶନ୍ତ। ଏଭଳି ବହୁ ଭାବନା ଆସିଛି। ଯେତେବେଳେ ଯେଉଁ ବଦାନ୍ୟ ବ୍ୟକ୍ତିଙ୍କୁ ଅନୁରୋଧ କରାଯାଇଛି ସେ ମନା କରିନାହାନ୍ତି। ଯେତେବେଳେ ବଳିଆ ଚାହୁଁଛନ୍ତି ତାହା କାର୍ଯ୍ୟରେ ପରଣତ ହୋଇଛି। ଯଦି କୌଣସି କାର୍ଯ୍ୟରେ ବିଳମ୍ବ ଘଟୁଛି ତାହା ତାଙ୍କର ଇଚ୍ଛା ବୋଲି ଭାବିବାକୁ ହେବ। ତାଙ୍କର ଇଚ୍ଛା ହିଁ ସର୍ବଶେଷ।

ଗମନାଗମନର ଅସୁବିଧା ହେତୁ ଦୂର ଦୂରାନ୍ତରୁ ଯାତ୍ରୀମାନେ ଆସିପାରୁ ନଥିଲେ। କିନ୍ତୁ ଯେ ଥରେ ଆସିଛି ସେ କେବେ ଭୁଲିପାରି ନାହିଁ। ତାଙ୍କ ପାଖକୁ ଟାଣି ନେଇଛି। ବର୍ତ୍ତମାନ ଗାଁ ବାଟ ଦେଇ ପକ୍‌କା ସଡ଼କଟିଏ ତିଆରି ହେଲାଣି। ବାସୁଦେବପୁର ଠାରୁ ସୋରୋ ପର୍ଯ୍ୟନ୍ତ ଏହି ରାସ୍ତା ଦେଇ ବସ୍ ଚଳପ୍ରଚଳ ମଧ୍ୟ ହେଲାଣି। ମନ୍ଦିରର ମରାମତି ଓ ଉନ୍ନତି ସଙ୍ଗେ ସଙ୍ଗେ ବଡ଼ଦାଣ୍ଡର ଉନ୍ନତି ମଧ୍ୟ ହୋଇଛି। ପୁରୀ ରଥଦାଣ୍ଡ ଭଳି ବଳଦେବଙ୍କ ମନ୍ଦିରଠାରୁ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ଏକ ସିମେଣ୍ଟ କଙ୍କ୍ରିଟ୍ ରାସ୍ତା ମଧ୍ୟ ତିଆରି ହେଲାଣି। ଅଳ୍ପଦିନ ତଳେ ମନ୍ଦିରର ରକ୍ଷଣାବେକ୍ଷଣର ଭାର ଦେବୋତ୍ତର ବିଭାଗକୁ ଯାଇଛି। ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ବିଭାଗ ବଳଦେବ ମନ୍ଦିର, କ୍ଷୀରଚୋରା ଗୋପୀନାଥ ମନ୍ଦିର ଓ

ପଞ୍ଚଲିଙ୍ଗେଶ୍ୱର ମନ୍ଦିରକୁ ଏକ ତ୍ରିଭୂଜକାର ପର୍ଯ୍ୟଟନ ସ୍ଥଳିରେ ପରିଣତ କରିବାକୁ ଚାହୁଁଛନ୍ତି । ଏହି ଯୋଜନାରେ ଠାକୁରଙ୍କ ପୋଖରୀ ଆଡ଼ିରେ ଏକ ପାନ୍ଥଶାଳା ନିର୍ମାଣ ପୋଖରୀରେ ନୌ-ବିହାର, ପୋଖରୀ ଆଡ଼ିର ଏକ ସୁରମ୍ୟ ଉଦ୍ୟାନ ନିର୍ମାଣ ଅନ୍ତର୍ଭୁକ୍ତ ।

ଏହି ତୀର୍ଥର ଉନ୍ନତି କୌଣସି ବ୍ୟକ୍ତିବିଶେଷଙ୍କ ଉଦ୍ୟମର ଫଳ ନୁହେଁ । ଏହା ଯେପରି ଗଣତାନ୍ତ୍ରିକ ପଦ୍ଧତିରେ ସମୂହ ଚେଷ୍ଟା ଓ ବଳଦେବଙ୍କ ଅଦୃଶ୍ୟ ଇଙ୍ଗିତରେ ସମ୍ଭବ ହେଉଛି ।



## ଚତୁର୍ଥ ପରିଚ୍ଛେଦ

# ଅଭୁଲା ସ୍ମୃତି

(ଅନନ୍ତପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ଶତବାର୍ଷିକ ଉତ୍ସବ ଉପଲକ୍ଷେ
ଲିଖିତ ଓ *ଶତବାର୍ଷିକ ସ୍ମରଣିକାରେ ପ୍ରକାଶିତ)*

ଅନନ୍ତପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଛରିବର୍ଷର ସ୍ମୃତି ସଙ୍ଗେ ସଙ୍ଗେ ସୁଦୂର ଅତୀତର ଛବିଗୁଡ଼ିକ ମାନସପଟରେ ଆଙ୍କି ହୋଇଯାଇଛି। ଅତୀତ ଉନ୍ମୋଚନର ଇନ୍ଧନ ପାଇ ମଉଳା ପାଉଁଶ ତଳୁ ଅଗ୍ନି କଣିକାଗୁଡ଼ିକ ତେଜି ଉଠୁଛନ୍ତି। ମନର ପରଦା ଉପରେ ଦେଖାଯାଉଛନ୍ତି ୪୦ ବର୍ଷ ତଳର କେତେ ସାଙ୍ଗ, ଶିକ୍ଷକଙ୍କର ଛବି। କିଏ କୁଆଡ଼େ ଗଲେଣି। ଅଧିକାଂଶଙ୍କ ସହିତ ବହୁତଦିନ ହେବ ସାକ୍ଷାତ୍ ହୋଇପାରିନାହିଁ। ୧୯୪୪ ମସିହା ଜାନୁୟାରୀ ମାସରେ ମୋ ଭଳି ଆଉ ୪୦ ଜଣ ଛାତ୍ର ୪ର୍ଥ ଶ୍ରେଣୀରେ ନାମ ଲେଖାଇଥିଲେ। କେତେ ଆଶା ଆକାଂକ୍ଷା ଉଚ୍ଚଶିକ୍ଷାର ଅଭିଳାଷ ନେଇ ଏହି ଅନୁଷ୍ଠାନରେ ସମସ୍ତେ ଯୋଗ ଦେଇଥିଲେ। ଝରଣା ନଦୀ ସହିତ ମିଶି ସମୁଦ୍ରରେ ଲୀନ ହେବାର ଆଶା ନେଇ ପର୍ବତଶିଖରରୁ ଲମ୍ଫ ପ୍ରଦାନ କରିଥାଏ। କିନ୍ତୁ କେତେ ଝରଣା ଜଳାଭାବ ବା ମରୁପଥରେ ନିଜର ସତ୍ତା ହରାଇ ସମୁଦ୍ର ପ୍ରାପ୍ତି ଦୂରେ ଥାଉ, ନଦୀରେ ଲୀନ ହେବା ପୂର୍ବରୁ ବିଲୀନ ହୋଇ ଯାଆନ୍ତି। ସେହିପରି କେତେକ ସାଙ୍ଗ ଅଧାରାସ୍ତାରେ ରହିଯାଇଛନ୍ତି। ଅନେକ ପରଦାର ଅନ୍ତରାଳରେ ଲୁଚି ଗଲେଣି। ସୁଦୂର ଅତୀତ ମେଘାଚ୍ଛନ୍ନ। ଯେଉଁ କେତେଜଣ ସାଙ୍ଗଙ୍କ ମୁହଁ ଦେଖାଯାଉଛି ସେମାନଙ୍କ ଭିତରୁ କିଏ ଶିକ୍ଷକ, ଅଧ୍ୟାପକ, ଡାକ୍ତର, ଇଞ୍ଜିନିୟର, ବ୍ୟବସାୟୀ ବା ରାଜନୀତିକ ବ୍ୟକ୍ତି ହିସାବରେ ନିଜର ପ୍ରତିଷ୍ଠା ଅର୍ଜନ କରି ପାରିଛନ୍ତି। ଆଉ କେତେକ ଛାୟାଜନନୀର ବିଳୟ ଭିତରେ ନିଜକୁ ହଜେଇ ଦେଲେଣି।

ଗୁଡ଼ ନିମ୍ନ ପ୍ରାଥମିକ ବିଦ୍ୟାଳୟରୁ ତୃତୀୟ ଶ୍ରେଣୀରେ ବୃତ୍ତି ପାଇ ୧୯୪୪ ମସିହା ଜାନୁୟାରୀ ମାସରେ ଯେତେବେଳେ ଅନନ୍ତପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଯୋଗଦେଲି, ଶୁଣିଲି ସ୍କୁଲରେ ଏକ ମୃଦୁ ଗୁଞ୍ଜନ। ଜଣେ ବୃତ୍ତିଧାରୀ ଛାତ୍ର ଆଜି

ସ୍କୁଲରେ ଯୋଗ ଦେଇଛି, ମୋର ପ୍ରାଇମେରୀ ଶିକ୍ଷକ କୈଳାସ ଚନ୍ଦ୍ର ବେହେରା ମୋ ସହିତ ନାମ ଲେଖାଇବାକୁ ଆସିଥାଆନ୍ତି। ତାଙ୍କର ଛାତି କୁଣ୍ଢେମୋଟ। ଜଣେ ଛାତ୍ର ତାଙ୍କର ସ୍ୱପ୍ନ ଓ ସାଧନାକୁ ସାର୍ଥକ କରି ଆଜି ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଯୋଗଦେବାକୁ ଆସିଛି। ଆଜି ଭଳି ସେତେବେଳେ ଏତେ ଗୁଡ଼ିଏ ବୃତ୍ତି ନଥିଲା। ଅନନ୍ତପୁର ମଧ୍ୟ-ଇଂରାଜୀ ବିଦ୍ୟାଳୟ ଭଳି ସେ ସମୟରେ ଉଚ୍ଚକୋଟୀର ଆଦର୍ଶ ବିଦ୍ୟାଳୟଟିରେ ମଧ୍ୟ ପ୍ରତି ଶ୍ରେଣୀରେ ଜଣେ ବୃତ୍ତିଧାରୀ ଛାତ୍ର ଦେଖିବାକୁ ମିଳୁ ନଥିଲେ। ପ୍ରଧାନ ଶିକ୍ଷକ ଥାଆନ୍ତି ଶ୍ରୀ ମୁକ୍ତିକାନ୍ତ ରାୟ। ଗୋରା ଟକ୍ ଟକ୍ ଚେହେରା। କଳା ମଚ୍‌ମଚ୍ ଯୋତା ପିନ୍ଧି ହେଡ଼ମାଷ୍ଟର ଚାଲିଗଲେ ମନରେ ଶଙ୍କାଜାତ ହୁଏ। ମୋତେ ଛାତ୍ରାବାସରେ ସ୍ଥାନ ମିଳିଲା ତାଙ୍କରି କୋଠରୀ ପାଖରେ। ମାତ୍ର ୭ ଦିନ ଅବସ୍ଥାନ ପରେ ମୁଁ ଜାଣିପାରିଲି ବାହାରକୁ ଗମ୍ଭୀର ଦେଖା ଯାଉଥିବା ହେଡ଼ମାଷ୍ଟରଙ୍କ ହୃଦୟ କେତେ କୋମଳ। ଇଂରାଜୀ କିଭଳି ପଢ଼ିବାକୁ ହେବ, କେଉଁ ଦିଗ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ, ଇଂରାଜୀ ଭାଷାର ସମୃଦ୍ଧି ଓ ଏହି ଭାଷା ଉପରେ ନିଜର ଦଖଲ ନ ଆସିଲେ ଜୀବନରେ ଉନ୍ନତି କରି ହେବ ନାହିଁ ବୋଲି ସେ ମୋତେ ପ୍ରଥମେ କହିଥିଲେ। ସେତେବେଳେ ୧୦ ବର୍ଷର କୋମଳମତି ବାଳକ ପାଖରେ ଜୀବନସଂଗ୍ରାମ ପାଇଁ ଏକ ଅଦମ୍ୟ ଆକାଂକ୍ଷା ବୋଧହୁଏ, ସେ ପ୍ରଥମେ ଦେଖିପାରିଥିଲେ। କିନ୍ତୁ ମୋର ଦୁର୍ଭାଗ୍ୟ ଯେ ମାତ୍ର ୧୮ ମାସ ପରେ ସେ ସ୍କୁଲ ଛାଡ଼ି ଚାଲିଗଲେ। ସେ ଚାଲିଗଲା ପରେ ମୁଁ ତାଙ୍କୁ ଇଂରାଜୀରେ ଗୋଟିଏ ଚିଠି ଲେଖିଥିଲି। ମାତ୍ର ୧୮ ମାସ ଇଂରାଜୀ ଅଧ୍ୟୟନ ପରେ ଇଂରାଜୀରେ ମୋର ଚିଠି ଲେଖା ତାଙ୍କ ଉପରେ କି ରେଖାପାତ କଲା ଜାଣେନା, ସେ ସଙ୍ଗେ ସଙ୍ଗେ ସରଳ ଇଂରାଜୀ ଭାଷାରେ ଉତ୍ତରଟିଏ ଦେଲେ। ମୋର ଚିଠିର ଭ୍ରମ ସଂଶୋଧନ କରିବା ସଙ୍ଗେ ସଙ୍ଗେ ଚିଠି ଲେଖାରେ କେଉଁ ଦିଗ ପ୍ରତି ନଜର ଦେବାକୁ ହେବ ତାହା ସେ ଲେଖି ପଠାଇଥିଲେ। ଖାଲି ସେତିକି ନୁହେଁ ତାଙ୍କର ଜଣେ ଶାଳକ ଉମାକାନ୍ତ ମହାନ୍ତି ଯେ କି ସେତେବେଳେ ସ୍କୁଲରେ ୩ୟ ଶିକ୍ଷକ, ତାଙ୍କ ପାଖକୁ ମୋର ପ୍ରତିଭା ବିଷୟ ଉଲ୍ଲେଖ କରି ଓ ସେହି ପ୍ରତିଭାର କିଭଳି ବିକାଶ ଘଟିବ ସେ ପ୍ରତି ନଜର ଦେବାକୁ ଅନୁରୋଧ କରି ଚିଠି ମଧ୍ୟ ଲେଖିବାକୁ ଭୁଲି ନଥିଲେ। ପରବର୍ତ୍ତୀ କାଳରେ ଉଚ୍ଚ ଆସନରେ ପ୍ରତିଷ୍ଠିତ ହେବାପରେ ବହୁବାର ତାଙ୍କ ସହିତ ସାକ୍ଷାତ୍ ହୋଇଛି। ସେ

ମଧ୍ୟ ଶିକ୍ଷକତା ଛାଡ଼ି ଅନ୍ୟ ଚାକିରିରେ ଯୋଗ ଦେଇ ଶେଷରେ ହରିଜନ ଆଦିବାସୀ ବିଭାଗର ଅଣ୍ଡର ସେକ୍ରେଟେରୀ ପଦବୀରୁ ଅବସର ଗ୍ରହଣ କଲେ। ସବୁଦିନ ତାଙ୍କର ଅନାବିଳ ସ୍ନେହରୁ କେବେ ବଞ୍ଚିତ ହୋଇନି।

୧୯୪୫ ମସିହା ମେ ମାସ। ବାର୍ଷିକ ପରୀକ୍ଷା ସରିଯାଇଥାଏ। ସ୍କୁଲ ବନ୍ଦ ହୋଇ ନଥାଏ। ପ୍ରତିଦିନ ଶ୍ରେଣୀ ଶିକ୍ଷକ ଉପସ୍ଥାନ ନେବାର ଘଣ୍ଟାଏ ପରେ କ୍ଲାସ୍ ଛୁଟି ହୁଏ। ଷଣ୍ମାସିକ ପରୀକ୍ଷା ଖାତା ଦେଖିବା ପରେ ଶିକ୍ଷକମାନେ ଖାତା ପିଲାମାନଙ୍କୁ ଦେଖାନ୍ତି ଓ ପ୍ରତ୍ୟେକ ପିଲାର ଭୁଲ୍ ତ୍ରୁଟି ଦର୍ଶାନ୍ତି। କିନ୍ତୁ ବାର୍ଷିକ ପରୀକ୍ଷା ଖାତାର ଲେଖା ବିଷୟ ଗୁପ୍ତ ରଖାଯାଏ। ଦିନେ ଆମର ଶ୍ରେଣୀ ଶିକ୍ଷକ ଉମାକାନ୍ତ ମହାନ୍ତି ନିଜକୁ ସମ୍ଭାଳି ନ ପାରି କହିପକାଇଲେ ମୁଁ ଏତେ ଦିନ ପରେ ଜଣେ ପିଲାର ରଚନା ଦେଖିଲି ଓ ତାକୁ ୨୦ ରୁ ୨୦ ନମ୍ବର ଦେଇଛି। ଜଣେ ୫ମ ଶ୍ରେଣୀ ଛାତ୍ର ଏଭଳି ମୌଳିକ ଚିନ୍ତାଧାରା ଦେଇ ରଚନା ଲେଖିପାରେ ଏହା ମୋର କଳ୍ପନା ବାହାରେ। ସମସ୍ତେ ପରସ୍ପରର ମୁହଁକୁ ଚାହିଁଲୁ। ହଠାତ୍ ସାରଙ୍କଠାରୁ କି ଇଙ୍ଗିତ୍ ପାଇଲେ କେଜାଣି ସମସ୍ତଙ୍କର ଦୃଷ୍ଟି ମୋ ଉପରେ ନିବଦ୍ଧ ହୋଇଗଲା। ସମସ୍ତେ ସେଦିନ ମୋତେ ପଚାରୁଥିଲେ "ଭାସ୍କର ତୁ ଏଭଳି କି ରଚନା ଲେଖିଲୁ ଯେ ସାର୍ ତୋତେ ୨୦ରୁ ୨୦ ନମ୍ବର ଦେଲେ"। ରଚନାଟି ଥିଲା "କୁକୁରର ଆତ୍ମକାହାଣୀ"। ପରୀକ୍ଷା ହଲ୍‌ରେ ବସି ଭାବିଲି କଣ ଲେଖିବି ? ସାଧାରଣ କୁକୁରର ଜୀବନୀ କାର୍ଯ୍ୟ ଓ ମୃତ୍ୟୁ ବିଷୟ ବର୍ଣ୍ଣନା କରି ରଚନା ଲେଖିବାକୁ କଲମ ଚାଲିଲାନି। ୩ୟ ଶ୍ରେଣୀ ବାଳ ସହରେ ବହିରେ ଗଳ୍ପଟିଏ ପଢ଼ିଥିଲି। ଜଣେ ଧନୀ ଲୋକ ଘୋଡ଼ାରେ ଚଢ଼ି ଟଙ୍କା ଥଳୀଟିଏ ଧରି ଫେରୁଥିଲେ। ତାଙ୍କ ଆଦରର କୁକୁରଟି ତାଙ୍କ ପଛେ ପଛେ ଆସୁଥାଏ। ବାଟରେ ଧନୀ ଲୋକଟି ଏକ ପୁଷ୍କରଣୀ ପାଖରେ ସ୍ନାନ ପାଇଁ ଅବତରଣ କଲେ। କିନ୍ତୁ ଭୁଲରେ ଟଙ୍କା ଥଳୀଟି ଗଛମୂଳେ ଛାଡ଼ି ଦେଇ ଯିବାକୁ ବାହାରିବାରୁ କୁକୁର ତାଙ୍କର ପଥରୋଧ କଲା। ବହୁଭାବରେ କୁକୁରକୁ ଇଙ୍ଗିତ ଦେଲେ ମଧ୍ୟ ସେ ଶୁଣିଲା ନାହିଁ। ଧନୀ ଲୋକ ଜଣକ ଭାବିଲେ ତାଙ୍କର ଆଦରର କୁକୁରଟି ପାଗଳ ହୋଇଯାଇଛି। ସଙ୍ଗେ ସଙ୍ଗେ ବନ୍ଧୁକ ବାହାର କରି ତାକୁ ଗୁଳି କରି ଦେଇ ଘୋଡ଼ାରେ ବସି ଚାଲିଗଲେ। ଘରକୁ ଫେରି ଟଙ୍କା ଥଳୀଟି ନଦେଖି ସେ ଦୁଃଖରେ ଅତ୍ୟନ୍ତ

ମ୍ରିୟମାଣ ହୋଇ ସଙ୍ଗେ ସଙ୍ଗେ ପ୍ରତ୍ୟାବର୍ତ୍ତନ କରି ଦେଖିଲେ ଟଙ୍କା ଥଳୀଟିକୁ କାମୁଡ଼ି ଧରି କୁକୁରଟି ରକ୍ତାକ୍ତ ଅବସ୍ଥାରେ ପଡ଼ିଛି। ମାଲିକକୁ ଦେଖିବାମାତ୍ରେ ନିଜର କର୍ତ୍ତବ୍ୟ ସମ୍ପାଦନ କରିପାରିଥିବାର ତୃପ୍ତିରେ କୁକୁରଟିର ବଦନ କ୍ଷଣକ ପାଇଁ ପ୍ରଫୁଲ୍ଲିତ ହୋଇଉଠିଲା। ସଙ୍ଗେ ସଙ୍ଗେ ତାର ପ୍ରାଣବାୟୁ ଉଡ଼ିଗଲା। ଏହି ଘଟଣାଟିକୁ ଆଧାର କରି ମୁଁ କୁକୁରର ଆତ୍ମ ଜୀବନୀ ଲେଖିଥିଲି। ଏହା ମୋର ଶିକ୍ଷକଙ୍କ ଉପରେ ଏଭଳି ପ୍ରଭାବ ପକାଉଥିଲା ଯେ ସେ ମୋର ପ୍ରଶଂସା ବହୁ ଛାତ୍ର ଓ ଶିକ୍ଷକଙ୍କ ଆଗରେ କହିବା ସଙ୍ଗେ ସଙ୍ଗେ ପଢୁଥିବା ବିଷୟବସ୍ତୁକୁ କର୍ମକ୍ଷେତ୍ରରେ ପ୍ରୟୋଗ କରିବା ପାଇଁ ଉତ୍ସାହ ଦେଇଛନ୍ତି। ବୋଧହୁଏ ତାଙ୍କରି ଆଶୀର୍ବାଦର ଫଳ ସ୍ୱରୂପ ମୋତେ ଇଞ୍ଜିନିୟର ପଦବୀ ମିଳିଛି ଓ ବହିରେ ପଢ଼ିଥିବା ପାଠକୁ କିଭଳି କାର୍ଯ୍ୟକ୍ଷେତ୍ରରେ ପ୍ରୟୋଗ କରି ଦେଶକୁ ସମୃଦ୍ଧିଶାଳୀ କରିବାକୁ ହେବ ସେଥିପାଇଁ ପ୍ରେରଣା ଯୋଗାଇ ଆସିଛି।

୧୯୪୫ ମସିହା ଅକ୍ଟୋବର ମାସ। କାଂଶ ବଂଶ ନଦୀରେ ଆସିଥାଏ ପ୍ରବଳ ବନ୍ୟା। ଦୁର୍ଗାପୂଜା ଛୁଟି ପରେ ସ୍କୁଲ ଖୋଲିଲାବେଳକୁ ଘରିଆଡ଼ ଜଳାର୍ଣ୍ଣବ। ଗୁଡ଼ ଗ୍ରାମ ଠାରୁ ଅନନ୍ତପୁର ପ୍ରାୟ ଛଅ କି.ମି. ରାସ୍ତା। ରାସ୍ତା ଉପରେ ଏକ ମିଟରରୁ ଦୁଇ ମିଟର ପାଣି। ଜେଜେ ମା ବଞ୍ଚିଥାନ୍ତି। ତାଙ୍କର ଏକାନ୍ତ ଜିଦ୍ ବନ୍ୟା ଛାଡ଼ୁ ଯିବୁ। ମୋର ଜିଦ୍ ମୁଁ ଯିବି। ଗୋଟାଏ ଦିନ ମଧ୍ୟ ଅନୁପସ୍ଥିତ ହେବିନି। ସାଙ୍ଗରେ ମୋର ଭିଣୋଇ ନକୁଳ ବିଶ୍ୱାଳ ଓ ଶିକ୍ଷକ ଶଙ୍କର୍ଷଣ ଦାଶ। ସଡ଼କରେ ବହୁତ ଘାଇ, ମଝିରେ ମୁଁ ପୂରା ବୁଡ଼ିଯାଏ। ଭିଣୋଇ ମୋତେ ଟେକି ଦିଅନ୍ତି। ଏଭଳି ଅବସ୍ଥାରେ ଦୀର୍ଘ ଛଅ କି.ମି. ପଥ ଅତିକ୍ରମ କରି ୧୦ ଘଣ୍ଟା ପୂର୍ବରୁ ସ୍କୁଲରେ ପହଞ୍ଚିଲୁ। ସମସ୍ତେ ଆଶ୍ଚର୍ଯ୍ୟ ହେଲେ। ଆମେ କିପରି ଆସିଲୁ? ଶଙ୍କର୍ଷଣ ବାବୁ କହିଲେ, ଭାସ୍କରର ଆଗ୍ରହ ଦେଖି ମୁଁ ମନା କରିପାରିଲିନି। ୧୯୪୬ ମସିହାରେ ବାର୍ଷିକ ପରୀକ୍ଷାରେ ୧୦୦ରୁ ୧୦୦ ଉପସ୍ଥାନ ପାଇଁ ମୋତେ ଏକ ସ୍ୱତନ୍ତ୍ର ପୁରସ୍କାର ମିଳିଲା।

୧୯୪୬ ମସିହା ଡିସେମ୍ବର ମାସ ଷଷ୍ଠ ଶ୍ରେଣୀ ଷଣ୍ମାସିକ ପରୀକ୍ଷା ଆଉ ଅଳ୍ପଦିନ ବାକି ଥାଏ। ଛାତ୍ରାବାସର ବଗିଚାରେ କୋବି, ବିଲାତି ବାଇଗଣ, ମଟର, ମୂଳା ଆଦି ଲଗାଯିବାର ସମୟ। ଛାତ୍ରାବାସର ପିଲାମାନେ ବଗିଚାରେ ବିଭିନ୍ନ ପରିବା

ଉତ୍ପାଦନ କରନ୍ତି ଓ ସବୁ ପରିବା ଛାତ୍ରାବାସର ମେସ୍‌ରେ ଖର୍ଚ୍ଚ ହୁଏ। ପ୍ରତିଦିନ ୪ ଘଣ୍ଟାରୁ ୫ ଘଣ୍ଟା ବଗିଚା କାମ, ୫ ଘଣ୍ଟାରୁ ୬ ଘଣ୍ଟା ଖେଳ। ସବୁପିଲାଙ୍କ ପାଇଁ ବଗିଚା କାମ ବାଧ୍ୟତାମୂଳକ। ତା ସାଙ୍ଗକୁ ବଗିଚାର ଦାୟିତ୍ୱରେ ଥାଆନ୍ତି ସେକେଣ୍ଡ ମାଷ୍ଟର ଶଙ୍କର୍ଷଣ ଦାଶ। ମୁଁ ଛାତ୍ରାବାସରୁ ଲୁଚି କରି ଚାଲିଯାଇ ସ୍କୁଲ ପଛପଟେ ପରୀକ୍ଷା ପାଇଁ ପଢୁଥାଏ। କେହି ଜଣେ କହି ଦେବାରୁ ମୋତେ ସଙ୍ଗେ ସଙ୍ଗେ ତଲବ ହେଲା। ଦଣ୍ଡ ହେଲା, କୋବିରେ ଦିଆଯିବାକୁ ଥିବା ଗଦାଏ ଖତ ଚଲାଇବାକୁ ହେବ। ଶଙ୍କର୍ଷଣ ବାବୁ ଭୂଗୋଳ ପଢ଼ାନ୍ତି। ପୃଥିବୀ ଭୂଗୋଳ ବହିର ବିଭିନ୍ନ ସ୍ଥାନର ନାମ ଗୁଡ଼ିକ ଖାଲି ମୁଖସ୍ଥ କଲେ ହେବ ନାହିଁ। ନିର୍ଭୁଲ ଭାବେ ଉଚ୍ଚାରଣ ସହିତ ବନାନ ଶୁଦ୍ଧି ସହ କଳା ପଟାରେ ଲେଖିବାକୁ ପଡ଼ିବ। ତାପର ଦିନ ଥାଏ ଭୂଗୋଳ ପିରିଅଡ଼। ମୁଁ ପ୍ରମାଦ ଗଣୁଥାଏ। କାଲି ନିଶ୍ଚୟ ସାର୍ ଏଭଳି ପ୍ରଶ୍ନ କରିବେ ଯାହାର ଉତ୍ତର ମୁଁ ଦେଇ ପାରିବିନି। ସତକୁ ସତ ତାପରଦିନ ମୋତେ ପ୍ରଶ୍ନ ହେଲା ମେସୋପାଟାମିଆର ପ୍ରଧାନ ନଦୀ ଦୁଇଟି ମିଳିତ ହେବା ପରେ କି ନାମ ଧାରଣ କରି କେଉଁଠାରେ ପଡ଼ିଛନ୍ତି, ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି ମେସୋପାଟାମିଆର ପ୍ରଧାନ ନଦୀ 'ଟାଇଗ୍ରିସ୍' ଓ 'ଇଉଫ୍ରେଟିସ୍' ମିଳିତ ହେବାପରେ 'ଶତଏଲ ଆରବ'ନଦୀ ନାମ ଧାରଣ କରି ପାରସ୍ୟ ଉପସାଗରରେ ପଡ଼ିଛନ୍ତି। ବହିର ଟାଇଗ୍ରିସ୍ ଓ ଇଉଫ୍ରେଟିସ୍ ନାମ ଦୁଇଟି ବଡ଼ ବଡ଼ ଅକ୍ଷରରେ ଲେଖାହୋଇଥାଏ। କିନ୍ତୁ "ଶତଏଲ ଆରବ" ନାମଟି ଅତି ସାଧାରଣ ଅକ୍ଷରରେ ଲେଖାହୋଇଥିବାରୁ ସାଧାରଣ ଛାତ୍ରଙ୍କର ଦୃଷ୍ଟିକୁ ସାଧାରଣତଃ ଆସିନଥାଏ। ସେଦିନ କ୍ଲାସ୍ ସରିବା ପରେ ଶଙ୍କର୍ଷଣ ବାବୁ ବହୁ ଶିକ୍ଷକ ଓ ଛାତ୍ରଙ୍କୁ କହିଛନ୍ତି ମୁଁ ଭାସ୍କରକୁ ଭୂଗୋଳରେ ପାରିଲିନି। ତାର ସବୁ ମୁଖସ୍ତ, ପରୀକ୍ଷାରେ ତାର ଖାତାରେ ଗୋଟାଏ ନାଲି ଗାର ମାରି ହେଉନି। ପଢ଼ିବାକୁ ବହି ନାହିଁ, ଲେଖିବାକୁ କାଗଜ ନାହିଁ, ଅନ୍ୟଠାରୁ ମାଗି ସେ ବହି ପଢୁଛି। କିନ୍ତୁ ସବୁ ପାଠ ଯେପରି ତାର ଜଳବତ ତରଳମ୍। ଏଭଳି ଅଧ୍ୟବସାୟୀ ଛାତ୍ର ନିଶ୍ଚୟ ଦିନେ ଉନ୍ନତିର ଉଚ୍ଚତମ ସୋପାନକୁ ଯାଇପାରିବ। ଏଥିରେ ମୋର ସନ୍ଦେହ ନାହିଁ।

୧୯୪୬ ମସିହା ବସନ୍ତ ଋତୁ। ସ୍କୁଲରେ ଏକ ସ୍ୱେଚ୍ଛାସେବକ ବାହିନୀ ଗଠନ କରିଥାନ୍ତି, ଶିକ୍ଷକ ନୀଳମଣି ପୁହାଣ। ଫିଡ଼ର ସ୍କୁଲ ପଛ ପଟେ ଥାଏ ଗୋଟିଏ ପକ୍କାଆ

ପୋଖରୀ। ନାମ ବାଉ ପୋଖରୀ। ଏହା ମଶା ଓ ଯୋକଙ୍କର ଗୋଟିଏ ଗନ୍ତାଘର। ସ୍ଥିର ହେଲା ଏହା ସଫା ହୋଇ ଛାତ୍ରାବାସର ପିଲାଙ୍କ ବ୍ୟବହାର ଉପଯୋଗୀ କରାଯିବ। ନେତୃତ୍ୱ ନେଲେ ନୀଳମଣି ବାବୁ। ୨/୩ଟି ରବିବାର ରେ ପୋଖରୀ ସଫା ହୋଇଗଲା। ଏହାର ପ୍ରଭାବ ସେ ଅଞ୍ଚଳରେ ଏଭଳି ପଡ଼ିଲା ଯେ ଆଖପାଖରେ ସବୁ ପୋଖରୀ, ପିଲାମାନଙ୍କ ଉତ୍ସାହ ଓ ପାର୍ଶ୍ୱବର୍ତ୍ତୀ ଗାଁ ଲୋକଙ୍କ ସହଯୋଗ ଫଳରେ ସଫା ହୋଇଗଲା। ନୀଳମଣି ବାବୁଙ୍କ ଏହି ସେବା ଓ ଗଠନମୂଳକ କାର୍ଯ୍ୟ ପାଇଁ ଆଗ୍ରହ ତାଙ୍କୁ ଦିନେ ଅନନ୍ତପୁର ଅଞ୍ଚଳର ଏକ ସମାଜସେବୀ ହିସାବରେ ପ୍ରତିଷ୍ଠିତ କରିପାରିଲା। ପରବର୍ତ୍ତୀ କାଳରେ ଅନନ୍ତପୁରରେ ବାଳକ ହାଇସ୍କୁଲ, ବାଳିକା ହାଇସ୍କୁଲ, ସୋରୋ ଓ ଅନନ୍ତପୁର କଲେଜ ପ୍ରତିଷ୍ଠା ସହ ଓତଃପ୍ରୋତ ଭାବେ ଜଡ଼ିତ ହୋଇ ସେହି ଅନୁଷ୍ଠାନ ଗୁଡ଼ିକର ବହୁ ଉନ୍ନତି କରିବାରେ ସେ ସହାୟକ ହୋଇଛନ୍ତି।

୧୯୪୭ ମସିହା ଏପ୍ରିଲ ମାସ ୭ମ ଶ୍ରେଣୀ ବାର୍ଷିକ ପରୀକ୍ଷା ଥାଏ, ଆଉ ମୋଟେ ୮/୯ ଦିନ। ସେ ସମୟର ୭ମ ଶ୍ରେଣୀର ଶେଷ ପରୀକ୍ଷା ବର୍ତ୍ତମାନର ମେଟ୍ରିକ୍ ପରୀକ୍ଷା ଭଳି ଗୁରୁତ୍ୱର ସହିତ ସମ୍ପାଦିତ ହେଉଥିଲା। ମାଇନର ପରୀକ୍ଷାରେ ପାଶ୍ କରିଥିବା, ଛାତ୍ରମାନଙ୍କ ନାମ ଖବରକାଗଜରେ ପ୍ରକାଶିତ ହେଉଥିଲା। ହଠାତ୍ ମୁଁ ବସନ୍ତ ରୋଗରେ ପୀଡ଼ିତ ହୋଇପଡ଼ିଲି। ସ୍କୁଲରେ ସମସ୍ତଙ୍କ ମନରେ ଏକ ବିଷାଦର ଛାୟା ଖେଳିଗଲା। ସବୁଠାରୁ ବେଶୀ ଦୁଃଖିତ ହେଲେ ହେଡ଼ମାଷ୍ଟର ବୈନତେୟ ପଣ୍ଡା, ସେକେଣ୍ଡ ମାଷ୍ଟର ପ୍ରାଣବନ୍ଧୁ କର ଓ ୩ୟ ଶିକ୍ଷକ ନୀଳମଣି ପୁହାଣ, ସମୁଦାୟ ବାଲେଶ୍ୱର ଜିଲ୍ଲା ପାଇଁ ଥାଏ ମୋଟେ ୫ଟି ବୃତ୍ତି। କିନ୍ତୁ ଅନନ୍ତପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ଏକ ସ୍ୱାଭିମାନ ଥାଏ। ୧୯୪୬ ମସିହାରେ ଅନନ୍ତପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ଜଣେ ଛାତ୍ର ବୃତ୍ତି ପାଇପାରିଲେ ନାହିଁ। ଏହା ହେଡ଼ମାଷ୍ଟର ତଥା ଅନ୍ୟ ଶିକ୍ଷକମାନଙ୍କୁ ବହୁତ ଆଘାତ ଦେଇଥିଲା। ସମସ୍ତଙ୍କର ମନରେ ଧାରଣା ଜନ୍ମିଲା, ମୁଁ ପରୀକ୍ଷା ଦେଇପାରିବିନି। ୪ର୍ଥରୁ ୭ମ ଶ୍ରେଣୀ ପର୍ଯ୍ୟନ୍ତ ପ୍ରତି ବିଷୟରେ ଉଚ୍ଚନମ୍ବରରେ ଆସିଥିବା ସ୍କୁଲର ଛାତ୍ରଟିର ଭାଗ୍ୟର ବିପର୍ଯ୍ୟୟ ଦେଖି ସ୍କୁଲର ଶିକ୍ଷକ ଓ ଛାତ୍ରମାନଙ୍କର ଆଖି ଛଳ ଛଳ ହୋଇଗଲା। ସେହିଦିନଟି ମୋର ସ୍ମୃତିପଟରୁ କେବେ ଲିଭିଯିବନି। ସମସ୍ତଙ୍କର ପ୍ରାର୍ଥନା "ଭଗବାନ ଭାସ୍କରଙ୍କୁ ଶୀଘ୍ର ଆରୋଗ୍ୟ

କରିଦିଅ।" ମୋତେ ସ୍କୁଲ ଛାଡ଼ି ୭ ଦିନ ପର୍ଯ୍ୟନ୍ତ ଗାଁକୁ ଯିବାକୁ ପଡ଼ିଲା। ସେତେବେଳେ ବସନ୍ତ ରୋଗୀକୁ ଲୋକେ ଠାକୁରାଣୀ ଭାବି ରୋଗୀକୁ ଏକ ଅନ୍ଧାରୁଆ ଘରେ ନିମପତ୍ର ଉପରେ ଶୁଆଇ ରଖୁଥିଲେ। ସେହିପରି ଅବସ୍ଥାରେ ୭ ଦିନ କଟାଇଲି। ସତକୁ ସତ ଭଗବାନ ସମସ୍ତଙ୍କର ଡାକ ଶୁଣିଲେ। ବସନ୍ତ ସୁବସନ୍ତ ବା ହାଡ଼ଫୁଟିରେ ପରିଣତ ହେଲା ଓ ସାତଦିନ ଭିତରେ ବକଳ ଛାଡ଼ିଗଲା। ମୁଁ ଗାଧୋଇ ସଙ୍ଗେ ସଙ୍ଗେ ସ୍କୁଲ ଯାଇ ସେହିଦିନ ରାତିରେ ପରୀକ୍ଷା ଦେବାକୁ ବାହାରିଲି, ବାଲେଶ୍ୱର। ସ୍କୁଲରେ ପହଞ୍ଚିବା ମାତ୍ରେ ହେଡ଼ମାଷ୍ଟର ଦୈନତେୟ ବାବୁ ପଚାରିଲେ ରୋଗ ଭିତରେ ପଢ଼ାପଢ଼ି କରିପାରୁଥିଲୁ? ମୁଁ କହିଲି "ମୋତେ ତ ଅନ୍ଧାର ଘରେ ୭ ଦିନ ରଖିଦେଲେ, ପଢ଼ିବା ନ ପଢ଼ିବା ସମାନ"। ସଙ୍ଗେ ସଙ୍ଗେ ନୀଳମଣି ବାବୁ କହିଲେ "ସେ ପରୀକ୍ଷା ଦେଇପାରିବ ଏତିକି ଯଥେଷ୍ଟ? ପାଠତ ତାର ଜଳବତ୍ ତରଳମ୍। ପରୀକ୍ଷା ସମୟରେ ତାର ପଢ଼ିବା ଦରକାର ନାହିଁ। ସେ ନିଶ୍ଚୟ ବୃତ୍ତି ପାଇବ।" ତାଙ୍କର ମୋ ଉପରେ ଅଗାଧବିଶ୍ୱାସ ଦେଖି ମୁଁ ନିଜେ ଆଶ୍ଚର୍ଯ୍ୟାନ୍ୱିତ ହେଲି। ସତକୁ ସତ ମୁଁ ୪ଟି ବିଷୟରେ ଡିଷ୍ଟିଙ୍ଗ୍‌ସନ୍ ରଖି ବୃତ୍ତି ପାଇଲି। ସେ ସମୟରେ ଶିକ୍ଷକଙ୍କର ଛାତ୍ରଙ୍କ ସହ ସମ୍ପର୍କ ଓ ଛାତ୍ରଙ୍କ ଉପରେ ବିଶ୍ୱାସ କଥା ଭାବିଲେ ନିଜ ମନକୁ ବିଶ୍ୱାସ ଆସେନି। ସେ ସମୟରେ ଶିକ୍ଷକ ଓ ଛାତ୍ର ସମାଜ ଭିତରେ ସମ୍ପର୍କ କିପରି ଓ ଆଜି ସେ ସମ୍ପର୍କ କଣ ହୋଇଛି ?

ମେଟ୍ରିକ୍ ପାଶ୍ କରିବା ପରେ ଓଡ଼ିଆ ଲେଖା ଅଭ୍ୟାସ ପ୍ରାୟ ନାହିଁ, କହିଲେ ଚଳେ। ଜଣେ ବାସ୍ତବବାଦୀ ଇଞ୍ଜିନିୟର ପାଖରେ କଳ୍ପନାର ସ୍ଥାନ ନାହିଁ କହିଲେ ଚଳେ। ବିଜ୍ଞାନସମ୍ମତ ଜ୍ଞାନକୁ ବାସ୍ତବ ରୂପ ଦେଇ ଦେଶକୁ ସମୃଦ୍ଧିଶାଳୀ କରିବାର ଦୀକ୍ଷା ନେଇ ସିଭିଲ୍ ଇଞ୍ଜିନିୟରିଂ ବିଦ୍ୟାଧ୍ୟୟନ ପରେ ଜଳସେଚନ ଯୋଜନା ସହିତ ସଂଶ୍ଳିଷ୍ଟ ହୋଇ ଆବେଗପୂର୍ଣ୍ଣ ଲେଖା ଲେଖିବା ପ୍ରାୟ ଭୁଲି ଯାଇଥିଲି। ଆଜି ପିଲାଦିନର ଅନୁଭୂତି ଲେଖିବା ସମୟରେ କେତେ କଳ୍ପନା ରାଜ୍ୟକୁ ଭାବନା ଚାଲିଯାଉଛି। କେତେ ସାଙ୍ଗଙ୍କ ପ୍ରତିବିମ୍ବ ସୁସ୍ପଷ୍ଟ ବା ଅସ୍ପଷ୍ଟ ଆକାର ଦେଉଛି। ତେବେ ଅନନ୍ତପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ ସମୟରେ ଯେଉଁ ବନ୍ଧୁମାନେ ମୋତେ ବିଶେଷ ଭାବେ ପ୍ରଭାବିତ କରିପାରିଛନ୍ତି ତାଙ୍କ ଭିତରେ ମୋର ଅଗ୍ରଜତୁଲ୍ୟ ବନ୍ଧୁ ହରିଶ୍ଚନ୍ଦ୍ର

ମହାନ୍ତି ଅଗ୍ରଗଣ୍ୟ। ୧୯୪୪ ମସିହା ଓଡ଼ିଶାରେ ଛାତ୍ରମାନଙ୍କ ପାଇଁ ଥିଲା ଏକ ପରିବର୍ତ୍ତନ (Transitory) ବର୍ଷ। ସେହିବର୍ଷ ଓଡ଼ିଶାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲା ଓ ଶିକ୍ଷାବର୍ଷ ଜାନୁୟାରୀରୁ ଆରମ୍ଭ ନ ହୋଇ ଜୁଲାଇରୁ ଆରମ୍ଭ ହେଲା। ତେଣୁ ସବୁ ଛାତ୍ର ୬ ମାସରେ ଗୋଟିଏ କ୍ଲାସ୍ ଅତିକ୍ରମ କରିଗଲେ। ଜାନୁୟାରୀରେ ନାମ ଲେଖାଇ ମେ ମାସରେ ବାର୍ଷିକ ପରୀକ୍ଷା ଦେଇ ଆମେ ଉପର ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲୁ। ମାତ୍ର ୩ଟି ବିଷୟରେ ପରୀକ୍ଷା ହେଲା। ଗଣିତ, ଇଂରାଜୀ ଓ ସାହିତ୍ୟ। ପରୀକ୍ଷା ଫଳ ବାହାରିବା ଦିନ ୫ମ ଶ୍ରେଣୀରେ ପ୍ରଥମସ୍ଥାନ ଅଧିକାର କରିଥିବା ଛାତ୍ର ଜଣକ ମୋତେ ଆସି କହିଲେ ଭାସ୍କର, ପରୀକ୍ଷାରେ ତୁ ଖୁବ୍ ଭଲ କରିଛୁ। ଏହିଭଳି ଭାବେ ପଢ଼ାପଢ଼ି କର। ଜୀବନରେ ବହୁତ ଉନ୍ନତି କରିବୁ। ଅନ୍ୟମାନଙ୍କ ଠାରୁ ତାଙ୍କର ପରିଚୟ ବୁଝିଲି। ଅନନ୍ତପୁର କରଣସାହିରେ ତାଙ୍କ ଘର। ସେ ସାହିର ଅଧିକାଂଶ ପରିବାର ଧନୀ ହୋଇଥିବାରୁ ସାହିଟିକୁ ବାବୁ ସାହି ମଧ୍ୟ କହନ୍ତି। କିନ୍ତୁ ହରିଶ ବାବୁ ଥିଲେ ଭିନ୍ନ। ମୋ ଭଳି ନିମ୍ନ ମଧ୍ୟବିତ୍ତ ପରିବାରରେ ତାଙ୍କର ଜନ୍ମ। ବାପା ପ୍ରାଇମେରି ସ୍କୁଲ୍ ଶିକ୍ଷକ। ମୋ ଭଳି ଅନେକ ଅସୁବିଧା ମଧ୍ୟରେ ଗତିକରି ସେ ପାଠ ପଢ଼ିଛନ୍ତି। କ୍ରମେ ଆମ ଭିତରେ ବନ୍ଧୁତା ଆମକୁ ଭ୍ରାତୃବନ୍ଧନରେ ଛନ୍ଦିଦେଲା। ଦିନେ ହରିଶ ଭାଇଙ୍କୁ ତାଙ୍କ ଭାଇମାନଙ୍କ ନାମ ପଚାରିଲି। ସେ କହିଲେ ହରିଶ ଚନ୍ଦ୍ରଙ୍କର ୩ଟି ଭାଇ, ଭାସ୍କରଚନ୍ଦ୍ର, ସୁରେଶଚନ୍ଦ୍ର ଓ ସୁବାସ ଚନ୍ଦ୍ର। ମୁଁ ରହୁଥାଏ ଛାତ୍ରାବାସରେ। ସେ ରହୁଥାନ୍ତି ନିଜ ଘରେ, କେବଳ ଦେଖା ସ୍କୁଲରେ। କିନ୍ତୁ କାଳକ୍ରମେ ଆମେ ପରସ୍ପର ପ୍ରତି ଏଭଳି ଆକୃଷ୍ଟ ହୋଇ ପଡ଼ିଲୁ ଯେ ଛୁଟି ପରେ ତାଙ୍କ ସହ ଘଣ୍ଟାଏ ନ କଟାଇଲେ ମୋତେ ଆଦୌ ଭଲ ଲାଗେନି। ଖେଳ ପରେ ସେ ଯେପରି ହେଉ ମୋ ସହିତ ଅଧଘଣ୍ଟାଏ କିମ୍ବା ଘଣ୍ଟାଏ ସମୟ ଅତିବାହିତ କରିଯାଆନ୍ତି। ସ୍କୁଲର ଖେଳଛୁଟି ଅଧଘଣ୍ଟାଏ ପ୍ରାୟ ତାଙ୍କ ସହ କଟେ। ଶନିବାର ସ୍କୁଲ ଅଧା ଛୁଟି। ସେଦିନ ଅନନ୍ତପୁର ହାଟ। ସେ ପ୍ରାୟ ୪ଟାବେଳୁ ଚାଲିଆସନ୍ତି। ସେଦିନ ୨/୩ ଘଣ୍ଟା ହାଟରେ କଟେ। ଖରାଦିନେ ଆମ୍ବ, ତାଳସଜ ଶୀତଦିନେ ବରକୋଳି ବର୍ଷାଦିନେ ଜାମକୋଳି ଖିଆର ଆମର ବହୁତ ସମୟ କଟିଯାଏ। ଗପ କେବଳ ଗପ ପାଇଁ ହୁଏନି। ତା'ଭିତରେ ନିଜର କର୍ତ୍ତବ୍ୟ ସଚେତନତାର ଆଲୋଚନା

ବେଶୀ ହୁଏ। ତାଙ୍କ ସହ ଆଲୋଚନା କଥା ମନେ ପଡ଼ିଲେ, ମନେହୁଏ ଯେପରି ବଡ଼ଭାଇ ସାନଭାଇକୁ ନିଜର ଆଦର୍ଶରେ ଗଢ଼ିବା ପାଇଁ ଉପଯୁକ୍ତ ପ୍ରେରଣା ଦେଇ ସେ ମୋର ଭବିଷ୍ୟତ ଗଠନ ପାଇଁ ମାର୍ଗ ପରିଷ୍କାର କରିବାରେ ଲାଗିଥିଲେ। ୧୯୪୬ ମସିହାରେ ସେ ପାଶ୍ କରି ଚାଲିଗଲେ। ତାଙ୍କର ଅଭାବରେ ମୋର ଅନନ୍ତପୁରରେ ଅଧ୍ୟୟନ ଏକାବେଳେକେ ନିରସ ହୋଇ ପଡ଼ିଲା। ମୋତେ ସବୁଠାରୁ ଖରାପ ଲାଗିଲା, ଯେତେବେଳେ ଶୁଣିଲି ସବୁ ବିଷୟରେ ଭଲ କରି କେବଳ ଗଣିତରେ ତାଙ୍କର ନମ୍ବର କମିଯିବାରୁ ତାଙ୍କ ବୃତ୍ତି କଟିଗଲା। ସେ ତ ବୃତ୍ତି ପାଇବା କଥା, ପାଇଲେ ନାହିଁ। କିନ୍ତୁ ଯେତେବେଳେ ୧୯୪୭ ମସିହାରେ ବୃତ୍ତି ପାଇଲି ତାଙ୍କର ଖୁସି କହିଲେ ନସରେ। ସେ ପଢୁଥାନ୍ତି ସୋରୋ ହାଇସ୍କୁଲରେ ଓ ମୁଁ ପଢୁଥାଏ ବାସୁଦେବପୁରରେ। ସଙ୍ଗେ ସଙ୍ଗେ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଇ ଚିଠି ପଠାଇଲେ। ମେଟ୍ରିକ୍ ପରେ ପାରିବାରିକ ଅସୁବିଧା ଯୋଗୁଁ ସେ ଚାକିରୀରେ ଯୋଗଦେଲେ। ଅବଶ୍ୟ ପରବର୍ତ୍ତୀ କାଳରେ ଆତ୍ମ ଚେଷ୍ଟା ବଳରେ ଏମ.ଏ. ବି.ଇଡ଼ି ପାଶ୍ କରି ପ୍ରଧାନଶିକ୍ଷକ ପଦକୁ ଉତ୍ତୀର୍ଣ୍ଣ ହୋଇପାରିଛନ୍ତି। ମୁଁ ଯେତେବେଳେ ଓଡ଼ିଶା ସରକାରଙ୍କ ଷ୍ଟାଇପେଣ୍ଡ୍ ପାଇ ତ୍ରିଭାନ୍ଦ୍ରମକୁ ଇଞ୍ଜିନିୟରିଂ ପଢ଼ିବାକୁ ଗଲି, ତାଙ୍କର ଖୁସି ଦେଖେ କିଏ ? କେଉଁଠାରୁ ଠିକଣା ସଂଗ୍ରହ କରି ତ୍ରିଭାନ୍ଦ୍ରମକୁ ଅଭିନନ୍ଦନ ବାର୍ତ୍ତା ସହ ସସ୍ନେହ ପତ୍ର ପଠାଇଲେ। ମୋର ଜୀବନର ଚଲାକର୍ମ ପଥରେ ତାଙ୍କରି ପ୍ରେରଣା ମୋତେ ସବୁଦିନ ଉତ୍ସାହ ଦେଇଆସିଛି। ଆମେ ଦୁଇଜଣ ଏକ ମାତାର ସନ୍ତାନ ନୋହୁଁ। କିନ୍ତୁ ପ୍ରକୃତରେ ସେ ମୋ ପାଖରେ ବଡ଼ ଭାଇଠୁଁ ଅଧିକ କିଛି।

୧୯୪୪ରେ ୭ମ ଶ୍ରେଣୀରେ ପଢୁଥିବା ଛାତ୍ରମାନେ ବୃତ୍ତି ପରୀକ୍ଷାରୁ ବଞ୍ଚିତ ହେଲେ କାରଣ ୬ ମାସରେ କ୍ଲାସ୍ ସରିଗଲା। ନିୟମ ବାହାରିଲା, ଯେଉଁ ଛାତ୍ରମାନେ ବୃତ୍ତି ପରୀକ୍ଷା ଦେବାକୁ ଚାହାନ୍ତି ସେମାନେ ଗୋଟିଏ ବର୍ଷ ପୁଣି ୭ମରେ ପଢ଼ି ବୃତ୍ତି ପରୀକ୍ଷା ଦେବେ। ତେଣୁ ୭ମ ଶ୍ରେଣୀରେ ପ୍ରଥମ ଓ ଦ୍ୱିତୀୟ ସ୍ଥାନ ଅଧିକାର କରିଥିବା ପିତାମ୍ବର କର, ସୀତାକାନ୍ତ ମହାପାତ୍ର ଆଉ ବର୍ଷେ ୭ମରେ ପଢ଼ିଲେ। ସେହିବର୍ଷ କାର୍ତ୍ତିକ ଚନ୍ଦ୍ର ଦାସ ଓ ଗୟାଧର ନାୟକ ୧ମ ଓ ୨ୟ ସ୍ଥାନ ଅଧିକାର କରି ୬ଷ୍ଠରୁ ୭ମକୁ ଉତ୍ତୀର୍ଣ୍ଣ ହେଲେ। ସବୁ ଶିକ୍ଷକଙ୍କ ମୁହଁରେ ଗୋଟିଏ କଥା ୪ ଜଣ ଛାତ୍ର ୪ଟି ଭିନ୍ନ ଭିନ୍ନ ସ୍କୁଲରେ ଥିଲେ ୪ଟି ବୃତ୍ତି ପାଇ ପାରିଥାନ୍ତେ। ମାତ୍ର ସେମାନଙ୍କର

ଦୁର୍ଭାଗ୍ୟ ଯେ ସେତେବେଳର ନିୟମ ଅନୁସାରେ ପ୍ରତି ସ୍କୁଲକୁ ଜଣେ ମାତ୍ର ଛାତ୍ର ବୃତ୍ତି ପାଇବାକୁ ସକ୍ଷମ ହେବ। ସତକୁ ସତ ମାତ୍ର ଜଣେ ବୃତ୍ତି ପାଇଲେ ଓ ଅନ୍ୟମାନେ ଉଚ୍ଚନମ୍ବର ରଖି ମଧ୍ୟ ବୃତ୍ତିରୁ ବଞ୍ଚିତ ହେଲେ। ବୃତ୍ତିଧାରୀ ଛାତ୍ର ଜଣକ ହେଲେ ପିତାମ୍ବର କର। ପିତାମ୍ବର ବାବୁ ଜଣେ କୁଶଳୀ ଛାତ୍ର ଥିଲେ। ସେ ଭଲ ପାଠ ପଢ଼ିବା ସଙ୍ଗେ ସଙ୍ଗେ ଭଲ ଗୀତ ଗାଇ ପାରନ୍ତି। ଭଲ ଡ୍ରଇଂ କରନ୍ତି। ଫୁଟବଲ୍, ଭଲିବଲ ମଧ୍ୟ ଭଲ ଖେଳନ୍ତି ଓ ବକ୍ତୃତା ପ୍ରତିଯୋଗିତାରେ ସେ ଭଲ କହିପାରନ୍ତି। ତେଣୁ ମୁଁ ସେହି ପିତାମ୍ବର ବାବୁଙ୍କୁ ସବୁବେଳେ ଅନୁକରଣ କରୁଥାଏ। ଅବଶ୍ୟ ତାଙ୍କର ସବୁ ଗୁଣ ଅନୁକରଣ କରିପାରିନି। କିନ୍ତୁ ପ୍ରତିଦ୍ୱନ୍ଦ୍ୱିତାମୂଳକ ଶିକ୍ଷା ଓ ଖେଳ ଏ ଦୁଇଟି ମୁଁ ତାଙ୍କ ଠାରୁ ଶିକ୍ଷା କରିପାରିଥିଲି। ସୀତାକାନ୍ତ ମିଶ୍ରଙ୍କ ଠାରୁ ମୁଁ ଶିଖିଥିଲି ଅଧ୍ୟବସାୟ ଓ ସରଳ ଜୀବନଯାପନ। ତାଙ୍କର ନିରଳସ ଜୀବନଯାପନ ଧାରା ପାଇଁ ସେ ସମସ୍ତଙ୍କର ପ୍ରିୟ। କାର୍ତ୍ତିକ ବାବୁ ଥିଲେ ମିଷ୍ଟଭାଷୀ ଓ ମେଳାପୀ। ଗୟାଧର ବାବୁ ଥିଲେ ସମସ୍ତଙ୍କର ବନ୍ଧୁ।

ଆମ ଶ୍ରେଣୀରେ ପଢୁଥିବା ମୋର ଅନ୍ତରଙ୍ଗ ବନ୍ଧୁ ଥିଲେ ଜଗବନ୍ଧୁ ବେହେରା, ବିଜୟ କର, ହାଡ଼ିବନ୍ଧୁ କର, ରବି ରାୟ, ଭୀମ ଅଗସ୍ତି। ଜଗବନ୍ଧୁ ମୋ ଅପେକ୍ଷା ବୟସରେ ଟିକିଏ ବଡ଼ ହେବ। ସେ ଖେଳ ଓ ବଗିଚା କାମରେ ବଡ଼ପାରଙ୍ଗମ। ସାମାଜିକ କାମ ପାଇଁ ସେ ବହୁତ ଆଗ୍ରହୀ। ପରବର୍ତ୍ତୀ କାଳରେ ସେ ବେସିକ୍ ସ୍କୁଲରେ ଶିକ୍ଷକତା ଗ୍ରହଣ କଲା। ତାର ଆଦର୍ଶ ସହିତ ଜୀବନର କର୍ମକ୍ଷେତ୍ରରେ ବହୁତ ସାମଞ୍ଜସ୍ୟ ରହିଛି। ବିଜୟ, ଭୀମ ଓ ହାଡ଼ିବନ୍ଧୁ ମେଟ୍ରିକ୍ ପାଶ୍ ପରେ ଅଫିସ୍‌ରେ ଆସିଷ୍ଟାଣ୍ଟ ଭାବେ ଯୋଗ ଦେଇ ସେହି ବିଭାଗରେ ସର୍ବୋଚ୍ଚ ସ୍ତରକୁ ଉଠି ପାରିଛନ୍ତି। ଆମ ଶ୍ରେଣୀ ତଥା ସ୍କୁଲର ଏକମାତ୍ର ମୁସଲମାନ ଛାତ୍ର ହେଉଛି ମଲ୍ଲିକ ଇବ୍ରାହିମ୍। ଆଉର ବ୍ୟବହାର ଚଳିଚଳନ ଦେଖିଲେ କେହି କହିବନି ସେ ମୁସଲମାନ ଘରର ପିଲା। ଅତି ମେଳାପି। ସମସ୍ତେ ତାର ସାଙ୍ଗ। ପରବର୍ତ୍ତୀ କାଳରେ କଲେଜ ଅଧ୍ୟୟନ ସମୟରେ ତା ସହିତ ଦେଖାହୁଏ। ସାଙ୍ଗରେ ଗୋଟିଏ ବଖରାରେ ରହିଲୁଁ। ଦେଶ ବିଭାଜନ ପରେ ହିନ୍ଦୁ ମୁସଲମାନ ବିବାଦ ଭୟଙ୍କର ଆକାର ଧାରଣ କରିଥିବା ସମୟରେ ଆମ ବନ୍ଧୁତ୍ୱ ଦେଖି ବହୁ ଲୋକ ଆଶ୍ଚର୍ଯ୍ୟାନ୍ୱିତ ହୁଅନ୍ତି। ହାଇସ୍କୁଲରେ ଅଧ୍ୟୟନ ସମୟରେ ସେ ଖରାପ ସାଙ୍ଗଙ୍କ ମେଳରେ ପଡ଼ି ପଢ଼ାରେ ବହୁ ଅବହେଳା କରିଥିଲା। ମୋ ସଂସ୍ପର୍ଶରେ ଆସିବାପରେ ସେ ପଢ଼ାପ୍ରତି ମନ ଦେଲା। ସେ ଟିକିଏ

ସିନେମା ପ୍ରିୟ। କିନ୍ତୁ ମୁଁ ଯେତେବେଳେ ଯାହା କହେ ସେଥିରୁ ସେ ବିଚ୍ୟୁତ ହୁଏ ନାହିଁ। ମୋର ବାକ୍ୟ ଯେପରି ତା ପାଖରେ ବେଦର ଗାର। ସାଙ୍ଗମାନେ ଡାକିଲେ ସେ କହେ ଭାସ୍କର ଗାଳି କରିବ। ମୁଁ ଯାଇପାରିବିନି। ମୋର ସଂସ୍ପର୍ଶରେ ଆସି ତାର ବହୁ ପରିବର୍ତ୍ତନ ହେଲା। ଦିନେ ସମସ୍ତେ ଭାବୁଥିଲେ ଇବ୍ରାହିମ୍ ମେଟ୍ରିକ ଖଣ୍ଡକ ପାଶ୍ କରିପାରିବନି। କିନ୍ତୁ ପରବର୍ତ୍ତୀ କାଳରେ ସେ ବି.ଏ ପାସ୍ କଲା ଓ ବର୍ତ୍ତମାନ ସେ ରାଉରକେଲା ଇସ୍ପାତ୍ କାରଖାନାରେ ଜଣେ ପଦସ୍ଥ ଅଫିସର୍। ୧୯୬୪ ମସିହାରେ ହିନ୍ଦୁ ମୁସଲମାନ ଗଣ୍ଡଗୋଳ ଚାଲିଥାଏ। ରାଉଲକେଲାରେ ଗୁଣ୍ଡାମାନେ ତା ଘରକୁ ଆସି ଦେଖିଲେ ଯେ ଗୋଟିଏ ହିନ୍ଦୁ ପରିବାର ହାତରେ ତା ଘରକୁ ଦେଇ ସେ ଗାଁକୁ ଯାଇଛି। ଇବ୍ରାହିମ୍ ମୋତେ ଅନେକ ଥର କହିଛି "ଭାସ୍କର ମହାତ୍ମାଗାନ୍ଧୀଙ୍କ ଭଳି ଆଉ ଜଣେ ମହାପୁରୁଷ କଣ ଭାରତରେ ଜନ୍ମ ହେବେନି, ଯେକି ହିନ୍ଦୁ ମୁସଲମାନମାନଙ୍କୁ ଆଉଥରେ ଭାତୃ ବନ୍ଧନରେ ବାନ୍ଧି ଦେଇ ଭାରତ ଓ ପାକିସ୍ତାନକୁ ମିଶାଇ ଦେବେ?" ହାୟ! ଇବ୍ରାହିମ୍ ଭଳି ଧର୍ମନିରପେକ୍ଷ ଛାତ୍ର ସମାଜ ଯଦି ୧୯୪୭ରେ ସ୍ୱର ଉତ୍ତୋଳନ କରିଥାନ୍ତେ ତେବେ ଭାରତ କାହିଁକି ଦୁଇ ଭାଗ ହୋଇଥାନ୍ତା।

ଅନନ୍ତପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ ସମୟରେ ଜୀବନର ଏକ ଅଭୁଲା ସ୍ମୃତି। ଲେଖୁଥିଲେ କଲମରୁ କାଳି ସରିଯିବ। ଖାତାରୁ କାଗଜ ସରିଯିବ। କିନ୍ତୁ କିଶୋର ଜୀବନର ସେ କାହାଣୀ ସରିବନି। ସବୁ କହି ହୁଏନି, ସବୁ ପ୍ରକାଶ କରି ହୁଏନା, ହେଲେ ସେ ସ୍ମୃତି ଅଭୁଲା ହୋଇ ରହିଯାଇଛି ମାନସପଟରେ। ଆଜି ଏତିକି ସାନ୍ତ୍ୱନା ଯେ ସେହି ମୋର ପ୍ରିୟ ଅନୁଷ୍ଠାନ ମୋ ଭଳି କେତେ ଚପଳ କୋମଳମତି କିଶୋରଙ୍କୁ ଜୀବନର ମାର୍ଗ ଦେଖାଇଛି। ସତେ ଅବା ସେହି ପୂଣ୍ୟପୀଠ ବେଳାଭୂମିର ଏକ ସୁଉଚ୍ଚ ବତୀଘର, ଯାହା ନୀଳ ପାରାବର ବକ୍ଷରେ ଦିଗହଜା ନାବିକକୁ ଆଲୋକବର୍ତ୍ତିକା ଦେଖାଇଛି। ସେହି ପବିତ୍ର ଅନୁଷ୍ଠାନ ନିକଟରେ ଆମେ ସବୁ ନତମସ୍ତକରେ ଦଣ୍ଡାୟମାନ ହୋଇ ତାହାରି ଆଶିଷ ଭିକ୍ଷା କରିଛୁଁ। ସେହି ବାଉ ପୋଖରୀ, ଥାନା, ପୋଖରୀ, ଛାତ୍ରାବାସ ପୋଖରୀ, ନାଣ୍ଟୁ ସାମଲ ବାଡ଼ିର ବର କୋଳି ଗଛ, ଛତ୍ରାବାସ ଆଗର ମଙ୍ଗଳା ତେନ୍ତୁଳି ଗଛ, ସବୁ ସେହି ଅଭୁଲା ସ୍ମୃତିର ମୂକସାକ୍ଷୀ ହୋଇ ଛିଡ଼ା ହୋଇଛନ୍ତି। ସେମାନେ ଦେଖି ଆସିଛନ୍ତି ମୋ ଭଳି ଅନେକ କିଶୋରଙ୍କ ଜୀବନର ଲୀଳା ଖେଳାମୟ ସେହି ପୁରାତନ ଅନୁଷ୍ଠାନଟିକୁ। ସ୍କୁଲ ଆଗ ରାସ୍ତାରେ

ଗଲାବେଳେ ମନେ ହୁଏ ଏହି ମୂକସାକ୍ଷୀଗୁଡ଼ିକ ସତେଜ ହୋଇ ଉଠୁଛନ୍ତି । ହସି ହସି କହୁଛନ୍ତି, "ତୁମର ଏହି ପୁରାତନ ଅନୁଷ୍ଠାନଟିକୁ ମନେ ରଖିଛଟି ? ଆମ୍ଭମାନଙ୍କୁ ସ୍ମୃତିପଟରୁ ପୋଛି ଦେଇ ନାହିଁତ ?"

ଭଗବାନଙ୍କ ଠାରେ ପ୍ରାର୍ଥନା, ଏହି ଅନୁଷ୍ଠାନଟି କାଳଗର୍ଭରେ ଲୀନ ନ ହୋଇ ହେଉ ଚିର କର୍ମମୁଖର, ଚଳଚଞ୍ଚଳ, ପ୍ରଗତିଶୀଳ । ତାର ଆଲୋକ ହେଉ ଦୀପ୍ତିମନ୍ତ, ପବିତ୍ର, ମହାନ ମହିୟାନ, ଭାସ୍ୱର ଓ ଅମ୍ଲାନ । ସମସ୍ତଙ୍କର ସ୍ନେହ, ଶ୍ରଦ୍ଧା, ସହାନୁଭୂତି, ସହଯୋଗ ଓ ସଦିଚ୍ଛା ନେଇ ଏ ଅନୁଷ୍ଠାନ ଆଗେଇ ଯାଉ ଆଗକୁ .... ଆଗକୁ ଆହୁରି ଆଗକୁ । ଏ ଲେଖା ଲେଖିବା ସମୟରେ ତା' ଜୀବନରେ ଆସିଛି ଶତାୟୁ ହେବାର ସୌଭାଗ୍ୟ । ଏହି ପ୍ରିୟତମ ଅନୁଷ୍ଠାନଟି ସହସ୍ରାୟୁ ହୋଇ ଅଗଣିତ କିଶୋର କିଶୋରୀଙ୍କୁ ଜ୍ଞାନାଲୋକ ପ୍ରଦାନ କରୁ । ଏହା ମୋର ପ୍ରାଣର ନିବେଦନ ।



## ପଞ୍ଚମ ପରିଚ୍ଛେଦ

# ପ୍ରେରଣାର ଉତ୍ସ କିଶୋରୀ ବାବୁ

୧୯୪୭ ମସିହା ଭାରତୀୟଙ୍କ ପ୍ରାଣରେ ଆଣି ଦେଇଥିଲା ଏକ ଅଭୂତପୂର୍ବ ଉନ୍ମାଦନା। ଶହ ଶହ ବର୍ଷ ଧରି ପରାଧୀନତାର ଶୃଙ୍ଖଳ ଛିନ୍ନ କଲାପରେ ଭାରତ ସ୍ୱାଧୀନ ହେବାକୁ ଯାଉଛି। ସେଥିପାଇଁ ଭାରତୀୟମାନଙ୍କୁ କେତେ ଯେ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି, ତାହା କଳ୍ପନାତୀତ। ୧୮୫୭ ମସିହାରେ ସିପାହୀ ବିଦ୍ରୋହ ଫଳରେ ଭାରତୀୟଙ୍କ ମନରେ ସ୍ୱାଧୀନ ହେବାର ଯେଉଁ ପ୍ରଥମ ଝଲକ ଦେଖାଦେଇଥିଲା ତାହା ଅକାଳରେ ମଉଳି ଯାଇଥିଲା ବିଦେଶୀ ଶାସନର ତୀବ୍ର ଶୋଷଣରେ। ମହାତ୍ମା ଗାନ୍ଧିଙ୍କ ଅହିଂସା ଆନ୍ଦୋଳନ ଫଳରେ ତାର ସଫଳ ରୂପାୟନ ସମ୍ଭବ ହେଲା। ୧୯୪୭ ଅଗଷ୍ଟ ୧୪ ତାରିଖ ରାତିର ୧୨ଟା ସମୟରେ ଭାରତର ସ୍ୱାଧୀନତା ଘୋଷଣା ହେଲା। ମୋ ଜୀବନର ଏହି ମାସଟି ମଧ୍ୟ ଏକ ଅବିସ୍ମରଣୀୟ ମାସ। ୭ମ ଶ୍ରେଣୀ ବୃତ୍ତି ପରୀକ୍ଷାର ୧୦ ଦିନର ଆଗରୁ ମୋର ଶରୀର ଅସୁସ୍ଥତା ଯୋଗୁଁ ଶୁଭାକାଂକ୍ଷୀ ମାନଙ୍କ ମଧ୍ୟରେ ଆଶଙ୍କା ଜାତ ହୋଇଥିଲା ଯେ ମୁଁ ବୋଧହୁଏ ବୃତ୍ତି ପାଇ ପାରିବନି। କିନ୍ତୁ ଭଗବାନଙ୍କ ଇଚ୍ଛା ଭିନ୍ନ ପ୍ରକାର। ଯେଉଁଦିନ ସ୍ୱାଧୀନତା ଘୋଷଣା ହେଲା ସେହିଦିନ ସ୍କୁଲରୁ ଖବର ପାଇଲି ଯେ ମୁଁ କୃତିତ୍ୱର ସହ ବୃତ୍ତି ପାଇଛି। ସାଧାରଣତଃ ବୃତ୍ତିଧାରୀ ଛାତ୍ରମାନେ ଭଦ୍ରକ, ବାଗୁରାଇ ବାଲେଶ୍ୱର ବା ସେଭଳି କୌଣସି ପ୍ରତିଷ୍ଠିତ ସ୍କୁଲରେ ନାମ ଲେଖାନ୍ତି। ବୃତ୍ତିଧାରୀ ମେଧାବୀ ଛାତ୍ରର ନାମ ଶୁଣିଲେ ପ୍ରତିଷ୍ଠିତ ସ୍କୁଲର ହେଡ୍‌ମାଷ୍ଟରମାନେ ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ ଦେଇ ନିଜ ସ୍କୁଲରେ ନାମଲେଖାଇବାର ସୁବିଧା ନେବାକୁ ଆଗେଇ ଆସନ୍ତି। କିନ୍ତୁ ଶରୀରର ଅସୁସ୍ଥତା ଭିତରେ ମୁଁ ପରୀକ୍ଷା ଦେଇଥିବାରୁ ଓ ବୃତ୍ତି ପରୀକ୍ଷା ଫଳ ବାହାରିବାରେ ଡେରି ହେବାରୁ ଅନ୍ୟ ଉପାୟ ନ ଦେଖି ନୂତନ ଭାବେ ପ୍ରତିଷ୍ଠିତ ବାସୁଦେବପୁର ସ୍କୁଲରେ ମୋତେ ନାମ ଲେଖାଇବାକୁ ପଡ଼ିଲା। ସେତେବେଳେ ସ୍କୁଲର ହେଡ୍‌ମାଷ୍ଟର

ଥାଆନ୍ତି କୁଳମଣି ତ୍ରିପାଠୀ। ସହକାରୀ ହେଡ଼ମାଷ୍ଟର ଥାଆନ୍ତି ନିତ୍ୟାନନ୍ଦ ପଣ୍ଡା। ସ୍କୁଲ ନୂତନ ଭାବେ ପ୍ରତିଷ୍ଠିତ ହୋଇଥିବାରୁ ମୋତେ ବିଶେଷ ଭାବେ ଆର୍ଥିକ ସାହାଯ୍ୟ ମିଳିଲା ନାହିଁ। ମୋର ଶୁଭାକାଂକ୍ଷୀ ଓ ଅନନ୍ତପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ପୂର୍ବତନ ଶିକ୍ଷକ ଶଙ୍କର୍ଷଣ ଦାଶ ବାସୁଦେବପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ହୋଇ ଆସିଥାନ୍ତି। ସେ ମୋତେ ମଧ୍ୟ ଇଂରାଜୀ ବିଦ୍ୟାଳୟର ଛାତ୍ରାବାସରେ ଅଧାଖର୍ଚ୍ଚରେ ରଖାଇଦେଲେ। ସେତେବେଳେ ମାର୍କୋଣା ରାଇସମିଲ ତରଫରୁ ଗରିବ ଓ ମେଧାବୀ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ ଦିଆଯାଉଥିଲା। ମାସକୁ ମାତ୍ର ୫ଟଙ୍କା। ମୋତେ ସେହି ସାହାଯ୍ୟ ୪ ବର୍ଷ ପାଇଁ ମିଳିଲା। ମାସକୁ ଥରେ ଶନିବାର ଦିନ ମୁଁ ବାସୁଦେବପୁରରୁ ମାର୍କୋଣା ଯାଇ ଫେରି ଆସେ। ଯିବା ଓ ଆସିବା ମିଶି ୨୬ ମାଇଲ୍ ଅର୍ଥାତ୍ ୪୨ କି.ମି., ବସ୍‌ର ସୁବିଧା କେବଳ ଖରାଦିନେ ମିଳେ। ସେଥିପାଇଁ ମୁଁ ଚାଲି କରିଯାଏ। ୮ ଘଣ୍ଟା ପରିଶ୍ରମ କରିବାକୁ ପଡ଼େ। କିନ୍ତୁ ସେହି ୫ ଟଙ୍କା ମୋ ପାଇଁ ଥିଲା ଅମୂଲ୍ୟ ସମ୍ପଦ। ମ୍ୟାନେଜିଂ କମିଟି ଓ ହେଡ୍ ମାଷ୍ଟରଙ୍କ ମଧ୍ୟରେ ମତ ପାର୍ଥକ୍ୟ ଫଳରେ ହେଡ଼ମାଷ୍ଟରଙ୍କୁ ବାହାର କରିଦିଆଗଲା। ଫଳରେ ଡିସେମ୍ବର ମାସରେ ଷ୍ଟ୍ରାଇକ୍ ହେଲା। ଦୀର୍ଘ ଏକ ମାସ ଧରି ସ୍କୁଲର ପଢ଼ାବନ୍ଦ ହୋଇଗଲା। ଏକେତ ଶିକ୍ଷକ ଅଭାବ। ମାତ୍ର ଜଣେ ବିଇଡ଼ି ଡିଗ୍ରୀଧାରୀ ଶିକ୍ଷକ। ତା ସାଙ୍ଗକୁ ଷ୍ଟ୍ରାଇକ୍। ଏହା ଛାତ୍ର ମାନଙ୍କ ମଧ୍ୟରେ ଚରମ ବିଶୃଙ୍ଖଳା ସୃଷ୍ଟି କଲା। ଅବଶ୍ୟ ମାସକ ପରେ ଷ୍ଟ୍ରାଇକ୍ ବନ୍ଦ ହୋଇଗଲା। କିନ୍ତୁ ୬ ମାସ ପର୍ଯ୍ୟନ୍ତ କୌଣସି ନୂତନ ହେଡ଼ମାଷ୍ଟର ଆସିଲେ ନାହିଁ। ୧୯୪୮ ମସିହା ଜୁଲାଇ ମାସରେ ସ୍କୁଲରେ ନୂତନ ହେଡ଼ମାଷ୍ଟର ରୂପେ ଯୋଗ ଦେଲେ ପ୍ରବୀଣ ପ୍ରଧାନଶିକ୍ଷକ ଅମରନାଥ ମହାପାତ୍ର।

ମୁଁ କିନ୍ତୁ ଅଷ୍ଟମ ଶ୍ରେଣୀରେ ପଢ଼ାରେ ବିଶୃଙ୍ଖଳା ହେତୁ ୯ମ ଶ୍ରେଣୀରେ ସ୍କୁଲ ପରିବର୍ତ୍ତନ କରି ଭଦ୍ରକ କିମ୍ବା ବାଗୁରାଇ ସ୍କୁଲରେ ନାମ ଲେଖାଇବା ପାଇଁ ମନସ୍ଥ କରିସାରିଥିଲି। ସେହି ଯୋଜନା ଅନୁସାରେ ପ୍ରଥମେ ଭଦ୍ରକ ହାଇସ୍କୁଲର ଶିକ୍ଷକ ପ୍ରାଣବନ୍ଧୁ ଜେନାଙ୍କୁ ମୋର ଜଣେ ବନ୍ଧୁ ପରମାନନ୍ଦ ପଲେଇଙ୍କ ଜରିଆରେ ଦେଖା କଲି। ଭଦ୍ରକ ହାଇସ୍କୁଲ ଭଳି ନାମଜାଦା ସ୍କୁଲରେ ମଧ୍ୟ ନବମ ଶ୍ରେଣୀରେ କୌଣସି ବୃତ୍ତିଧାରୀ ଛାତ୍ର ନଥିଲେ। ୧୯୪୮ ମସିହାରେ ଭଦ୍ରକ ହାଇସ୍କୁଲରୁ ଜଣେ ଛାତ୍ର

ବୈଦ୍ୟନାଥ ମହାପାତ୍ର (ଯାହାଙ୍କ ଘର ଆମ ଗ୍ରାମରେ) ସାରା ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରି ମେଟ୍ରିକ୍ ପାଶ୍ କରିଥିଲେ। ତେଣୁ ଭଦ୍ରକ ହାଇସ୍କୁଲ ମେଧାବୀ ଛାତ୍ରମାନଙ୍କୁ ପୂର୍ଣ୍ଣ ସାହାଯ୍ୟ ଦେଇ ତାଙ୍କ ସ୍କୁଲରେ ନେବାପାଇଁ ଆଗ୍ରହ ପ୍ରକାଶ କରିବା ସ୍ୱାଭାବିକ। ପ୍ରାଣବନ୍ଧୁ ବାବୁଙ୍କ ପରାମର୍ଶ ଅନୁସାରେ ପ୍ରଧାନ ଶିକ୍ଷକ ଗୋକୁଳାନନ୍ଦ ବାବୁଙ୍କୁ ଦେଖାକରି ଖୁସି ମନରେ ଫେରିବାକୁ ବସିଛି, ହଠାତ୍ ସ୍କୁଲରେ ଅନ୍ୟଜଣେ ଶିକ୍ଷକ ମାଗୁଣି ଲେଙ୍କାଙ୍କ ସହିତ ଦେଖାହେଲା। ତାଙ୍କ ସହିତ ମୋତେ ପ୍ରାଣବନ୍ଧୁ ବାବୁ ପରିଚିତ କରାଇ ଦେଲେ ଓ ମୁଁ କିଭଳି ୪/୫ ଦିନ ଭିତରେ ସ୍କୁଲରେ ଯୋଗ ଦେବାକୁ ଆସୁଛି ବୋଲି ଭାବବିହ୍ୱଳ ହୋଇ କହିପକାଇଲେ, ହାୟ ! ଭାଗ୍ୟର କି ବିଡ଼ମ୍ବନା। ମାଗୁଣିବାବୁ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, ଏହା କିପରି ସମ୍ଭବ ? ଅମରବାବୁ ମୋର ଅନ୍ତରଙ୍ଗ ବନ୍ଧୁ। ତାଙ୍କ ସ୍କୁଲର ଏକମାତ୍ର ବୃତ୍ତିଧାରୀ ଛାତ୍ରଙ୍କୁ ଆମେ ନେଇ ଆସିଲେ ସେ ଭାବିବେ କ'ଣ ? ମୁଁ ଏହାର ବିରୋଧ କରିବି। ଏତିକିରେ ସବୁଦିନ ପାଇଁ ଭଦ୍ରକ ହାଇସ୍କୁଲରେ ପଢ଼ିବାର ସମସ୍ତ ଆଶା ଚିରଦିନ ପାଇଁ ଧୂଳିସାତ୍ ହୋଇଗଲା। କିନ୍ତୁ ଭଲ ସ୍କୁଲରେ ପଢ଼ିବି, ଜୀବନରେ ଉନ୍ନତି କରିବି, ଏହିଭଳି ବହୁଦିନ ଧରି ମନରେ ବସା ବାନ୍ଧିଥିବା ଆକାଂକ୍ଷା ଏତେ ସହଜରେ ଦବିଯିବ କିପରି ?

ଏକ ଅନ୍ତର୍ନିହିତ ଭାବାବେଗର ବଶବର୍ତ୍ତୀ ହୋଇ ଚାଲି ଚାଲି ଯାଇ ବାଗୁରାଇ ହାଇସ୍କୁଲ ହେଡ୍‌ମାଷ୍ଟର୍ କିଶୋରୀ ବାବୁଙ୍କୁ ଦେଖା କଲି। ସେ ଗୋଟିଏ ପ୍ରଶ୍ନ ପଚାରିଲେ, ତୁମେ ବାସୁଦେବପୁର ଛାଡ଼ି ଆମ ସ୍କୁଲରେ କାହିଁକି ନାମ ଲେଖାଇବାକୁ ଚାହୁଁଛ ? ମୁଁ କହିଲି, ବାସୁଦେବପୁରରେ ମୋ ସହିତ ପ୍ରତିଯୋଗିତା କରିବାକୁ ପିଲା ପାଉନି। ପ୍ରତିଦ୍ୱନ୍ଦିତା ନଥିଲେ ଜୀବନର ଉନ୍ନତି କିଭଳି ସମ୍ଭବ ?

ବାସ୍ ସେତିକି। ସଙ୍ଗେ ସଙ୍ଗେ କହିଲେ ଯାଇ ସାର୍ଟିପିକେଟ୍ ନେଇ ଆସ। ମୁଁ ତୁମର ସବୁ ବ୍ୟବସ୍ଥା କରିଦେବି। ସଙ୍ଗେ ସଙ୍ଗେ ଫେରିଲି ବାସୁଦେବପୁର ଓ ଆବେଦନ କଲି ଟ୍ରାନ୍ସଫର ସାଟିଫିକେଟ୍ ପାଇଁ। ସେତେବେଳକୁ ଦୁଇଦିନ ଆଗରୁ ଅମରବାବୁ ହେଡ଼ମାଷ୍ଟର୍ ହିସାବରେ ଯୋଗଦେଇଥାନ୍ତି। ସେ ଜଣେ ପ୍ରତ୍ୟୁତ୍ପନ୍ନମତି ପ୍ରଧାନଶିକ୍ଷକ। ମୋତେ ନାନା ଭାବେ ପ୍ରଲୋଭନ ଦେଖାଇ ଓ ମୋର ଶୁଭାକାଂକ୍ଷୀ ଶଙ୍କର୍ଷଣ ଦାଶ, (ଯେ କି ତାଙ୍କର ପୂର୍ବତନ ଛାତ୍ର)ଙ୍କ ଉପରେ ପ୍ରଭାବ ପକାଇ,

ମୋତେ ଅଟକାଇ ଦେଲେ। ଯଦିଓ ବାର୍ଷିକ ପରୀକ୍ଷାରେ ମୁଁ ସ୍କୁଲରେ ସବୁଠାରୁ ଅଧିକ ନମ୍ବର ରଖିବାର ଗୌରବ ଅର୍ଜନ କଲି, ତଥାପି, ମୋର ମନକୁ ଶାନ୍ତି ମିଳୁ ନଥାଏ। ଅମର ବାବୁଙ୍କ ଆସିବାପରେ ଅବଶ୍ୟ ସ୍କୁଲରେ କେତେ ଜଣ ଶିକ୍ଷକ ଯୋଗଦେଲେ। କିନ୍ତୁ ସ୍କୁଲର ଉପଯୁକ୍ତ ଶିକ୍ଷକଙ୍କର ଅଭାବ ସଦାବେଳେ ଅନୁଭୂତ ହେଉଥାଏ।

୧୯୪୯ ମସିହା ସେପ୍ଟେମ୍ବର ମାସ ବେଳକୁ ମୋର ଧୈର୍ଯ୍ୟଚ୍ୟୁତି ଘଟିଲା। ବାଗୁରାଇ ହାଇସ୍କୁଲର ପ୍ରଧାନଶିକ୍ଷକ କିଶୋରୀ ବାବୁଙ୍କୁ ପୁନର୍ବାର ଦେଖାକଲି। ପୁଣିଥରେ ପାଇଲି ସେହି ଶାନ୍ତ, ସୌମ୍ୟ ଗୁରୁ ଗମ୍ଭୀର ପ୍ରଧାନଶିକ୍ଷକଙ୍କ ପାଖରେ ଜୀବନ ସଂଗ୍ରାମ ପାଇଁ ପ୍ରେରଣା। ଏଥର ମୁଁ କାହା କଥା ନ ଶୁଣି ଟ୍ରାନ୍ସଫର ସାର୍ଟିଫିକେଟ୍ ନେଇ ଚାଲିଲି ବଗୁରାଇ। ସାର୍ଟିଫିକେଟ୍ ମିଳିବା ବେଳକୁ ସନ୍ଧ୍ୟା ଆଗତ ପ୍ରାୟ। ଦୁଇ ଦିନ କାଳ ସାର୍ଟିଫିକେଟ୍ ପାଇବା ପାଇଁ ଦୌଡ଼ାଦୌଡ଼ିରେ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲି। ସେହି ଦିନ ରାତିରେ ବାହାରିଲି ଭଦ୍ରକ। ବର୍ଷା ଲାଗି ରହିଥାଏ। ସାଙ୍ଗରେ ଥାଆନ୍ତି ମୋର ଭିଣୋଇ ନକୁଳ ବିଶ୍ୱାଳ। ୧୩ କି.ମି. ପଦଯାତ୍ରାରେ ଅତିକ୍ରମ କଲେ ପଡିବ୍ ଜଗନ୍ନାଥ ସଡ଼କ। ସେଠାରେ ବସ୍ ମିଳିବ। ବେତଡ଼ା ପହଞ୍ଚିବା ବେଳକୁ ରାତ୍ରି ୮ଟା ସମୟ। ସେଠାରେ ଗୋଟିଏ ଘରେ ରୋଷେଇ କରି ଖାଇଲୁ। ଏହି ସମୟରେ ଗୋଟିଏ ଶଗଡ଼ ବାହାରିଲା ଭଦ୍ରକ। ଏହା ସକାଳ ସୁଦ୍ଧା ପହଞ୍ଚିବା ଶୁଣି ମୁଁ ସଙ୍ଗେ ସଙ୍ଗେ ବାହାରିଲି। ସକାଳେ ଭଦ୍ରକରେ ପହଞ୍ଚି ବାଗୁରାଇ ସ୍କୁଲରେ ନାମ ନ ଲେଖାଇବା ପର୍ଯ୍ୟନ୍ତ ମୋତେ ଆହାର ଓ ନିଦ୍ରା ବିଷ ଭଳି ଲାଗୁଥାଏ।

ବାଗୁରାଇ ସ୍କୁଲରେ ଦେଖିଲି ବାସୁଦେବପୁର ଓ ବାଗୁରାଇ ମଧରେ ଆକାଶ ପାତାଳ ପାର୍ଥକ୍ୟ। କିଶୋରୀ ବାବୁ ନିଜେ ଇଂରାଜୀ, ଗଣିତ ଓ ଭୂଗୋଳ ପଢ଼ାନ୍ତି। ତାଙ୍କ ବ୍ୟତୀତ କ୍ଷତିଶ ଚନ୍ଦ୍ର ମୈତ୍ର, ବାସୁଦେବ କର, ପ୍ରଭାକର ଜେନା, ବାଞ୍ଛାନିଧି ଦାସ ଓ ଚନ୍ଦ୍ରଶେଖର ପଣ୍ଡା ମଧ ଥାଆନ୍ତି। ସମସ୍ତେ ଜଣେ ଜଣେ ଦକ୍ଷ ଶିକ୍ଷକ। ମୋର ଗୋଟାଏ ବଡ଼ ଅଭାବ ଏ ସ୍କୁଲକୁ ଆସି ତୁଟିଗଲା। ଏହା ହେଉଛି ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ସାଥୀ। କାଶୀନାଥ ପରିଡ଼ା ଓ ଶ୍ୟାମସୁନ୍ଦର ଲେଙ୍କା ଯଦିଓ ମୋତେ ଟପିପାରୁ ନଥିଲେ କିନ୍ତୁ କ୍ଲାସ୍‌ରେ ପ୍ରଥମ ସ୍ଥାନ ପାଇବା ପାଇଁ ମୋତେ ଯଥେଷ୍ଟ ପରିଶ୍ରମ କରିବାକୁ ପଡ଼ିଲା।

ଖାଲି ପଢ଼ା ନୁହେଁ ସପ୍ତାହରେ ଥରେ ବକ୍ତୃତା ପ୍ରତିଯୋଗିତା, ଥରେ ବା ଦୁଇ ଥର ସଙ୍ଗୀତ ପ୍ରତିଯୋଗିତା ହୁଏ। ବଗିଚାରେ ଉନ୍ନତ ଫସଲ ଉତ୍ପାଦନ, ଟେଲରିଂ, ବୁଣାକାରର ପେଷା ଶିକ୍ଷା, ରୋଗୀ ସେବା ଭଳି ମହତ କାର୍ଯ୍ୟ ଦେଖି ମୋର ମନରେ ଏକ ଆନ୍ଦୋଳନ ସୃଷ୍ଟି ହେଲା। ଯଦିଓ ମୁଁ ଜଣେ ସୁବକ୍ତା ନୁହେଁ କିନ୍ତୁ ବକ୍ତୃତା ପ୍ରତିଯୋଗିତା ରଚନା ପ୍ରତିଯୋଗିତା, ସପ୍ତାହିକ ସମ୍ବାଦ ଆଲୋଚନା ଭଳି କାର୍ଯ୍ୟକ୍ରମରେ ଯୋଗ ଦେଇ ମୁଁ ନିଜକୁ ଗଢ଼ିବା ପାଇଁ ପ୍ରେରଣା ସଂଗ୍ରହ କଲି। ମୋର ଉତ୍ସାହ ଓ ନିଷ୍ଠା ଦେଖି ମୋତେ କିଶୋରୀ ବାବୁ ସ୍କୁଲର ଜେନେରେଲ ମନିଟର ଓ ଲିଟେରେରି ସୋସାଇଟିର ସେକ୍ରେଟେରୀ କରିଦେଲେ। ଏହା ମୋତେ ପାଠ୍ୟକ୍ରମ ବର୍ହିଭୂତ ପୁସ୍ତକ ପଢ଼ିବା ଓ ବହିରୁ ଜ୍ଞାନ ଆହାରଣ ପାଇଁ ପଥ ପ୍ରଦର୍ଶନ କଲା।

ବାଗୁରାଇ ହାଇସ୍କୁଲରେ ଅଧ୍ୟୟନ ମୋର ଜୀବନର ଗତିପଥ ବଦଳାଇ ଦେଲା। ହେଡ଼ମାଷ୍ଟର କିଶୋରୀବାବୁ ଦୀର୍ଘକାୟ ସୌମ୍ୟଦର୍ଶନ ଗମ୍ଭୀର ପ୍ରକୃତିର। ଆଜୀବନ ବ୍ରହ୍ମଚାରୀ, ବୈଷ୍ଣବଧର୍ମ ଦୀକ୍ଷାପ୍ରାପ୍ତ ଶ୍ରୀ ଶ୍ରୀ ରାମ ଦାସ ବାବାଜୀଙ୍କର ପଟ୍ଟଶିଷ୍ୟ, ଧଳା ଫିନ୍ ଫିନ୍ ଧୋତି, ପଞ୍ଜାବୀ, କଳାମଚ ମଚ ଯୋତା ପିନ୍ଧି ଯେତେବେଳେ ସେ ସ୍କୁଲକୁ ଆସନ୍ତି ପ୍ରତ୍ୟେକ ଛାତ୍ରଛାତ୍ରୀ ମନରେ ଶଙ୍କା ଜାତ ହୁଏ। ସ୍କୁଲ ଆରମ୍ଭ ୧୦ଟାରେ ପ୍ରାର୍ଥନା ଆରମ୍ଭ ହେବ ୯ଟା ୪୫ ମିନିଟ୍‌ରେ। ୯ଟା ୪୫ ପୂର୍ବରୁ ସେ ପ୍ରାର୍ଥନା ସଭାରେ ଉପସ୍ଥିତ ହୋଇ ସାରିଥିବେ। ଠିକ୍ ସମୟରେ କ୍ଲାସ୍ ଆରମ୍ଭ ହେବ। ଯଦି କୌଣସି ଦିନ କୌଣସି ଶିକ୍ଷକ ଅନିବାର୍ଯ୍ୟ କାରଣରୁ କ୍ଲାସ୍‌କୁ ଆସିପାରି ନାହାନ୍ତି, ନିଜେ କିଶୋରୀ ବାବୁ ସେ କ୍ଲାସ୍‌ଟି ନିଅନ୍ତି। ପ୍ରଥମେ ସେ ଆଇ.ଏସ.ସି. ପାଶ୍ କରି ପରେ ଗଣିତ ନେଇ ବି.ଏ ପାଶ୍ କଲେ। ପରିଣତ ବୟସରେ ସେ ଇଂରାଜୀ ଓ ଓଡ଼ିଆ ସାହିତ୍ୟରେ ଏମ.ଏ. ପାଶ୍ କରିଥିଲେ। ତାଙ୍କର ଓଡ଼ିଆ ସାହିତ୍ୟ ଓ ଇଂରାଜୀ ଉପରେ ଯେପରି ଦକ୍ଷତା, ଗଣିତ ଓ ଭୂଗୋଳ ଉପରେ ସେହିପରି ଦକ୍ଷତା। ସତେ ଯେପରି ସେ ଥିଲେ ସବୁ ବିଷୟରେ ଜଣେ ସୁପଣ୍ଡିତ। ସେ ଶ୍ରେଣୀରେ ଭୂଗୋଳ, ଗଣିତ ଓ ବିଜ୍ଞାନ ପଢ଼ାଇବା ସମୟରେ ତନ୍ମୟ ହୋଇପଡ଼ନ୍ତି। କିନ୍ତୁ ସେହି ଗଣିତ ପ୍ରିୟ ଶିକ୍ଷକ କିଶୋରୀ ବାବୁଙ୍କ ଅନାବିଳ ହୃଦୟରେ ଐଶ୍ୱରିକ ପ୍ରେମର ମହନୀୟ ଆନନ୍ଦମୟ ସତ୍ତା ବିଦ୍ୟମାନ ଥିଲା। ସେ ଥିଲେ ଚିର

ସୁନ୍ଦରର ନିତ୍ୟ ଉପାସକ। ସେ ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ଛାତ୍ରାବାସ ପରିଦର୍ଶନ କରିବାକୁ ଆସୁଥିଲେ। ଛାତ୍ରାବାସର କୋଠରୀ ତାର ଚତୁଃପାର୍ଶ୍ୱ ପରିଷ୍କାର ପରିଛନ୍ନ ରହିଥିବ, ଖାତା ଓ ବହି ଗୁଡ଼ିକ ଉନ୍ନତ ରୁଚିବୋଧ ନେଇ ସଜ୍ଜିତ ହୋଇଥିବ, ଲୁଗା, ଜାମା, ବିଛଣା ଆଦି ଚଉତା ହୋଇ ଯଥାସ୍ଥାନରେ ରହିଥିବ। ପୁଣି ପ୍ରତ୍ୟେକ ପିଲାର ପୋଷାକପତ୍ର ପରିଷ୍କାର ଥିବ। ଏ ସବୁଥିରେ ଟିକିଏ ବ୍ୟତିକ୍ରମ ଆଖିରେ ପଡ଼ିଲେ ସେ ପଦେ ନ କହି ଛାଡ଼ିବେ ନାହିଁ। ସ୍କୁଲ ତଥା ଛାତ୍ରାବାସର ଉଦ୍ୟାନ ସେ ପ୍ରତିଦିନ ତଦାରଖ କରନ୍ତି। ଫୁଲ ଓ ଫଳ ଗଛରେ ସ୍କୁଲର ଉଦ୍ୟାନକୁ ସର୍ବାଙ୍ଗ ସୁନ୍ଦର କରିବା ତାଙ୍କର ଯେପରି ଗୋଟିଏ ନିଶା। ଘରି ପାଖରେ ଧାଡ଼ି ଧାଡ଼ି ମଲ୍ଲୀଗଛ, ମଝିରେ ଯୁଇ, ହେନା, ସୁଗନ୍ଧରାଜ, ଟଗର ଆଉ ରଙ୍ଗବେରଙ୍ଗର କ୍ରୋଟନ ଆଉ ତା ମଝିରେ ଛାତ୍ରମାନଙ୍କ ଗହଣରେ ସବୁଦିନ ସନ୍ଧ୍ୟାରେ ଶୀତଳ ସମୀରଣ ସେବନ କରିବା ତାଙ୍କର ଗୋଟିଏ ଦୈନନ୍ଦିନ କାର୍ଯ୍ୟ। ଯେପରି ବଗିଚାରେ ଫୁଲଗଛ ସହିତ ପରିବା ଚାଷ ଓ ଫଳ ବୃକ୍ଷ ରୋପଣକୁ ସେ ଉତ୍ସାହିତ କରୁଥିଲେ। ଛାତ୍ରାବାସର ଗୋଟିଏ ରୁମ୍‌ର ଛାତ୍ରଙ୍କୁ ଗୋଟିଏ ଲେଖାଏଁ ପ୍ଲଟ୍ ବଣ୍ଟାଯାଇଥାଏ। ପ୍ରତି ପ୍ଲଟ୍‌ରେ ପରିବା ଉତ୍ପାଦନ ଗୋଟିଏ ନିର୍ଦ୍ଦିଷ୍ଟ ରୁମ୍ ପିଲାଙ୍କ ଦାୟିତ୍ୱ। କେଉଁ ପ୍ଲଟ୍‌ର ଗଛର କେତେ ଉନ୍ନତି ହେଲା ତାହା ସେ ପ୍ରତିଦିନ ତଦାରଖ କରନ୍ତି। ଖାଲି ବଗିଚା ନୁହେଁ, ସକାଳ ବ୍ୟାୟାମ ସନ୍ଧ୍ୟା ୫ଟାରୁ ୬ଟା ଫୁଟବଲ୍ ଭଳି ଖେଳ, ସନ୍ଧ୍ୟାରେ ପ୍ରାର୍ଥନା ତଦାରଖ କରିସାରିବା ପରେ ସେ ଘରକୁ ଫେରନ୍ତି।

ସଙ୍ଗୀତ ପ୍ରତି ତାଙ୍କର ପ୍ରବଳ ଅନୁରାଗ ରହିଥିଲା। ନିଜେ ସୁଗାୟକ ନଥିଲେ ମଧ୍ୟ ବେଳେବେଳେ ଭଜନ ଜଣାଣ ପ୍ରଭୃତି ସୁଲଳିତ ଭାବେ ବିମୁଗଧ ସ୍ୱରରେ ଗାନ କରୁଥିଲେ। ଛାତ୍ରଛାତ୍ରୀଙ୍କର ସଙ୍ଗୀତ ଶିକ୍ଷା ନିମନ୍ତେ ତାଙ୍କରି ଉଦ୍ୟମରେ ସଙ୍ଗୀତ ଶ୍ରେଣୀ ଖୋଲା ଯାଇଥିଲା ଓ ଆନୁଷଙ୍ଗିକ ବାଦ୍ୟ ଓ ସ୍ୱରଯନ୍ତ୍ର ମଧ୍ୟ କିଣା ଯାଉଥିଲା ଓଡ଼ିଶାର ସୁନାମଧନ୍ୟ ସଙ୍ଗୀତଜ୍ଞ କ୍ଷିତୀଶ ଚନ୍ଦ୍ର ମୈତ୍ର ସହକାରୀ ପ୍ରଧାନଶିକ୍ଷକ ଭାବେ ସ୍କୁଲରେ ଯୋଗ ଦେଇ ସଙ୍ଗୀତ ଶ୍ରେଣୀର ଯଥେଷ୍ଟ ଉନ୍ନତି କରିଥିଲେ। ରେଡ଼ିଓ କଣ୍ଠଶିଳ୍ପୀ ଲୋକନାଥ ପାଳ ସଙ୍ଗୀତ ଶିକ୍ଷକ ଭାବେ ଯୋଗଦେଇ ଛାତ୍ରଛାତ୍ରୀମାନଙ୍କୁ ନୃତ୍ୟ ଓ ସଙ୍ଗୀତ ଶିକ୍ଷା ଦେବାପାଇଁ ଏକ ସଙ୍ଗୀତ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ।

ଏହା ପ୍ରୟାଗ ସମିତି ଦ୍ୱାରା ସ୍ୱୀକୃତି ପ୍ରାପ୍ତ ହୋଇଥିଲା। ପ୍ରତିବର୍ଷ ସ୍କୁଲରେ ଗୋଟିଏ ଲେଖାଏଁ ନାଟକ ମଞ୍ଚସ୍ଥ ହେଉଥିଲା। ମୋର ଦୁଇବର୍ଷ ଅଧ୍ୟୟନ ସମୟ ଭିତରେ ସ୍କୁଲରେ ସୁଦାମା ଓ କାଞ୍ଚି କାବେରୀ ନାଟକ ଅଭିନୀତ ହୋଇଥିଲା। ଛୋଟ ପିଲାଙ୍କର ନାଟକ ଦେଖି କିଶୋରୀବାବୁ ଏଭଳି ଅଭିଭୂତ ହୋଇ ପଡ଼ିଥିଲେ ଯେ ଗୋଟିଏ ରଙ୍ଗମଞ୍ଚ ପାଇଁ ଯାହା ଯାହା ଦରକାର ସବୁ ସ୍କୁଲରେ ରଖାଇବାର ବ୍ୟବସ୍ଥା କରିଥିଲେ। ସ୍କ୍ରିନ୍ ପୋଷାକ ଏପରିକି ନିଶ, ଦାଢ଼ି, ଖଣ୍ଡା, ବେଣୀ ସବୁ କିଣି ସ୍କୁଲରେ ରଖାଇଥିଲେ। ସ୍କୁଲରେ ଗୋଟିଏ ସିଲାଇ ଶ୍ରେଣୀ ଥାଏ। ଛାତ୍ରଛାତ୍ରୀମାନେ ସିଲାଇ ଶିଖନ୍ତି। ବାଳିକାମାନେ ରୁମାଲ, ଟେବୁଲ୍ କ୍ଲଥ୍ ଉପରେ ସୁନ୍ଦର ସୁନ୍ଦର ଚିତ୍ର ସମ୍ବଳିତ ଡିଜାଇନ୍ ଶିଖନ୍ତି। ବାର୍ଷିକ ଉତ୍ସବରେ ଆକର୍ଷଣୀୟ ହସ୍ତକର୍ମ ପ୍ରଦର୍ଶନୀ ଅନୁଷ୍ଠିତ ହେଉଥିଲା। ସେଥିରେ ଛାତ୍ରୀମାନଙ୍କ ଦ୍ୱାରା ପ୍ରସ୍ତୁତ ବିଭିନ୍ନ କାରୁକାର୍ଯ୍ୟପୂର୍ଣ୍ଣ ମୋଜା, ସ୍ୱେଟର, ରୁମାଲ୍, ଟେବୁଲ କ୍ଲଥ୍, ପରଦା ଓ ବାଳକମାନଙ୍କ ଦ୍ୱାରା ପ୍ରସ୍ତୁତ ବିଭିନ୍ନ ରଙ୍ଗର ମାଟିପାତ୍ର ଫଳ ଆଦି ପ୍ରଦର୍ଶିତ ହେଉଥିଲା।

ସ୍କୁଲ ସହିତ ସଂଲଗ୍ନ ଡାକ୍ତରଖାନା, ନିଳାଦ୍ରୀନାଥ ଦତ୍ତ ସେଠାରେ ଡାକ୍ତର ଥାଆନ୍ତି। ସେ କ୍ଲାସ୍‌ରେ ଶରୀରତତ୍ତ୍ୱ ଓ ସ୍ୱାସ୍ଥ୍ୟରକ୍ଷା ଅପ୍‌ସନାଲ୍ ପଢ଼ାନ୍ତି। ଛାତ୍ରାବାସ କୌଣସି ଛାତ୍ରକୁ ଯଦି ଜ୍ୱର ବା ଝାଡ଼ା ହେଲା କିମ୍ବା ସେ ଯଦି ଡାକ୍ତରଖାନାରେ ଭର୍ତ୍ତି ହେଲା, ତେବେ କିଶୋରୀବାବୁଙ୍କ ତତ୍ପରତା ଦେଖେ କିଏ ? ସାରା ରାତି ବସି ଥିବେ। ପିଲାମାନଙ୍କର ପାଳି ହୋଇଥାଏ। ନିଜେ ଘରକୁ ଫେରିବେନି। ଠିକ୍ ସମୟରେ ଔଷଧ ଦେବାରେ ଯେପରି ଅବହେଳା ନହୁଏ ତାହା ସେ ନିଜେ ତଦାରଖ କରନ୍ତି। ଖାଲି ବାଗୁରାଇ ହାଇସ୍କୁଲ କାହିଁକି ଭଦ୍ରକ ସହରର ଯେ କୌଣସି ଦୁଃଖୀ ଓ ଗରିବ ଲୋକର ଦୈନ୍ୟ ଦେଖିଲେ କିଶୋରୀବାବୁ ଦୁଃଖରେ ମ୍ରିୟମାଣ ହୋଇପଡ଼ନ୍ତି। କୌଣସି ଅସହାୟ ବ୍ୟକ୍ତି ଡାକ୍ତରଖାନାରେ ମରିଯାଇଛି, ତାର ଶବଦାହ ପାଇଁ କେହି ଆତ୍ମୀୟ ଆସିପାରିନାହାନ୍ତି। ସଙ୍ଗେ ସଙ୍ଗେ ବାଗୁରାଇ ହାଇସ୍କୁଲରୁ ସ୍ୱେଚ୍ଛାସେବକ ବାହିନୀ ବାହାରି ପଡ଼ିବେ। ଭଦ୍ରକ ଡାକ୍ତରଖାନାରେ କେହି ମୃତ୍ୟୁ ସଂକଟରେ ସମ୍ମୁଖୀନ। ସଙ୍ଗେ ସଙ୍ଗେ କିଶୋରିବାବୁ ତାଙ୍କର ସ୍ୱେଚ୍ଛାସେବକ ବାହିନୀ ସାହାଯ୍ୟରେ ରୋଗୀର ମୁହଁରେ ହସ ଫୁଟାଇବାକୁ ବାହାରି ପଡ଼ିବେ।

ଅଧ୍ୟୟନ, ଅଧ୍ୟାପନ, ଜପ, ଧ୍ୟାନ, ଦାନ, ସୌହାର୍ଦ୍ଦ୍ୟ ଯାହାଙ୍କର ଜୀବନ ବ୍ୟାପୀ ସାଧନା ସେହି ସ୍ଥିତଧୀଯୋଗୀ ଜ୍ଞାନଗୁରୁ ସୌହାର୍ଦ୍ଦ୍ୟପୂର୍ଣ୍ଣ ଛାତ୍ରବତ୍ସଳ ଶିକ୍ଷକ ଅକଳନୀୟ ଅତୁଳନୀୟ।

ସେ ଆଜି ଇହଜଗତରେ ନାହାନ୍ତି, କିନ୍ତୁ ତାଙ୍କର ଅମଳିନ କର୍ତ୍ତବ୍ୟନିଷ୍ଠା ଓ କର୍ମଧାର ମୋ ଭଳି ବହୁ ଛାତ୍ରଙ୍କ ହୃଦୟରେ ଚିର ଜାଜ୍ଜ୍ୱଲ୍ୟମାନ ହୋଇରହିବ। ସହସ୍ର ସହସ୍ର ଛାତ୍ରଛାତ୍ରୀଙ୍କ ସହ ତାଙ୍କ ଦୈନନ୍ଦିନ ଜୀବନରେ ବିଭିନ୍ନ ପରିସ୍ଥିତିରେ ସେ କିଭଳି ଆତ୍ମ ବିନିଯୋଗ କରି ପାରିଥିଲେ ଓ ନାନାବିଧ ଶୈକ୍ଷିକ ଓ ପ୍ରଶାସନିକ ସମସ୍ୟାଗୁଡ଼ିକ ସେ କିଭଳି ସମାଧାନ କରୁଥିଲେ ତାହାହିଁ କୌତୂହଳର ବିଷୟ। ତାଙ୍କର ଅନୁଭୂତି ସମ୍ପନ୍ନ କାର୍ଯ୍ୟ ସମୂହର ଇତିବୃତ୍ତ ସଂଗୃହୀତ ଓ ପ୍ରକାଶିତ ହୋଇପାରିଲେ ଉତ୍ତର କାଳର ଗୁରୁଶିଷ୍ୟ ପରମ୍ପରାକୁ ମଧୁମୟ କର୍ମପ୍ରେରଣା ଯୋଗାଇ ପାରନ୍ତା କହିଲେ ଅତ୍ୟୁକ୍ତି ହେବନାହିଁ। କିଶୋରୀବାବୁ ଥିଲେ କ୍ଷମାର ଏକ ମୂର୍ତ୍ତିମନ୍ତ ଅବତାର। ଥରେ ଜନୈକ ଛାତ୍ର ସ୍କୁଲ କାର୍ଯ୍ୟାଳୟର ଝରକା ଭାଙ୍ଗି ବାର୍ଷିକ ପରୀକ୍ଷାର ପ୍ରଶ୍ନପତ୍ର ଚୋରି କରିଥିଲେ। ଅନୁସନ୍ଧାନ କରି ପ୍ରଧାନଶିକ୍ଷକ ଛାତ୍ରଙ୍କୁ ଧରିପାରିଲେ। ଆଉଥରେ ପ୍ରଶ୍ନ ଛପାଯାଇ ପୁନର୍ବାର ପରୀକ୍ଷା ହେଲା, ଛାତ୍ରଟି ତାର ଭୁଲ ସ୍ୱୀକାର କରି ଅନୁତପ୍ତ ହେଲା। ସ୍ୱଭାବ ସୁଲଭ ଗୁଣରେ ସେ ଛାତ୍ରଟିକୁ କ୍ଷମା ଦେଲେ। ସାଧାରଣରେ ଉକ୍ତ ଘଟଣାଟିର ସମାଲୋଚନା ହେବାରୁ କିଶୋରୀବାବୁ କହିଥିଲେ "ପ୍ରଶ୍ନପତ୍ର ପ୍ରସ୍ତୁତି ନିମିତ୍ତ ସାମାନ୍ୟ ଅର୍ଥ ବ୍ୟୟିତ ହୋଇଥିଲା। ଏହାର ବିନିମୟରେ ଯଦି ଜଣେ ଛାତ୍ରର ଚରିତ୍ର ସଂଶୋଧନ ହୋଇପାରିଲା, ତେବେ ଏହା ଠାରୁ ଆନନ୍ଦର ବିଷୟ କ'ଣ ଥାଇପାରେ? ଏହି ମର୍ମରେ ଭାଗବତ ବାଣୀ ସ୍ମରଣକୁ ଆସେ। "ଦଣ୍ଡିବା ଶକ୍ତି ଯାର ଥାଇ ସେ ପୁଣି କ୍ଷମା ଆଚରଇ?" ଧନ୍ୟ ସେ ଗୁରୁ ଧନ୍ୟ ତାଙ୍କର ଚିନ୍ତାଧାରା। ଅଳ୍ପଦିନ ଅଧ୍ୟୟନ ଭିତରେ ମୁଁ ତାଙ୍କର ଅତିପ୍ରିୟ ଛାତ୍ରରେ ପରିଣତ ହୋଇଗଲି। ମୋ ପ୍ରତି ତାଙ୍କର ଅଗାଧ ବିଶ୍ୱାସ ଓ ଅନ୍ତରର ସ୍ନେହ ମୁଁ ସେଇ କିଶୋର ବୟସରେ ବୁଝିପାରୁନଥିଲି। ଆଜି ମନେ ପଡ଼ିଲେ ନିଜକୁ ଲଜ୍ଜା ଲାଗେ। ସେ ଥିଲେ କେତେ ମହାନ୍। ୧୯୫୦ ମସିହା ଫେବୃୟାରୀ ମାସରେ ବାସୁଦେବପୁର ହାଇସ୍କୁଲରେ ପ୍ରଧାନଶିକ୍ଷକ ଓ ଅନ୍ୟ କେତେ ଜଣ ଶିକ୍ଷକଙ୍କ ମଧ୍ୟରେ

ମତାନ୍ତର ସୃଷ୍ଟି ହେଲା। ତା ଫଳରେ ସ୍କୁଲର ଦୁଇ ଜଣ କୃତୀଶିକ୍ଷକ ଶରତଚନ୍ଦ୍ର କର ଓ ନୀଳମଣି ପ୍ରହାଣ ସ୍କୁଲ ଛାଡ଼ି ଚାଲିଆସିଲେ। ଦୁଇ ଜଣ ଯାକ ଶିକ୍ଷକ ଅତ୍ୟନ୍ତ ଛାତ୍ରବତ୍ସଳ ଓ କର୍ମଠ। ଶରତବାବୁ ଥିଲେ ଅତ୍ୟନ୍ତ ମେଧାବୀ। ତାଙ୍କର ଗଣିତ ଶାସ୍ତ୍ର ଉପରେ ଖୁବ୍ ଦକ୍ଷତା ଥିଲା। ତାଙ୍କର ପାଠପଢ଼ାର ଶୈଳୀ ଥିଲା ଅତି ଉଚ୍ଚକୋଟୀର। ନୀଳମଣି ବାବୁ ଥିଲେ ଛାତ୍ରବତ୍ସଳ ଓ କର୍ମଯୋଗୀ। ସେ ପାଠପଢ଼ା ସହିତ ସ୍କୁଲ ବଗିଚା, ଖେଳ, ନାଟକ ଆଦି ସଂଗଠନରେ ଅତ୍ୟନ୍ତ ପାରଙ୍ଗମ ଥିଲେ। ଦୁଇ ଜଣ ଯାକ ବାଗୁରାଇରେ ଚାକିରି ପାଇଁ ଆବେଦନ କରିଥିଲେ। ମୁଁ ଆଗରୁ ବାସୁଦେବପୁର ସ୍କୁଲର ଛାତ୍ର ଥିଲି। ହଠାତ୍ ମୋତେ କିଶୋରୀ ବାବୁ ଅଫିସ୍‌କୁ ଡକାଇ ଦୁଇ ଜଣଯାକ ଶିକ୍ଷକଙ୍କ ବିଷୟରେ ମୋର ମତ ପଚାରିଲେ। ଦୁଇ ଜଣଯାକ ଅତି ଉଚ୍ଚକୋଟୀର ଶିକ୍ଷକ ଓ ସେମାନଙ୍କ ଦକ୍ଷତା ବିଷୟରେ ମୁଁ ଉଚ୍ଚପ୍ରଂଶସା କଲି। ସଂଗେ ସଂଗେ ଦୁଇଜଣ ଯାକ ଶିକ୍ଷକ ସ୍କୁଲରେ ନିଯୁକ୍ତି ପାଇଲେ। ଅସମୟରେ ଅନ୍ୟ ସ୍କୁଲରେ ଝଗଡ଼ା ଲାଗି ଚାକିରି ଛାଡ଼ିଥିବା ଶିକ୍ଷକମାନଙ୍କୁ ନେବା ପାଇଁ ଯେକୌଣସି ପ୍ରଧାନଶିକ୍ଷକ କୁଣ୍ଠବୋଧ କରିବା ସ୍ୱାଭାବିକ। ସେଥିପାଇଁ କେତେକ ଶିକ୍ଷକ କିଶୋରୀବାବୁଙ୍କୁ ବାରଣ ମଧ କରିଛନ୍ତି। ଅଳ୍ପ କେତେ ଦିନ ପରେ ଯେତେବେଳେ ଜଣାଗଲା ଯେ ଶିକ୍ଷକ ଦୁଇ ଜଣଙ୍କର ଶିକ୍ଷାଦାନ ପ୍ରଣାଳୀ ଓ କର୍ତ୍ତବ୍ୟନିଷ୍ଠା ଉଚ୍ଚକୋଟୀର, କିଶୋରୀବାବୁ ଥରେ ଶିକ୍ଷକମାନଙ୍କ ଗ୍ରହଣରେ ହସି ହସି କହିଲେ, ଛାତ୍ରମାନେ ହିଁ ଶିକ୍ଷକ ମାନଙ୍କର ଉପଯୁକ୍ତ ବିଚାରକ। ସେହିବର୍ଷ ମାର୍ଚ୍ଚ ମାସରେ ବାସୁଦେବପୁର ହାଇସ୍କୁଲରୁ ବାଧ୍ୟତାମୂଳକ ସାର୍ଟିଫିକେଟ୍ ପାଇ ମୋର ଜଣେ ବନ୍ଧୁ ବିପିନବିହାରୀ ପଣ୍ଡା ବାଗୁରାଇ ସ୍କୁଲରେ ନାମ ଲେଖାଇବାକୁ ଆସିଲେ। ତାଙ୍କର ସାର୍ଟିଫିକେଟ୍‌ରେ ପ୍ରଧାନଶିକ୍ଷକ ଚରିତ୍ର ଖରାପ ଲେଖିଦେଇଥିଲେ। ମୁଁ ବିପିନକୁ ତାଙ୍କ ପାଖକୁ ନେଇ ସ୍କୁଲରେ ପଢ଼ିବାର ସୁଯୋଗ ଦେବାକୁ ଅନୁରୋଧ କଲି। ସେ ରାଜି ହେଲେ। କିନ୍ତୁ ବିପିନର ସାର୍ଟିଫିକେଟ୍ ଦେଖିଲେ କେଉଁ ପ୍ରଧାନଶିକ୍ଷକ ନାମ ଲେଖିବାକୁ ରାଜିହୁଅନ୍ତା। ସେଥିପାଇଁ ମୁଁ କହିଲି ବିପିନ ଗରିବ ଘରର ପିଲା। ବର୍ତ୍ତମାନ ନାମ ଲେଖାଇପାରିବନି। ସେ ୨ ମାସ ପ୍ରାଇଭେଟ୍ ପଢୁ। ଜୁଲାଇରେ ନାମ ଲେଖାଇବ। କେବଳ ମୁଁ କହୁଥିବାରୁ ସେ ରାଜି ହେଲେ । ଜୁଲାଇରେ ନାମ ଲେଖାଇବା ବେଳକୁ

ଯେତେବେଳେ ସେ ସାର୍ଟିଫିକେଟ୍ ଦେଖିଲେ ରାଗି ଲାଲ ହୋଇଗଲେ। ମୋତେ ଅଫିସ୍‌କୁ ଡକାଇ ପଚାରିଲେ। ଭାସ୍କର ତୁ ମୋ ଆଗରେ ପ୍ରତାରଣା କରି ପାରିଲୁ? ମୁଁ ଭୟରେ ଥରି ଥରି କହିଲି "ସାର୍, ବିପିନର ଜୀବନ ନଷ୍ଟ ହୋଇଯାଇଥାନ୍ତା। ବାସୁଦେବପୁରର ପ୍ରଧାନଶିକ୍ଷକ ତା' ଉପରେ ରାଗି ତାକୁ ଏପରି ସାର୍ଟିଫିକେଟ୍ ଦେଇଛନ୍ତି। ୪ ମାସ ଭିତରେ ଆପଣ ବିପିନର ଚରିତ୍ରରେ କୌଣସି ତ୍ରୁଟି ଦେଖିପାରିଛନ୍ତି କି? ଜଣେ ପିଲାର ଜୀବନ ରକ୍ଷା ପାଇଁ ମୁଁ ମିଥ୍ୟାର ଆଶ୍ରୟ ନେଇଛି। ମୁଁ ଯଦି ସତକଥା କହିଥାନ୍ତି ଆପଣ କଣ ବିପିନକୁ ସ୍କୁଲରେ ସ୍ଥାନ ଦେଇଥାନ୍ତେ। ମୁଁ ଜାଣି ଜାଣି ଏହା କରିଛି, ମୋତେ କ୍ଷମା ଦିଅନ୍ତୁ।" ଆଶ୍ଚର୍ଯ୍ୟର ବିଷୟ ସେହି ରୁଦ୍ରରୂପୀ କିଶୋରୀବାବୁଙ୍କ ମୁଖମଣ୍ଡଳକୁ ହଠାତ୍ ପ୍ରଶାନ୍ତି ରୂପ କୋମଳ ଜ୍ୟୋସ୍ନା ଆଛନ୍ନ କଲା। ସଂଗେ ସଂଗେ ସହାସ୍ୟ ବଦନରେ କହିଲେ ତୋର ଅନ୍ୟ ପାଇଁ ଏହି ଦରଦ ଓ କାର୍ଯ୍ୟ ପାଇଁ ଭଗବାନ ତୋର ମଙ୍ଗଳ କରିବେ। ତୁତ ଆଉ ନିଜ ପାଇଁ ପ୍ରତାରଣା କରିନାହୁଁ? ଧର୍ମସୁତ ଯୁଧିଷ୍ଠିର ମଧ ମହାଭାରତ ଯୁଦ୍ଧରେ କହିଥିଲେ "ନରେ ବା ଗୁଞ୍ଜରେ ଅଶ୍ୱାତ୍ଥମା ହତଃ" ସେହି ବିପିନ ଆଜି ରାଉରକେଲା ଇସ୍ପାତ୍ କାରଖାନାର ଏକ ଉଚ୍ଚପ୍ରଦସ୍ଥ ଅଫିସର ଭାବେ ଅବସର ଗ୍ରହଣ କରିଛି।

କିଶୋରୀ ବାବୁ ଥିଲେ ଅତ୍ୟନ୍ତ ସରଳ ବିଶ୍ୱାସୀ। ସବୁ କଥାକୁ ସହଜରେ ଗ୍ରହଣ କରିବା ଥିଲା ତାଙ୍କର ସହଜାତ ପ୍ରବୃତ୍ତି। ଦିନେ ଆମ କ୍ଲାସ୍‌ର ଜଣେ ଛାତ୍ର ରଘୁନାଥ ରାୟ ପ୍ରଧାନଶିକ୍ଷକଙ୍କ ଠାରୁ କେତେକ ସୁବିଧା ହାସଲ ଉଦ୍ଦେଶ୍ୟରେ ତାଙ୍କ ନିକଟରେ ପ୍ରକାଶ କଲେ। 'ଜେଜେମା ମୋତେ ବାବାଜୀ କରିଦେବାପାଇଁ ମୁଁ ଜନ୍ମ ହେବାପରେ ତୁଳସୀ ଚଉରା ମୂଳେ ଗଡ଼ାଇ ଦେଇଥିଲେ। ତେଣୁ ଏ ବୟସରେ ମଧ ମୋର ସଂସାର ପ୍ରତି ବିତୃଷ୍ଣାଭାବ ଆସୁଛି। ମୁଁ ବୈଷ୍ଣବ ହୋଇଯିବି। ବୈଷ୍ଣବ ଧର୍ମ ପ୍ରେମୀ ଗୁରୁ ଛାତ୍ରଟିର କଥା ଶୁଣି ସହଜରେ ବିଶ୍ୱାସ କରିଗଲେ। କିଛିଦିନ ପରେ ସେହି ଛାତ୍ରଙ୍କ ପ୍ରତି ତାଙ୍କର ସରଳ ବିଶ୍ୱାସ ଏକ ଭ୍ରମ ଧାରଣା ବୋଲି ପ୍ରମାଣିତ ହେଲା। ଜୀବନକୁ ଏକ ବ୍ୟାପକ ଓ ମହତ୍ତର ଦୃଷ୍ଟିକୋଣରୁ ସେ ବିଚାର କରିଥିଲେ। ସଂକୀର୍ଣ୍ଣତା ତାଙ୍କର ଅନାବିଳ ହୃଦୟକୁ ସ୍ପର୍ଶ କରିପାରି ନଥିଲା। ସେ ଥିଲେ ମହତ୍। ତେଣୁ କୁତ୍ସିତ ମଧରେ ସୌନ୍ଦର୍ଯ୍ୟର ସନ୍ଧାନ ପାଇବା ତାଙ୍କ ପକ୍ଷରେ ହିଁ ସମ୍ଭବ

ହୋଇପାରିଥିଲା।" ଏହି ସରଳ ବିଶ୍ୱାସ ଗୁଣଟି ମୋତେ କମ ପ୍ରଭାବିତ କରିନି। ଜୀବନରେ ଏହି ସରଳ ବିଶ୍ୱାସ ପାଇଁ ଅନେକଥର ଠକିଛି। କିନ୍ତୁ ଫଳ, ସରଳ ବିଶ୍ୱାସର ଜୟ। ଯେ ପକ୍ଷୀ ଉଡ଼େ ଯେତେ ଦୂର ସେ ଜାଣେ ତାହାର ବିଚାର।

ଆଜି ମଧ୍ୟ ସ୍ମୃତିଚାରଣ କରି ଭାବିପାରୁନି, ମୁଁ କିଶୋରୀ ବାବୁଙ୍କର ମହତ୍ତ୍ୱକୁ ଏ ପର୍ଯ୍ୟନ୍ତ ପୂର୍ଣ୍ଣଭାବେ ଉପଲବ୍ଧି କରିପାରିଛି କି ନା। ତାଙ୍କର ଏହି ସରଳ ହୃଦୟ ଓ ଛାତ୍ରବତ୍ସଳତା କୋମଳମତି ଛାତ୍ରମାନଙ୍କ ମନରେ ଅନେକ ସମୟରେ ଦ୍ୱନ୍ଦ୍ୱ ସୃଷ୍ଟି କରୁଥିଲା। ତାଙ୍କର ବୈଷ୍ଣବଧର୍ମ ପ୍ରତି ଥିବା ଏକନିଷ୍ଠବିଶ୍ୱାସର ସୁଯୋଗ ନେଇ ଅନେକ ଦୁଷ୍ଟ ଓ ସୁବିଧାବାଦୀ ଛାତ୍ର ବେକରେ ତୁଳସୀ ମାଳ ପକାଇ ନାନାଦି ଦୁଷ୍କର୍ମ କରିବାର ଦେଖା ଯାଇଥିଲା। ଯେତେ ପ୍ରକାର ଅପରାଧ କରି ତାଙ୍କ ପାଖରେ ଭୁଲ ହୋଇଛି ବୋଲି କହିଦେଲେ ତାଙ୍କର ରାଗ ନିଆଁରେ ପାଣି ପଡ଼ିଲା ଭଳି ପ୍ରଶମିତ ହୋଇଯାଉଥିଲା। ବାହାରେ ଶିକ୍ଷକ ଓ ଛାତ୍ରଙ୍କ ମହଲରେ ଅନେକ ସମୟରେ ପ୍ରଚାର ହେଉଥିଲା ଯେ ପ୍ରଧାନଶିକ୍ଷକ ଅନେକ ଚରିତ୍ର ହୀନ, ସୁବିଧାବାଦୀ ଓ ଦୁଷ୍ଟ ପ୍ରକୃତିର ଛାତ୍ରଙ୍କୁ ପ୍ରଶ୍ରୟ ଦେଇ ସ୍କୁଲ ମଧ୍ୟରେ ବିଶୃଙ୍ଖଳା ସୃଷ୍ଟି କରୁଛନ୍ତି। ଏହାର ପ୍ରତିବାଦ ଆବଶ୍ୟକ। ଏଭଳି ଗୋଟିଏ ଶୀତଳ ଯୁଦ୍ଧର ବାତାବରଣ ସ୍କୁଲରେ ପ୍ରବାହିତ ହେଉଥାଏ।

୧୯୫୦ ମସିହା ଜୁଲାଇ ୧୦ ତାରିଖ। ମୋ ଜୀବନରେ ଏହି ଦିବସଟି ଏକ ସ୍ମରଣୀୟ ଦିବସ ହୋଇରହିଯିବ। ମୁଁ ଥାଏ ସ୍କୁଲ ତଥା ଛାତ୍ରାବାସର ଜେନେରାଲ ମନିଟର। ୧୦ମ ଶ୍ରେଣୀ ବାର୍ଷିକ ପରୀକ୍ଷାରେ ମୁଁ କ୍ଲାସ୍ ତଥା ସମୁଦାୟ ସ୍କୁଲରେ ସର୍ବାଧିକ ନମ୍ବର ରଖିଥିବାରୁ ମୋର ସ୍ୱାଭିମାନ ମଧ୍ୟ ଥାଏ। ତା ସାଙ୍ଗକୁ କିଶୋରୀ ବାବୁଙ୍କର ମୋ ଉପରେ ଅଗାଧ ବିଶ୍ୱାସ। ମୋର ସ୍ପଷ୍ଟବାଦିତା ଗୁଣ ଫଳରେ ମୁଁ ଛାତ୍ର ସମାଜ ତଥା ଶିକ୍ଷକ ସମାଜରେ ଅତ୍ୟନ୍ତ ପ୍ରିୟ ଛାତ୍ର ଭାବରେ ପରିଗଣିତ ହେଉଥାଏ। ହଷ୍ଟେଲ୍‌ର ସୁପରିନ୍‌ଟେଣ୍ଡେଣ୍ଟ ଶରତଚନ୍ଦ୍ର କର ମୋତେ ସବୁ କାମରେ ପ୍ରଶଂସା କରୁଥାନ୍ତି ଓ ପ୍ରେରଣା ମଧ୍ୟ ଯୋଗାଉଥାନ୍ତି। ଏଭଳି ଏକ ପରିସ୍ଥିତିରେ ମୁଁ ଗର୍ବର ସର୍ବୋଚ୍ଚ ଶିଖରରେ ପହଞ୍ଚିଯାଇଥିଲି। ସେ ଦିନ ରାତ୍ରିରେ ଗୋଟିଏ ଛୋଟ ଘଟଣାକୁ ନେଇ ଆମ କ୍ଲାସ୍‌ର ପ୍ରଫୁଲ୍ଲଚନ୍ଦ୍ର ମହାନ୍ତି ସହ ମୋର କଳି ହେଲା। ପ୍ରଫୁଲ୍ଲ

ସେତେବେଳେ କିଶୋରୀବାବୁଙ୍କ ଗୋଡାଣିଆ ଗୋଷ୍ଠୀର ଏକ ସୁବିଧାବାଦୀ ଛାତ୍ର ଭାବେ ପରିଗଣିତ ହେଉଥାଏ। ହଷ୍ଟେଲ୍‌ର ସବୁ ଛାତ୍ର ଓ ସୁପରିନ୍‌ଟେଣ୍ଡେଣ୍ଟ ଉପଲବ୍ଧି କଲେ ଯେ ଗଣ୍ଡଗୋଳରେ ସମସ୍ତ ଦୋଷ ପ୍ରଫୁଲ୍ଲର ଓ ସେ ପ୍ରଧାନଶିକ୍ଷକଙ୍କର ଦୁର୍ବଳତାର ସୁଯୋଗ ନେଇ ଏଭଳି ମିଥ୍ୟା ଗଣ୍ଡଗୋଳ କରିଛି। ପ୍ରଧାନଶିକ୍ଷକ ଗଣ୍ଡଗୋଳ ଶୁଣି ଛାତ୍ରାବାସକୁ ଆସିଲେ। ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରି ସେ ବିଋର ଦେଲେ ପ୍ରଫୁଲ୍ଲର ଦୋଷ କିଛି ନାହିଁ। ସବୁ ଦୋଷ ଭାସ୍କରର। ସେଥିପାଇଁ ମୋତେ ଦଣ୍ଡ ମଧ ଦିଆଗଲା। ତୁଳସୀ ମାଳି ପିନ୍ଧୁଥିବା ସୁବିଧାବାଦୀ ଛାତ୍ରମାନଙ୍କ ବିରୁଦ୍ଧରେ କୁହୁଳୁଥିବା ଅଗ୍ନି ହଠାତ୍ ଇନ୍ଧନ ପାଇ ତେଜି ଉଠିଲା। ହଠାତ୍ ଏହାର ପ୍ରତିବାଦ କରି ଆମ କ୍ଲାସ୍ କାହିଁକି ସାରା ସ୍କୁଲ ସ୍ୱର ଉତ୍ତୋଳନ କଲା। ମୋର ଅଗୋଚରରେ ସ୍କୁଲରେ ଷ୍ଟ୍ରାଇକ୍ ହୋଇଗଲା। ସମସ୍ତଙ୍କର ଗୋଟିଏ ସ୍ୱର ପ୍ରଧାନଶିକ୍ଷକ ତାଙ୍କର ତୋଷାମଦକାରୀ ସୁବିଧାବାଦୀ ଛାତ୍ରର ଦୋଷ ଘୋଡ଼ାଇବା ପାଇଁ ସ୍କୁଲର ସ୍ୱଷ୍ଟବାଦୀ ଛାତ୍ର ତଥା ଜେନେରାଲ ମନିଟରଙ୍କୁ ମାଡ଼ ଦେଇଛନ୍ତି। ଦୀର୍ଘ ୨୦ ଦିନ ସ୍କୁଲରେ ପାଠପଢ଼ା ବନ୍ଦ ହୋଇଗଲା। ମୋତେ କେନ୍ଦ୍ର କରି ଯେତେବେଳେ ଏତେ ବଡ଼ ଆନ୍ଦୋଳନ ତେଜି ଉଠିଛି ମୁଁ ବାଧ ହୋଇ ଛାତ୍ର ସମାଜର ସେହି ମହାସ୍ରୋତରେ ଲୀନ ହୋଇଗଲି। ଯେଉଁ ପ୍ରଧାନ ଶିକ୍ଷକ ଥିଲେ ମୋର ଆଦର୍ଶ, ପ୍ରେରଣାର ଉତ୍ସ ସେ ହଠାତ୍ ମୋ ପାଖରେ ଭିନ୍ନ ରୂପ ନେଲେ। ଅନ୍ୟମାନଙ୍କ ସହିତ ମିଶି ତାଙ୍କ ନାମରେ ବହୁତ କୁତ୍ସାରଟନା କରିଛି। "ପ୍ରଧାନଶିକ୍ଷକ ତୋଷାମଦିଆଙ୍କୁ ପ୍ରଶୟ ଦେବା ବନ୍ଦ କରନ୍ତୁ, ପ୍ରକାଶ୍ୟ ରେ କ୍ଷମା ମାଗନ୍ତୁ " ଆଦି ସ୍ଲୋଗାନ୍ ମଧ ଦେଇଛି। କ୍ରମେ ବାଗୁରାଇ ସ୍କୁଲର ଏହି ଆନ୍ଦୋଳନ ଭଦ୍ରକ ହାଇସ୍କୁଲ, ତା ପରେ ଭଦ୍ରକ କଲେଜକୁ ମଧ ବ୍ୟାପିଲା। କଲେଜର ୟୁନିୟନ ସଭାପତି ଆନ୍ଦୋଳନର ନେତୃତ୍ୱ ନେବାକୁ ଆଗଭର ହୋଇ ବାହାରି ଆସିଲେ। ଆନ୍ଦୋଳନ ଯେତେବେଳେ ୨୦ ଦିନରେ ପହଞ୍ଚିଲା ଛାତ୍ର ବତ୍ସଳ କିଶୋରୀବାବୁ ଆଉ ସହି ପାରିଲେନି। ୧୧ଶ ଶ୍ରେଣୀର ଛାତ୍ରମାନଙ୍କର ଅଭିଭାବକ ମାନଙ୍କୁ ଡକାଗଲା। ମୋର ଅଭିଭାବକ ଭାବେ ଡକା ହୋଇ ଆସିଥିଲେ ମୋର ପୂର୍ବତନ ଶିକ୍ଷକ ତଥା ଆମ ଗ୍ରାମର ଶଙ୍କର୍ଷଣ ଦାଶ। ସେତେବେଳକୁ ସେ ଶିକ୍ଷକତା ଛାଡ଼ି ସ୍କୁଲ ସବ୍‌ଇନ୍‌ସପେକ୍ଟର ଭାବେ ଭଦ୍ରକରେ କାର୍ଯ୍ୟ

କରୁଥାନ୍ତି। ଅଭିଭାବକ ମାନଙ୍କ ଗ୍ରହଣରେ ବାହାରକୁ ଗମ୍ଭୀର ଓ ଦାମ୍ଭିକ ଦେଖାଯାଉଥିବା ପ୍ରଧାନଶିକ୍ଷକ କିଶୋରୀବାବୁ କାନ୍ଦ କାନ୍ଦ ହୋଇ କହିଲେ, ଅନ୍ୟ ଛାତ୍ରମାନେ ସିନା ମୋତେ ବୁଝି ପାରିଲେନି ? ଭାସ୍କର କ'ଣ ମୋତେ ବୁଝିପାରିଲାନି ? ଆସନ୍ତାକାଲି ଏହାର ସମାଧାନ ହେବ ନଚେତ ମୁଁ ହେଡ଼ମାଷ୍ଟର ପଦବୀ ତ୍ୟାଗ କରିବି। ତାଙ୍କର ସମାଧାନର ସୂତ୍ର ମଧ୍ଯ ସେ ସମସ୍ତଙ୍କ ପାଖରେ ପ୍ରକାଶ କଲେ। କାଲିଠାରୁ ଭାସ୍କର ମୋ ଘରେ ରହି ପାଠ ପଢ଼ିବ। ୧୧ଶ ଶ୍ରେଣୀରେ ୨୦ ଦିନର ତାର ପାଠ ନଷ୍ଟ ହୋଇଗଲାଣି। ମୁଁ ତାଠାରୁ ବହୁତ ଆଶା କରିଥିଲି। ତାର ଏହି କ୍ଷତିପୂରଣ ର ଦାୟିତ୍ୱ ମୁଁ ନିଜେ ନେବି। ଅନ୍ୟ ଛାତ୍ରମାନେ ଯେତେ ଦୋଷ କରିଛନ୍ତି ସମସ୍ତଙ୍କୁ କ୍ଷମା ଦିଆଯିବ। ସେମାନେ ଭାବପ୍ରବଣ ହୋଇ ଯାହା ଯାହା କହିଛନ୍ତି ବା କରିଛନ୍ତି ତାଙ୍କର ପ୍ରାୟଶ୍ଚିତ ପାଇଁ ମୁଁ ଭଗବାନଙ୍କ ପାଖରେ ଲକ୍ଷେ ମାଳି ଗଡ଼ାଇବା କାଲିଠାରୁ ଆରମ୍ଭ କରିବି। ପ୍ରଧାନଶିକ୍ଷକଙ୍କ ଏହି ନିଷ୍ପତ୍ତି ଶୁଣି ଅଭିଭାବକଙ୍କ ଆଖି ଛଳଛଳ ହୋଇଗଲା। ସଙ୍ଗେ ସଙ୍ଗେ ଛାତ୍ର ସମାଜର ଆନ୍ଦୋଳନର ପୂର୍ଣ୍ଣଚ୍ଛେଦ ପଡ଼ିଗଲା। ତହିଁ ଆରଦିନ ଅଗଷ୍ଟ ପହିଲାରେ ମୁଁ ମୋର ବହି ଓ ବିଛଣା ଧରି କିଶୋରୀବାବୁଙ୍କ ଘର ଅଭିମୁଖେ ଚାଲିଲି। ସାଳନ୍ଦୀ ନଦୀ ପାର ହେଲେ ତାଙ୍କର ଘର, ନଦୀ କୂଳରେ ନରବାବୁଙ୍କର ଘର। ନରବାବୁ ଭଦ୍ରକର ଏକ ଜଣାଶୁଣା ଓକିଲ ଭାବେ ପରିଚିତ। ସେ ଥିଲେ କିଶୋରୀବାବୁଙ୍କର ଭିଣୋଇ, ବାଗୁରାଇ ହାଇସ୍କୁଲ, ଭଦ୍ରକ କଲେଜ, ବାଳିକା ବିଦ୍ୟାଳୟର ସେକ୍ରେଟେରୀ। ନରବାବୁଙ୍କ ନାମ ଭଦ୍ରକର ସବୁ ଶିକ୍ଷାନୁଷ୍ଠାନ ସହିତ ଜଡ଼ିତ। ବାଟରେ ମୋତେ ଡାକି କହିଲେ "ଭାସ୍କର ତୁ ତୋର ହେଡ଼ମାଷ୍ଟରଙ୍କୁ ଚିହ୍ନିଲୁ ?" ସେ କାହିଁକି ତୋତେ ସେଦିନ ଦଣ୍ଡ ଦେଇଥିଲେ ବୁଝିପାରିଲୁ ? ତା ଦୃଷ୍ଟିରେ ତୁ କ'ଣ ସମସ୍ତଙ୍କ ସହିତ ସମାନ ? ସେ ତୋତେ ଏତେ ଭଲପାଏ ଯେ ସେ ଚାହେଁ ତୁ ତା ଭଳି ଆଦର୍ଶବାଦୀ ସ୍ପଷ୍ଟବାଦୀ, ଶାନ୍ତ, ସରଳ ପ୍ରବୃତ୍ତିର ହେବୁ। ସେ ଚାହେଁ ତୋର ବାକି ଯେତିକି ଦୋଷ ଓ ଦୁର୍ବଳତା ରହିଛି ତା ଘରେ ରଖି ସଜାଡ଼ିବ ଓ ତାରି ଆଦର୍ଶରେ ତୋତେ ଅନୁପ୍ରାଣିତ କରିବ।" ଦୁଃଖରେ ଓ ଅନୁତାପରେ ମୋର ଆଖି ଛଳ ଛଳ ହୋଇଗଲା। ଏବେ ମଧ୍ୟ ସେ ଭାବନା ଆସିଲେ ଲଜ୍ଜାରେ ମୋର ସର୍ବାଙ୍ଗ ଥରି ଉଠେ।

ଏହିଦିନଠାରୁ ମୋ ଜୀବନର ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା। କିଶୋରୀବାବୁ ଆଜୀବନ ବ୍ରହ୍ମଚାରୀ ପରମ ବୈଷ୍ଣବ, ସକାଳ ୪ଟାରୁ ଶଯ୍ୟା ତ୍ୟାଗ କରି ମାଳି ଜପିବା ଆରମ୍ଭ କରନ୍ତି। ସାତ୍ତ୍ୱିକ ଆହାର, ପାଇଖାନା ଯିବା ପରେ ଲୁଗା ଧୁଆ ଯିବ। ତାଙ୍କ ଘରେ ଯିଏ ରହିବ ଉପରୋକ୍ତ ନିୟମରେ ଚଳିବ। ଅଳ୍ପଦିନ ଭିତରେ ମୁଁ ତାଙ୍କର ଜୀବନଯାତ୍ରା ସହିତ ପୂରାପୂରି ସାମିଲ୍ ହୋଇଗଲି। ଗୃହର ପରିବେଶ ବିଦ୍ୟାଧ୍ୟୟନ ପାଇଁ ଥିଲା ଉପଯୁକ୍ତ କ୍ଷେତ୍ର। ତା ସାଙ୍ଗକୁ ତାଙ୍କର ଅନାବିଳ ସ୍ନେହ। ଗଛରେ ଯେତେ ପଣସ, ଆମ୍ବ, ବରକୋଳି ହେବ, ସେଥିରୁ ଅଳ୍ପ ଗାଁରେ ବଣ୍ଟାଯିବ। ବାକି ସବୁ ପିଲାମାନେ ଖାଇବେ। ଗୋଟା ଗୋଟା ପଣସ ଖୋଲିଦେଇ ଆମେ ୫/୬ ଜଣ ସାଙ୍ଗ ଯେତେବେଳେ ଖାଇ ବସୁ ତାଙ୍କ ଖୁସି ଦେଖେ କିଏ? ପୂଝାରୀ ଟିକିଏ ଚୂଡ଼ା ଭିଜାଇ ଦିଅ। ଚୂଡ଼ା ସହ ପଣସ ରସ ମିଶାଇ ଖାଇଲେ ଭଲ ଲାଗିବ। ସ୍କୁଲରୁ ଫେରି ଅଧିକାଂଶ ଦିନ ସେ ପୁରୀ ପରଟା ବା ଭଜାଚୁଡ଼ା ଖାଆନ୍ତି। ଖାଇଲାବେଳେ ମୁଁ ପାଖରେ ଖାଏ। ଖାଉଥିବା ବେଳେ ଗୋଟା ଗୋଟା ପୁରି ପରଟା ମୋ ଥାଳୀକୁ ଡ଼େଇଁ ପକାଇ କହୁଥବେ ପୂଝାରୀ ଭାସ୍କରକୁ କଣ ୪ଟା ପରଟା ଦେଇଛ। ତାର ପରା ପିଲା ବୟସ। ସେ ବର୍ତ୍ତମାନ ଖାଇବ ନାହିଁ, ଆଉ କଣ ମୋ ବୟସରେ ଖାଇବ? ତାଙ୍କ ଘରେ ଅବସ୍ଥାନ କାଳରେ ଅକ୍ଟୋବର ମାସରେ ମୋର ଜେଜେମା ଇହଲୀଳା ସମ୍ବରଣ କଲେ। ମୁଁ ତାଙ୍କର ସବୁଠାରୁ ଆଦରର ନାତି ଥିଲି। ସେ ୯୩ ବର୍ଷ ବୟସରେ ଦେହତ୍ୟାଗ କଲେ। କିନ୍ତୁ ଶେଷ ମୁହୂର୍ତ୍ତରେ ତାଙ୍କୁ ଦେଖିପାରି ନଥିବାରୁ ମୁଁ ବହୁତ ଦୁଃଖିତ ହେଲି। ମୁଁ ଜେଜେମାଙ୍କ କଥା ଭାବି ଯେତେବେଳେ ଅନ୍ୟମନସ୍କ ହୋଇଯାଏଁ, ସେ ସଙ୍ଗେ ସଙ୍ଗେ ଡାକି ସଂସ୍କୃତ ଭାଗବତରୁ ଦୁଇଚାରି ଧାଡ଼ି ବୁଝାଇ ମୋ ମନକୁ ସାନ୍ତ୍ୱନା ଦିଅନ୍ତି। ସକାଳେ ତାଙ୍କର ଘରେ ଗୋଟିଏ ଟିଉସନ୍ କ୍ଲାସ୍। କାହାଠାରୁ ଅର୍ଥଗ୍ରହଣ ତାଙ୍କର ନୀତି ବିରୋଧ। ସେ କ୍ଲାସ୍‌କୁ ଆସନ୍ତି ସ୍କୁଲର ବିଭିନ୍ନ କ୍ଲାସ୍‌ର ପିଲା। ଭଦ୍ରକ କଲେଜର ଆଇ.ଏ. ତଥା ବି.ଏ. ଶ୍ରେଣୀର ଛାତ୍ର। ସ୍କୁଲ ପିଲାମାନଙ୍କ ଭିତରୁ କିଏ ଗଣିତରେ ସନ୍ଦେହ ମୋଚନ ପାଇଁ ଆସିଥାଏ ତ ଆଉ କିଏ ଇଂରାଜୀରେ ସଂକ୍ଷିପ୍ତ ଟିପ୍ପଣୀ ବା ବ୍ୟାଖ୍ୟା ଲେଖିବାର ଶୈଳୀ ପାଇଁ ଚିନ୍ତାଧାରା ନେବାକୁ ଆସିଥାଏ। ମୋତେ ସବୁଠାରୁ ଆଶ୍ଚର୍ଯ୍ୟ

ଲାଗୁଥାଏ ଏଇଆ ଭାବି ଯେ ହେଡ଼ମାଷ୍ଟର ତ କଲେଜର ଅଧ୍ୟାପକ ନୁହନ୍ତି। କଲେଜର ପଢ଼ାଯାଉଥିବା ଇଂରାଜୀ ବହିର ଭାବୋପଲବ୍ଧି ଓ ସମାଲୋଚନାର ଧାର। (କୁଟିଳ ସମୀକ୍ଷା) critical appreciation ସେ କିପରି ଏତେ ପ୍ରାଞ୍ଜଳ ଭାବରେ ଛାତ୍ରମାନଙ୍କୁ ବୁଝାଇ ପାରୁଛନ୍ତି।

ତାଙ୍କ ଘରେ ରହଣି କାଳ ମଧ୍ୟରେ ଆଉ ଗୋଟିଏ ଘଟଣା ସ୍କୁଲରେ ଘଟିଲା। ଅବଶ୍ୟ ଜୁଲାଇ ମାସର ଆନ୍ଦୋଳନ ପରେ ମୁଁ ଅନ୍ୟ ପିଲାମାନଙ୍କଠାରୁ ନିଜକୁ ବିଚ୍ଛିନ୍ନ କରି ପଢ଼ା ପ୍ରତି ମନ ଦେଲି। ବାଉଦପୁର ଗାଁ ସେତେବେଳେ ଓଡ଼ିଶାର ବିଦ୍ୟାନଗରୀ ରୂପେ ପରିଗଣିତ ହେଉଥିଲା। ଆଶୁତୋଷ ମୁଖାର୍ଜୀଙ୍କ ବାଣୀ। 'If I throw a stone it should hit a graduate' ବାଉଦପୁର ଗ୍ରାମ ପ୍ରତି ପ୍ରଯୁଜ୍ୟ ଥିଲା। ସେ ଗ୍ରାମର ଅଧିକାଂଶ ପୁଅ ଗ୍ରାଜୁଏଟ୍। ଝିଅମାନେ ଅଧିକାଂଶ ମେଟ୍ରିକ୍ ପର୍ଯ୍ୟନ୍ତ ପଢ଼ିଛନ୍ତି। ଅଧିକାଂଶ ଝିଅ ସ୍ମାର୍ଟ। କିନ୍ତୁ କିଶୋରୀବାବୁଙ୍କୁ ଆବାଳ ବୃଦ୍ଧବନିତାଙ୍କର ଭୟ। ହେଡ଼ମାଷ୍ଟର ଚାଲିଯାଉଛନ୍ତି ଦେଖିଲେ ଯେ ଯାହା ସ୍ଥାନରେ ଛିଡ଼ା ହୋଇଯିବେ। ତାଙ୍କ ଘରେ ରହିବା ଫଳରେ ମୁଁ ଶିବଙ୍କ 'ସାପ' ନାମରେ ନାମିତ ହୋଇଗଲି। କାରଣ ମୁଁ ଅନେକଟା ତାଙ୍କର ଗୁଣ ଅନୁକରଣ କରି କାର୍ଯ୍ୟରେ ଅଗ୍ରସର ହେଉଥାଏ। ଟେଷ୍ଟ ପରୀକ୍ଷା ସରିଯାଇଥାଏ। ବଡ଼ ଦିନ ଛୁଟି। କେବଳ ୧୧ଶ ଶ୍ରେଣୀର ଛାତ୍ରମାନେ ଛାତ୍ରାବାସରେ ଥାଆନ୍ତି। ହଠାତ୍ ବାଉଦପୁର ଓ ବାଗୁରାଇ ରେ ପ୍ରଚାରିତ ହେଲା - ୧୧ଶ ଶ୍ରେଣୀର ଜଣେ ଛାତ୍ର ଏକ ଅସାମାଜିକ କାର୍ଯ୍ୟରେ ଲିପ୍ତ। ଯେଉଁ ଛାତ୍ର ପାଇଁ ଜୁଲାଇ ମାସରେ ସ୍କୁଲରେ ଏତେ ବଡ଼ ଆନ୍ଦୋଳନ ହୋଇଗଲା। ତାର ଏ କର୍ମ ପାଇଁ ସମସ୍ତେ କିଶୋରୀବାବୁଙ୍କୁ ଦୋଷ ଦେଲେ। ପୁଣି ସେହି ମୃଦୁଗୁଞ୍ଜରଣ, ପ୍ରଧାନଶିକ୍ଷକଙ୍କ ମୁହଁ ପାଇ ଚରିତ୍ରହୀନ ସୁବିଧାବାଦୀ ଛାତ୍ରମାନେ ନାନାଦି ଦୁଷ୍କର୍ମରେ ଲିପ୍ତ ହେଉଛନ୍ତି ଓ ଅନୁଷ୍ଠାନର ବଦନାମ କରିବାକୁ ପଛାଉ ନାହାନ୍ତି। ଅନେକ ଭଦ୍ରବ୍ୟକ୍ତି ପ୍ରକାଶ୍ୟରେ ନିଜର ମତାମତ ପ୍ରକାଶ କଲେ। ଆମ କ୍ଲାସ୍‌ର କୋମଳମତି ଆଦ୍ୟ ଯୌବନରେ ପଦାର୍ପଣ କରିଥିବା ଛାତ୍ରମାନଙ୍କ କଥା ଛାଡ଼। ସେମାନେ ଛାତ୍ରାବାସରେ ଏଭଳି ପରିସ୍ଥିତି ସୃଷ୍ଟି କଲେ ଯେ ଉକ୍ତ ଛାତ୍ରର ଜୀବନ ଦୁର୍ବିସହ ହୋଇ ଉଠିଲା। ହଠାତ୍ ଦିନେ ଟିଉସନ ପିରିଅଡ଼ରେ ଦେଖିଲି ସେ ଛାତ୍ର ଜଣକ

ଆସିଛି। ସେ ଦିନ ଆମର ପୂଜାରୀ ଭାଗବତ ପଣ୍ଡା ନଥାଏ। ତେଣୁ ରୋଷେଇ ଦାୟିତ୍ୱ ମୋ ଉପରେ ପଡ଼ିଥାଏ। ସବୁ ପିଲା ଚାଲି ଗଲା ପରେ ଦେଖିଲି ସେହି ଛାତ୍ରଟି କିଶୋରୀ ବାବୁଙ୍କ ଶୋଇବା ଘରେ ପ୍ରବେଶ କରି ଗୋଡ଼ ତଳେ ପଡ଼ି ବିକଳ କ୍ରନ୍ଦନ କରୁଛି। "ସାର୍ ମୋର ଭୁଲ୍‌ର କ୍ଷମା ନାହିଁ। ଆପଣଙ୍କର ପ୍ରିୟ ଛାତ୍ର ହୋଇ ମୁଁ ଯେଉଁ ଭୁଲ୍ କରିଛି, ତାର ପ୍ରାୟଶ୍ଚିତ ଏ ଜୀବନରେ କରିପାରିବିନି। ମୋ ଭୁଲ୍ ପାଇଁ ଆପଣଙ୍କୁ ସମସ୍ତେ ଦୋଷ ଦେଲେ। ପୁଣି ୨ୟବାର ଭୁଲ୍ ଏକ ଅକ୍ଷମଣୀୟ ଅପରାଧ। ମୋ ପାଇଁ ଆପଣଙ୍କର ମୁଣ୍ଡ ଆଜି ତଳକୁ ହୋଇଯାଇଛି। ମୁଁ ଆଉ ଏ ଜୀବନ ରଖିବି ନାହିଁ। ମୁଁ ଆପଣଙ୍କ ଶେଷ ସାକ୍ଷାତ୍ ଚାହିଁଥିଲି। ତାହା ଆଜି ପାଇଗଲି। ଆଜି ରାତିରେ ମୁଁ ନିଶ୍ଚୟ ଆତ୍ମହତ୍ୟା କରିବି"। ଛାତ୍ରବତ୍ସଳ କିଶୋରୀ ବାବୁଙ୍କ ହୃଦୟ ଏଥିରେ ତରଳି ଗଲା। ଭାବ ଗଦ ଗଦ ସ୍ୱରରେ ସେ କହିଲେ ତୁ ଯେତେବେଳେ ସ୍ୱ-କୁକର୍ମ ପାଇଁ ଅନୁତପ୍ତ, ଭଗବାନ ନିଶ୍ଚୟ ତୋର ଦୋଷ କ୍ଷମା କରିବେ। ହେଉ ଯା ମୁଁ ତୋ ପାଇଁ ଭଗବାନଙ୍କ ପାଖରେ ଏକ ଲକ୍ଷ ମାଳୀ ଜପିଦେବି।" ସଙ୍ଗେ ସଙ୍ଗେ ଛାତ୍ରଟି କହିଲା "ଆପଣ ସିନା ମହତ ଉଦାର ଗୁଣସମ୍ପନ୍ନ ବୋଲି କ୍ଷମା ଦେଲେ, ଭଗବାନ କରୁଣାମୟ ସେ ହୁଏତ ଆପଣଙ୍କ ଡାକ ଶୁଣି ପାରନ୍ତି, କିନ୍ତୁ ପିଲାମାନେ କଣ ମୋତେ ଛାଡ଼ିଦେବେ? ଆଉ ୪ ଦିନ ପରେ ସ୍କୁଲ ଖୋଲିବ। ଛାତ୍ରାବାସକୁ ତଳ କ୍ଲାସ୍ ପିଲା ଆସିଯିବେ। ମୁଁ ଲଜ୍ଜାରେ ବାଟ ଚାଲି ପାରିବିନି। ମୃତ୍ୟୁରେ ହିଁ କେବଳ ମୋର ଏ କଳଙ୍କ ଧୋଇଯିବ। ସଙ୍ଗେ ସଙ୍ଗେ କିଶୋରୀ ବାବୁଙ୍କର ଆଦେଶ'ତୁ ଆଜିଠାରୁ ଆମ ଘରେ ରହି ପଢ଼ି ପରୀକ୍ଷା ଦେବୁ। ଭାସ୍କର ତ ଗୋଟିଏ ନାଗସାପ, ତୁ ତାର ବାହୁଛାୟା ତଳେ ଦୁଇମାସ ଅବାଧରେ ବିଚରଣ କରିବୁ। ତା ସାଙ୍ଗରେ ଯାତାୟତ କଲେ କେହି ତୋତେ ଥଟ୍ଟା କରି ପଦେ କହିବାକୁ ମଧ୍ୟ ସାହସ କରିବେ ନାହିଁ। ସତକୁ ସତ ଛାତ୍ର ଜଣକ ସେହି ଦିନ ଠାରୁ ପରୀକ୍ଷା ପର୍ଯ୍ୟନ୍ତ ମୋର ତତ୍ତ୍ୱବଧାନରେ ରହି ପରୀକ୍ଷା ଦେଇ ଘରକୁ ଫେରିଲା ଓ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀରେ ମଧ୍ୟ ଉତ୍ତୀର୍ଣ୍ଣ ହେବାର ଗୌରବ ଅର୍ଜନ କଲା। ସେ ବର୍ତ୍ତମାନ ସେକ୍ରେଟେରୀଏଟ୍‌ରେ ଚାକିରି କରି ଡେପୁଟି ସେକ୍ରେଟରୀ ଭାବେ ଅବସର ଗ୍ରହଣ କରିଛି। ଧନ୍ୟ ସେ ଗୁରୁ ଧନ୍ୟ ତାଙ୍କର ଛାତ୍ରବତ୍ସଳତା।

ଫେବୃୟାରୀ ମାସରେ ମେଟ୍ରିକ ପରୀକ୍ଷା ହେଲା । ମୋର ପରୀକ୍ଷା ପାଇଁ କିଶୋରୀ ବାବୁ ଓ ଅନ୍ୟ ଶିକ୍ଷକଙ୍କ ସହିତ ସେକ୍ରେଟାରୀ ନର ବାବୁଙ୍କ ଆଗ୍ରହ ଅତୁଳନୀୟ । ମୁଁ ସଦାବେଳେ ନରବାବୁଙ୍କୁ ଧୋତି ସାର୍ଟରେ ଦେଖି ଆସିଛି । ସେ ଧୋତି ଉପରେ କଳା କୋଟଟିଏ ମଧ ପିନ୍ଧିଥାନ୍ତି କିନ୍ତୁ କୋର୍ଟକୁ ସେ ଗୋଟିଏ ପେଣ୍ଟ ପିନ୍ଧି ଯାଆନ୍ତି । ସେ ପେଣ୍ଟଟି ଟିକିଏ ଛୋଟ । ମୁଁ ପେଣ୍ଟ ପିନ୍ଧା ବେଶରେ ନରବାବୁଙ୍କୁ କେବେ ଦେଖି ନଥିଲି । ହଠାତ୍ ଗଣିତ ପରୀକ୍ଷା ପରେ ହଲରୁ ବାହାରୁଛି ଦେଖିଲି ପେଣ୍ଟ ପିନ୍ଧି ଛିଡ଼ା ହୋଇଛନ୍ତି ନରବାବୁ । ପଚାରିଲେ ଗଣିତରେ ୧୦୦ରୁ ୧୦୦ ଠିକ୍ କରିଛୁତ ? ତାଙ୍କ ପୋଷାକ ଦେଖି ମୋତେ ଏତେ ହସ ଲାଗୁଥାଏ ଯେ ମୁଁ କି ଉତ୍ତର ଦେବି ଭାବି ପାରୁ ନଥାଏ । ଶେଷରେ ହସ ସମ୍ଭରଣ କରି ହଁ କରିବା ମାତ୍ରେ ସଙ୍ଗେ ସଙ୍ଗେ କୋର୍ଟକୁ ଫେରିଗଲେ । ସେ ସମୟରେ ଶିକ୍ଷକଙ୍କ ସହିତ ସ୍କୁଲ ସେକ୍ରେଟେରୀଙ୍କ ଆଗ୍ରହ ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । କିଶୋରୀ ବାବୁଙ୍କ ଆଶଙ୍କା ଶେଷରେ ସତ୍ୟ ହେଲା । ଜୁଲାଇ ମାସରେ ନଷ୍ଟ ହୋଇଥିବା ୨୦ ଦିନର ପଢ଼ା ଆଉ ପୂରଣ ହୋଇ ପାରିଲାନି । ଯଦିଓ ଭଦ୍ରକ ସବ୍ ଡିଭିଜନରୁ ମାତ୍ର ୨ ଜଣ ୧ମ ଶ୍ରେଣୀରେ ପାଶ୍ କରିଥିବା ଛାତ୍ରଙ୍କ ମଧ୍ୟରୁ ମୁଁ ଜଣେ, କିନ୍ତୁ ବିଶ୍ୱବିଦ୍ୟାଳୟରେ ପ୍ରଥମ ଦଶ ଜଣଙ୍କ ମଧ୍ୟରେ ମୋର ସ୍ଥାନ ରହିଲାନି । ତଥାପି ମୋତେ ତାଙ୍କର ସୁଚିନ୍ତିତ ପନ୍ଥାରେ ପରିଚାଳିତ କରି ୧ମ ଶ୍ରେଣୀରେ ପାଶ୍ କରାଇପାରିଥିବା ଗୌରବ ପାଇଁ ସେ ଗର୍ବ ଅନୁଭବ କରନ୍ତି ।

ବାଗୁରାଇ ହାଇସ୍କୁଲରେ ଅଧ୍ୟୟନ ସମୟରେ ଯେଉଁ କେତେଜଣ ବନ୍ଧୁଙ୍କ ଦ୍ୱାରା ମୁଁ ପ୍ରଭାବିତ ହୋଇଥିଲି ତାଙ୍କ ମଧ୍ୟରେ ମୋର କ୍ଲାସ୍‌ମେଟ୍ ଶ୍ରୀ ଶ୍ୟାମ ସୁନ୍ଦର ଲେଙ୍କା, କାଶୀନାଥ ପରିଡ଼ା, ମାୟାଧର ସାହୁ, ଚନ୍ଦ୍ରଶେଖର ମିଶ୍ର, ଚନ୍ଦ୍ରଶେଖର ପଣ୍ଡା, ପ୍ରସନ୍ନ ଗୋସ୍ୱାମୀ, ଅଶ୍ୱିନୀ ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ । ମୁଁ ସ୍କୁଲକୁ ଆସିବା ପୂର୍ବରୁ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇଁ କାଶୀନାଥ ଓ ଶ୍ୟାମ ମଧ୍ୟରେ ପ୍ରତିଦ୍ୱନ୍ଦିତା ଚାଲିଥିଲା । ଶ୍ୟାମ ନୀତିବାଦୀ ଓ ସୁସ୍ଥ ପ୍ରତିଯୋଗିତାରେ ବିଶ୍ୱାସ କରେ । ପରବର୍ତ୍ତୀ କାଳରେ ସେ କୋପରେଟିଭ୍ ଚାକିରୀରେ ଯୋଗ ଦେଇ ନିଜର ଅଧ୍ୟବସାୟ ବଳରେ ଆଇ.ଏ.ଏସ୍. ପାଇ ଜଣେ ପ୍ରତିଷ୍ଠିତ ପ୍ରଶାସନିକ ଭାବେ ଅବସର ଗ୍ରହଣ କରିଛି ।

କାଶୀନାଥ ଅତ୍ୟଧିକ ସ୍ୱାଭିମାନୀ। ସେ ଲେବୋରେଟୋରୀ ଆସିଷ୍ଟାଣ୍ଟ ଭାବେ ଯକିରି ଆରମ୍ଭ କରି ପରବର୍ତ୍ତୀ କାଳରେ ଅଧାପକ ହେଲେ। ମାୟାଧର ରାଜନୈତିକ ଜୀବନଯାପନ କଲେ। ପ୍ରସନ୍ନ ଶିକ୍ଷକତାକୁ ନିଜର ପେଷା ରୂପେ ଗ୍ରହଣ କରିଛି। ଅଶ୍ୱିନୀ କୋପରେଟିଭ୍ ଚାକିରି ଆରମ୍ଭ କରି ନିଜ ବିଭାଗରେ ଉନ୍ନତି କରିପାରିଛନ୍ତି। ସାଙ୍ଗରେ ପଢୁଥିବା ଝିଅ ଦୁଇ ଜଣ ହେଉଛନ୍ତି ବୀଣା ଓ ମଞ୍ଜୁଳିକା। ଉଭୟ ଜାୟା ଓ ଜନନୀର ଦୀକ୍ଷା ନେଇ ସୁଗୃହିଣୀ ସାଜିଛନ୍ତି।

ମୋର ଉପର ଶ୍ରେଣୀରେ ପଢୁଥିଲେ ଧରଣୀଧର ଦାସ। ତାଙ୍କ ଭଳି ମେଧାବୀ ଛାତ୍ର ଖୁବ୍ କମ୍ ଦେଖାଯାଆନ୍ତି। ତାଙ୍କ ଠାରୁ ଗୋଟିଏ ବିଦ୍ୟା ମୁଁ ଶିକ୍ଷା କରିଥିଲି। ସବୁ ବିଷୟ ଥରେ ଦୁଇଥର ପଢ଼ି ଦେବ। ତାପରେ ୫ ବର୍ଷର ପ୍ରଶ୍ନ ଦେଖି ୨/୩ଟି ପ୍ରଶ୍ନ ବାଛିବ। ତାର ଉତ୍ତର କିଭଳି ଉନ୍ନତଧରଣର ହେବ ତାହା ଚିନ୍ତା କରି ପରୀକ୍ଷାକୁ ଯିବ। ଥରେ ତାଙ୍କୁ ଗୋଟିଏ ଇଂରାଜୀର ଏକ ଏକ୍ସପ୍ଲାନେସନ୍ ବାଛିବାକୁ କହିଥିଲି। ସେ ଗୋଟିଏ ବାଛି ଦେଲେ ଓ ସେହି ଗୋଟିକ ପରୀକ୍ଷାରେ ଆସିଲା। ତାଙ୍କୁ ପ୍ରଶ୍ନ ବାଛିବାର କାଇଦା ପଚାରିବାରୁ ସେ ଯେଉଁ ବାଟ ବତାଇଲେ ତାହା ମୋ ଜୀବନର ଏକ ଅମୂଲ୍ୟ ସମ୍ପଦ ହୋଇରହିଯାଇଛି। ତଳ ଶ୍ରେଣୀର ବନ୍ଧୁମାନଙ୍କ ମଧ୍ୟରେ ବିପିନ ବିହାରି ପଣ୍ଡା, ଆନନ୍ଦ ଜେନା, ରାମଚନ୍ଦ୍ର ମଲିକ, ମହେନ୍ଦ୍ର ମିଶ୍ର, ହରିହର ମହାପାତ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ। ବିପିନ ରାଉରକେଲାରେ ଜଣେ ବଡ଼ ଅଫିସର, ଆନନ୍ଦ କଲେଜ ଅଧାପକ, ହରିହର କୋପରେଟିଭ୍‌ରେ ଜଣେ ପଦସ୍ଥ ଅଫିସର। ମହେନ୍ଦ୍ର ଜଣେ ସ୍ୱେଚ୍ଛାସେବୀ ହୋମିଓପାଥି ଡାକ୍ତର ଭାବେ ନାମ ଉପାର୍ଜନ କରିଛନ୍ତି। ରାମଚନ୍ଦ୍ର ମଲ୍ଲିକ ଜଣେ ରାଜନୈତିକ ବ୍ୟକ୍ତି ହିସାବରେ ଖ୍ୟାତି ଅର୍ଜନ କରି ଦୁଇଥର ଏମ.ପି. ହେବାର ଗୌରବ ଅର୍ଜନ କରିଛନ୍ତି।



## ଷଷ୍ଠ ପରିଚ୍ଛେଦ

# ଚରମ ପରୀକ୍ଷା

୧୯୫୧ ମସିହାରେ ଆଦ୍ୟଭାଗରୁ ୧୯୫୩ ମସିହା ମଧ୍ୟଭାଗ ପର୍ଯ୍ୟନ୍ତ ଜୀବନ ସଂଗ୍ରାମ ପାଇଁ ଯେଉଁ ଆହ୍ୱାନ ଆସିଥିଲା, ତାହା ପ୍ରତ୍ୟେକ ମନୁଷ୍ୟର ଜୀବନରେ ଆସେ। ହାଇସ୍କୁଲ୍ ପରୀକ୍ଷା ଦେବାବେଳକୁ କୈଶୋର ବିଦାୟ ନେଇ ଯୌବନକୁ ଅଭ୍ୟର୍ଥନା ଜଣାଇଥାଏ। ସେହି ତରଙ୍ଗମାଳା କେଉଁଠାରେ ନିଜର ସତ୍ତା ହରାଇ ଲୀନ ହୋଇଯିବ ବା ବନ୍ଧବାଡ଼ ଭାଙ୍ଗି ଅଜଣା ବାଟରେ ମାଡ଼ିଚାଲିବ। ମୋ ଜୀବନରେ ମଧ୍ୟ ସେହି ସନ୍ଧିକ୍ଷଣ ଆବିର୍ଭାବ ହୋଇଥିଲା। ୧୯୫୧ ମସିହା ଫେବୃୟାରୀ ମାସରେ ମେଟ୍ରିକ୍ ପରୀକ୍ଷା ସମାପ୍ତିର ପରେ ପରେ।

ସେ ବୟସରେ କେବଳ ନିଜର ପଢ଼ା ଭିତରେ ଆବଦ୍ଧ ରହି ଦୁନିଆକୁ ଭୁଲିଯିବାକୁ ଇଚ୍ଛା ହେଉ ନଥାଏ। ଆମ ଗ୍ରାମଟି ସେହିପରି ଅନୁନ୍ନତ ଅବସ୍ଥାରେ ଥାଏ। ଅଧିକାଂଶ ଲୋକ ଅଶିକ୍ଷିତ ଥାନ୍ତି। ଆଧୁନିକ ଚିକିତ୍ସା କିପରି ଦୁଷ୍ପ୍ରାପ୍ୟ ଥିଲା, ତାହା ପୂର୍ବେ ଉଲ୍ଲେଖ କରିଛି। ସେହି ଅବସ୍ଥାରେ କିଛି ପରିବର୍ତ୍ତନ ହୋଇ ନଥିଲା। ୭ କି.ମି ଗଲେ ବାସୁଦେବପୁର ଡାକ୍ତରଖାନା, ସଡ଼କରେ ୧୦/୧୫ଟି ଘାଇ। ଲୋକମାନେ ଗୁଣିଟୁଣିରେ କେବଳ ସନ୍ତୁଷ୍ଟ ରହନ୍ତି। ଅନେକ ରୋଗୀ ଚିକିତ୍ସା ଅଭାବରୁ ଅକାଳରେ ଇହଲୀଳା ସମ୍ବରଣ କରନ୍ତି। ଗାଁର ଏହି ଅସୁବିଧା ଦୂର କରିବା ପାଇଁ ଆମ୍ଭମାନଙ୍କ ପ୍ରଚେଷ୍ଟାରେ ଗତବର୍ଷଠୁ ଗୋଟିଏ ହୋମିଓପାଥିକ ବାକ୍ସ ରଖାଯାଇଥିଲା। ଏ ବର୍ଷ ବାଲେଶ୍ୱର ଡାକ୍ତରଙ୍କ ପରାମର୍ଶ ଅନୁସାରେ କେତେଗୁଡ଼ିଏ ପେଟେଣ୍ଟ ମେଡ଼ିସିନ୍ ଆଣି ପ୍ରାଇମେରୀ ସ୍କୁଲରେ ରଖି ସୁଲଭ ମୂଲ୍ୟରେ ବିକ୍ରିର ବ୍ୟବସ୍ଥା କରାଗଲା। ଅଳ୍ପଦିନ ପୂର୍ବରୁ ଗୋଟିଏ ପୋଷ୍ଟଅଫିସ୍ ଖୋଲାଯାଇଥିଲା। ସମସ୍ତଙ୍କର ସହଯୋଗରେ ଗାଁକୁ ଗୋଟିଏ ଦୈନିକ ଓଡ଼ିଆ ଖବରକାଗଜ 'ସମାଜ' ଅଣାଗଲା। "ଗୁଡ଼ ତରୁଣ ଗ୍ରାମୋନ୍ନତି ସଂଘ", ନାମରେ ଗୋଟିଏ ଅନୁଷ୍ଠାନ ଖୋଲାଗଲା। ରଇ ପୋଖରୀ ଆଡ଼ିରେ ପ୍ରାଥମିକ ବିଦ୍ୟାଳୟର ପରିସର ମଧ୍ୟରେ

ଗୋଟିଏ ମାଟି କାନ୍ଥ ବିଶିଷ୍ଟ ଗୃହ ନିର୍ମାଣ କରାଗଲା। ଅର୍ଥର ଅଭାବ ଯୁବକମାନଙ୍କ ଉତ୍ସାହ ଉଦ୍ଦୀପନା ଆଗରେ ହାର ମାନିଲା। ସେମାନଙ୍କର ଅକୁଣ୍ଠ ଶ୍ରମଦାନ ଦ୍ୱାରା ଗୃହଟି ମାତ୍ର ଏକମାସ ମଧ୍ୟରେ ସମ୍ପୂର୍ଣ୍ଣ ହୋଇଗଲା। ଏ ସଂଘର କାର୍ଯ୍ୟ ରୂପରେ ଥିଲା ଗ୍ରାମରେ ଗୋଟିଏ ପୁସ୍ତକାଗାର, ପ୍ରତିଷ୍ଠା କ୍ରୀଡ଼ାର ପ୍ରସାର ବର୍ଷକୁ ଥରେ ନାଟକ ପରିବେଷଣ, ସୁଲଭ ମୂଲ୍ୟରେ ଔଷଧ ବିତରଣ ଇତ୍ୟାଦି। ଗ୍ରାମର ବହୁ ଉତ୍ସାହୀ ଯୁବକ ଆମକୁ ଏ କାର୍ଯ୍ୟରେ ସହଯୋଗ କଲେ। ସଂଗେ ସଂଗେ ଭଲିବଲ ଓ ନେଟ୍‌କିଣା ଗଲା। ଚକ୍ରୀ ନାଟକ ମଞ୍ଚସ୍ଥ କରିବା ପାଇଁ ସବୁ ପ୍ରକାର ଆୟୋଜନ କରାଗଲା। ଗ୍ରାମର ବଦାନ୍ୟବ୍ୟକ୍ତିଙ୍କର ସାହାଯ୍ୟ ଓ ସହାନୁଭୂତି ପାଇ ପୁସ୍ତକାଗାରଟିଏ ଗଢ଼ି ଉଠିଲା। ଗ୍ରାମର ବହୁତ ଲୋକ ସୁଲଭ ମୂଲ୍ୟରେ ଔଷଧ ପାଇ ରୋଗରୁ ମୁକ୍ତି ପାଇପାରିଲେ। ଏ ସମସ୍ତ କାର୍ଯ୍ୟ ଫେବୃୟାରୀ ଠାରୁ ଜୁନ୍ ଭିତରେ ସଂଗଠିତ ହୋଇଥିଲା ଏବଂ ମୁଁ ସେସବୁ କାର୍ଯ୍ୟରେ ନିଜ ଭୂମିକା ଯଥାଶକ୍ତି ତୁଲାଇ ସନ୍ତୋଷ ଲାଭ କଲି। ଜୁଲାଇ ବେଳକୁ ସ୍କୁଲ କଲେଜ ଖୋଲିବା ମାତ୍ରେ ମୁଁ ନିଜର କର୍ମକ୍ଷେତ୍ରକୁ ଫେରିଗଲି। କିନ୍ତୁ ଆଜି ପର୍ଯ୍ୟନ୍ତ ଯେତେବେଳେ ଗ୍ରାମକୁ ଯାଇଛି ସେ ଅନୁଷ୍ଠାନଟିର ଭଲମନ୍ଦ ବୁଝିବାକୁ ଚେଷ୍ଟା କରିଛି ଓ ସେ ଅନୁଷ୍ଠାନଟି କିଭଳି ତିଷ୍ଠିରହିପାରିବ ସେ ନିମନ୍ତେ ମୁଁ ସର୍ବଦା ଯତ୍ନଶୀଳ ରହିଆସିଛି।

ମେଟ୍ରିକ୍ ପରୀକ୍ଷା ତ ସରିଗଲା। ଭବିଷ୍ୟତ କର୍ମପନ୍ଥା କ'ଣ ? କେଉଁ ସପନ ରାଇଜକୁ ମନ ଉଡ଼ିଯାଉଥାଏ। ଇଣ୍ଟର-ମିଡ଼ିଏଟ୍ ସାଇନ୍ସ ପଢ଼ି ଡାକ୍ତର, ଇଞ୍ଜିନିୟର ହେବି ନା ଆଟର୍ସ ପଢ଼ି ପ୍ରତିଯୋଗିତାମୂଳକ ପରୀକ୍ଷା ଦେବି ? ସବୁ ପାଇଁ ଆବଶ୍ୟକ ଅର୍ଥ। ମାଟ୍ରିକ୍ ପର୍ଯ୍ୟନ୍ତ ପଢ଼ିବା ପାଇଁ ବୃତ୍ତି ପ୍ରାପ୍ତ ଛାତ୍ର ରୂପେ ହାଇସ୍କୁଲ ତଥା ଛାତ୍ରାବାସରୁ ମିଳୁଥିଲା ଆଂଶିକ ସାହାଯ୍ୟ। ଏ ସାହାଯ୍ୟ ତ ଆଉ କଲେଜରେ ମିଳିବ ନାହିଁ। ତାପରେ କୈଶୋର ଅତିକ୍ରମ କରିବା ଉପରେ। ନିଜ ଗୋଡ଼ରେ ଠିଆ ହୋଇ ଦୁନିଆର କଣ୍ଟକମୟ ପଥ ଅତିକ୍ରମ କରିବାକୁ ପ୍ରବଳ ଆଗ୍ରହ, ବାଗୁରାଇରେ ଦୁଇବର୍ଷ ଅଧ୍ୟୟନ ଓ କିଶୋରବାବୁଙ୍କ ସାହାଯ୍ୟ ସେହି ପ୍ରେରଣାକୁ ଦ୍ୱିଗୁଣିତ କରି ସାରିଥାଏ। ସେ ଶିଖାଇଥାନ୍ତି ଯେ ଦୁନିଆରେ କୌଣସି କାର୍ଯ୍ୟ ଅସାଧ୍ୟ ନୁହେଁ। ମନୁଷ୍ୟ ଇଚ୍ଛା କଲେ ସବୁ କିଛି କରିପାରିବ। ତାର ଜ୍ୱଳନ୍ତ ଉଦାହରଣ ସେ ନିଜେ। ଜୀବନରେ

ସେ କେବେ ଓଡ଼ିଆ ପଢ଼ି ନଥିଲେ। ବଙ୍ଗଳା ମାତୃଭାଷାରେ ସେ ମେଟ୍ରିକ ଓ ଆଇ.ଏସ.ସି.ପରୀକ୍ଷା ଦେଇଥିଲେ। ହଠାତ୍ ପରିଣତ ବୟସରେ ତାଙ୍କର ଓଡ଼ିଆରେ ଏମ.ଏ. ପରୀକ୍ଷା ଦେବାକୁ ଇଚ୍ଛା ହେଲା। ଅକ୍ଷର ଯୁକ୍ତାକ୍ଷର ଲେଖିବା ଠାରୁ ଆରମ୍ଭ କରି ଏମ.ଏ. ପରୀକ୍ଷାରେ ସମାଲୋଚନାମୂଳକ ଲେଖା ପର୍ଯ୍ୟନ୍ତ ମାତ୍ର ତିନୋଟି ମାସ ଭିତରେ ତାଙ୍କ ପକ୍ଷେ ସମ୍ଭବ ହୋଇଥିଲା। ତେଣୁ ସେ କୁହନ୍ତି, ଅସମ୍ଭବ ଶବ୍ଦଟି କେବଳ ଭୀରୁ କାପୁରୁଷଙ୍କ ମୁହଁରେ ଶୋଭାପାଏ। ଅଧ୍ୟବସାୟୀଙ୍କ ପକ୍ଷେ ଏହା ଶୋଭା ପାଏନା। ଆଇ.ଏସ.ସି.ରେ ନାମ ଲେଖାଇବା ପାଇଁ ଆବଶ୍ୟକ ହେବ ଅର୍ଥ। ସେଥିପାଇଁ ପରୀକ୍ଷା ସରିବା ପରେ ବାଗୁରାଇ ସ୍କୁଲରେ ମୁଁ ଟିଉସନ୍ ଆରମ୍ଭ କରିଦେଲି। ମାର୍ଚ୍ଚ-ଏପ୍ରିଲ୍‌ରେ ଏହି ୩ ମାସରେ ଅର୍ଜିତ ଟିଉସନ ଫିସ୍, ଆଇ.ଏସ.ସି.ରେ ନାମ ଲେଖାଇବା ପାଇଁ ଆବଶ୍ୟକ ଅର୍ଥ ଯୋଗାଇ ଦେଲା।

ଜୁଲାଇରେ କଲେଜ ଖୋଲିଲା। ବାଲେଶ୍ୱର ଫକୀରମୋହନ କଲେଜର ଆଇ.ଏସ.ସି.ରେ ଅନ୍ୟ ୯୯ ଜଣ ଙ୍କ ସହ ମୁଁ ନାମ ଲେଖାଇଲି। ସେହିଦିନଠାରୁ ଠିକ୍ ଦୁଇବର୍ଷ ପର୍ଯ୍ୟନ୍ତ ମୋର ଜୀବନ ତରୀଟି ଯେଭଳି ପ୍ରବଳ ସଂଘର୍ଷର ସମ୍ମୁଖୀନ ହୋଇଛି, ତାହା ଭାବିଲେ ମୁଁ ନିଜେ ନିଜକୁ ବିଶ୍ୱାସ କରିପାରୁନି। ମେଟ୍ରିକ ପାସ୍ ପରେ ଟିଉସନ କରି ସଂଗ୍ରହ କରିଥିବା ଅର୍ଥରେ ନାମ ଲେଖା ଓ ସାମାନ୍ୟ କେତେ ଖଣ୍ଡ ବହି କିଣି ହୋଇଗଲା। ତାପରେ ଅନ୍ନ ସଂସ୍ଥାନର ବ୍ୟବସ୍ଥା ଓ ପଢ଼ା ପାଇଁ ଅନ୍ୟାନ୍ୟ ଖର୍ଚ୍ଚର ବ୍ୟବସ୍ଥା। ହାଇସ୍କୁଲ ପର୍ଯ୍ୟନ୍ତ ଛାତ୍ରାବାସ ମେସର୍ ଆଂଶିକ ସାହାଯ୍ୟ ମିଳୁଥିଲା। ଏକା ଗୁମ୍‌ର ପିଲାମାନଙ୍କ ବହି ପଢ଼ି ଚଳାଇ ଦେଉଥିଲି। ବର୍ତ୍ତମାନ ସେଭଳି ସାହାଯ୍ୟ ସ୍ୱପ୍ନ ସଦୃଶ। ହଷ୍ଟେଲ୍‌ରେ ରହି ମେସ୍ ଖର୍ଚ୍ଚ ଦେବା ପାଇଁ ମୋ ପାଖରେ ସମ୍ବଳ ନାହିଁ। କଣ କରିବି ଭାବୁଛି, ହଠାତ୍ ମୋର ଦେଖା ହେଲା ମଧ୍ୟ ଇଂରାଜୀ ବିଦ୍ୟାଳୟର ମୋର ସହପାଠୀ ମଲ୍ଲିକ ଇବ୍ରାହିମ୍ ସହିତ। ମାଇନର ପରେ ସେ ବାଲେଶ୍ୱର ଜିଲା ସ୍କୁଲରେ ଅଧ୍ୟୟନ କଲା। ଖାଇବା ଓ ରହିବାର ସୁବିଧା ହେବ ଭାବି ତାର ଘର ଓ ଭାଇ ତାକୁ ଜଣେ ମୌଲବୀଙ୍କ ଘରେ ରଖାଇ ଦେଇଥିଲେ। କିନ୍ତୁ ତାହା ତାର ପଢ଼ା ପାଇଁ ଅନୁକୂଳ ପରିବର୍ତ୍ତେ ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରିଥିଲା। ସେ ଟେଷ୍ଟ ପରୀକ୍ଷାରେ ନିର୍ବାଚିତ ହୋଇ ନ ପାରି ହତୋତ୍ସାହ ହୋଇପଡ଼ିଥିଲା।

ସପ୍ଲିମେଣ୍ଟାରୀ ପରୀକ୍ଷା ଦେବା ପାଇଁ ସେ ସେତେବେଳେ ପ୍ରସ୍ତୁତି କରୁଥାଏ। ବସାକୁ ଡାକି କଥାବାର୍ତ୍ତା ଛଳରେ ଜାଣିଲି, ସେ ପଢ଼ାରେ ବହୁତ ଅବହେଳା କରିଛି। 'ସପ୍ଲିମେଣ୍ଟାରୀ ପରୀକ୍ଷା ଦେଲେ ବିଶେଷ କିଛି ଲାଭ ହେବନି ଭାବି ଗୋଟିଏ ପ୍ରସ୍ତାବ ଦେଲି, ଦୁଇଜଣ ଗୋଟିଏ ଘର ଭଡ଼ା ନେବା। ନିଜ ହାତରେ ରୋଷେଇ କରିବା, ଘରଭଡ଼ା ଓ ମେସ୍ ଖର୍ଚ୍ଚ ସେ ସମୁଦାୟ ବହନ କରିବ ଓ ତାକୁ ମେଟ୍ରିକ୍ ପାଶ୍ କରାଇ ଦେବାର ସମୁଦାୟ ଦାୟିତ୍ୱ ମୋର। ହିସାବ କରି ଦେଖାଗଲା ଯେ ମୌଲବୀଙ୍କ ଘରେ ଦେଉଥିବା ଖର୍ଚ୍ଚ ଅପେକ୍ଷା ଏହା ଶସ୍ତା ହେବ କିନ୍ତୁ ସେ ଧନୀ ଘରର ପିଲା। ହାତରେ ରୋଷେଇ କରି ଖାଇବା କଥା ଚିନ୍ତା କଲାବେଳକୁ ତାର ହୃତକମ୍ପନ ହେଲା। ସେ ବିମର୍ଷ ହୋଇପଡ଼ିଲା। ତା ମନୋଭାବ ଠଉରାଇ ମୁଁ କହିଲି ରୋଷେଇ କଥା ଭାବୁଛୁ କି ? ଗୋଟାଏ ଇକ୍‌ମିକ୍ କୁକୁର କିଣି ଦେବା। ରୋଷେଇ ଓ ବଜାର ସଉଦାର ଦାୟିତ୍ୱ ମୁଁ ନେବି। ସେ ରାଜି ହୋଇଗଲା। ସଙ୍ଗେ ସଙ୍ଗେ ଆମର ଆରମ୍ଭ ହୋଇଗଲ ନୂତନ ଅଭିଯାନ। ମୁଁ ପ୍ରତିଦିନ ସକାଳ ୫ଟାରୁ ଉଠେ। ନିତ୍ୟକର୍ମ ପାଇଁ ମାତ୍ର ୪୫ ମିନିଟ୍ ସମୟ। ତାପରେ ରୋଷେଇ ପାଇଁ ପରିବା କଟା, ଚାଉଳଧୁଆ। କୋଇଲା ଦେଇ ସଜାଡ଼ିବାକୁ ଲାଗେ ୪୫ ମିନିଟ୍ ସମୟ। ପ୍ରେସରକୁକୁରରେ ନିଆଁ ଧରିଗଲେ କାମ ସରିଲା। ନିର୍ଦ୍ଦିଷ୍ଟ ପରିମାଣ କୋଇଲା ଚୁଲାରେ ଦିଆଯାଇଥାଏ। କୋଇଲା ସରିବା ବେଳକୁ ପ୍ରେସରକୁକୁରରେ ଭାତ, ଡାଲି, ଅଣ୍ଡା ତରକାରି ଆଦି ସିଝି ପରିପକ୍ୱ ହୋଇସାରିଥିବ। ଠିକ୍ ୬ଟା ବେଳକୁ ଇବ୍ରାହିମ୍‌କୁ ଉଠାଇ ଚୂଡ଼ା କିମ୍ବା ମୁଢ଼ି ଗଣ୍ଡେ ଆମେ ଦୁଇ ଜଣ ଖାଇଦେଉ, ସଙ୍ଗେ ସଙ୍ଗେ ମୁଁ ବାହାରେ କଲେଜ। ସେତେବେଳେ ଫକୀର ମୋହନ କଲେଜର ନିଜସ୍ୱ ଗୃହ ନଥିଲା। ସକାଳ ୭ଟାରୁ ୧୧ ପର୍ଯ୍ୟନ୍ତ କଲେଜ ଓ ୧୧ଟା ପରେ ଜିଲା ସ୍କୁଲ କାର୍ଯ୍ୟ ଏକା ଗୃହରେ ସମ୍ପାଦିତ ହେଉଥିଲା। ୧୧ଟା ପରେ ଆଇ.ଏସ.ସି. ପିଲାଙ୍କ ପାଇଁ ତାଙ୍କ ନିଜ ଲେବୋରେଟୋରିରେ ପଦାର୍ଥ, ରସାୟନ, ଉଦ୍ଭିଦ ଓ ପ୍ରାଣୀ ବିଜ୍ଞାନ ପାଇଁ ହୁଏ ପ୍ରାକଟିକାଲ୍ କ୍ଲାସ୍। ପ୍ରାକ୍‌ଟିକାଲ ସାରିବା ବେଳକୁ ଦିନ ଗୋଟାଏ। ଘରକୁ ଫେରିବା ବେଳକୁ ଅପରାହ୍ନ ସାଢ଼େଗୋଟାଏ। ଏହା ଭିତରେ ଲିଜର ପିରିଅଡ଼ ସମୟରେ ଲାଇବ୍ରେରୀରେ ବହି ସଂଗ୍ରହ କରେ। ଖାଇ ସାରିବାର ଠିକ୍ ପରେ ପରେ ୨ଟାରୁ

ଆରମ୍ଭ ହୁଏ ଇବ୍ରାହିମର୍ ପଢ଼ା । ଇଂରାଜୀ ଠାରୁ ଆରମ୍ଭ କରି ଗଣିତ, ସଂସ୍କୃତ ପର୍ଯ୍ୟନ୍ତ ସବୁ ତାକୁ ପଢ଼ାଏ । ୫ଟା ପୂର୍ବରୁ ଇବ୍ରାହିମ୍‌ର ଧୈର୍ଯ୍ୟଚ୍ୟୁତ ଘଟେ । ସେ ବହୁତ ସିନେମା ପ୍ରିୟ । ମୋ ସହିତ ରହିବା ଫଳରେ ତାର ସିନେମା ଦେଖା ପ୍ରାୟ ବନ୍ଦ ହୋଇଗଲା । କିନ୍ତୁ ସାଙ୍ଗମାନଙ୍କ ଗହଣରେ ସେ କିଛି ସମୟ ସିନେମା ଗୀତ ଅନ୍ତତଃ ଶୁଣି ଆସିବ । ତାକୁ ମୋର ତାଗିଦ ଥାଏ ୬ଟା ସୁଦ୍ଧା ଫେରିବାକୁ । ଏହି ସମୟ ମଧ୍ୟରେ ମୁଁ ବଜାର ସଉଦା ଓ ପରିବା ଆଦି କିଣା କାର୍ଯ୍ୟ ସାରି ରାତ୍ରିଭୋଜନ ପାଇଁ ପ୍ରେସରକୁକୁର ସଜାଡ଼ି ଦିଏ । ୬ଟା ବେଳକୁ ଇବ୍ରାହିମ୍ ଫେରିଲେ ତାକୁ ପଢ଼ା ଦେଇ ସଙ୍ଗେ ସଙ୍ଗେ ବାହାରେ ଦ୍ୱିତୀୟ ଟିଉସନ୍ ପାଇଁ । ଖାଇବା ଖର୍ଚ୍ଚ ସିନା ତୁଟିଗଲା ଲୁଗା, ବହି, କାଗଜ, କଲେଜଫିସ୍, ପ୍ରାକଟିକାଲ୍ ପାଇଁ ଉପକରଣ ଖରିଦ କରିବାପାଇଁ ତ ପୁଣି ଅର୍ଥର ଆବଶ୍ୟକତା ରହିଛି । ଟିଉସନ ସାରି ଫେରିବା ବେଳକୁ ରାତ୍ର ୯ଟା । ତାପରେ ଆରମ୍ଭ ହୁଏ ମୋର ପଢ଼ା । ରାତ୍ରି ୧୨ଟା ପର୍ଯ୍ୟନ୍ତ । ପୁଣି ସକାଳ ୫ଟାରୁ ଉଠିବାକୁ ପଡ଼ିବ । ଏଥିରୁ ଟିକିଏ ବ୍ୟତିକ୍ରମ ହେଲେ ଗୋଟିଏ କ୍ଲାସ୍‌ରେ ଅନୁପସ୍ଥିତ ହେବାକୁ ପଡ଼ିବ । ଏଭଳି ଚାଲିଲା ଫେବୃୟାରୀ ପର୍ଯ୍ୟନ୍ତ । ଫେବୃୟାରୀରେ ଇବ୍ରାହିମ୍ ମେଟ୍ରିକ୍ ପରୀକ୍ଷା ଦେଇ ଘରକୁ ଫେରିଗଲା । ମୁଁ ଆଇ.ଏସ.ସି. ପଢୁଥିବା ଅବସ୍ଥାରେ ମେଟ୍ରିକ୍ କ୍ଲାସ୍‌ର ୧୧ଶ ଶ୍ରେଣୀ ଛାତ୍ରଙ୍କୁ ପଢ଼ାଇ ପାରୁଛି । ଏ ସମ୍ବାଦ ଚାରିଆଡ଼େ ପ୍ରଚରିତ ହୋଇ ସାରିଥାଏ । ହଠାତ୍ ମୋ ପାଖରେ ଜଣେ ଛାତ୍ର ପହଞ୍ଚିଲେ । ତାଙ୍କ ନାମ ଅକ୍ଷୟ କୁମାର ପଣ୍ଡା । ସେ ୧୦ ମ ଶ୍ରେଣୀରେ ଜିଲ୍ଲା ସ୍କୁଲରେ ୧ମ ସ୍ଥାନ ଅଧିକାର କରିଥାନ୍ତି । ସେ କହିଲେ, "ସାର୍ ଆପଣ ବହୁତ ଭଲ ଗଣିତ ପଢ଼ାଇ ପାରନ୍ତି, ଶୁଣିଲି । ମୋତେ ମେଥମେଟିକସ୍ ଅପସନାଲ ପଢ଼ାଇ ଦିଅନ୍ତେନି ।" ମାର୍ଚ୍ଚ ଠାରୁ ଜୁନ୍ ଭିତରେ ତାଙ୍କର ଅପ୍‌ସନାଲ୍ ସାରିଦେଲି । ସେ ମୋ ପଢ଼ାରେ ଏତେ ତନ୍ମୟ ହୋଇପଡ଼ିଲା ଯେ ପରୀକ୍ଷା ପରେ ଆଇ.ଏସ.ସି.ର ପଠାପଢ଼ାଇବାକୁ କହିଲେ । ଅକ୍ଷୟ ଅତ୍ୟନ୍ତ ମେଧାବୀ । ତାକୁ ପଢ଼ାଇବାକୁ ବହୁତ ଆନନ୍ଦ ଲାଗୁଥାଏ । ସେ ମଧ୍ୟ ପଢ଼ାରେ ଏତେ ନିଷ୍ଠାପର ଯେ ଯାହା ପଢ଼ା ଦେଇଥିବି, ତାପରଦିନ ସବୁ ପ୍ରସ୍ତୁତ କରିଦିଏ । ତାର ଅଧ୍ୟବସାୟ ଯୋଗୁ ମୋର ଆଇ.ଏସ.ସି. ପରୀକ୍ଷା ପରେ ମାତ୍ର ୨ ମାସ ଭିତରେ ମୁଁ ଆଇ.ଏସ.ସି.ର ତ୍ରିକୋଣମିତି ଓ ବୀଜଗଣିତ ସାରିଦେଲି । ସେ

ଇଲେକ୍ଟ୍ରିକାଲ ଇଞ୍ଜିନିୟରିଂ ପାଶ୍ କରି ଓଡ଼ିଶା ସରକାରଙ୍କ ଅଧିନରେ ମୁଖ୍ୟଯନ୍ତ୍ରୀ ପଦରେ ଅବସର ନେଲା।

ମୁଁ କୌଣସି ମତେ ସେ ପର୍ଯ୍ୟନ୍ତ ପ୍ରଥମ ବର୍ଷଟି ଚଳାଇ ଦେଲି। ସେ ବର୍ଷ ମୋତେ ଦେଖିଲେ ସାଙ୍ଗମାନେ କହନ୍ତି ଭାସ୍କର ତ ଚାଲେ ନାହିଁ ଖାଲି ଦଉଡ଼େ। କେତେଥର ସାଙ୍ଗମାନେ ବାଟରେ ଦେଖିଲେ ହାତଧରି ଅଟକାନ୍ତି। ମୁଁ ସାଙ୍ଗେ ସାଙ୍ଗେ କହେ "ବନ୍ଧୁ କ୍ଷମା କର ମୋତେ, ମୋର ସମୟ ନାହିଁ।" ଇବ୍ରାହିମ୍‌ର ବହୁତ ସାଙ୍ଗ ଅନେକ ସମୟରେ ବୁଲି ଆସନ୍ତି। ପ୍ରଥମ ଥର ଆସିବା ପରେ ମୋର ବ୍ୟସ୍ତତା ଓ ଇବ୍ରାହିମ୍ ପଢ଼ା ପ୍ରତି ଆନ୍ତରିକତା ଦେଖି ମନକୁ ମନ ରହି ଯାଆନ୍ତି, ଇବ୍ରାହିମ ମଧ୍ୟ ସେମାନଙ୍କୁ ବାରଣ କରେ। ଭାସ୍କର ଅସନ୍ତୁଷ୍ଟ ହେବ। ତୁମେ ମୋତେ ବର୍ଷେ ଛାଡ଼ି ଦିଅ। ଫେବୃୟାରୀ ମାସ ମୋର ପୁରାତନ ଶିକ୍ଷକ ଶଙ୍କର୍ଷଣବାବୁ ବି.ଏ ପରୀକ୍ଷା ଦେବାକୁ ଆସି ଆମ ପାଖରେ ରହିଲେ। ଆମର ଖାଇବା ଦେଖି ସେ କହିଲେ 'ଇବ୍ରାହିମ୍ ତ ମୁସଲମାନ ଘରର ପିଲା, ମାଂସ ନ ହେଲେ ତାର ଚଳେନି। ତୋ ସହିତ ମିଶି ଅଧିକାଂଶ ଦିନ ଶାକାହାରୀ ଭୋଜନରେ ସେ କିପରି ତୃପ୍ତ ହେଉଛି ? ମୁଁ କହିଲି ମୋର ପ୍ରଭାବରେ ସେ ପଢ଼ା ପାଇଁ ସବୁ କିଛି ତ୍ୟାଗ ସ୍ୱୀକାର କରିବାକୁ ପ୍ରତିଜ୍ଞାବଦ୍ଧ। ଆମେ ଯେଉଁ ଘରେ ରହୁଥିଲୁ ତାହା ବାଲେଶ୍ୱର ସହରର ଜଣେ ମୁସଲମାନ ଭଦ୍ରବ୍ୟକ୍ତିଙ୍କ ଘର। ନାମ ଆସରଫ ଅଲ୍ଲି, ତାଙ୍କର ଦୁଇପୁଅ ଓଡ଼ିଶା ସରକାରରେ ଉଚ୍ଚପଦରେ ଅଧିଷ୍ଠିତ ଓ ମଝିଆ ପୁଅ ଦେଶ ବିଭାଜନ ପରେ ପାକସ୍ଥାନରେ ସର୍ଭିସ୍ ଗ୍ରହଣ କରିଥିଲେ। ଦେଶ ବିଭାଜନ ପରେ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ତିକ୍ତତା ଚରମ ସୀମାରେ ପହଞ୍ଚିଥାଏ। ବାଲେଶ୍ୱର ସହରରେ ମଧ୍ୟ ତିକ୍ତତା କିଛି କମ ନଥିଲା। କିନ୍ତୁ ଇବ୍ରାହିମ୍ ଥିଲା ଭିନ୍ନ ପ୍ରକୃତିର ପିଲା। ତା ମତରେ ଦେଶ ବିଭାଜିତ ହୋଇ ଉଭୟ ଗୋଷ୍ଠୀଙ୍କର ଅଶେଷ କ୍ଷତି ହୋଇଛି। ଦେଶ ବିଭାଜନ ପରେ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ହଣାକଟା ଓ ତିକ୍ତତା ଓ ଭେଦଭାବ ଦେଖି ପାକିସ୍ଥାନର ପ୍ରତିଷ୍ଠିତା ଜିନ୍ନା ମଧ୍ୟ ବ୍ୟଥିତ ହୋଇପଡ଼ିଥିଲେ। ଇବ୍ରାହିମ୍ ତାର କ୍ଷୁଦ୍ର ବୁଦ୍ଧିରେ ମୋତେ ଅନେକଥର କହିଛି, "ମହାତ୍ମାଗାନ୍ଧି ଯଦି ଆଉ କିଛିଦିନ ବଞ୍ଚିଥାନ୍ତେ ତେବେ ସେ ସମସ୍ତଙ୍କୁ ବୁଝାଇ ସୁଝାଇ ପୁଣିଥରେ ବାଟକୁ ନେଇ

ଆସିପାରିଥାନ୍ତେ। ସେ ଜଣେ ବ୍ୟକ୍ତି ଥିଲେ ଯାହାଙ୍କୁ ଉଭୟ ହିନ୍ଦୁ ଓ ମୁସଲମାନ ସମସ୍ତେ ଭଲ ପାଉଥିଲେ। ତା ମତରେ ମହାତ୍ମାଗାନ୍ଧୀଙ୍କ ଅକାଳବିୟୋଗ ଦେଶକୁ ପୁଣିଥରେ ଯୋଡ଼ିବାରେ ପ୍ରତିବନ୍ଧକ ହୋଇଥିଲା।" ମୁସଲମାନ ଘରର ଚଳଣି ହିନ୍ଦୁ ଘର ଠାରୁ ଅଲଗା (ବିଶେଷ କରି ଓଡ଼ିଶାର ମୁସଲମାନମାନଙ୍କର ଓଲଟା) କାଳେ ମୋ ମନରେ ତା ପ୍ରତି ଅନ୍ୟ ଧାରଣା ଆସିବ ବୋଲି ଇବ୍ରାହିମ୍ କେବେ (ତଳେ ବସି ବିଛଣାରେ ବାସନ ରଖି ଖାଇନାହିଁ) କିମ୍ବା ସେ ଭଳି କିଛି ହାବ ଭାବ କରିନାହିଁ କି ଆଚରଣରେ କିଛି ଭାବବି ଦେଖାଇ ନାହିଁ।

ଇବ୍ରାହିମ୍ ମେଟ୍ରିକ୍ ପାଶ୍ କରି କଲେଜରେ ପଢ଼ିଲା ତା ପାଇଁ ମୋର ଆଉ ଆବଶ୍ୟକତା ରହିଲା ନାହିଁ। ମୁଁ ଶ୍ରୀକାନ୍ତ ଚୌଧୁରୀ ନାମକ କଲେକ୍ଟରୀଏଟର ଜଣେ ପେଷ୍କାରଙ୍କ ଘରେ ଟିଉସନ କଲି। ତାଙ୍କର ପୁଅଙ୍କୁ ସେତେବେଳେ ମାତ୍ର ୪ ବର୍ଷ ବୟସ ଅକ୍ଷର ଶିକ୍ଷା ଓ ଗଣିତ ଶିକ୍ଷା ଆରମ୍ଭ ମାତ୍ର ହୋଇଥାଏ। ତା ପାଇଁ ସକାଳ ଓଳି ଘଣ୍ଟାଏ ଓ ଉପରଓଳି ଘଣ୍ଟାଏ ପରିଶ୍ରମ କଲେ ଯଥେଷ୍ଟ। ତେଣୁ ୨ୟ ବର୍ଷ ଇଣ୍ଟରମିଡ଼ିଏଟ୍‌ରେ ମୋତେ ପଢ଼ିବା ପାଇଁ ଅପେକ୍ଷାକୃତ ଅଧିକ ସମୟ ମିଳିଲା। ଅନ୍ନସଂସ୍ଥାନର ସିନା ବନ୍ଦୋବସ୍ତ ହୋଇଗଲା, ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ତ ପୁଣି ଅର୍ଥର ଆବଶ୍ୟକତା ରହିଛି। ପୁଣି ଶେଷବର୍ଷରେ ପରୀକ୍ଷା ଫିସ୍, ଲେବୋରଟୋରୀ ଖର୍ଚ୍ଚ ଆଦି ଯୋଗାଡ଼ କରିବାକୁ ପଡ଼ିବ। ସେ ପର୍ଯ୍ୟନ୍ତ ଜିଲ୍ଲା ବୋର୍ଡ଼ ଓ ଲୋକାଲ ବୋର୍ଡ଼ ଥାଏ। ସୋରୋ କେଦାରପୁର ଗ୍ରାମର ଆଶୁତୋଷ ରାୟ ଥାଆନ୍ତି ଲୋକାଲ ବୋର୍ଡ଼ ଚେୟାରମେନ୍। ସେ 'ହିତବାଦୀ' ବୋଲି ଗୋଟିଏ ସାପ୍ତାହିକ ପତ୍ରିକା ବାହାର କରୁଥାନ୍ତି ବାଲେଶ୍ୱରରୁ। ଏହା ପ୍ରତି ରବିବାର ଦିନ ବାହାରେ। ହଜାରେ କପି ପତ୍ରିକା ଭଙ୍ଗାଯାଇ, ସେଥିରେ ଟିକେଟ୍ ମାରି ଠିକଣା ଲେଖି ହଜାରେ ଲୋକଙ୍କ ନାମ ଲେଖି ପଠାଇବାକୁ ପଡ଼ିବ। ଏତିକି କାମ କଲେ ମିଳିବ ୧୦ ଟଙ୍କା। ମୁଁ ମୋର ଜଣେ ବନ୍ଧୁଙ୍କୁ ସାଙ୍ଗ କଲି। ଦୁଇଜଣ ମିଶି ରବିବାର ଦିନ ୬/୮ ଘଣ୍ଟା ପରିଶ୍ରମ କରିଦେଲେ ଜଣକୁ ସପ୍ତାହକୁ ୫ଟଙ୍କା ହିସାବରେ ମାସକୁ ୨୦ ଟଙ୍କା ମିଳିଗଲା। ତେଣୁ ସପ୍ତାହକ ଯାକ ପଢ଼ିବାକୁ ସମୟ ମଧ ମିଳିଗଲା। ଆନୁସଙ୍ଗିକ ଖର୍ଚ୍ଚ ପାଇଁ ମଧ ଅସୁବିଧା ହେଲାନି।

ସେତେବେଳେ ଫକୀରମୋହନ କଲେଜରେ ବଛାବଛା ଅଧ୍ୟାପକମାନେ ଥାଆନ୍ତି। ଇଂରାଜୀ ବିଭାଗରେ ଥାଆନ୍ତି ପ୍ରଫେସର ପି.ଏସ. ସୁନ୍ଦରମ, କ୍ଷତିଶ ଦେବ, ବଙ୍କି ଜଗବନ୍ଧୁ ବିଦ୍ୟାଧର, ତ୍ରିଲୋଚନ ମିଶ୍ର। ପ୍ରଫେସର ସୁନ୍ଦରମଙ୍କର ଇଂରାଜୀ ସାହିତ୍ୟ ଉପରେ ଦକ୍ଷତା ସର୍ବଜନବିଦିତ। ମେଥମେଟିକସ୍ ପାଇଁ ଥାଆନ୍ତି ଶିବକୁମାର ପଣ୍ଡା, ଭୁବନାନନ୍ଦ ରାୟ ଓ ସୁଧାଂଶୁ ଶେଖର ଦୁବେ। ଶିବକୁମାର ପଣ୍ଡା ଏତେ ଭଲ ପଢ଼ାନ୍ତି ଯେ ତାଙ୍କର ଗୋଟାଏ କ୍ଲାସ୍‌ରେ ଅନୁପସ୍ଥିତ ହୋଇଗଲେ ବହୁତ ଖରାପ ଲାଗେ। ଭୁବନାନନ୍ଦ ବାବୁଙ୍କର ସବୁ ଅଙ୍କ ଯେପରି ମୁଖସ୍ଥ। ସୁଧାଂଶୁ ବାବୁ ଧୀର, ନମ୍ର ଓ ଜ୍ଞାନୀ। ପଦାର୍ଥ ବିଜ୍ଞାନ ପାଇଁ ଥାଆନ୍ତି ଅଜୟ ବୀର ଓ ଜି ପାର୍ଥସାରଥୀ। ଅଜୟବୀର ଗାନ୍ଧୀବାଦୀ। ତାଙ୍କର ପଢ଼ାର ଶୈଳୀ ଅତ୍ୟନ୍ତ ମନ ମୁଗ୍ଧକର, ଜି. ପାର୍ଥସାରଥୀ ଅତ୍ୟନ୍ତ ମେଳାପୀ। ପିଲାଙ୍କ ଉନ୍ନତି ପାଇଁ ସର୍ବଦା ଆଗ୍ରହୀ। ରାସାୟନ ବିଜ୍ଞାନ ଅଧ୍ୟାପକ ଥିଲେ ଅଶୋକ ମିତ୍ର ଓ କ୍ଷୀରୋଦ ପଟ୍ଟନାୟକ। ଉଭୟ ପରବର୍ତ୍ତୀ କାଳରେ ରେଭେନ୍ସାରେ ପ୍ରିନ୍‌ସ୍‌ପାଲ ପଦବୀର ଅଧିଷ୍ଠିତ ହେଲେ। ଉଦ୍ଭିଦ ବିଜ୍ଞାନ ପାଇଁ ଥାଆନ୍ତି ସରକାର ବାବୁ ଓ ପ୍ରାଣୀ ବିଜ୍ଞାନର ଅଧ୍ୟାପକ ଉପେନ୍ଦ୍ର ପଣ୍ଡା, ଓଡ଼ିଆ ଅଧ୍ୟାପକ ଥିଲେ ଜାନକୀ ବଲ୍ଲଭ ମହାନ୍ତି, ବିକ୍ରମ ଜେନା ଓ ସାତକଡ଼ି ହୋତା। ପ୍ରତ୍ୟେକ ଜ୍ଞାନୀ ଓ ସେମାନଙ୍କର ପଢ଼ାଇ ଶୈଳୀ ଏତେ ଉଚ୍ଚକୋଟୀର ଥିଲା ଯେ କ୍ଲାସ୍‌ରେ ଲେକଚର ଶୁଣି ଅଧଘଣ୍ଟାଏ ପାଇଁ ବହି ଦେଖି ଦେଲେ ସବୁ ମନରେ ଛାପ ଭଳି ରହିଯାଏ। ମୁଁ ପଢ଼ିବାକୁ ଖୁବ୍ କମ ସମୟ ପାଏ। କିନ୍ତୁ ସବୁ ପଢ଼ା ପ୍ରତିଦିନ ହେବ ଓ ଯାହା ପଢ଼େ, ସବୁ ଲେଖି ରଖେ। ଦୁଇ ବର୍ଷ ଯାକ ପଦାର୍ଥବିଜ୍ଞାନ, ଗଣିତ ଓ ଓଡ଼ିଆରେ କେହି ମୋତେ ଟପିପାରନ୍ତି ନି। ଅନେକ ଥର ସାଙ୍ଗ ବିମଳ କର, କଲ୍ୟାଣ ଘୋଷ ଓ ବ୍ରଜଦାସ ପଚାରିଛନ୍ତି, "ଭାସ୍କର ତୁ ତ ଦିନକୁ ୨ଟି ଟିଉସନ କରୁଛୁ, ଦିନକୁ ୩/୪ ଘଣ୍ଟା ପଢ଼ିବାକୁ ମଧ୍ୟ ସମୟ ନାହିଁ ବହିତ ତୋର ନାହିଁ, ତୁ କିଭଳି ପଢ଼ି ଏତେ ନମ୍ବର ରଖୁଛୁ?" ମୁଁ ହସି ହସି କହେ, "ଭଗବାନଙ୍କ ଇଚ୍ଛା ମୁଁ ମୋର କର୍ତ୍ତବ୍ୟ କରି ଚାଲିଛି। ଫଳ ତାଙ୍କ ଉପରେ ନିର୍ଭର କରେ।" ମୁଁ ଦୁଇ ବର୍ଷଯାକ ବାଣୀଭବନ ମେସ୍ ପାଖରେ ରହିଲି। ପାଖରେ ନୀଳଗିରି ମେସ୍। ସେଠାରେ ନୀଳଗିରି ଷ୍ଟେଟ୍‌ର ପିଲାମାନେ ରହନ୍ତି। ବ୍ରଜ କିଶୋର ଦାସର ବାପା

ମଧ୍ୟ ପାଖରେ ରହୁଥାନ୍ତି। ପଢ଼ିବା ପାଇଁ ଥାଏ ଏକ ସୁନ୍ଦର ପରିବେଶ। ବିମଳ କର, ବିଜୟ ବିଦ୍, ମହେନ୍ଦ୍ର ମିଶ୍ର, କାଶୀନାଥ ପରିଡ଼ା ରହୁଥାନ୍ତି ହଷ୍ଟେଲରେ। ଅନ୍ୟସାଙ୍ଗମାନଙ୍କ ମଧ୍ୟରେ ପୂର୍ଣ୍ଣଚନ୍ଦ୍ର ଦତ୍ତ ଓ ମନୋରଞ୍ଜନ ଆଢ଼୍ୟ, କୃଷ୍ଣମୋହନ ପଟ୍ଟନାୟକ, ଫଣି ଭୂଷଣ ନନ୍ଦ ରହୁଥାନ୍ତି ନିଜ ଘରେ। ପଢ଼ିବା ପାଇଁ ସାଙ୍ଗମାନେ ବହୁତ ଉତ୍ସାହିତ କରୁଥାନ୍ତି ଓ ଦରକାର ବେଳେ ବହିପତ୍ର ଯୋଗାଇ ସାହାଯ୍ୟ ମଧ୍ୟ କରନ୍ତି। ମେ ମାସରେ ପରୀକ୍ଷା ଫଳ ବାହାରିଲା। ଉତ୍କଳ ବିଶ୍ୱବିଦ୍ୟାଳୟ ଥାଏ କଟକରେ, ସେ ସମୟରେ ଆଜି ଭଳି ଏତେ ଛାତ୍ର ନଥିଲେ। ସମସ୍ତଙ୍କର ନାମ ଖବରକାଗଜରେ ବାହାରେ। ଯେଉଁମାନେ ପ୍ରଥମ ଶ୍ରେଣୀରେ ପାଶ୍ କରିଥାନ୍ତି ତାଙ୍କର ନାମ ସ୍ୱତନ୍ତ୍ର ଭାବେ ବାହାରେ ଓ ଅନ୍ୟମାନଙ୍କ ନାମ ତାଙ୍କ କଲେଜ ପାଖରେ ବାହାରେ। ମୁଁ ସନ୍ଧ୍ୟାବେଳେ ଅଜୟ ଚନ୍ଦ୍ର ବୀରଙ୍କ ପିଲାମାନଙ୍କୁ ଟିଉସନ ପଢ଼ାଇ ସାରି ଘରକୁ ଫେରିବା ବାଟରେ ଶୁଣିଲି ପରୀକ୍ଷା ଫଳ ବାହାରିଛି। ପୋଷ୍ଟଅଫିସ୍‌କୁ ଗଲେ ଜଣାପଡ଼ିବ। ପୋଷ୍ଟ ଅଫିସ୍‌କୁ ଯାଇ ଶୁଣିଲି ବାଲେଶ୍ୱରରୁ ୩ ଜଣ ପିଲା ୧ମ ଶ୍ରେଣୀରେ ପାଶ୍ କରିଛନ୍ତି ଓ ମୁଁ ଫେଲ ହୋଇଯାଇଛି। ମୁଁ ନିଜେ ନିଜକୁ ବିଶ୍ୱାସ କରିପାରିଲିନି। ସାଙ୍ଗମାନେ ସାନ୍ତ୍ୱନା ଦେଲେ। ତାହା ସେତେବେଳେ ବିଷ ଭଳି ଲାଗୁଥାଏ। ମନ କଷ୍ଟରେ ଫେରିଲି ସିଧା ବାଣୀଭବନ ମେସ୍‌କୁ ଆସି କବାଟ ବନ୍ଦ କରି ଶୋଇଲି। ରାତି ସାରା ଆଖିକୁ ନିଦ ନାହିଁ। ଲଣ୍ଠନଟିଏ ମିଞ୍ଜିମିଞ୍ଜି ହୋଇ ଜଳୁଛି। ଛାତର କଡ଼ି ଓ ବର୍ଗାକୁ ଅନାଇ ଅନାଇ ମୁଁ ସାରା ରାତି ଅନିଦ୍ରାରେ ପଡ଼ିରହିଲି। ସବୁବେଳେ ମନକୁ ଭାବନା ଆସୁଥାଏ, ଏହା କିପରି ସମ୍ଭବ ହେଲା ? ପଢ଼ାରେ ତ କେବେ ଅବହେଳା କରିନି। ଅବଶ୍ୟ ଇଂରାଜୀ ଓ ମାତୃଭାଷା ପ୍ରତି ଯେତେ ନଜର ଦେବାକଥା, ମୁଁ ଦେଇପାରିନି। କିନ୍ତୁ କ୍ଲାସ ପରୀକ୍ଷାରେ ତ କେବେ ଏ ଦୁଇଟି ବିଷୟରେ ଶତକଡ଼ା ୬୦ରୁ କମ୍ ପାଇନି। ମେଥମେଟିକସ ଓ ପଦାର୍ଥ ବିଜ୍ଞାନରେ ଶତକଡ଼ା ୮୦ ରୁ ୯୦ ଠିକ୍ କରିଛି। ରସାୟନ ବିଜ୍ଞାନରେ ତ ଶତକଡ଼ା ୬୦ରୁ କମ୍ ଆଶା କରିନି। ତେବେ ଦୁର୍ବଳତା ରହିଲା କେଉଁଠି ? ଯଦି ସତକୁ ସତ ଫେଲ ହୋଇଯାଏଁ ତେବେ ସପ୍ଲିମେଣ୍ଟାରୀ ପରୀକ୍ଷା ଦେବାକୁ ପଡ଼ିବ। ସପ୍ଲିମେଣ୍ଟାରୀ ପରୀକ୍ଷାରେ ପାଶ୍ କରିଥିବା ଛାତ୍ରଙ୍କୁ କେଉଁ ସରକାର ଷ୍ଟାଇପେଣ୍ଡ ଦେଇ ପାଠ

ପଢ଼ାଇବ। ମୋର ଭବିଷ୍ୟତର ସମୁଦାୟ ସବୁଜ ସ୍ୱପ୍ନ ଧୂଳି ଭଳି ମାଟିରେ ମିଶିଗଲା ଭଳି ଲାଗିଲା। କିନ୍ତୁ ଯେତେ ଚିନ୍ତା କଲେ ମଧ୍ୟ ମୁଁ ଯେ ପରୀକ୍ଷାରେ ଫେଲ ହୋଇଯିବି, ଏହା ବିଶ୍ୱାସ ଓ ଅବିଶ୍ୱାସର ଦ୍ୱନ୍ଦ ମଧ୍ୟରୁ ନିଜକୁ କ୍ଷାନ୍ତ କରିପାରିଲିନି। ଖାଲି ମନକୁ ଆସୁଥାଏ ଏହା ମିଛ, ମୁଁ କେବେ ଫେଲ ହୋଇପାରିବିନି। ହୁଏତ ଭୁଲ୍ ଖବର ଆସିଥିବ ବା ଖାତାରେ ମୂଲ୍ୟାୟନରେ ଭୁଲ୍ ଥିବ। କିନ୍ତୁ ମୂଲ୍ୟାୟନ ଭୁଲ ଥିଲେ ସେତେବେଳେ କେହି ଶୁଣନ୍ତନି। ସମସ୍ତଙ୍କର ରିପୋର୍ଟ ଆସେ, ମୂଲ୍ୟାୟନ ଓ ଟେବୁଲେସନ୍ ଠିକ୍ ଅଛି। ପିଲାଏ ଭାଗ୍ୟକୁ ଆଦରି ରହନ୍ତି। ସକାଳ ହେଲା, ଖବରବାଲା ପରୀକ୍ଷା ଫଳ ବାହାରିଛି ଉଚ୍ଚସ୍ୱରରେ ଡାକ ଛାଡ଼ି କାଗଜମେସ୍‌ରେ ଦେଇଗଲା। ପିଲାମାନେ ଲଦି ହୋଇ ପଡ଼ି ଖବରକାଗଜ ଦେଖିଲେ। ମୁଁ ତ ଶୁଣିଛି ଫେଲ ହୋଇଛି। ତେଣୁ ଅତି ସନ୍ତର୍ପଣରେ ଯାଇ ଜଣେ ସାଙ୍ଗକୁ ପଚାରିଲି, କାଲି ଶୁଣିଥିବା ଖବର କଣ ସତ୍ୟ? ସେ କହିଲେ ହଁ ସତ୍ୟ। ସମସ୍ତେ ମୋ ନାମଟି ଖୋଜୁଛନ୍ତି ଓ ପାଇ ନାହାନ୍ତି। ମୁଁ କହିଲି ଟିକିଏ ଖବରକାଗଜଟି ମୋତେ ଗୋଟିଏ ମିନିଟ ପାଇଁ ଦିଅ। ମୁଁ କଲେଜ ପାଖରେ ବାହାରିଥିବା ନାମ ପ୍ରତି ନଜର ନ ଦେଇ ଖୋଜିଲି ଯେଉଁଠି କ୍ରମିକ ଭାବେ ବାହାରିଛି ୧ମ ଶ୍ରେଣୀରେ ପାଶ୍ କରି ଥିବା ଛାତ୍ରମାନଙ୍କ ନାମ। ଅଳ୍ପ କେତୋଟି ଧାଡ଼ି ପରେ ମୋ ନାମକୁ ଦେଖି ନିଜେ ନିଜକୁ ବିଶ୍ୱାସ କରିପାରିଲିନି। ସାଙ୍ଗମାନଙ୍କୁ କହିଲି, ଟିକିଏ ଦେଖିଲ। ମୋ ଆଖି ସେତେବେଳକୁ ଛଳ ଛଳ, ମୁଁ ଠିକ୍ ଭାବେ ପଢ଼ି ପାରୁନି। ଏହା ମୋର ନାମ ତ? ମେସ୍ ସାରା ପିଲା ଦୌଡ଼ି ଆସିଲେ, ସମସ୍ତେ ଆଶ୍ଚର୍ଯ୍ୟ। ଭାସ୍କର, ୧ମ ଶ୍ରେଣୀରେ କୃତିତ୍ୱର ସହ ପାଶ୍ କରିଥିବାବେଳେ ସେ ଫେଲ୍ ହୋଇଛି ବୋଲି କିଭଳି ପ୍ରଚାର ହେଲା। ସେତେବେଳେ ମୋ ଚକ୍ଷୁରୁ ବୋହୁଥିଲା ଧାରଧାର ଅଶ୍ରୁ। ଏହା ଥିଲା ଦୀର୍ଘ ୨ ବର୍ଷର ଅକ୍ଳାନ୍ତ ପରିଶ୍ରମରେ ଉପହାରର ଆନନ୍ଦାଶ୍ରୁ। ଓଡ଼ିଶାରୁ ମୋଟ ୫୧ ଜଣ ୧ମ ଶ୍ରେଣୀରେ ପାଶ୍ କଲେ। ଫକୀରମୋହନ କଲେଜରୁ ମୋ ଭଳି ଆଉ ୫ ଜଣ ୧ମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ। ସେମାନେ ହେଲେ ବିମଳ କର, କଲ୍ୟାଣ ଘୋଷ, କୃଷ୍ଣମୋହନ ଆଚାର୍ଯ୍ୟ, ବିଜୟ ବିଦ୍ ଓ ପୂର୍ଣ୍ଣଚନ୍ଦ୍ର ଦତ୍ତ।

କୃଷ୍ଣ ମୋହନ ଆଚାର୍ଯ୍ୟ, କଲ୍ୟାଣ ଘୋଷ, ବ୍ରଜ ଦାସ, ବ୍ରଜ ପଟ୍ଟନାୟକ, ମନୋରଞ୍ଜନ ଆଢ୍ୟ, ମୋ ଭଳି ଇଞ୍ଜିନିୟରିଂ ସଂସ୍ଥାକୁ ନିଜର ଜୀବିକା ପାଇଁ ଗ୍ରହଣ

କରିଛନ୍ତି। କୃଷ୍ଣମୋହନ, ବ୍ରଜ ପଟ୍ଟନାୟକ ଓଡ଼ିଶା ସରକାରରେ ଚାକିରି କରିଛନ୍ତି କିନ୍ତୁ ବ୍ରଜ ଦାସ ଓ ମନୋରଞ୍ଜନ ରାଉରକେଲା ଇସ୍ପାତ୍ କାରଖାନାରେ ପଦସ୍ଥ ଅଫିସର ହୋଇ ଅବସର ଗ୍ରହଣ କରିଛନ୍ତି। ବିମଳ କର, ବିଜୟବିଦ୍, କୃଷ୍ଣମୋହନ ପଟ୍ଟନାୟକ, ପୂର୍ଣ୍ଣଦତ୍ତ ମେଡ଼ିକାଲ ପାଠ ପଢ଼ିଲେ। ବିମଳ ବୁର୍ଲା ମେଡ଼ିକାଲ କଲେଜର ପ୍ରଫେସର ଭାବେ ଅବସର ଗ୍ରହଣ କରିଛି। ବିଜୟ ଆସିଷ୍ଟାଣ୍ଟ ଡିଷ୍ଟ୍ରିକ ମେଡ଼ିକାଲ ଅଫିସର ହୋଇ ଅବସର ଗ୍ରହଣ କରିଛି। କୃଷ୍ଣ ମୋହନ ମିଲିଟେରୀ ଡାକ୍ତର ହୋଇ ଅବସର ଗ୍ରହଣ କରିଛି। ପୂର୍ଣ୍ଣ ମେଡ଼ିକାଲ ଶିକ୍ଷା ଶେଷ କରି ଦେଶ ସେବାରେ ନିଜକୁ ନିୟୋଜିତ କରିବାର ଅଳ୍ପଦିନ ମଧ୍ୟରେ ଇହଲୀଳା ସମ୍ବରଣ କଲା। ଫନିନ୍ଦ୍ର ନନ୍ଦ ମେରାଇନ ଇଞ୍ଜିନିୟରିଂ ପାଠ ପଢ଼ି କିଛି ଦିନ ମାରଚେଣ୍ଟ ନେଭିରେ କାର୍ଯ୍ୟ କଲା। ପରବର୍ତ୍ତୀ କାଳରେ ପାରାଦ୍ୱୀପ ପୋର୍ଟରେ ଚିଫ୍ ଇଞ୍ଜିନିୟର ଭାବେ କାର୍ଯ୍ୟ କରି ଅବସର ନେଇଛି।

୧୯୫୩ ମସିହା ମାର୍ଚ୍ଚ ୩୦ ତାରିଖ ଦିନ ଆଇ.ଏସ.ସି. ପରୀକ୍ଷା ସରିଗଲା। ମୁଁ ସ୍ଥିର କରିସାରିଥାଏଁ ଯେପରି ହେଉ ଇଞ୍ଜିନିୟରିଂ ପଢ଼ିବାକୁ ଯିବି। ସେତେବେଳେ ଓଡ଼ିଶାରେ ଇଞ୍ଜିନିୟରିଂ କଲେଜ ନ ଥାଏ। ଓଡ଼ିଶା ସରକାର କେତେ ଗୁଡ଼ିଏ ଷ୍ଟାଇପେଣ୍ଡରି ସିଟ୍ ଓ ଆଉ କେତେଗୁଡ଼ିଏ ନନ୍ ଷ୍ଟାଇପେଣ୍ଡାରି ସିଟ୍ ବିଭିନ୍ନ ଇଞ୍ଜିନିୟରିଂ କଲେଜରେ ରିଜର୍ଭ କରି ରଖିଥାନ୍ତି। ଖବରକାଗଜ ବିଜ୍ଞାପନରୁ ଦେଖିଲି ଯେ ତ୍ରିଭାନ୍ଦ୍ରମକୁ ଷ୍ଟାଇପେଣ୍ଡ ୯୩ ଟଙ୍କା ଓ ପିଲାନିକୁ ଷ୍ଟାଇପେଣ୍ଡ ମିଳିବ ୯୯ ଟଙ୍କା। କଲିକତା ଶିବପୁର କଲେଜ ପାଇଁ, ଷ୍ଟାଇପେଣ୍ଡ ୭୫ଟଙ୍କା ଓ ପାଟଣା ପାଇଁ ୭୭ ଟଙ୍କା। ଦକ୍ଷିଣ ଭାରତରେ ଖର୍ଚ୍ଚ ଅପେକ୍ଷା କୃତ ଅଳ୍ପ ଭାବି ମୋର ପ୍ରଥମ ଚଏସ୍ ରଖିଲି, ତ୍ରିଭାନ୍ଦ୍ରମ କଲେଜ ଠିକ୍ ଟାଇମରେ ଦରଖାସ୍ତ ଦେଇ ଜୁନ୍ ୧୫ରେ ଇଣ୍ଟରଭିଉ ଦେବାକୁ ଗଲି। ଅଫିସ୍‌ରୁ ବୁଝିଲି ପଦାର୍ଥ ବିଜ୍ଞାନ, ରସାୟନିକ ବିଜ୍ଞାନ ଓ ଗଣିତରେ ରଖିଥିବା ନମ୍ବରକୁ ମିଶାଇ ଗୋଟିଏ ତାଲିକା ହୋଇଛି ଓ ସେଥିରେ ମୁଁ ସାରା ଓଡ଼ିଶାରେ ୫ମ ସ୍ଥାନ ଅଧିକାର କରିଛି। ତେଣୁ ମୁଁ ନିଶ୍ଚିନ୍ତ ହୋଇଗଲି ଯେ ସମୁଦାୟ ଷ୍ଟାଇପେଣ୍ଡରି ସିଟ୍ ୧୦ଟିରୁ ମୋର ଗୋଟିଏ ଷ୍ଟାଇପେଣ୍ଡରୀ ସିଟ୍ ହୋଇଯିବ। ସତକୁ ସତ ଇଣ୍ଟରଭିଉ ମାତ୍ର ୨ ମିନିଟ୍ ପାଇଁ ହେଲା ଓ ଡାଇରେକ୍ଟର

ଅଫ୍ ଇଣ୍ଡଷ୍ଟ୍ରିଜ୍ ଗଜେନ୍ଦ୍ର ମିତ୍ର ସଙ୍ଗେ ସଙ୍ଗେ କହି ଦେଲେ ତୁମେ ତ୍ରିଭାନ୍ଦ୍ରମରେ ଷ୍ଟାଇପେଣ୍ଡ ପାଇ ପଢ଼ିବାକୁ ପ୍ରସ୍ତୁତ ହୋଇପଡ଼।

ମୋ ସହିତ ଆଉ ଦୁଇ ଜଣ ବନ୍ଧୁ ନନ୍ ଷ୍ଟାଇପେଣ୍ଡରି ସିଟ୍ ପାଇଲେ। ସେମାନେ ହେଲେ କୁମୁଦାନନ୍ଦ ପଟ୍ଟନାୟକ ଓ ସତ୍ୟବାଦୀ ପଣ୍ଡା। କୁମୁଦାନନ୍ଦ ପଟ୍ଟନାୟକ କହିଲେ ତାଙ୍କ ଭାଇ ତ୍ରିଭାନ୍ଦ୍ରମରେ ପଢୁଛନ୍ତି ଓ ଅନ୍ୟାନ୍ୟ ଓଡ଼ିଆ ପିଲାଙ୍କ ଗହଣରେ ଆଜି ରାତ୍ର ୧୨ଟାରେ ସେମାନେ ତ୍ରିଭାନ୍ଦ୍ରମ ଅଭିମୁଖେ ଯାତ୍ରା କରିବେ। କୁମୁଦନନ୍ଦଙ୍କ ଭାଇ ନିତ୍ୟାନନ୍ଦ ବାବୁଙ୍କ ଠାରୁ ବୁଝିଲି ଯେ ନାମଲେଖା ପ୍ରାୟ ଜୁଲାଇ ୧୫ ଆଡ଼କୁ ହେବ। ସେ ସାଙ୍ଗରେ ୮୦୦/୧୦୦୦ ଟଙ୍କା ନେଇ ଯିବାକୁ ଉପଦେଶ ଦେଲେ। ତା'ହେଲେ ଆଉ ୨ ମାସ ପର୍ଯ୍ୟନ୍ତ ଟଙ୍କାର ଆବଶ୍ୟକତା ପଡ଼ିବ ନାହିଁ। ସେ ସମୟର ୧୦୦୦ ଟଙ୍କା ବର୍ତ୍ତମାନର ଦୁଇ ଲକ୍ଷ ଟଙ୍କା ସହ ସମାନ। ଏତେ ଟଙ୍କା ମୁଁ ପାଇବି କେଉଠୁଁ? ଆଇ.ଏସ.ସି. ପରୀକ୍ଷା ସରିବା ପରେ ମୁଁ ଦିନକୁ ୪ଟି ଟିଉସନ କରି ସମୁଦାୟ ୧୫୦ ଟଙ୍କା ରୋଜଗାର କରିଥାଏ। ସେଥିରୁ ନିଜର ଖର୍ଚ୍ଚ ଓ କଟକକୁ ୨/୩ଥର ଦଉଡ଼ିବା ଫଳରେ ୫୦ ଟଙ୍କା ଖର୍ଚ୍ଚ ହୋଇ ସାରିଥାଏ। ମୋ ପାଖରେ ଥାଏ ଅବଶିଷ୍ଟ ୧୦୦ ଟଙ୍କା। ଏତିକି ମୋର ସମ୍ବଳ। କିଭଳି ଟଙ୍କା ସଂଗ୍ରହ କରିବି, ଏହି ଭାବନାରେ ମୁଁ ବୁଡ଼ି ରହିଥାଏ, ହଠାତ୍ ଜୁନ୍ ମାସ ୨୨ ତାରିଖ ଦିନ କୁମୁଦାନନ୍ଦ ଠାରୁ ଗୋଟିଏ ଚିଠି ପାଇଲି, ସେ ପ୍ରିନ୍‌ସିପାଲଙ୍କ ପାଖରୁ ଏଡ଼ମିଶନ୍ ତାରିଖ ରିପ୍ଲାଇପେଡ଼ ଟେଲିଗ୍ରାମରେ ମଗାଇଥିଲା। ଉତ୍ତର ଆସିଛି ଏଡ଼ିମିସନ୍‌ର ଶେଷ ତାରିଖ ଜୁଲାଇ ପହିଲା। ତେଣୁ ସେ ସ୍ଥିର କରିଛି ଜୁନ୍୨୭ ତାରିଖରେ କଟକ ଛାଡ଼ିବ ଓ ମୋତେ ଅନୁରୋଧ କରିଛି ଟଙ୍କା ପଇସା ଓ ଜିନିଷପତ୍ର ଧରି ତାକୁ କଟକ ଷ୍ଟେସନ୍‌ରେ ଦେଖା କରିବାକୁ। ମୋ ମୁଣ୍ଡରେ ବଜ୍ରପାତ ହେଲା। ମୋର ଏତେଦିନର ସ୍ୱପ୍ନ ଧୂଳିସାତ୍ ହେଲାଭଳି ଲାଗିଲା। ଆଉ ମାତ୍ର ୫ ଦିନରେ କିଭଳି ୭୦୦/୮୦୦ ଟଙ୍କା ସଂଗ୍ରହ ହେବ ଭାବି ଭାବି ମୋତେ ଚଉଆଡ଼ ଅନ୍ଧକାରମୟ ଦେଖାଗଲା। ବାଗୁରାଇ ସ୍କୁଲରେ ଅଧ୍ୟୟନ ସମୟରେ "ବିପଦବେଳେ ଭାଙ୍ଗି ନ ପଡ଼ି ଓ ଦୁନିଆରେ କୌଣସି କାର୍ଯ୍ୟକୁ ଅସାଧ ମନେ ନ କରିବ।' ଏହ ନୀତିବାଣୀ ଗୁରୁଙ୍କ ଠାରୁ ଶିଖିଥିଲି। ସେହି ପ୍ରେରଣାରେ ବଶବର୍ତ୍ତୀ ହୋଇ ମୁଁ ଅଗ୍ରସର ହେଲି।

ଶୁଣିଲି କଲେକ୍ଟରଙ୍କ ପାଖରେ ଗରିବ ମେଧାବୀ ଛାତ୍ରଙ୍କୁ ସାହାଯ୍ୟ ପାଇଁ ଏକ ଫଣ୍ଡ ଅଛି। ସଙ୍ଗେ ସଙ୍ଗେ ବାଲେଶ୍ୱର କଲେକ୍ଟରଙ୍କ ଦପ୍ତରରେ ଉପସ୍ଥିତ ହେଲି। କଲେକ୍ଟର ଥାଆନ୍ତି ପ୍ରମୋଦ କୁମାର ଦେବ। ମୋତେ ଆଶ୍ଚର୍ଯ୍ୟାନ୍ୱିତ କରି ସେ ସଙ୍ଗେ ସଙ୍ଗେ ଅର୍ଡ଼ର ଦେଲେ, ତାଙ୍କ ପାଣ୍ଠିରୁ ୧୦୦ ଟଙ୍କା ସାହାଯ୍ୟ ପାଇଁ। ଏହା ମୋ ପାଇଁ ସ୍ୱର୍ଗରୁ ପୁଷ୍ପବୃଷ୍ଟି ଭଳି ଲାଗିଲା। ସେତେବେଳେ ଜିଲ୍ଲାବୋର୍ଡ଼ର ଚେୟାରମେନ୍ ଥାଆନ୍ତି ଅନନ୍ତପୁର ଗାଁର ସତ୍ୟନାରାୟଣ ଦାସ। ତାଙ୍କୁ ଯେତେ ଅନୁରୋଧ କଲେ ମଧ ତାଙ୍କଠାରୁ କୌଣସି ସାହାଯ୍ୟ ମିଳିଲା ନାହିଁ। ମୋର ପୁରାତନ ଶିକ୍ଷକ ଆମ ଗ୍ରାମର ଶଙ୍କର୍ଷଣ ଦାଶ ୫୦ ଟଙ୍କା ଧାର ଦେଲେ ଓ ସ୍ୱାଧୀନତା ସଂଗ୍ରାମୀ ମୋର ହିତୈଷୀ କକା କାଶୀନାଥ ଦାଶ ମଧ ବିଭିନ୍ନ ଆଡୁ ଧାର କରି ମୋତେ ୫୦ ଟଙ୍କା ଆଣିଦେଲେ। ୨୩ ତାରିଖ ସୁଦ୍ଧା ମୋର ନିଜ ସଞ୍ଚିତ ଅର୍ଥ ଓ ଅନ୍ୟାନ୍ୟ ସାହାଯ୍ୟ ମିଶି ୩୦୦ ଟଙ୍କା ସଂଗ୍ରହ ହୋଇଗଲା। ବାକି ୪୦୦/ ୫୦୦ ଟଙ୍କା ମିଳିବ କେଉଁଠୁ? ଅନ୍ୟ ଉପାୟ ନ ଦେଖି ଋଲିଲି ଭଦ୍ରକ ବାଉଦପୁର ଗାଁକୁ। କିଶୋରୀ ବାବୁ ମୁଁ ଷ୍ଟାଇପେଣ୍ଡ ପାଇ ଇଞ୍ଜିନିୟରିଂ ପଢ଼ିବାକୁ ଯାଉଛି ଶୁଣି ଯେତିକି ଖୁସି ହୋଇଥିଲେ, ଅର୍ଥର ଅଭାବରୁ ବୋଧହୁଏ ଏ ଶିକ୍ଷାରୁ ବଞ୍ଚିତ ହେବି ଶୁଣି ବହୁତ ଦୁଃଖିତ ହେଲେ। ୨୪ ତାରିଖ ରାତିସାରା ତାଙ୍କର ଭାବନାର ଅନ୍ତ ନାହିଁ। କହିଲେ ୫୦ / ୧୦୦ ଟଙ୍କା କଥା ଭିନ୍ନ। ମୁଁ ସେତକ କାହା ଠାରୁ ସଂଗ୍ରହ କରି ଦେଇପାରିବି। ୪୦୦/୫୦୦ ଟଙ୍କା ଆସିବ କେଉଁଠୁ? ତାଙ୍କ ଘରେ ସେଦିନ ମନ ଦୁଃଖରେ ଶୋଇପଡ଼ିଲି। ସେ ଭୋର ୪ଟାରେ ଉଠନ୍ତି, ତାଙ୍କର ମାଳି ଜପ ପାଇଁ। ହଠାତ୍ ୪ଟା ବେଳେ ମୋତେ ଡାକିଲେ। ଭାସ୍କର ଆଜି ନାମଜପ ବେଳେ ମୋତେ ଗୋଟିଏ ଦୈବବାଣୀ ଭାବନା ଆସିଲା। ତୋତେ ସରକାର ୯୩ ଟଙ୍କା ହିସାବରେ ଷ୍ଟାଇପେଣ୍ଡ ଦେବେ। ତେବେ ୩ ମାସର ଷ୍ଟାଇପେଣ୍ଡ କାହିଁକି ଆଗତୁରା ନ ଦେବେ? ତାହା ହେଲେ ତ ତୁ ବର୍ତ୍ତମାନ ପାଇଁ ଚଳି ଯାଆନ୍ତୁ ଓ ୩ ମାସ ପରେ ତୋର ଶୁଭାକାଂକ୍ଷୀମାନେ କିଛି କିଛି ଆର୍ଥିକ ସାହାଯ୍ୟ ଦେଇ ତୋତେ ଚଳାଇ ନିଅନ୍ତେ। ସେ କହିଲେ, ବୋଧହୁଏ ଏହା ସମ୍ଭବ। ତା ନ ହୋଇଥିଲେ ଏ ଭାବନା ନାମଜପ ସମୟରେ ମୋ ମନକୁ ଆସି ନଥାନ୍ତା। ତାଙ୍କର ଆଧାତ୍ମିକ ଶକ୍ତି ଉପରେ ମୋର

ପୂର୍ଣ୍ଣ ବିଶ୍ୱାସ। ମୁଁ ସଂଗେ ସଂଗେ ବାହାରିଲି କଟକ। ସେତେବେଳକୁ ରାଜଧାନୀ କଟକ ସହର। ଶୁଣିଲି ଶିକ୍ଷମନ୍ତ୍ରୀ ଦଶପଲ୍ଲା ରାଜାସାହେବ ଗସ୍ତରେ ଯାଇଛନ୍ତି। ସଙ୍ଗେ ସଙ୍ଗେ ଗୋଟିଏ ଦରଖାସ୍ତ ନେଇ ପହଞ୍ଚିଲି ଡେଭଲମେଣ୍ଟ ସେକ୍ରେଟେରୀ ଡକ୍‌ଟର ହରିବନ୍ଧୁ ମହାନ୍ତିଙ୍କ ପାଖରେ। ମୋତେ ଦେଖି ସଙ୍ଗେ ସଙ୍ଗେ ପଚାରିଲେ young boy tell me how can I help you? କିଶୋରୀବାବୁଙ୍କୁ ହୋଇଥିବା ଦୈବବାଣୀ କ'ଣ ସତ୍ୟ? ମୁଁ ସ୍ତମ୍ଭୀଭୂତ ହୋଇପଡ଼ିଲି। ମୁଁ କିଭଳି ପରିସ୍ଥିତିରେ ପାଠପଢ଼ି, ଷ୍ଟାଇପେଣ୍ଡ ପାଇ ଇଞ୍ଜିନିୟରିଂ ପଢ଼ିବାକୁ ଯୋଗ୍ୟ ବିବେଚିତ ହୋଇ ମଧ୍ୟ ମାତ୍ର ୪୦୦/୫୦୦ ଟଙ୍କା ପାଇଁ ଏପାଠରୁ ବଞ୍ଚିତ ହେଉଛି ସବୁତକ ଗୋଟିଏ ନିଶ୍ୱାସରେ କହି ପକାଇଲି। କଲମଟି ମୁଣ୍ଡରେ ଧରି ୨ ମିନିଟ୍ କାଳ କ'ଣ ଭାବିଲେ କେଜାଣି ସଙ୍ଗେ ସଙ୍ଗେ ଲେଖିଦେଲେ। 'Director of Industries, Issue cheque worth three months stipend in advance" ବହୁତ ଖୁସି ମନରେ ଚିଠିଟି ଧରି ଆସିଲି ଡାଇରେକ୍ଟର ଅଫ୍ ଇଣ୍ଡଷ୍ଟ୍ରିଜ୍ ଅଫିସ୍‌କୁ। ଡାଇରେକ୍ଟର ଗଜେନ୍ଦ୍ର ମିତ୍ର ଗସ୍ତରେ ଥିବାରୁ ତା ପରଦିନ ୨୬ ତାରିଖ ସକାଳେ ତାଙ୍କ ତାଳଦଣ୍ଡା କେନାଲ କୂଳ ବସାରେ ଦେଖା କଲି। ସେ ସଙ୍ଗେ ସଙ୍ଗେ ସେହି ଚିଠି ଉପରେ ଲେଖିଦେଲେ। 'Cashier issue cheque worth three months stipend in advance' ସେତେବେଳେ ମୋର ଖୁସି ଦେଖେ କିଏ? ଚିଠିଟି ଧରି ଏକା ନିଶ୍ୱାସରେ ଦଉଡ଼ି ଦଉଡ଼ି ପହଞ୍ଚିଲି ଡାଇରେକ୍ଟରଙ୍କ ଅଫିସ୍‌ରେ, ଅଫିସ୍ ଖୋଲିବାର ଅଳ୍ପ ସମୟ ହୋଇଥାଏ। ଜଣେ ଦୁଇଜଣ କିରାଣୀ ଆସିଥାନ୍ତି । କେସିଅରଙ୍କୁ ଦେଖାକଲି,ସେ ସଙ୍ଗେ ସଙ୍ଗେ କହିଲେ ସେକ୍ରେଟେରୀ ପାଗଳ ନା ଡାଇରେକଟର ପାଗଳ । ତୁମେ କିଏ? ତୁମେ ନାମଲେଖାଇ ନାହଁ । ତୁମେ ଏ ଟଙ୍କା ଧରି ପଳାଇଗଲେ ମୋର ଚାକିରୀ ଯିବ । ଏହା ହୋଇପାରିବ ନାହିଁ। ମୁଁ ଡାଇରେକଟରଙ୍କୁ ବୁଝାଇଦେବି । ତୁମେ ନାମଲେଖାଇ ସାରିଲେ ଯାଇ ତୁମ ସହ କାରବାର । ମୁଁ ଦୁଃଖରେ ଭାଙ୍ଗି ପଡ଼ିଲି । କହିଲି ଏ ଟଙ୍କାତ ମୋର ନାମ ଲେଖାପାଇଁ ଦରକାର। ମୋର ଦୁଃଖ କହି ସେକ୍ରେଟେରୀ ଓ ଡାଇରେକଟରଙ୍କ ହୃଦୟ ତରଳାଇ ଦେଇପାରିଲି । କିନ୍ତୁ ଆପଣଙ୍କ ପାଇଁ ମୋର ଭବିଷ୍ୟତ ଚିରଦିନ ପାଇଁ ଅନ୍ଧକାରମୟ ହୋଇଯିବ । ସେ କଣ ଭାବିଲେ କେଜାଣି ସଙ୍ଗେ ସଙ୍ଗେ ଡ଼ାଇରେକଟରଙ୍କ ପିଏ ବ୍ରହ୍ମାନନ୍ଦ ବାବୁଙ୍କ ସହ ପରାମର୍ଶ କରି କହିଲେ,ତୁମକୁ ଏଡ଼ଭାନସ ଚେକ୍ ଦେଇ ହେବନି । ଆମେ

ପ୍ରିନ୍ସପାଲଙ୍କୁ ଚିଠି ଲେଖି ଦେଉଚୁ । ସେ ଟଙ୍କା ନନେଇ ତୁମର ଏଡ୍‌ମିସନ୍ କରିଦେଇ ଟେଲିଗ୍ରାମ କରିଦେଲେ, ଆମେ ସଙ୍ଗେ ସଙ୍ଗେ ତିନି ମାସର ଷ୍ଟାଇପେଣ୍ଡ ଟଙ୍କା ଚେକ୍ ଆକାରରେ ତାଙ୍କ ପାଖକୁ ପଠାଇଦେବୁ । ଏହା ମୋର ମନକୁ ପାଇଲା । ସେଦିନ ଥିଲା, ଜୁନ ୨୬ ତାରିଖ ମୁଁ କୁମୁଦାନନ୍ଦ ପଟ୍ଟନାୟକ ଓ ସତ୍ୟବାଦୀ ପଣ୍ଡାଙ୍କୁ ସାକ୍ଷାତ କରି ଜାଣିଲି ସେମାନେ ସେଦିନ ରାତିରେ ତ୍ରିଭାନ୍ଦ୍ରମ ଅଭିମୁଖେ ଯାତ୍ରା କରୁଛନ୍ତି । ମୁଁ ତା ପରଦିନ ଯିବି କହି ଗାଁ ବାଟ ଦେଇ ଫେରିଲି ବାଲେଶ୍ୱର।୨୭ତାରିଖ ସୋମବାର ରାତି ମାନ୍ଦ୍ରାଜ୍ ମେଲ୍‌ରେ ତ୍ରିଭାନ୍ଦ୍ରମ ଅଭିମୁଖେ ଯାତ୍ରା ଆରମ୍ଭ କଲି । ସେ ସମୟରେ ୪ର୍ଥ ଦିନରେ ତ୍ରିଭାନ୍ଦ୍ରମ ପହଞ୍ଚିବା ସମ୍ଭବ ହେଉଥିଲା ।

୩୦ତାରିଖ ସନ୍ଧ୍ୟାବେଳେ ପହଞ୍ଚିଲି ତ୍ରଭାନ୍ଦ୍ରମ ଷ୍ଟେସନରେ। ସଂଗୃହିତ ହୋଇଥିବା ୩୦୦ ଟଙ୍କାରୁ ଟିକେଟ ଖର୍ଚ୍ଚ ଆଦି ଯାଇ ଥାଏ ମୋ ପାଖରେ ବଳକା ୨୬୦ଟଙ୍କା । ଷ୍ଟେସନକୁ ନିତ୍ୟାନନ୍ଦ ପଟ୍ଟନାୟକ, ମୁକୁନ୍ଦ ମହାପାତ୍ର, ଅମରେନ୍ଦ୍ର ପ୍ରଧାନ ଓ କୁମୁଦାନନ୍ଦ ଆସିଥିଲେ । ମୁଁ ଅମେରେନ୍ଦ୍ର ବାବୁଙ୍କ ରୁମ୍‌ରେ ରହିଲି । ତା ପରଦିନ ଜୁଲାଇ ପହିଲା ୧୦ଟା ବେଳେ ଯେତେବେଳେ ପ୍ରିନ୍ସପାଲଙ୍କୁ ନାମଲେଖା ବିଷୟରେ କହିଲି ସେ ଡାକିଲେ କଲେଜ କେସିଅରଙ୍କୁ । କେସିଅର ସଙ୍ଗେ ସଙ୍ଗେ ଉତ୍ତର ଦେଲେ, ହଁ ଡାଇରେକଟର ଅଫ ଇଣ୍ଡଷ୍ଟ୍ରିଜ ଓଡ଼ିଶା ଗୋଟିଏ ଚିଠି ଲେଖିଥିଲେ ଓ ଆମେ ସଙ୍ଗେ ସଙ୍ଗେ ତାର ଉତ୍ତର ୨୮ ତାରିଖ ଠାରୁ ଦେଇ ସାରିଲୁଣି । ଏହା ସମ୍ଭବନୁହେଁ, ଟଙ୍କା ନପାଇଲେ ଆମେ ନାମ ଲେଖାଇପାରିବୁନି। ପୁଣି ଏକ ପ୍ରଚଣ୍ଡ ବଜ୍ରପାତ । କିନ୍ତୁ କିଶୋରୀବାବୁଙ୍କ ସେହି ଗୋଟିଏ ବାଣୀ ବିପଦରେ ଭଗବାନଙ୍କୁ ଡାକିବୁ । ଅଧୈର୍ଯ୍ୟ ହେବୁନି । ତାଙ୍କ ମୁଖନିଃସୃତ ଦୈବବାଣୀ କଣ ମିଥ୍ୟା ହୋଇଯିବ । ଜୁଲାଇ ପହିଲା ଦିନ ଅଫିସରୁ ଫେରି ମୁଁ ମୋର ଯେତେ ବନ୍ଧୁ ଥିଲେ ସମସ୍ତଙ୍କୁ ଚିଠିଲେଖି ପକାଇଲି । ତୁମେ ଯେଉଁଠାରେ କହିବ ମୁଁ ବିଭାହୋଇ ଯିବି । ଯେଉଁ ଭଦ୍ରବ୍ୟକ୍ତି ମୋତେ ୫୦୦ ଟଙ୍କା ବର୍ତ୍ତମାନ ଦେଇପାରିବ ମୁଁ ତାଙ୍କ ଝିଅକୁ ବିଭାହେବାକୁ ରାଜି ଅଛି । କଣ କରିବି ଭାବୁଛି । ହଠାତ ଦିନ ୩ଟା ବେଳେ ମନକୁ ଭାବନା ଆସିଲା,ଏତେ ବାଟ ଆସି କଣ ଫେରିଯିବି । କିଶୋରୀବାବୁଙ୍କ ସହାସ୍ୟବଦନ ଆଖି ଆଗରେ ନାଚି ଉଠିଲା । ସତେଯେପରି ମନେ ହେଲା ସେ ହସି ହସି କହୁଛନ୍ତି, ଅଧୈର୍ଯ୍ୟ ହୁଅନା, ମୋର ଆର୍ଶୀବାଦ ତୋ ପାଖରେ ରହିଛି । ତୁ ସବୁ ବାଧାବିଘ୍ନ ଅତିକ୍ରମ କରି ନିଶ୍ଚୟ ଜୟଯୁକ୍ତ ହେବୁ । ଭାବିଲି ଭାଇସ ଚାନ୍‌ସେଲର୍‌ଙ୍କୁ ଦେଖାକଲେ

କି ଭଳି ହୁଅନ୍ତା, ସେତେବେଳେ ଟ୍ରାଭାଙ୍କୋର ବିଶ୍ୱବିଦ୍ୟାଳୟର କୁଳପତି ଥାଆନ୍ତି ବିଶିଷ୍ଟ ଶିକ୍ଷାବିତ୍ ଲକ୍ଷ୍ମଣ ସ୍ୱାମୀ ମୁଦାଲିଆରଙ୍କ ବଡ଼ ଭାଇ ରାମସ୍ୱାମୀ ମୁଦାଲିଅର । ସଙ୍ଗେ ସଙ୍ଗେ ଚାଲିଲି ତାଙ୍କ ପାଖକୁ । ସେ କଲିକତା ଯାଇଥିଲେ । ତାଙ୍କର ଦେଖା ମିଳିବନି । ପ୍ରୋଭାଇସ ଚାଲସେଲର ଥିଲେ ବିଖ୍ୟାତ ପ୍ରଶାସନିକ ସର୍ଦ୍ଦାର କେ.ଏମ.ପାଣି କରଙ୍କ ସାନଭାଇ ପି.ଏମ୍ ପାଣିକରୀ। ତାଙ୍କୁ ଯେତେବେଳେ ମୋର ଦୁଃଖର କାହାଣୀ କହିଲି ସେ ବହୁତ ଚିନ୍ତିତ ହୋଇପଡ଼ିଲେ । ସଙ୍ଗେ ସଙ୍ଗେ ଫୋନ୍ କଲେ ଇଞ୍ଜିନିୟରିଂ କଲେଜର ପ୍ରିନ୍ସପାଲଙ୍କୁ । ପ୍ରିନ୍ସପାଲ କହିଲେ କଲେଜ ଫିସ୍ ୨୦୦ଟଙ୍କା ଟ୍ରେଜେରୀରେ ଜମାଦେବାକୁ ପଡ଼ିବ । ମୁଁ ଟ୍ରେଜେରୀ ଚାଲଣ ନ ପାଇଲେ ଏଡ଼ମିସିନ୍ ନେବି କିପରି ? ଆପଣ ସିଣ୍ଡିକେଟ ଡକାଇ ଜଣେ ପିଲା ପାଇଁ ନିୟମ ପରିବର୍ତ୍ତନ କରନ୍ତୁ । ତା ପରେ ଯାଇ ଏହା ସମ୍ଭବ ହେବ। ପ୍ରୋ ଭାଇସଚେନ୍ସଲର କହିଲେ, ତୁମେ ୨୦୦ଟଙ୍କା ଟ୍ରେଜେରି ଚାଲାଣ ଦାଖଲ କରିପାରିବ, ମୁଁ କହିଲି ହଁ ମୋ ପାଖରେ ବର୍ତ୍ତମାନ ମଧ୍ୟ ୨୦୦ଟଙ୍କା ଅଛି । ଡ଼ିପୋଜିଟ କରି ଚାଲାନ ଦାଖଲ କର । ମୁଁ ପ୍ରିନ୍ସପାଲଙ୍କୁ କହିଦେଉଛି ବାକି ଟଙ୍କା ସେମାନେ ପରେ ତୁମର ଷ୍ଟାଇପେଣ୍ଡ ଆସିଲେ ନେବେ । କିଶୋରିବାବୁଙ୍କ ମୁଖନିଃସୃତ ବାଣୀ କେବେ ମିଥ୍ୟା ହେବନି । ଖୁସି ମନରେ ୟୁନିଭରସିଟିଠାରୁ ଦୀର୍ଘ ୫କି.ମି ପଥ ଏକପ୍ରକାର ଦୌଡ଼ି ଦୌଡ଼ି ଆସି ହଷ୍ଟେଲ୍‌ରେ ପହଞ୍ଚି ଦେଖେତ ମୋ ନାମରେ ଗୋଟିଏ ଟେଲିଗ୍ରାମ। ଟେଲିଗ୍ରାମଟି ଆସିଛି ଡାଇରେକଟରଙ୍କ ପାଖରୁ three months stipend despatched to principal in advance do not worry । ଟେଲିଗ୍ରାମଟି ପଢିବା ମାତ୍ରେ ମୋ ଆଖିରୁ ଝର ଝର ହୋଇ ଲୋତକଧାର ପ୍ରବାହିତ ହେବାରେ ଲାଗିଲା । ସାଙ୍ଗମାନେ ଦୌଡ଼ି ଆସିଲେ କୌଣସି ଦୁଃସମ୍ବାଦ ଭାବି ଟେଲିଗ୍ରାମ ନେଇପଢିଲେ । ମୁଁ ସେଦିନ ଜାଣିପାରିଲିନି ଏହା କିଭଳି ସମ୍ଭବ ହେଲା । ଠିକ୍ ସମୟରେ ଡାଇରେକଟରଙ୍କ ପାଖରୁ ଷ୍ଟାଇପେଣ୍ଡ ଆସିଲା ଓ ମୋର ନାମ ଠିକ୍ ସମୟରେ ଲେଖାହେଲା-ସେଦିନ ଠାରୁ ନିୟମ ମଧ୍ୟ ବଦଳିଗଲା । ସବୁ ଷ୍ଟାଇପେଣ୍ଡଧାରୀ ଛାତ୍ର ତାଙ୍କର ଷ୍ଟାଇପେଣ୍ଡ ଟଙ୍କା ଏଡ୍‌ଭାନ୍ସ ଆକାରରେ ପାଇବେ ।

ଜୁନ୍ ୨୨ ତାରିଖରୁ ଜୁଲାଇ ପହିଲା ପର୍ଯ୍ୟନ୍ତ ଦିନଗୁଡ଼ିକ ମୋର ସ୍ମୃତିରେ ସଂଖାଳି ହୋଇ ଆଜୀବନ ଜାଜ୍ଜ୍ୱଲ୍ୟମାନ ରହିଥିବ । ନିପଟ ମଫସଲରେ ବଢିଥିବା

ଜଣେ ଯୁବକ ପକ୍ଷରେ ଏଭଳି ଏକ ଦୁଃସାହସ କିଭଳି ସମ୍ଭବ ହେଲା ? ତାହା ମୋତେ ଏ ପର୍ଯ୍ୟନ୍ତ ଆଶ୍ଚାର୍ଯ୍ୟନ୍ୱିତ କରେ । ମନରେ ଜାଗେ ଗୋଟିଏ ମାତ୍ର ଶ୍ଳୋକ:-

"ମୂକଂ କରୋତି ବାଚାଳମ୍ ପଙ୍ଗୁମ୍ ଲଂଘୟତେ ଗିରିଂ
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଃ ।"

ହୃଦୟ ପଟରେ ଦିଶିଯାଆନ୍ତି ମାତୃସମା ଜନ୍ମମାଟି-ସେଇ ପଲ୍ଲୀଗାଁରେ ଅଧିଷ୍ଠିତ - 'ବୁଢାବାଳିଆ' ଆଉ ତାଙ୍କର ଚକା ଚକା ଆଖି ଯୋଡ଼ିକ ରୁ ଝରି ଆସୁଥିବା ଅସରନ୍ତି କରୁଣାସିକ୍ତ ଆଶିଷର ଧାରା । ପୁଣି ସ୍ମୃତି ପରଦାରେ ସ୍ୱର୍ଣ୍ଣାକ୍ଷରରେ ଦେଖାଦିଏ ସେଇ ଛାତ୍ରବତ୍ସଳ ଧର୍ମପ୍ରାଣ ପ୍ରଧାନଶିକ୍ଷକ କିଶୋରୀ ବାବୁଙ୍କ ବରାଭୟଦାୟୀ ପ୍ରତିଛବି । ଅମାପ ଭକ୍ତିରେ ନଇଁ ଯାଏ ମୁଣ୍ଡ । ଦେବତା, ଗୁରୁ ଓ ଆତ୍ମୀୟବଂଧୁ ଯେଉଁମାନେ ସ୍ନେହର ସଲିଳ ସିଞ୍ଚି ଦୁବକୁ ଦାରୁ ହେବାର ସ୍ୱପ୍ନ ଆଣିଦେଲେ । ରାମାୟଣର ଅଯୋଧାକାଣ୍ଡ ଭଳି ଏହି ଅଧ୍ୟାୟଟି ମୋ ଜୀବନର ସବୁଠାରୁ ରୋମାଞ୍ଚକର ।

ଓଓଓ

## ସପ୍ତମ ପରିଛେଦ

# ଇଞ୍ଜିନିୟରିଂ ବିଦ୍ୟା ଅଧ୍ୟୟନ

୧୯୫୩ ମସିହା ଜୁନମାସର ଶେଷ ସପ୍ତାହ ବେଳକୁ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁର ପ୍ରକୋପ ପ୍ରବଳରୁ ପ୍ରବଳତର ହୋଇସାରିଥାଏ। ମୋ ଜୀବନରେ ଉଠିଥିବା ଝଡ଼ ବଙ୍ଗୋପସାଗରର ଉତ୍ତର ସୀମାରୁ ମୌସୁମୀ ପ୍ରବାହର ବିପରୀତ ଦିଗରେ ଗତିକରି ଆରବସାଗରର ଝଡ଼ ସହ ଧକ୍କା ଖାଇ ଉର୍ଦ୍ଧ୍ୱଗାମୀ ହୋଇ ତ୍ରିଭାନ୍ଦ୍ରମଠାରେ ସ୍ଥିର ହୋଇଗଲା। ଏଭଳି ଏକ ନାଟକୀୟ ପରିସ୍ଥିତିରେ ମୋର ଇଞ୍ଜିନିୟରଂ ପଢାର ଆରମ୍ଭ।

ସେ ସମୟ ଭାରତର ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ଆରମ୍ଭ କାଳ। ପଣ୍ଡିତ ନେହେରୁଙ୍କ ନେତୃତ୍ୱରେ ଗଠିତ କଂଗ୍ରେସ ସରକାର ବିଭିନ୍ନ ଉନ୍ନୟନମୂଳକ ଯୋଜନା ଜରିଆରେ ସୁନାର ଭାରତ ଗଠନର ସ୍ୱପ୍ନ ଦେଖୁଥାନ୍ତି। ୧୯୪୯ ମସିହାରୁ ଆରମ୍ଭ ହୋଇଥିବା ହୀରାକୁଦ ଯୋଜନା ଚରମ ପର୍ଯ୍ୟାୟରେ ଉପନୀତ ହୋଇସାରିଥାଏ। ଓଡ଼ିଶା ବନ୍ୟାର ପ୍ରକୋପରୁ ଚିରଦିନ ପାଇଁ ରକ୍ଷା ପାଇବ, ଜଳଭଣ୍ଡାର ପାଣିର ଉପଯୋଗ ହୋଇ ୧୦ଲକ୍ଷ ଏକର ଜମି ଦୋଫସଲି ହେବ। ନଅଙ୍କ ଦୁର୍ଭିକ୍ଷ ଅତୀତ ଇତିହାସର ଏକ କାହାଣୀ ହୋଇଯିବ। ଭବିଷ୍ୟତରେ ଦୁର୍ଭିକ୍ଷ ଆଉ ଓଡ଼ିଶାବାସୀଙ୍କ ମନରେ ଆଶଙ୍କା ଓ ଭୟ ସଞ୍ଚାର କରିବ ନାହିଁ। ହୀରାକୁଦ ବନ୍ଧରୁ ଉତ୍ପାଦିତ ବିଜୁଳିଶକ୍ତି ବଳରେ ଘରେ ଘରେ ବିଜୁଳିବତୀ ଜଳିବ। ଗୋଟିଏ ପ୍ରଧାନ ଚିନ୍ତାର ବିଷୟ,ଏତେ ବିଜୁଳି ଶକ୍ତିର ବ୍ୟବହାର କିପରି ହେବ? ଏହାକୁ ଉପଯୋଗ କରିବା ପାଇଁ କଳକାରଖାନା କାହିଁ? ମାଛକୁଣ୍ଡ ଯୋଜନାର ବିଜୁଳି ଶକ୍ତିକୁ ବ୍ୟବହାର କରି ନପାରି ଆନ୍ଧ୍ରକୁ ବିକିବା ଭଳି ହୀରାକୁଦର ବିଜୁଳିଶକ୍ତିକୁ ପଡ଼ୋଶୀ ପ୍ରଦେଶରେ ଶସ୍ତାରେ ବିକିବାକୁ ପଡ଼ିବ। ତେଣୁ ଚାରି ଆଡ଼େ ଗୋଟିଏ ସ୍ୱର ପ୍ରତିଧ୍ୱନିତ ହେଉଥାଏ। ଓଡ଼ିଶାରେ ପ୍ରଚୁର ପରିମାଣରେ ମିଳୁଥିବା କଞ୍ଚାମାଲ ଲୁହାପଥର, କୋଇଲା, ଚୂନପଥର ଓ ବିଜୁଳି ଶକ୍ତିକୁ ଉପଯୋଗ କରି ଲୁହା ଉତ୍ପାଦନ କରିବା

ପାଇଁ ରାଉରକେଲା ସବୁଠାରୁ ଉପଯୁକ୍ତ ସ୍ଥାନ । ସେଠାରେ ଗୋଟିଏ ବୃହତ ଧରଣର ଲୁହା ଇସ୍ପାତ କାରଖାନା ପ୍ରତିଷ୍ଠା କରାଯାଉ । ଏହା ଥିଲା ଓଡ଼ିଶାବାସୀଙ୍କର ଯୁକ୍ତିସଂଗତ ଓ ନ୍ୟାଯ୍ୟ ଦାବୀ । ସେତେବେଳେ ବହୁଳ ପ୍ରସାରିତ ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଓ ସମାଲୋଚନା ପାକ୍ଷିକ, ନିଆଁଖୁଣ୍ଟା ଓ ଡଗର ପତ୍ରିକା ନିଜ ନିଜର ମତପାର୍ଥକ୍ୟ ଭୁଲି ଗୋଟିଏ ସ୍ୱର ଉତ୍ତୋଳନ କରୁଥାନ୍ତି । ରାଉରକେଲାର ଇସ୍ପାତ କାରଖାନା ଓଡ଼ିଶାବାସୀଙ୍କର ଦାବୀ । ଏହି କାରଖାନାରେ ବହୁ ଶ୍ରମିକ, ପ୍ରଶାସନିକ ଇଞ୍ଜିନିୟର ମେକାନିକ କର୍ମନିଯୁକ୍ତି ପାଇବେ । ତାର ଉନ୍ନତିରେ ହେବ ଓଡ଼ିଶା ର ଉନ୍ନତି । ମୁଁ ମଧ ମୋର ଯୁବ ସୁଲଭ ଉନ୍ମାଦନାରେ ଓଡ଼ିଶାବାସୀଙ୍କ ଆକାଂକ୍ଷାର ମହାସ୍ରୋତରେ ଭାସି ଯାଇଥିଲି । ମେକାନିକାଲ୍ ଇଞ୍ଜିନିୟରିଂ ପଢି ରାଉରକେଲା ଇସ୍ପାତ କାରଖାନାରେ ଚାକିରୀ କରିବି, ଏହି ଆଶା ଓ ଆକାଂକ୍ଷା ନେଇ ମୁଁ ମେକାନିକାଲ୍ ଇଞ୍ଜିନିୟରିଂକୁ ବାଛି ନେଇଥିଲି । ତ୍ରିଭାନ୍ଦ୍ରମ ଇଞ୍ଜିନିୟରିଂ କଲେଜରେ ଓଡ଼ିଶା ପାଇଁ ୩ଟି ସ୍ଥାନ ସଂରକ୍ଷିତ । ମୋର ବନ୍ଧୁ ଓ ସହପାଠୀ କୁମୁଦାନନ୍ଦ ସିଭିଲ, ସତ୍ୟବାଦୀ ପଣ୍ଡା ଇଲେକ୍ଟ୍ରିକାଲ ବ୍ରେଞ୍ଚ ବାଛିଥାନ୍ତି । ମୁଁ ବାଛିଥାଏ ମେକାନିକେଲ । ମେଟାଲୋଜି କେମିକେଲ୍ ଆଦି କେତେକ ବ୍ରେଞ୍ଚ ଅନ୍ୟ କଲେଜରେ ଥାଏ । ତ୍ରିଭେନ୍ଦ୍ରମରେ ଥାଏ କେବଳ ସିଭିଲ, ଇଲେକ୍ଟ୍ରିକାଲ ଓ ମେକାନିକାଲ ।

ଦୁଇବର୍ଷ ଅଧୟନ ପରେ ମୋର ମେକାନିକାଲ୍ ପଢିବାକୁ ବିଶେଷ ସ୍ପୃହା ହେଲାନି । ତାର ଅନେକଗୁଡ଼ିଏ କାରଣ ଅଛି । ପ୍ରଥମ କାରଣ ହେଲା ସେତେବେଳେ ଇଞ୍ଜିନିୟରିଂ ଶିକ୍ଷା କହିଲେ, ସଭିଲ୍ ଇଞ୍ଜିନିୟରିଂକୁ ବୁଝାଉଥିଲା । ଓଡ଼ିଶାରେ ଯେଉଁଠାକୁ ଗଲି ଓ ଯେଉଁ ଇଞ୍ଜିନିୟରିଂଙ୍କ ସହିତ କଥାବାର୍ତ୍ତା ହେଲି ଦେଖିଲି ସେ ଜଣେ ସିଭିଲ ଇଞ୍ଜିନିୟର, ୧୦ଜଣ ସିଭିଲ୍ ଇଞ୍ଜିନିୟରରେ ଜଣେ ମେକାନିକାଲ୍ ଇଞ୍ଜିନିୟର ନିଆଯାଉଛି । ଏଭଳି କି ରାଉରକେଲା ଇସ୍ପାତ କାରଖାନା ନିର୍ମାଣ ପାଇଁ ବେଶୀ ସିଭିଲ୍ ଇଞ୍ଜିନିୟର ଆବଶ୍ୟକ। ୨ୟ କାରଣ ହେଲା ତ୍ରିଭାନ୍ଦ୍ରମ ଇଞ୍ଜିନିୟରିଂ କଲେଜରେ ଅଧ୍ୟାପନା । ସିଭିଲ୍ ପାଠ ନିମନ୍ତେ ଥାନ୍ତି, ସିଭିଲ୍ ଇଞ୍ଜିନିୟରିଂ ପ୍ରଫେସର ରାଜାରମଣ ସେ ଜଣେ ନାମଜାଦା ପ୍ରଫେସର। ସେ ବହୁତ ଗୁଡ଼ିଏ ପୁସ୍ତକ ଲେଖିବା ସହିତ ନିଜର ଉଚ୍ଚକୋଟୀର ଚରିତ୍ରବତ୍ତା, ଶିକ୍ଷାଦାନ ଓ ଅଧବସାୟ ବଳରେ

କଲେଜରେ ସବୁଠାରୁ ସମ୍ମାନିତ ଅଧ୍ୟାପକ ଭାବେ ପରିଚିତ ଥିଲେ । ତାଙ୍କ ସାଙ୍ଗକୁ ମିଷ୍ଟଭାଷୀ ପ୍ରଫେସର ନଟ୍‌ରାଜନ ଓ ଉନ୍ନିକ୍ରିଷ୍ଣନ୍ ଥିଲେ ମୋ ପାଇଁ ଆଦର୍ଶ ଶିକ୍ଷକ, ତୃତୀୟ କାରଣ ଥିଲା ମେକାନିକେଲ ଡ୍ରଇଂ ଓ ୱାର୍କସପ୍ ପ୍ରତି ମୋର ବିତୃଷ୍ଣା କାହିଁକି କେଜାଣି ଏ ଦୁଇଟି କ୍ଲାସ ମୋତେ ଭଲ ଲାଗୁନଥିଲା । ଚତୁର୍ଥ କାରଣ ଥିଲା ମୋର ସହପାଠୀ ବୃନ୍ଦ । ତ୍ରିଭାନ୍ଦ୍ରମ କଲେଜରେ ମୋର ଅନ୍ତରଙ୍ଗ ସହପାଠୀ ମହାଦେବନ, ସୁନ୍ଦରନ, ବାଲକ୍ରିଷ୍ଣନ୍ ଓ କ୍ରିଷ୍ଣନ, ପଦ୍ମନାଭନ, ଗିରିଜାବଲ୍ଲଭନ୍ ସମସ୍ତେ ଥିଲେ ସିଭିଲ ଇଞ୍ଜିନିୟରିଂ ଛାତ୍ର । ତେଣୁ ଇଞ୍ଜିନିୟରିଂର ୨ୟବର୍ଷ ଶେଷରେ ମୁଁ ଯେତେବେଳେ ପ୍ରଫେସର ରାଜରମଣଙ୍କୁ ମୋର ମନକଥା ଜଣାଇଲି ସେ ସଙ୍ଗେ ସଙ୍ଗେ ମୋତେ ତାଙ୍କ ବ୍ରାଞ୍ଚରେ ଖାଲିଥିବା ସ୍ଥାନରେ ଭର୍ତ୍ତି କରିଦେଲେ ।

୧୯୫୧ ମସିହାଠାରୁ ୧୯୫୩ ମସିହା ପର୍ଯ୍ୟନ୍ତ ପଢା ସମୟରେ ଆଇ ଏସ:ସି ୨ବର୍ଷ ଧରି ଶିକ୍ଷା ଓ ଅର୍ଥର ବ୍ୟବସ୍ଥା ପାଇଁ ମୋତେ ଯେଉଁ ପ୍ରବଳ ସଂଗ୍ରାମ କରିବାକୁ ପଡ଼ିଥିଲା, ତାର ଏକ ଅବସାନ ଘଟି ସାରିଥିଲା, ମାସକୁ ୯୩ ଟଙ୍କା ବୃତ୍ତି । ସେତେବେଳେ ହଷ୍ଟେଲ ଖର୍ଚ୍ଚ ମାସକୁ ୪୫/୫୦ ଟଙ୍କା କଲେଜ ଦରମା ଓ ଅନ୍ୟାନ୍ୟ ଫିସ ବାବଦ ମାସକୁ ହାରାହାରି ୨୦ଟଙ୍କା । ଅନ୍ୟାନ୍ୟ ଖର୍ଚ୍ଚବାବଦ ୧୦ରୁ ୧୫ଟଙ୍କା ଭିତରେ ହୋଇଗଲେ ଯଥେଷ୍ଟ । ତେଣୁ ମୁଁ ମୋର ଷ୍ଟାଇପେଣ୍ଡରୁ ୧୪ଟଙ୍କା କାଟି ସାନଭାଇ ନିଶାକର ଓ ଦାଦାଙ୍କ ପୁଅ ମୁରଲୀର ପଢା ପାଇଁ ପଠାଇ ଦେଉଥାଏ । ୮୦ଟଙ୍କା ଭିତରେ କୌଣସି ମତେ ଚଳିଯାଉଥାଏ । ଅଧିକାଂଶ ଛାତ୍ର କାହିଁକି ଅଧିକାଂଶ ଅଧ୍ୟାପକ ଧଳା ଲୁଙ୍ଗି ପିନ୍ଧି କଲେଜ ଆସନ୍ତି । କେବଳ ୱାର୍କସପ୍ ଓ ଲେବୋରେଟୋରୀ ପାଇଁ ପେଣ୍ଟ ପିନ୍ଧିବା ବାଧ୍ୟତାମୂଳକ । ସେତେବେଳେ ଟେରିଲିନ୍ ଓ ଟେରିକଟ୍‌ର ଯୁଗ ଆସି ନଥାଏ । ଖଣ୍ଡେ ଲୁଙ୍ଗି (କେରଳ ଭାଷାରେ ମୁଣ୍ଡୁ) ର ଦାମ ମାତ୍ର ୨ଟଙ୍କା । ଖଣ୍ଡେ ସାର୍ଟର ମୂଲ୍ୟ ୫ଟଙ୍କାରୁ ୭ଟଙ୍କା । ପେଣ୍ଟ ଖଣ୍ଡକର ମୂଲ୍ୟ ୧୦ଟଙ୍କାରୁ ୧୫ ଟଙ୍କା ଭିତରେ, ବହି କାଗଜ ମଧ୍ୟ ସେହିପରି ଶସ୍ତା । ହୋଟେଲରେ ଇଡ଼ିଲି ପ୍ଲେଟ ୨ଅଣା, (୧୨ପଇସା) ମସଲା ଦୋଷା ଗୋଟାକୁ ୨ଅଣା, ମିଲ୍ ଗୋଟା ୬ଅଣାରୁ ୮ଅଣା, ସିନେମା ପାଇଁ ଛାତ୍ର କନସେସନରେ ସୋ ଗୋଟାକୁ ୨ଅଣାରୁ ୪ଅଣା । କେବଳ ବ୍ୟୟସାପେକ୍ଷଥାଏ ଯିବା ଆସିବା ।

ତେଣୁ ଇଞ୍ଜିନିୟରିଂ ଶିକ୍ଷା ମୋତେ ଏକ ପ୍ରକାର ଆମୋଦଦାୟକ ଶିକ୍ଷା ଭଳି ଲାଗିଲା । ତେଣୁ ମୋର କେତେ ଗୁଡ଼ିଏ ଅନ୍ତର୍ନିହିତ ଗୁଣର ବିକାଶ କରିବାକୁ ମୁଁ ସୁବିଧା ପାଇଲି । ସ୍କୁଲ ପଢା ସମୟରେ ମୋର ଭଲିଖେଳ ପ୍ରତି ଅନ୍ତର୍ନିହିତ ଆକର୍ଷଣ ଥିଲା କିନ୍ତୁ ପରିସ୍ଥିତିର ତାଡ଼ନାରେ ପଡ଼ି ମୁଁ ୨ବର୍ଷ ଧରି ଏ ଖେଳକୁ ପ୍ରାୟ ଛାଡ଼ି ଦେଇଥିଲି । କେରଳରେ ଭଲି ଖେଳ ଅପେକ୍ଷାକୃତ ଉନ୍ନତଧରଣର ବିଶେଷ କରି ଏହି ଟିମ୍‌ରେ ଓଡ଼ିଆ ପିଲାମାନଙ୍କର ଆଧିପତ୍ୟ ରହିଥିଲା। ଆମଠାରୁ ସିନିୟର ନିତ୍ୟାନନ୍ଦ ପଟ୍ଟନାୟକ (ଉଚ୍ଚତା ୬ ଫୁଟ ୩ ୧/୨) ଥିଲେ ତାଙ୍କ ୪ର୍ଥ ବର୍ଷବେଳେ କଲେଜ କେପ୍‌ଟନ ସେ ତାଙ୍କର ଉଚ୍ଚତାର ସବୁଠାରୁ ସଦୁପଯୋଗ କରି ଏକ ମାରାତ୍ମକ ହିଟର ଭାବେ ନାମ ଅର୍ଜନ କରିଥାନ୍ତି । ମୋର ଭଲିବଲ ସର୍ଭିସ ତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ତେଣୁ ସେ ମୋତେ ତାଙ୍କର ଲିଫଟର ଭାବେ ସୁଯୋଗ ଦେଇଥିଲେ । ମୁଁ ଶେଷ ଦୁଇବର୍ଷ କଲେଜ ଟିମରେ ଖେଳିବାର ସୁଯୋଗ ପାଇଥିଲି । ଆମ ଭଲିବଲ ଟିମ ଥରେ ସେମିଫାଇନାଲ ଓ ଥରେ ଫାଇନାଲରେ ମାଇଲଭାନିୟସ୍ କଲେଜ ଠାରୁ ଇଣ୍ଟର ୟୁନିଭରସିଭଟ୍ ଚମ୍ପିୟାନସିପ୍‌ରେ ହାରିଯାଇଥିଲା । ଆଉ ଗୋଟିଏ ଖେଳ ମୋତେ ବିଶେଷ ଭାବେ ଆକୃଷ୍ଟ କରିଥିଲା । ତା ହେଉଛି କ୍ରିକେଟ, ଆମ କଲେଜର ଭାସ୍କରନ୍, ରାଜୁ, କୁରୂପ, ବାଲକ୍ରିଷ୍ଣନ ଆଦି ଦକ୍ଷ ଖେଳାଳୀମାନେ ଥିଲେ । ଆମ କଲେଜ ଇଣ୍ଟରୟୁନଭରସିଟ୍ ଚମ୍ପିୟାନସିପ୍‌ରେ ଅଧିକାଂଶ ବର୍ଷ କ୍ରିକେଟ ଚମ୍ପିୟାନ ହୁଏ । ତା ବ୍ୟତୀତ ଟେନିସ୍ ଓ ବାସ୍କେଟବଲ୍ ପ୍ରତିଯୋଗିତାରେ ମଧ୍ୟ ଆମ କଲେଜ ଅଧିକାଂଶ ବର୍ଷ ଚମ୍ପିୟାନସିପ୍ ଆଖ୍ୟା ଅର୍ଜନ କରିବାର ଗୌରବ ଲାଭ କରେ । ଏଭଳି ଏକ ଅନୁଷ୍ଠାନରେ ମୋର କ୍ରିକେଟ ଓ ଭଲିବଲ ଖେଳ ପ୍ରତି ଆଗ୍ରହ ବିଶେଷ ଭାବରେ ବୃଦ୍ଧି ପାଇପାରିଥିଲା । ଅବଶ୍ୟ ମୁଁ କଲେଜ 'B' ଟିମ୍‌ରେ କ୍ରିକେଟ ଖେଳିବାରେ ଗୌରବ ପର୍ଯ୍ୟନ୍ତ ଗଢି କରି ପାରି ଥିଲି ମାତ୍ର । ଦିନେ ଭାରତର ପୂର୍ବତନ ଓପନିଂ ବ୍ୟାଟସ୍‌ମେନ୍ ବିଜୟ ମାର୍ଚ୍ଛେଣ୍ଟ ଆମକୁ କ୍ରିକେଟ୍ ଖେଳର ଟ୍ରେନିଂ ଦେବା ପାଇଁ କଲେଜକୁ ଆସିଥିଲେ । ସେତେବେଳକୁ ସେ ଭାରତୀୟ କ୍ରିକେଟ ଖେଳରୁ ବିଦାୟ ନେଇ ସାରିଥିଲେ ମଧ୍ୟ ତାଙ୍କର ଚିତାକର୍ଷକ ବ୍ୟାଟିଂ ଦ୍ୱାରା ଆମ୍ଭମାନଙ୍କୁ ମୁଗ୍ଧ କରି ଦେଇଥିଲେ ।

ଇଞ୍ଜିନିୟରିଂ କଲେଜର ସବୁଠାରୁ ଆମୋଦପୂର୍ଣ୍ଣ ସମୟ ଥିଲା ସର୍ଭେ କ୍ୟାମ୍ପ ଓ ବିଭିନ୍ନ ପରିଦର୍ଶନ । କେରଳ ଆୟତନ ଦୃଷ୍ଟିରୁ ଏକ କ୍ଷୁଦ୍ର ରାଜ୍ୟ । କିନ୍ତୁ ଏହା ଏକ ଆକର୍ଷଣୀୟ ସ୍ଥାନ । ନାରିକେଳ ବୃକ୍ଷରେ ପରିଶୋଭିତ ଏ ରାଜ୍ୟର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତ୍ୟନ୍ତ ମନମୁଗ୍ଧକର । ବଙ୍ଗୋପସାଗର ଓ ଆରବସାଗରର ମିଳନ ସ୍ଥଳରେ ଅବସ୍ଥିତ କନ୍ୟାକୁମାରୀ ମନ୍ଦିର । ଅଗଭୀର ବଙ୍ଗୋପସାଗର ଓ ସୁଗଭୀର ଆରବସାଗରର ମିଳନ ସ୍ଥଳରେ ଏକ ପ୍ରବଳ ଆବର୍ତ୍ତ ସୃଷ୍ଟି ହୁଏ । ଏହି ମିଳନ ସ୍ଥଳର ଅନତି ଦୂରରେ ଅବସ୍ଥିତ ବିବେକାନନ୍ଦ ଶିଳା । କିମ୍ବଦନ୍ତୀ ଅନୁସାରେ ଏହି ପ୍ରସ୍ତର ଉପରେ ଧ୍ୟାନମଗ୍ନ ହୋଇ ସନ୍ଥ ବିବେକାନନ୍ଦ ଆତ୍ମଜ୍ଞାନ ଲାଭ କରିଥିଲେ । ପରବର୍ତ୍ତୀ କାଳରେ ଏଠାରେ ସ୍ୱାମୀ ବିବେକାନନ୍ଦଙ୍କର ଏକ ସ୍ମୃତି ମନ୍ଦିର ଗଢି ଉଠିଛି । ବିବେକାନନ୍ଦ ପଥରର ଅନତି ଦୂରରେ ଜାତିର ଜନକଙ୍କର ସ୍ମୃତି ଉଦ୍ଦେଶ୍ୟରେ ଏକ ସ୍ମୃତିପୀଠ ନିର୍ମିତ ହୋଇଛି । ସେଥିରେ ମହାତ୍ମାଙ୍କର ଏକ ମୂର୍ତ୍ତି ପ୍ରତିଷ୍ଠା କରାଯାଇଛି । ମନ୍ଦିରରେ ଏକ କ୍ଷୁଦ୍ର ଛିଦ୍ର ରଖାଯାଇଛି । ଏହାର ଅବସ୍ଥିତି ଏଭଳି ଯେ ଗାନ୍ଧିଜୀଙ୍କ ଜନ୍ମ ଦିନ ଅକ୍ଟୋବର ୨ ତାରିଖରେ ଅରୁଣ କିରଣ ତାଙ୍କ ଲଲାଟ ଉପରେ ପ୍ରତିଫଳିତ ହେବ । ଏହାକୁ ସୋଲାର ସେଲିହଟ ବୋଲି କୁହାଯାଉଥିଲା । ଆମ କଲେଜର ଆର୍କିଟେକ୍ଟ ପ୍ରଫେସର ଆଲେକ୍‌ଜାଣ୍ଡର ଏହାର ଡିଜାଇନ କରିଥିଲେ। ବହୁ ବର୍ଷ ପରେ ଥରେ କନ୍ୟାକୁମାରୀ ଯାଇଥିଲି । ଏହି ସୋଲାର ସେଲିହଟର ଡିଜାଇନ୍ ଠିକ ଭାବରେ କାମ କରୁଛି ଶୁଣି ବହୁତ ଖୁସି ହେଲି। ଏହି ମନ୍ଦିର ଡ୍ରଇଂ ଆମ ଇଞ୍ଜିନିୟରିଂ ୩ୟ ବର୍ଷରେ ହୋଇଥିଲା ଓ ଆମେ ଏହା ଟାଣିଥିଲୁ । ଜୀବନର ପ୍ରଥମ ଡ୍ରଇଂଟିର କରାମତି ମୋର ମନରେ ରୋମାଞ୍ଚ ଜାତ କଲା ।

କେରଳର ପ୍ରଧାନ ବିଦ୍ୟୁତ ଉତ୍ପାଦନ କେନ୍ଦ୍ର ଥିଲା ମେଟ୍ଟୁ ପାଲାୟମ ନଦୀ ଉତ୍ପାଦିତ ବିଦ୍ୟୁତ । ପଶ୍ଚିମଘାଟ ପର୍ବତର ପଶ୍ଚିମ ପାର୍ଶ୍ୱରେ ଏ ରାଜ୍ୟ ଅବସ୍ଥିତ ଥିବାରୁ ଏହାର ବୃଷ୍ଟିପାତ ଅତ୍ୟଧିକ। ମେଟ୍ଟୁ ପାଲୟାମ ଅବବାହିକାରେ ୫୦୦୦ମି.ମି. ବର୍ଷା ହୁଏ । ଏହି ନଦୀଶଯ୍ୟାର ଗଡ଼ାଣି ପ୍ରାୟ ୬୦୦ମିଟର । କିନ୍ତୁ ଏହି ନଦୀ ଅତ୍ୟନ୍ତ କ୍ଷୁଦ୍ର ହୋଇଥିବାରୁ ଏହା ଉପରେ ନିର୍ମିତ ଜଳଭଣ୍ଡାର ଜଳକୁ ବ୍ୟବହାର କରି ପ୍ରତିଷ୍ଠିତ ଜଳ ବିଦ୍ୟୁତ କେନ୍ଦ୍ର ମୋତେ ଏତେ ଆକୃଷ୍ଟ କରିଥିଲା ଯେ ମୁଁ ଏହା

ଉପରେ ଗୋଟିଏ ପ୍ରବନ୍ଧ ଲେଖିଥିଲି ଓ ଏହା ସେ ବର୍ଷର ଶ୍ରେଷ୍ଠ ପ୍ରବନ୍ଧ ରୂପେ ବିବେଚିତ ହୋଇଥିଲା । ଇଞ୍ଜିନିୟରିଂର ଶେଷବର୍ଷ ସର୍ଭେ କ୍ୟାମ୍ପ ଯାହା କି ଏକ ମାସ ଧରି ଚାଲିଲା, ପଡ଼ିଥିଲା ମିନାର ପାହାଡ଼ରେ । ତ୍ରିଭେନ୍ଦ୍ରାମରେ ୪ବର୍ଷର ରହଣି କାଳରେ ଶୀତ ଲୁଗାର ବ୍ୟବହାର ଭୁଲି ଯାଇଥିଲୁ । ହଠାତ୍ ଏପ୍ରିଲ ମାସରେ ମିନାର ହିଲରେ ଦେଖିଲି ପ୍ରବଳ ଶୀତ । ଗରମ ଚଦର ଆବଶ୍ୟକ । ମିନାର ପାହାଡ଼ଟିକୁ ପୂରାପୂରି ଭାବେ କଣ୍ଟୁର ସର୍ଭେ କରି ସେଥିରେ ଘାଟରାସ୍ତା ନିର୍ମାଣ ପାଇଁ ପ୍ଲାନିଂ କରିବା ଥିଲା ସର୍ଭେର ଉଦ୍ଦେଶ୍ୟ, ସୁ-ଉଚ୍ଚ ମିନାର ପାହାଡ଼ଟି ଚା ବଗିଚା ଦ୍ୱାରା ଆଚ୍ଛାଦିତ । ଦିନସାରା କେରଳର ଗରିବ ଶ୍ରେଣୀର ସ୍ତ୍ରୀ ଲୋକମାନଙ୍କର ସରଳ ମାଲାୟାମ୍ ସଙ୍ଗୀତ ଗାନ ମଧ୍ୟରେ ପତ୍ର ତୋଳିବାର ଦୃଶ୍ୟ ଆମ ମୟୁରଭଞ୍ଜ ଜିଲ୍ଲାର ଆଦିବାସୀ ମାନଙ୍କର କୃଷିକ୍ଷେତ୍ରରେ ଆନନ୍ଦ ମନରେ ସଙ୍ଗୀତ ଗାନ ଦୃଶ୍ୟର ଅନୁରୂପ ।

୩ୟ ଇଞ୍ଜିନିୟରିଂ ବର୍ଷ ଆମେ ଯାଇଥିଲୁ ଦକ୍ଷିଣଭାରତର ବିଭିନ୍ନ ସ୍ଥାନ ପରିଦର୍ଶନ ପାଇଁ। ମାନ୍ଦ୍ରାଜ ପାରି ହୋଇ ହାଇଦ୍ରାବାଦ ବମ୍ବେ, ପୁନା, ଏଲୋର, ଅଜନ୍ତା ଆଦି ବିଭିନ୍ନ ସ୍ଥାନ ପରିଦର୍ଶନରେ ସୁବିଧା ଆମକୁ ମିଳିଥିଲା । ଏହି ଏକ୍-କରେସନ୍‌ରେ ମୋର ପ୍ରାଧାନ୍ୟ ବିଶେଷ ଭାବେ ସ୍ୱୀକୃତି ପାଇଗଲା । ମୁଁ କ୍ଲାସ୍‌ରେ ହଠାତ୍ ଏକ ହିନ୍ଦୀ ଏକସପାର୍ଟ ଭାବେ ପରିଗଣିତ ହୋଇଗଲି । ଗାଇଡ୍‌ମାନଙ୍କ ଭାଷାକୁ ଇଂରେଜୀରେ ଟ୍ରାନ୍ସଲେସନ କରିବା ମୋର ପ୍ରଧାନ କାମ ହୋଇଗଲା ।

ମୁଁ ପ୍ରଥମବର୍ଷ ୟୁନିଭରସିଟି ହଷ୍ଟେଲ୍‌ରେ ଅବସ୍ଥାନ କଲି । ମାସକୁ ୫୦ଟଙ୍କା ମେସ ଖର୍ଚ୍ଚ ଅତ୍ୟଧିକ ମନେ ହେଲା । ବିଶେଷ କରି ସାନଭାଇ ଓ ଦୁଇ ଜଣଙ୍କ ପାଇଁ ୧୪ଟଙ୍କା ପଠାଇବା ଦରକାର। କିନ୍ତୁ ୟୁନିଭରସିଟି ହଷ୍ଟେଲ୍‌ରେ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ରୁମ୍ ଦିଆଯାଇଥାଏ । ମେସ ଖର୍ଚ୍ଚ ୩୫ଟଙ୍କା । କିନ୍ତୁ ରୁମ୍ ରେଣ୍ଟ ଓ ସର୍ଭିସ ଚାର୍ଜ ବାବଦ ୧୫ଟଙ୍କା ଦେବାକୁ ପଡୁଥାଏ । ୨ୟ ବର୍ଷଠାରୁ ମୁଁ ହଷ୍ଟେଲକୁ ସ୍ଥାନ ପରିବର୍ତ୍ତନ କଲି । ତାର ଆଉ ଗୋଟିଏ କାରଣ ମଧ୍ୟ ଥିଲା । ବହୁଦିନରୁ ଅଭ୍ୟାସ ରାତି ୧୦/୧୧ରେ ଭୋଜନ ସମୟ । ତାପରେ ସିଙ୍ଗଲରୁମ୍‌ରେ ବସି ପାଠ ପଢିଲାବେଳକୁ ହଠାତ୍ ନିଦ ଆସିଯାଏ । ଅନେକ ଦିନ ମୁଁ କବାଟ ବନ୍ଦ କରି

ଶୋଇପଡ଼େ । ୟୁନିଭରସିଟି ଷ୍ଟୁଡ଼େଣ୍ଟସ ହଲ୍‌ରେ ୩ଜଣଙ୍କୁ ଗୋଟିଏ ରୁମ୍ । ଜଣକୁ ନିଦ ଆସିଲେ ଅନ୍ୟ ଜଣେ ଉଠାଇ ଦେବ । ତେଣୁ ୟୁନଭରସିଟି ଷ୍ଟୁଡ଼େଣ୍ଟସ ହଷ୍ଟେଲରେ ମେସ ଖର୍ଚ୍ଚ ପ୍ରାୟ ୧୫ଟଙ୍କା କମିବା ସହିତ ପଢାପଢି ଭଲ ହେଲା । ବିଶେଷ କରି ମୋର ଅନ୍ତରଙ୍ଗ ସାଙ୍ଗ ଗିରିଜା ବଲ୍ଲଭୁନ ଓ କ୍ରିଷ୍ଣନ୍ ଆପୁକୁଯାନ ନାୟାର ଏହି ହଷ୍ଟେଲରେ ରହୁଥିଲେ । ଆମକୁ ସକାଳେ ଇଟିଲି ବା ଦୋଷା ବା ଉପମା ଦିଆଯାଏ । ରବିବାର ଦିନ ପୁରୀ । ୧୨ଟାରେ ଭାତ, ସମ୍ବର, ରେଶମ, ଦହି ସାଧା ତରକାରି ଓ ମାଛ । ମାଛ ମାଂସ ନଖାଇଲେ ଭେଣ୍ଡିଭଜା ବା କଲରାଭଜା, ଆଳୁ ତରକାରୀ ଦିଆହୁଏ । ୟୁନିଭରସିଟି ହଷ୍ଟେଲରେ ଭେଜିଟେରିଆନ ଓ ନନଭେଜିଟେରିଆନ୍ ହଷ୍ଟେଲ ସ୍ୱତନ୍ତ୍ର । ମୁଁ ଯଦିଓ ଜଣେ ଆମିଷ ଆହାରୀ କିନ୍ତୁ ସବୁଦିନ ମାଛ, ମାଂସ ଖାଇବାକୁ ଭଲପାଏ ନାହିଁ। ଷ୍ଟୁଡ଼େଣ୍ଟସ ହଲ୍‌ରେ ଜଣେ ଆମିଷ ବା ନିରାମିଷ ଯାହା ଚାହିଁବ ଖାଇପାରିବ । ତେଣୁ ଏହା ମୋ ପାଇଁ ସୁବିଧାଜନକ ହେଲା । ଆହୁରି ମଧ୍ୟ ଏଠାରେ ରହୁଥିବା ଛାତ୍ରମାନଙ୍କ ମଧ୍ୟରେ ସହୃଦୟତା ଅତି ଉଚ୍ଚକୋଟୀର ଥିଲା, କାହାର ଦେହଖରାପ ହେଲେ ବା କାହାର ଅର୍ଥର ଅଭାବ ହେଲେ ସଙ୍ଗେ ସଙ୍ଗେ ହଷ୍ଟେଲରେ ଅନ୍ୟ ପିଲାମାନେ ତାକୁ ସାହାଯ୍ୟ କରିବାକୁ ଆଗଭର ହୋଇ ଆସନ୍ତି । ପ୍ରତିବର୍ଷ ଆମ ହଷ୍ଟେଲରେ ଫାଉଣ୍ଡେସନ୍ ଦିବସ ପାଳିତ ହୁଏ । ମହାରାଜାଙ୍କର ଭିଣୋଇ ଗୋଦବର୍ମା ରାଜା ଯେକି ହଷ୍ଟେଲର ପାଟ୍ରୋନ ଥାଆନ୍ତି ସେ ଉତ୍ସବଟିକୁ ଆନନ୍ଦମୁଖର କରିବାରେ ସାହାଯ୍ୟ କରନ୍ତି । ଦିନକର କଥା ଷ୍ଟାଡ଼ିୟମ୍‌ରେ କୁସ୍ତି ପ୍ରତିଯୋଗିତା ଚାଲିଥାଏ ଦାରାସିଂ ଓ କିଂକଂ ମଧ୍ୟରେ । କିଙ୍କର ୪୫୦ ପାଉଣ୍ଡ ଓଜନ, ଦାରାସିଂ ୨୬୦ ପାଉଣ୍ଡ ଓଜନ । କିନ୍ତୁ ଦାରାସିଂ ଫ୍ରି ଷ୍ଟାଇଲରେ ଓସ୍ତାଦ । ଗୋଟିଏ ଦିନ ଆଗରୁ ଟିକେଟ ସରିଗଲା । ବାର୍ଷିକ ପରୀକ୍ଷା ଅତି ନିକଟ । ଯିବା କି ନାହିଁ ଦ୍ୱନ୍ଦ୍ୱରେ ଆମେ କେତେଜଣ ଟିକେଟ୍ କାଟି ନଥିଲୁ । ଆଗଦିନ ଖେଳରେ ପାକିସ୍ତାନର ମଲ୍ଲଯୋଦ୍ଧାଙ୍କୁ ଦାରାସିଂ ଏରୋପ୍ଲେନ୍ ଘୁରିଲା ଭଳି ଘୁରାଇ ଘୁରାଇ ଫିଙ୍ଗି ଦେବା କଥା ଶୁଣି ଆମେ ବାହାରିଲୁ । କିନ୍ତୁ ଟିକେଟ ଆଉ ମିଳିଲାନି । କେତେଜଣ ପ୍ରସ୍ତାବ ଦେଲେ ହଷ୍ଟେଲର ଟାଇଲ ଛାତ ଉପରେ ବସି ରେସ୍ଲିଂ ଦେଖିବା । ଆମ ହଷ୍ଟେଲଟି ଷ୍ଟାଡ଼ିୟମର ଅତି ନିକଟରେ ଥିବାରୁ ଆମେ

ହଷ୍ଟେଲର ଛାତ ଉପରେ ବସି ଖେଳ ଭଲଭାବେ ଉପଭୋଗ କଲୁ । କିନ୍ତୁ ବହୁ ଛାତ୍ର ଏକାବେଳେକେ ଚଢିଯିବା ଫଳରେ ବହୁତ ଗୁଡ଼ିଏ ଟାଇଲି ଭାଙ୍ଗିଗଲା । ସୁପରିଟେଣ୍ଡେନ୍‌ଙ୍କ ପାଖକୁ ରିପୋର୍ଟ ଗଲା । ସେ ଗୋଦବର୍ମା ରାଜାଙ୍କୁ ରିପୋର୍ଟ ଦେଲେ । ଆମେ ଭାବିଥିଲୁ ଆମ ସମସ୍ତଙ୍କ ଉପରେ ଜୋରିମାନା ହେବ । କିନ୍ତୁ ଖେଳପ୍ରେମୀ ଗୋଦବର୍ମା ରାଜା କହିଲେ କେତେଖଣ୍ଡ ଟାଇଲ ଭାଙ୍ଗିଛି । ଏହା ମରାମତି କରିହେବ । ପିଲାମାନେ ଛାତ ଉପରକୁ ଯାଇ ନଥିଲେ ଦାରାସିଂ ଓ କିଂ କଂ ମଧ୍ୟରେ ହେଉଥିବା ପ୍ରତିଯୋଗିତା କଣ ଦେଖି ପାରିଥାନ୍ତେ ? ଏହା କେତେ ଜଣ ଛାତ୍ରଙ୍କ ଭାଗ୍ୟରେ ଯୁଟେ ?

ଚପଳତା ଯୋଗୁ ଆମେ ଆମର ଅଧ୍ୟାପକମାନଙ୍କର ଗୋଟିଏ ଲେଖାଏ ନିକନେମ୍ ଦେଇଥାଉ । ମେକାନିକେଲ ଇଞ୍ଜିନିୟରିଂ ପଢାଉଥିବା ଅଧ୍ୟାପକ ଜର୍ଜ ମେଥ୍ୟୁସ ଟିକିଏ ଖାମଖିଆଲି । ଥରେ ଥରେ ସେ ହାଇଡ୍ରୋଲିକ୍ ପଢାଉଥିବା ସମୟରେ ମାଗି ଦିଅନ୍ତି -Anybody having a Lewilt by hydraulics. Lewilt ହେଉଛନ୍ତି Author ଏବଂ Hydraulics ହେଉଛି ବିଷୟବସ୍ତୁ । ଏହା ସେ ଅଧିକାଂଶ ଦିନ ପାଶୋରି ଯାଆନ୍ତି । ପିଲାଏ ହସିଲେ କହନ୍ତି if you want to sit in the class you may sit in the class, if you do not want you need not sit, in the class ପିଲାଏ ଏହାର ଅର୍ଥ ବୁଝି ହସିଲେ ସେ ଆଉ ଟିକିଏ ହସି ଦିଅନ୍ତି । କିନ୍ତୁ ସେ ଥିଲେ ସବୁଠାରୁ ଛାତ୍ର ପ୍ରିୟ ଅଧ୍ୟାପକ । ମେଥମେଟିକସର ପ୍ରଫେସରଙ୍କର ଜଟିଳ ପ୍ରୋବ୍ଲେମ ସବୁ ତାଙ୍କ ଜିଭ ଆଗରେ ନାଚୁଥାଏ । ଯାହା ପଚାରିବ ସେ ସଙ୍ଗେ ସଙ୍ଗେ ସମାଧାନ କରିଦିଅନ୍ତି । ତାଙ୍କୁ ସମସ୍ତେ ଡାକନ୍ତି ଗୋରଖ ପ୍ରସାଦ । ତାଙ୍କ ସହଧର୍ମିଣୀ ଯେ କି ଜଣେ ୟୁନିଭରସିଟ୍ କଲେଜ ଅଧ୍ୟାପିକା ତାଙ୍କୁ କାରରେ ଆଣି ସ୍କୁଲ ଗେଟ୍ ପାଖରେ ଛାଡ଼ି ଦିଅନ୍ତି । ମେଥମେଟିକସ୍ ଡିପୋର୍ଟମେଣ୍ଟ ପିଅନ ଗେଟ୍ ପାଖରେ ସାଇକେଲ ଧରି ଛିଡ଼ା ହୋଇଥାଏ । ସେଠାରୁ ସେ ଅଫିସ ପର୍ଯ୍ୟନ୍ତ ସାଇକେଲରେ ଆସି କ୍ଲାସ୍‌କୁ ଚାଲି ଚାଲି ଆସନ୍ତି । କଲେଜ ଡ୍ରାମାରେ ଜଣେ ଛାତ୍ର କାର, ସାଇକେଲ ଓ ତାଙ୍କ ଚାଲିବାର ଗତି ଦର୍ଶାଇ ଗୋରଖ ପ୍ରସାଦ ସମୁଦାୟ କେତେ ସମୟ ନିଅନ୍ତି ବୋଲି ପଚାରିଲେ । ଗୋପାଲ କ୍ରିଷନ ସେସନାଲ ମାର୍କ

ଦେବାରେ ଟିକିଏ ଚିପା ହୋଇଥିବାରୁ ତାଙ୍କ ନାମ କାନି ଗୋପାଲ କ୍ରିଷ୍ଣନ ଦିଆଯାଇଥାଏ । ନଟରାଜନ ସାହେବ ଚିତା କାଟି ଆସନ୍ତି ତାଙ୍କ ନାମ ଥାଏ ତପସ୍ୱୀ । ପ୍ରଫେସର ଇପେନ୍ ଥିଲେ ଅତ୍ୟନ୍ତ ସରଳ ପ୍ରକୃତିର ତଥା ମିଷ୍ଟଭାଷୀ ତାଙ୍କ ନାମ ଥିଲା ମିଷ୍ଟର ସିମ୍ପଲ୍ । ଇଲେକଟ୍ରିକାଲ ଅଧ୍ୟାପକ ନାୟାର ତାରର ଇଲେକ୍ଟ୍ରିକ୍ ସକ୍ ପରୀକ୍ଷା କରି କରେଣ୍ଟ ନିର୍ଣ୍ଣୟ କରନ୍ତି । ତେଣୁ ତାଙ୍କ ନାମ ଥିଲା ମିଷ୍ଟର ସକ୍ । ପ୍ରଫେସର ରାଜାରମନ ପାଠରେ ସାକ୍ଷାତ ଯମ । ତାଙ୍କର କ୍ଲାସରେ କେହି ପ୍ରକ୍ସି ପକାଇଦେଲେ, ଦଫାରଫା କରିଦିଅନ୍ତି । ସେ ହାଜିରା ନେବା ସମୟ ଭିତରେ ପ୍ରକୃତରେ କେତେ ଜଣ ଛାତ୍ର ସେ ଦିନ ଉପସ୍ଥିତ ଅଛନ୍ତି ଗଣିନିଅନ୍ତି । ତାଙ୍କର ଏହି ପ୍ରତ୍ୟୁପନ୍ନମତିତା ଆମ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଉଥିଲା । ପ୍ରିନ୍ସପାଲ କେଶବ ରାଓ ଜଣେ ଦକ୍ଷ ପ୍ରଶାସକ ଓ ଇଲେକ୍ଟ୍ରିକାଲ ଇଞ୍ଜିନିୟରିଂରେ ଜଣେ ଉଚ୍ଚକୋଟୀର ଅଧ୍ୟାପକ । ଅଧ୍ୟାପକ ଓ ଛାତ୍ରମାନଙ୍କ ସମ୍ପର୍କ ଅତ୍ୟନ୍ତ ନିବିଡ଼ ଥିଲା । ୪ବର୍ଷ ରହଣି କାଳ ମଧ୍ୟରେ କଲେଜରେ ଦିନେ ଶୋଭାଯାତ୍ରା ବା ବିଶୃଙ୍ଖଳା ଦେଖି ନାହିଁ । ଥରେ ୩ୟ ବର୍ଷରେ ଜଣେ ଛାତ୍ର ପରୀକ୍ଷାରେ କପି କରୁଥିଲେ । ସେ କେତେଖଣ୍ଡ ଛୋଟ ଚିଠା ନେଇ ହାତମୁଠାରେ ରଖି କପି କରୁଥିଲେ । ତାଙ୍କର ଦୁର୍ଭାଗ୍ୟ ଯେ ସେ ଦିନ ସେ ହଲ ଚାର୍ଜରେ ଥାଆନ୍ତି ପ୍ରଫେସର ରାଜା ରମଣ । ତାଙ୍କୁ ଦେଖି ଛାତ୍ର ଜଣଙ୍କ କପି କାଗଜକୁ ଟୁକୁରା କରି ବାହାରକୁ ଫିଙ୍ଗି ଦେଲା। କିନ୍ତୁ ପ୍ରଫେସର ସାହେବ ସେଗୁଡ଼ିକୁ ସଂଗ୍ରହ କରି ପ୍ରମାଣ କରିଦେଲେ ଏହା କପି କାଗଜ। ତେଣୁ ସେ ଛାତ୍ର ପରୀକ୍ଷା ଦେବାରୁ ବଞ୍ଚିତ ହେଲେ। ତାଙ୍କୁ ମୁଁ ଆଉ କଲେଜ ଫେରିବା ଦେଖିନି । ତା ସତ୍ତ୍ୱେ ଛାତ୍ର ଓ ଅଧ୍ୟାପକଙ୍କ ମଧ୍ୟରେ ଥିଲା ଏକ ମଧୁର ସମ୍ପର୍କ, ଆମ କଲେଜ କ୍ରିକେଟ କେପଟେନ୍ କୁରୁପ ଯେତେବେଳେ ବସନ୍ତ ରୋଗରେ ମରିଗଲେ, ମୁଁ ଦେଖିଛି ଶୋକସଭାରେ ସବୁ ଛାତ୍ର ଓ ଶିକ୍ଷକଙ୍କ ଚକ୍ଷୁ ଅଶ୍ରୁ ସଜଳ ହୋଇଯାଇଥିଲା। ତାଙ୍କର ସ୍ମୃତି ରକ୍ଷା ପାଇଁ ପ୍ରତ୍ୟେକ ଛାତ୍ର ଓ ଶିକ୍ଷକ ନିଜର ସାଧମତେ ଚାନ୍ଦା ଦେଇଥିଲେ ।

ତ୍ରିଭାନ୍ଦ୍ରମରେ ୪ବର୍ଷ ଅଧ୍ୟୟନ କାଳରେ ମୋର ଅନ୍ତରଙ୍ଗ ବନ୍ଧୁମାନଙ୍କ ବିଷୟରେ ଦୁଇପଦ ନଲେଖିଲେ ଏ ଲେଖା ଅସମ୍ପୂର୍ଣ୍ଣ ରହିଯିବ । ସେ ସମୟରେ

ଓଡ଼ିଶାରେ ଇଞ୍ଜିନିୟରିଂ କଲେଜ ନଥିବାରୁ ପ୍ରତିବର୍ଷ ୩ଜଣ ଓଡ଼ିଆ ଛାତ୍ର ସେଠାକୁ ପଢିବାକୁ ଯାଆନ୍ତି । ମୁଁ କଲେଜରେ ଯୋଗଦେବା ପୂର୍ବରୁ ସେଠାକୁ ପଢିବାକୁ ମୁକୁନ୍ଦ ମହାପାତ୍ର, ନରସିଂହ ମୂର୍ତ୍ତି, ବାଲକ୍ରିଷ୍ଣନ, ନିତ୍ୟାନନ୍ଦ ପଟ୍ଟନାୟକ, ସୀମାଞ୍ଚଳ ନନ୍ଦ ଓ ଅମରେନ୍ଦ୍ର ପ୍ରଧାନ ଯାଇଥିଲେ। ମୁକୁନ୍ଦବାବୁ ଆମଠାରୁ ୩ବର୍ଷ ସିନିୟର ଥିଲେ ଓ ଜଳସେଚନ ବିଭାଗରେ ସର୍ବୋଚ୍ଚମନ୍ତ୍ରୀ ହେବାର ଗୌରବ ଅର୍ଜନ କରିଛନ୍ତି । ମୂର୍ତ୍ତିବାବୁ ଭାରତ ସରକାରଙ୍କ ଅଧୀନରେ ମେକାନିକାଲ୍ ଇଞ୍ଜିନିୟର୍ ଭାବେ କାମ କରି ଫରକା ବେରେଜ ଚିଫ୍ ଇଞ୍ଜିନିୟର୍ ପଦବୀ ଲାଭ କରିଥିଲେ । ବାଲକ୍ରିଷ୍ଣନ ଓଡ଼ିଶା ବାହାରେ ଚାକିରି କଲେ । ସୀମାଞ୍ଚଳ ନନ୍ଦ ଇଞ୍ଜିନିୟରିଂ ଛାଡ଼ି ପ୍ରଶାସନିକ ସେବାରେ ଯୋଗଦାନ କଲେ। ନିତ୍ୟାନନ୍ଦ ପଟ୍ଟନାୟକ ଓ ଅମର ପ୍ରଧାନ ଇଲେକ୍ଟ୍ରିକାଲ ଇଞ୍ଜିନିୟରିଂ ସଂସ୍ଥାରେ ଯୋଗଦାନ କରି ମୁଖ୍ୟଯନ୍ତ୍ରୀ ଆସନ ଅଳଙ୍କୃତ କରି ସାରିଛନ୍ତି । ମୋ ସାଙ୍ଗରେ ପଢୁଥିବା ଦୁଇଜଣ ସାଙ୍ଗ ସତ୍ୟବାଦୀ ପଣ୍ଡା ଓ କୁମୁଦାନନ୍ଦ ପଟ୍ଟନାୟକ । କୁମୁଦାନନ୍ଦ ଥିଲେ ଏନ୍.ସି.ସି ପ୍ରିୟ ଓ ନିଜ ବିଷୟରେ ବିଶେଷ ସଚେତନ । ପରବର୍ତ୍ତୀ କାଳରେ ପ୍ରଥମେ ସେ ଆର.ଏଣ୍ଡ.ବି ଓ ପରେ ଘରୋଇ ଚାକିରୀରେ ଯୋଗଦାନ କଲେ । ସତ୍ୟବାଦୀ ପଣ୍ଡା ଥିଲେ କଲେଜ ଫୁଟବଲ୍ ଟିମର ଗୋଲକିପର୍ । ଇଲେକ୍ଟ୍ରିକାଲ ଅଧିକ୍ଷଣଯନ୍ତ୍ରୀ ଥିବା ସମୟରେ ୧୯୮୭ ମସିହାରେ ବ୍ଲଡ଼କେନସର୍ ରୋଗରେ ତାଙ୍କର ଅକାଳ ବିୟୋଗ ଘଟିଲା । ତଳ କ୍ଲାସ୍‌ରେ ପଢୁଥିବା ଓଡ଼ିଆ ପିଲାମାନେ ହେଲେ ରେବତୀ ମହାନ୍ତି, ପୃଷ୍ଟି, ଦୀନବନ୍ଧୁ ମିଶ୍ର, ଲିଙ୍ଗରାଜ ମିଶ୍ର, ଭାଗୀରଥୀ ଦାଶ, ରାଖାଲ ଦାସ, ସୁରେନ୍ଦ୍ର ମିଶ୍ର ଓ ଗୋବିନ୍ଦ ମିଶ୍ର । ଏମାନଙ୍କ ମଧ୍ୟରେ ମୋର ସବୁଠାରୁ ଅନ୍ତରଙ୍ଗ ଥିଲେ ରାଖାଲ ଦାସ । ଅତି ଅଳ୍ପ ବୟସରେ ଜଣ୍ଡିସ ରୋଗରେ ତାଙ୍କର ଅକାଳ ବିୟୋଗ ଘଟିଲା ।

କେରଳ ମାଲୟାଳି ସାଙ୍ଗମାନଙ୍କ ମଧ୍ୟରେ ମୁଁ ପ୍ରଥମେ ଆସିଥିଲି କୁମାରନ ଓ ଗୋପାଳ କ୍ରିଷ୍ଣନ୍‌ଙ୍କ ସମ୍ପର୍କରେ। କୁମାରନ ଥିଲେ ଅତ୍ୟନ୍ତ ମେଧାବୀ ଓ ଇକୋନୋମିକସ ଅନର୍ସ ଛାତ୍ର (ସେଠାରେ ଅନର୍ସ ଆମ ରାଜ୍ୟ ଏମ.ଏ) ସହିତ ସମାନ । ସେ ପରବର୍ତ୍ତୀ କାଳରେ ଅଧ୍ୟାପକ ଚାକିରି ଗ୍ରହଣ କରିଥିଲେ । ଆମ କ୍ଲାସର ମହାଦେବନ ଓ ସୁନ୍ଦରମ ଥିଲେ ମୋର ଅନ୍ତରଙ୍ଗବନ୍ଧୁ । ୧୯୫୪ ମସିହାର ବାର୍ଷିକ

ପରୀକ୍ଷାର ୧୦/୧୨ ଦିନ ଆଗରୁ ମୋର ପିଲାଦିନର ସେହି ଚକ୍ଷୁ ବେମାରି ଆରମ୍ଭ ହେଲା । ଏହା ଏପରି ଏକ ବେମାରି ଯେ ଅନ୍ୟର ସାହାଯ୍ୟ ବିନା ଡାକ୍ତରଖାନାକୁ ଯିବା ଓ ଚିକିତ୍ସା କରିବା ଅସମ୍ଭବ । ଏଭଳି କି ପାଇଖାନା ଯିବା ଓ ମେସ୍‌କୁ ଖାଇବାକୁ ଯିବା ପାଇଁ ଅନ୍ୟର ସାହାଯ୍ୟ ଆବଶ୍ୟକ । ତ୍ରିଭାନ୍ଦ୍ରମରେ ରିକ୍ସାର ପ୍ରଚଳନ ନଥିଲା । ଯୁଆଡ଼େ ଯିବ ଟେକ୍ସିରେ । ମୋ ଭଳି ଛାତ୍ର ପକ୍ଷେ ଡାକ୍ତରଖାନାକୁ ପ୍ରତିଦିନ ଟେକ୍ସିରେ ଯିବା ଅସମ୍ଭବ । ଠିକ୍ ଏହି ସମୟରେ ମୋର ଅନ୍ତରଙ୍ଗ ବନ୍ଧୁ କୁମାରନ, ଗୋପାଳ କ୍ରିଷନ, ମହାଦେବନ ଓ ସୁନ୍ଦରମ ତାଙ୍କର ସାହାଯ୍ୟକାରୀ ହାତ ବଢାଇ ଦେଇଥିଲେ । କୁମାରନ ଓ ଗୋପାଳ କ୍ରିଷନ ମୋର ହାତ ଧରି ମୋତେ ଡାକ୍ତରଖାନାକୁ ନେଇଯାଆନ୍ତି । ସୁନ୍ଦରନ ମୋର ହାତ ଧରି ପାଇଖାନା ଓ ମେସ୍‌କୁ ନେଇଯାଏ । ମହାଦେବନ ପରୀକ୍ଷା ସମୟରେ ମଧ ଆସି ମୋ ରୁମ୍‌ରେ ବସି ବଡ଼ ପାଟିରେ ପଢେ ଓ ମୁଁ ତାହା ଶୁଣି ଶୁଣି ଯେତିକି ମନେ ରଖିପାରିବି ରଖେ । ପୁଣି ଡାକ୍ତରଙ୍କ ତାଗିଦ୍ ଆଖିରେ ଆଲୁଅ ପଡ଼ିବ ନାହିଁ । ତେଣୁ ମହାଦେବନ ଟେବୁଲ ଲେମ୍ପଟିଏ ଆଣି ତାକୁ ସବୁଜ କାଗଜରେ ଆବୃତ କରି ପଢେ । ମୁଁ ୮/୧୦ଫୁଟ ଦୂରରେ ବସି ଶୁଣେ । ଜୀବନରେ ବନ୍ଧୁମାନଙ୍କର ଉପକାର କେବେ ଭୁଲିପାରିବିନି । କେରଳ ଛାଡ଼ିବା ପରେ ଦ୍ୱିତୀୟବାର ସେମାନଙ୍କ ସହ ଦେଖା ହେବକି ନା ସନ୍ଦେହ । କିନ୍ତୁ ସେମାନେ ନିଃସ୍ୱାର୍ଥପର ଭାବେ ସେବାକରି ସାରା ଜୀବନ ତାଙ୍କ ପାଖରେ ମୋତେ ଋଣୀ କରିଯାଇଛନ୍ତି । ମୋର ଅନ୍ୟ ଅନ୍ତରଙ୍ଗ ବନ୍ଧୁ ଥିଲେ ଗିରିଜା ବଲ୍ଲଭନ, ଚନ୍ଦ୍ରହାସନ, ଜୟଦେବନ, ଜୟଚନ୍ଦ୍ରନ, ବାଲକ୍ରିଷନ, କ୍ରିଷନନ, ଫ୍ରାନସିସ, ପଉଲୋସ, ଗଙ୍ଗାଧରନ୍, ମୂରଲୀଧରନ, ଅରବିନ୍ଦ ଅକ୍ସନ, ଥାପୁକୁଟାନ ନାୟାର, ପଦ୍ମଲାଭନ୍। ଗଙ୍ଗାଧରନ ମୋର ୨ବର୍ଷ ଜୁନିୟର ଥିଲେ । ତେଣୁ ତାଙ୍କୁ ମୁଁ ନିଜର ସାନଭାଇ ଭାବେ ଦେଖୁଥିଲି। ତାଙ୍କୁ ମୁଁ ମାଲୟାଳି ଭାଷାରେ ଅନିୟନ (ସାନଭାଇ) ବୋଲି ଡାକୁ ଥିଲି। ଜୟଚନ୍ଦ୍ରନ ଇକୋନୋମିକ୍ସରେ ବି.ଏ. ଅନର୍ସ ପଢି କେରଳ ପ୍ରଶାସନିକ ଚାକିରିରେ ଯୋଗଦେଇ ପରେ ଆଇ.ଏ.ଏସ ଚାକିରୀ ପାଇଲେ । ଗିରିଜା ବଲ୍ଲଭନ ଦେଶ ବାହାରେ ଚାକିରି କରି ସୁନାମ ଅର୍ଜନ କରିପାରିଛନ୍ତି । ଥରେ ବନ୍ଧୁମାନଙ୍କ ଅନୁରୋଧ ଏଡ଼ାଇ ନ ପାରି ଓ ଦଶହରା ଛୁଟିରେ ଏରନାକୁଲମ୍ ଓ କୋଚିନ ବୁଲିବାକୁ

ଯାଉଥିଲି । କେରଳ ରାଜ୍ୟର ଓଣମ ପର୍ବ ଆମ ପଶ୍ଚିମଓଡ଼ିଶାର ନୂଆଖାଇ ପର୍ବ ସଦୃଶ । ପର୍ବ ଦିନ ଘରେ ପୂଜା ହୁଏ । ତିନି ଦିନ ଧରି ଭୋଜି । କିନ୍ତୁ ଭୋଜି ନିରାମିଷ । ସେଦିନ ଟ୍ରାନ୍ସପୋର୍ଟ ଷ୍ଟ୍ରାଇକ୍ ହୋଇଥାଏ । ସେତେବେଳେ ତ୍ରିଭାନ୍ଦ୍ରମ କୋଚିନ ରେଳରାସ୍ତା ତିଆରି ସରିନଥାଏ । ଆମେ କୁଇଲନରୁ ଗୋଟିଏ ଡଙ୍ଗାରେ ଆଲେପି ପର୍ଯ୍ୟନ୍ତ ଦୀର୍ଘ ୫୦ମାଇଲ ବାଟ ଅତିକ୍ରମ କଲୁ । ରାତି ୯ରୁ ଭୋର ୫ଟା ପର୍ଯ୍ୟନ୍ତ ଡ଼ଙ୍ଗା ଚାଲିଲା । ସେଦିନ ଥାଏ ପୂର୍ଣ୍ଣିମା ରାତ୍ରି । ଆମର ଦୁର୍ଗାପୂଜା ସମୟ ଭଳି କେରଳର ଓଣମ ସମୟଟି ଅତ୍ୟନ୍ତ ଆମୋଦଦାୟକ । ତା ପରେ ପୂର୍ଣ୍ଣିମା ରାତ୍ରିରେ ୫୦ମାଇଲ ଜଳଯାତ୍ରା ଅତ୍ୟନ୍ତ ରୋମାଞ୍ଚକର । ସେ ରାତ୍ରିଟି ମୋର ଜୀବନର ଏକ ଅପାଶୋରା ରାତ୍ରି ହୋଇ ରହିଯାଇଛି । ଏରନାକୁଲମରେ ଚୟ ଚନ୍ଦ୍ରନ୍‌ଙ୍କ ଘରେ ଗୋଟିଏ ରାତ୍ରି କଟାଇ ଶଙ୍କରାଚାର୍ଯ୍ୟଙ୍କ ଜନ୍ମସ୍ଥାନ ସ୍ଥଳ କୁଡ଼ିର କୁଲୁର ଗ୍ରାମରେ ଗୋଟିଏ ଦିନ କଟାଇଲୁ । ସେ ଦିନଟି ଥିଲା ଥିରୁଓଣମ ଦିନ । ଭାସ୍କରନ, ଗଙ୍ଗାଧରନ ଓ ମୂରଲୀଧରନ୍ ଏଭଳି ୩ଜଣଙ୍କ ଘରେ ନିମନ୍ତ୍ରଣ । କଦଳୀପତ୍ର ଉପରେ ବହୁତ ପ୍ରକାର ନିରାମିଷ ଭୋଜନ ଓ ଶେଷରେ ପାୟାସ ପରିବେଷଣ ଅତ୍ୟନ୍ତ ଆନନ୍ଦଦାୟକ । ସେ ଦିନ ବିଭିନ୍ନ ପ୍ରକାର ତରକାରି ସହିତ ପାୟାସ ବିଭିନ୍ନ ଆକାରର ବାନାନା ଚିପସ୍ । କେରଳ ବାନାନା ଯେ ନ ଖାଇଛି ସେ ବିଶ୍ୱାସ କରି ପାରିବନି । ୨/୩ଟି ବାନନାରେ ପେଟ ପୁରିଯିବ । ତା ପରଦିନ ଆମେ ଗଲୁ ତ୍ରିଚୁର । ସେଠାରେ ଗିରିଜା ବଲ୍ଲଭନଙ୍କ ଘରେ ଅତିଥି । ୪ଦିନ ଧରି ସାଙ୍ଗମାନଙ୍କ ଆତିଥ୍ୟ ଏକ ଅଭୁଲା ସ୍ମୃତି ହୋଇ ଚିରଦିନ ମୋର ମାନସପଟରେ ଲିପିବଦ୍ଧ ହୋଇ ରହିଯାଇଛି ।

୪ବର୍ଷ ଅଧ୍ୟୟନ ପରେ, ୧୯୫୭ ମସିହା ଏପ୍ରିଲ ଶେଷ ସପ୍ତାହରେ ଆସିଲା ଆଦ୍ୟ ଯୌବନର ଖେଳସାଥୀ, ଭବିଷ୍ୟତ କର୍ମଜୀବନ ପାଇଁ ଆବଶ୍ୟକୀୟ ଶିକ୍ଷା ପ୍ରେରଣା ଯୋଗାଇ ଥିବା ଅନୁଷ୍ଠାନକୁ ବିଦାୟ ନେବାର ସମୟ । କେରଳ ଯିବା ପୂର୍ବରୁ ମୁଁ ଇବ୍ରାହିମ୍‌କୁ ଛାଡ଼ିଦେଲେ କେବଳ ହିନ୍ଦୁ ସମ୍ପ୍ରଦାୟର ବନ୍ଧୁମାନଙ୍କ ସହିତ ମିଶିଥିଲି । କିନ୍ତୁ କେରଳର ଲୋକସଂଖ୍ୟାର ଶତକଡ଼ା ୨୫ଭାଗ ନାୟାର, ୨୫ ଭାଗ ଖ୍ରୀଷ୍ଟିୟାନ୍, ୧୫ ଭାଗ ମୁସଲମାନ, ୨୫ ଭାଗ ଇଲୱା ଓ ବାକି ୫ ଭାଗ ଅନ୍ୟ ସମ୍ପ୍ରଦାୟର ।

ବିଭିନ୍ନ ଜାତି, ଧର୍ମର ବନ୍ଧୁମାନଙ୍କ ସହ ମିଶିବା ଫଳରେ ମୋର ଦୃଷ୍ଟିଭଙ୍ଗୀ ଉଦାର ହୋଇଥିଲା ଏବଂ ମନରେ ଗୋଷ୍ଠୀଗତ ବା ଜାତିଗତ ସଂକୀର୍ଣ୍ଣତା ଆଦୌ ସ୍ଥାନ ପାଇନଥିଲା। ଏଣୁ ମୋ ପକ୍ଷେ ସଂକୀର୍ଣ୍ଣ ଧର୍ମାନ୍ଧତା ଓ ରକ୍ଷଣାଶୀଳତାଠାରୁ ଦୂରରେ ରହିବା ଏକ ସ୍ୱାଭାବିକ ପ୍ରକ୍ରିୟା ହୋଇପଡ଼ିଥିଲା । ଉତ୍ତର ଜୀବନରେ ମୁଁ ଏହାର ସୁଫଳ ପାଇଥିଲି।

ଏହି ୪ ବର୍ଷ ଭିତରେ ମୋର ଅଜାଣତରେ ମୁଁ ଜଣେ କେରଳବାସୀ ହୋଇଯାଇଥିଲି। ତାଙ୍କ ଭାଷା କହୁଥିଲି। ତାଙ୍କର ଖାଦ୍ୟକୁ ମୁଁ ଆଦରି ନେଇଥିଲି। ନାରିକେଳ, ବାନାନା, ଗୁଆ, ଟାପିଓକା ମିଶ୍ରିତ କୃଷିକ୍ଷେତ୍ର ମୋର ଅତି ଆପଣାର ହୋଇଯାଇ ସାରିଥିଲା। କେରଳ ଛାଡ଼ିବା ଦିନ ମୋର ବନ୍ଧୁମାନେ ମୋତେ କୁଣ୍ଢାଇ ଧରି ଭୋ ଭୋ କାନ୍ଦିଲେ। ବେଶି କାନ୍ଦିଲେ ମହାଦେବନ, ପଦ୍ମନାଭନ, ସୁନ୍ଦରମ୍ ଓ ଗଙ୍ଗାଧରନେ । ପଦ୍ମନାଭନ ସବୁବେଳେ କହେ ଆମେ ଦୁଇଜଣ ଆର ଜନ୍ମରେ ଭାଇ ଥିଲେ ଏ ଜନ୍ମରେ ସେଥିପାଇଁ ଆମକୁ ୪ ବର୍ଷ ସାଙ୍ଗ ହେବା ପାଇଁ ଭଗବାନ ସୁଯୋଗ ଦେଇଛନ୍ତି।

ଅଧିକାଂଶଙ୍କର ଅନୁରୋଧ ଥିଲା, ଯେତେବେଳେ ସୁବିଧା ପାଇବ, କେରଳ ଆସିବ, ତ୍ରିଭାନ୍ଦ୍ରମରୁ ଟ୍ରେନ୍‌ରେ ଚଢ଼ି ଫେରି ଆସିଲି ଓଡ଼ିଶା । ପଛରେ ରହିଗଲା ମୋର ୪ ବର୍ଷର ହସଖେଳର ଅନ୍ତରଙ୍ଗ ଅନୁଷ୍ଠାନ, ତ୍ରିଭାନ୍ଦ୍ରମର ମନୋହର ବେଳାଭୂମି ଓ କୋବଲମ୍ ବିଚ୍ ଯାହାର ଶାନ୍ତିମୟ କୋଳରେ କେତେଥର ବସିଛି ଓ ବସି ବସି ଆଦ୍ୟ ଯୌବନର କେତେ ରଙ୍ଗୀନ ସ୍ୱପ୍ନ ଦେଖିଛି। ନାରିକେଳ ଶୋଭିତ କୋବଲମ୍ ବିଚ୍‌ର ପ୍ରୀତିକର ଚନ୍ଦ୍ର, ସୂର୍ଯ୍ୟାସ୍ତର ରକ୍ତିମ ଆଭା, ତାମ୍ରାଭ ଆରବସାଗର ମୃଦୁମଳୟ ଟ୍ରେନ୍‌ରେ ଆସିବା ସମୟରେ ସାଙ୍କୋଟା ଗିରିପଥର ଦୀର୍ଘ ଟନେଲ୍ ଯାତ୍ରାର ଅନୁଭୂତି, ତ୍ରିଭାନ୍ଦ୍ରମଠାରୁ କୁଇଲନ୍ ଆସିବା ରେଳରାସ୍ତା କଡ଼ର ଧାଡ଼ି ଧାଡ଼ି ନାରିକେଳ ଗୁବାକ ବୃକ୍ଷରାଜିର ପତ୍ରଗହଳିରେ ଅସ୍ତସୂର୍ଯ୍ୟ ରଶ୍ମି ପଡ଼ି ମର୍କତମଣିର ବିଛୁ ହେବାପରି ବୋଧ ହେଉଥିଲା। ବୋଷ୍ଟିଙ୍ଗ୍ ଗାରଡ଼ର ପୋଲ ତଳେ ରେଳପଥର ଗମନମିନାର ପାହାଡ଼ର ଚା ବଗିଚା, ସେଥିରେ କର୍ମରତ କେରଳୀ ରମଣୀମାନଙ୍କର ମନମତାଣିଆ ସଙ୍ଗୀତ, ମୋର ପ୍ରିୟ ତ୍ରିଭାନ୍ଦ୍ରମ କ୍ରିକେଟ୍ ଷ୍ଟାଡ଼ିୟମ୍, ଭଲିବଲ ଫିଲ୍ଡ, କୋଚିନ ହ୍ରଦର ମନୋରମ ଦୃଶ୍ୟ, କନ୍ୟାକୁମାରୀ ମନ୍ଦିର, ବିବେକାନନ୍ଦ ପ୍ରସ୍ତର, ଗାନ୍ଧିଜୀଙ୍କ ସୋଲାର

ସେଲିହଟ ରନ୍ତୁ ଶଙ୍କରାଚାର୍ଯ୍ୟଙ୍କ ଜନ୍ମସ୍ଥାନ ଚାଲକୁଡ଼ି ସବୁ ପଛରେ ରହିଗଲେ। ଆଉ ଅନ୍ତରଙ୍ଗ ବନ୍ଧୁ ମହାଦେବନ, ପଦ୍ମନାଭନ୍ ସୁନ୍ଦରମ୍ ଜୟଚନ୍ଦ୍ରନ, ଗିରିଜା ବଲ୍ଲଭନ୍ କ୍ରିଷ୍ଣନ ଓ ଗଙ୍ଗାଧରନ୍ ସବୁ ପଛରେ ରହିଗଲେ। ସମସ୍ତଙ୍କ୍ ନଷ୍ଟତବାଣୀ ଶୁଣାଇ କେରଳ ଛାଡ଼ିଲି। "ମୋର ଆଦ୍ୟ ଯୌବନ ର ଏହି ଲୀଳା କେରଳ ରାଜ୍ୟର ଏହି ସହରକୁ ମୁଁ କେବେ ଭୁଲିପାରିବି ନାହିଁ। ନିଶ୍ଚୟ ଆସିବି। ବାରମ୍ବାର ଆସିବି। ଆସି ତୁମମାନଙ୍କର ଅତିଥି ହେବି। ତୁମ ବିଭାଘରକୁ ଆସିବି।" କେରଳ ଛାଡ଼ିବା ୫୧ ବର୍ଷ ହୋଇଗଲାଣି। ମାତ୍ର ଯାଇପାରିଛି ୨ ଥର ତା'ପୁଣି କେବଳ ୫ ଦିନ ପାଇଁ।

ଟେନ୍ ତ୍ରିଭେନ୍ଦ୍ରମ ଷ୍ଟେସନ୍ ଛାଡ଼ିବାର ଅନେକ ସମୟ ପରେ ବି ବଂଧୁମାନଙ୍କର ଏହି ଆନ୍ତରିକତାପୂର୍ଣ୍ଣ ନିବେଦନଟି ମୋ କାନରେ ବାରଂବାର ପ୍ରତିଧ୍ୱନିତ ହେଉଥାଏ। ପରମ ଆତ୍ମୀୟଙ୍କ ଠାରୁ ଦୂରେଇ ଆସିବାର ବିଚ୍ଛେଦ ଦୁଃଖ ଅନୁଭବ କରୁଥାଏ। ମୁଁ ବିସ୍ମିତ ହୋଇଯାଇଥାଏ, ଅନ୍ତତଃ କେତୋଟି ମୁହୂର୍ତ୍ତ ପାଇଁ ଯେ ମୁଁ ଜଣେ ଓଡ଼ିଆ ଯୁବକ  ଆଉ ସେମାନେ ସୁଦୀର୍ଘ ଦୁଇ ହଜାର କିଲୋମିଟର ଦୂରବର୍ତ୍ତୀ କେରଳୀ। ସେତେବେଳେ ମୁଁ ହୃଦୟଙ୍ଗମ କଲି ଯେ ମୁଁ ଓ ସେମାନେ କେବଳ ଭାରତୀୟ ଯୁବକ। ଯେଉଁ ମହାନ୍ ଦେଶରେ ନାନା ବିଭେଦ ମଧ୍ୟରେ ଏକତ୍ୱର ଦୀପ୍ତିମୟ ସୂର୍ଯ୍ୟ ନିରନ୍ତର ଉଦ୍‌ଭାସିତ।

ଟ୍ରେନ୍ ଦ୍ରୁତଗତିରେ ଆଗେଇ ଚାଲିଥାଏ ଉତ୍ତର ଦିଗକୁ ଏବଂ ମୋର ସ୍ମୃତି, ସଜଳ ମନ ମୋତେ ଟାଣି ନେଇଥାଏ, ବିପରୀତ ଦିଗରେ, ଯେଉଁଠି ରହିଗଲା ମୋ ଜୀବନର ୪ଟି ମୂଲ୍ୟବାନ ବର୍ଷର ହସଖେଳର ଦିନମାନ ବିତାଇ ଦେଇଥିବା ସେହି ଅନ୍ତରଙ୍ଗ ଅନୁଷ୍ଠାନ - ତ୍ରିଭାନ୍ଦ୍ରମର ଇଉନିଭରସିଟି ଇଞ୍ଜିନିୟରିଂ କଲେଜ; ଆଉ ଯେଉଁଠି ଛାଡ଼ିଆସିଲି କେତେ ପ୍ରିୟତମ ବଂଧୁ ଓ ସହପାଠୀ ସାଙ୍ଗକୁ - ମନମୁଗ୍ଧକର 'କୋବଲମ୍ ବିଚ୍'କୁ - ଯାହାର ସ୍ନିଗ୍ଧ ସୁନ୍ଦର ବାଲୁକାମୟ କୋଳରେ ବସି ବସି ମୁଁ ଦେଖିଥିଲି ମୋର ଆଦ୍ୟ ଯୌବନର ଅସରନ୍ତି ରଙ୍ଗୀନ ସ୍ୱପ୍ନମାନଙ୍କୁ, ଯେଉଁ ବେଳାରେ ମୁଁ ଦେଖିଥିଲି ଆରବସାଗରରେ ରକ୍ତରାଗ ବିଞ୍ଚାଡ଼ି ଯାଇଥିବା ଅସ୍ତଗାମୀ ସୂର୍ଯ୍ୟର ମନୋରମ ଦୃଶ୍ୟ ସଂଗେ ତାଳ ଦେଇ ନାଚି ଉଠୁଥିବା ଆରବସାଗରର ଅଗଣିତ ତାମ୍ରାଭ ମୃଦୁ ଲହରୀ ମାନଙ୍କୁ। ମନକୁ ଛୁଇଁଯାଇଥିଲା, ତ୍ରିଭେନ୍ଦ୍ରମରୁ କୁଇଲନ୍ ଯାତ୍ରା ବେଳର ମନୋହର ଦୃଶ୍ୟରାଜି- ରାସ୍ତାକଡ଼ର ଧାଡ଼ି ଧାଡ଼ି ନାରିକେଳ ଓ ଗୁବାକ ବୃକ୍ଷ ଯେଉଁମାନଙ୍କ ପତ୍ରଗହଳିରେ ସୂର୍ଯ୍ୟରଶ୍ମି - ଅୟୁତ ମର୍କତମଣି ବିଞ୍ଚି ଦେବା ପରି ବୋଧ ହେଉଥିଲା - ଦର୍ଶକଙ୍କର ମୁଗ୍ଧ ଚକ୍ଷୁକୁ ....।

## ଅଷ୍ଟମ ପରିଚ୍ଛେଦ

# କର୍ମକ୍ଷେତ୍ରର ଏରୁଣ୍ଡିବନ୍ଧରେ ପଦପାତ

କେରଳରେ ଅଧ୍ୟୟନ ସମୟରେ ଓଡ଼ିଶାରେ ଚାଲିଥିବା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ବିଷୟରେ ଖବରକାଗଜରୁ ଯତ୍‌କିଞ୍ଚିତ୍ ସମ୍ବାଦ ମିଳେ। ତ୍ରିଭାନ୍ଦ୍ରମରେ ବହୁଳ ପ୍ରଚରିତ 'ହିନ୍ଦୁ' କାଗଜରେ ଓଡ଼ିଶା ସମ୍ବାଦ କ୍ୱଚିତ ପ୍ରକାଶ ପାଏ। ତେବେ ଜବାହାରଲାଲ ନେହେରୁଙ୍କ ଦ୍ୱାରା ଭାରତର ପ୍ରଥମ ବୃହତ ନଦୀବନ୍ଧ ଯୋଜନା ହୀରାକୁଦର ଉଦ୍‌ଘାଟନ, ରାଉରକେଲା ଠାରେ ଲୌହ ଇସ୍ପାତ କାରଖାନା ପ୍ରତିଷ୍ଠା, କଟକରୁ ଭୁବନେଶ୍ୱରକୁ ରାଜଧାନୀ ସ୍ଥାନାନ୍ତର, ୧୯୫୫ ମସିହାରେ ମହାନଦୀରେ ପ୍ରବଳ ବନ୍ୟା ଫଳରେ ଦଳେଇଘାଇ ଭାଙ୍ଗିବା ଆଦି ମୁଖ୍ୟ ସମ୍ବାଦ ମାନ ଅବଶ୍ୟ ଇଂରାଜୀ ଖବରକାଗଜରୁ ପଢ଼ିବାକୁ ମିଳେ।

ପରୀକ୍ଷା ଫଳ ବାହାରିବାକୁ ଆହୁରି ମାସେ ବାକି। କଟକରେ ଶୁଣିଲି ଇଞ୍ଜିନିୟରିଂ ଡିଗ୍ରୀ ପରୀକ୍ଷା ଦେଇଥିବା ଯୁବକମାନଙ୍କୁ ଓଭରସିୟର୍ ଚାକିରିରେ ଭର୍ତ୍ତି କରାଯାଉଛି। ଚିଫ୍ ଇଞ୍ଜିନିୟର ଅଫିସ୍ ଭୁବନେଶ୍ୱରକୁ ଉଠିଯାଇ ସାରିଥାଏ। ସମଗ୍ର ଓଡ଼ିଶା ପାଇଁ ଥାଆନ୍ତି ଜଣେ ଚିଫ୍ ଇଞ୍ଜିନିୟର, ସି.ଏମ. ବେନେଟ୍। ତାଙ୍କୁ ଦେଖା କରିବାକୁ ଯେଉଁ ସ୍ଲିପ୍ ଖଣ୍ଡକ ଲେଖି ଦେଇଥିଲି ଉପରେ ସେ ଅର୍ଡ଼ର କରିଦେଲେ ମୋତେ ଓଭରସିୟର ହିସାବରେ ଏମ୍ପ୍ଲଏଣ୍ଟମେଣ୍ଟ ଦେବା ପାଇଁ ଓ ସର୍ତ୍ତ ରଖିଦେଲେ, ପାଶ୍ ସାର୍ଟିଫିକେଟ୍ ଦେଖାଇବା ମାତ୍ରେ ମୋତେ ଜୁନିୟର ଇଞ୍ଜିନିୟର ସ୍କେଲ୍ ଦିଆଯିବ। ସେହି ଅର୍ଡ଼ର ବଳରେ ୧୯୫୭ ମସିହା ମେ ୧୦ ତାରିଖ ଦିନ ମୁଣ୍ଡଳିଠାରେ ନିର୍ମିତ ହେବାକୁ ଥିବା ବେରେକ୍ ଡିଭିଜନ୍‌ରେ ଯୋଗଦାନ କଲି। ମାସକୁ ଦରମା ଓ ମହଙ୍ଗା ଭତ୍ତା ମିଶି ୧୪୭/- ଟଙ୍କା। ଅବଶ୍ୟ ମାସକ ପରେ ଜୁନିୟର ଇଞ୍ଜିନିୟର ପାହ୍ୟାରେ ଯୋଗଦେବା ପରେ ମୋତେ ବେତନ ମିଳିଲା ୨୦୯/- ଟଙ୍କା। ମୋର ଏସ.ଡ଼ି.ଓ. ଥାଆନ୍ତି ପ୍ରେମାନନ୍ଦ ମିଶ୍ର ଓ ଏକଜକ୍ୟୁଟିଭ୍ ଇଞ୍ଜିନିୟର ଥାଆନ୍ତି କାଶୀ ଶରଣ ମିଶ୍ର। ମୋର କାର୍ଯ୍ୟ ହେଲା, ମୁଣ୍ଡଳି କଲୋନିର

ରାସ୍ତା, କୋଠା, ପାଇପ୍‌ଲାଇନ୍, ସିଓରେଜ୍ ଲାଇନ୍ ନିର୍ମାଣ ଓ ଘରଗୁଡ଼ିକର ରକ୍ଷଣାବେକ୍ଷଣ। କିଛିଦିନ ପରେ ପ୍ରାଣକୃଷ୍ଣ ଆଚାର୍ଯ୍ୟ ଓ ଗୋବିନ୍ଦଚନ୍ଦ୍ର ବିଷୋୟି ମୋଭଳି ଜୁନିୟର ଇଞ୍ଜିନିୟର ଭାବେ କାର୍ଯ୍ୟରେ ଯୋଗଦେଲେ। ଅନ୍ୟ ୩ଟି ସବ୍‌ଡ଼ିଭିଜନ୍‌ରେ ବୃନ୍ଦାବନ ଚନ୍ଦ୍ର ନାୟକ, ଏନ.ଏସ.ଭି. ରାମାୟା ଓ ଜି.ଏସ. ଶର୍ମା ଏସ.ଡ଼ି.ଓ. ଭାବେ କାର୍ଯ୍ୟ କରୁଥାଆନ୍ତି।

ମୁଣ୍ଡଳି ଠାରେ ୧୩ ମାସର ଅବସ୍ଥାନ ଏକ ଘଟଣା ବହୁଳ ଅଧ୍ୟାୟ। କାଶୀ ଶରଣ ମିଶ୍ରଙ୍କର ଆଚରଣରେ କିଛି ଅସ୍ୱାଭାବିକତା ଲକ୍ଷ୍ୟ କଲି। ସେ କାହାରିକୁ ବିଶ୍ୱାସ କରୁ ନଥିଲେ। ଏହା ତାଙ୍କର କାର୍ଯ୍ୟରେ ପ୍ରତିଫଳିତ ହେଉଥିଲା। କଲୋନିକୁ ପାଣି ଯୋଗାଣ ପାଇଁ ଏକ ଟାଙ୍କି ତିଆରି ହେଉଥାଏ। ଏଥିପାଇଁ ଗୋଟିଏ Circular beam design ଦରକାର ପଡ଼ିଲା। ମୁଁ ଏହା କରିଦେଲି। ସେ ଏହାକୁ ରାମାୟା ସାହେବ ଓ ଶର୍ମା ସାହେବଙ୍କୁ ଦେଖାଇ ଚେକ୍ କରାଇଲେ। ତଥାପି ବିଶ୍ୱାସ ହେଲା ନାହିଁ। ଭୁବନେଶ୍ୱର ନେଇ ଚେକ୍ କରାଇଲେ। ଟାଙ୍କିଟିର ଛାତ ପଡ଼ିବା ଦିନ ତାଙ୍କର ବ୍ୟସ୍ତତା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା। ସେ ସମସ୍ତଙ୍କୁ ପଚାରୁଥାଆନ୍ତି, ଟାଙ୍କିଟିର ଛାତଟି ଭୁଷୁଡ଼ି ପଡ଼ିବ ନାହିଁତ ? କଲୋନିର ରାସ୍ତା ଗୁଡ଼ିକ ରେଡ଼ିଏଲ ଡିଜାଇନ୍ ହୋଇଥାଏ। ରାସ୍ତାର ଗ୍ରେଡିଏଣ୍ଟ ମୁଁ ଲେଭଲ ଯନ୍ତ୍ର ସାହାଯ୍ୟରେ ଦେଉଥାଏ। ଥରେ ଆସି ସେ କହିଲେ 'ଲେଭଲ ଯନ୍ତଟି ଠିକ୍ ଅଛିତ ?" ମୁଁ କହିଲି, "ହଁ ଚେକ୍ କରିଛି। ଠିକ୍ ଅଛି।" କିନ୍ତୁ ତା ପରଦିନ ସେ ୩ଟି ବୋନିଂରଡ୍ ଆଣି ମୋତେ ଗ୍ରେଡ଼ିଏଣ୍ଟ୍ ଦେବାକୁ କହିଲେ। କର୍ଭରେ ଏହା ସମ୍ଭବ ନୁହେଁ କହିବାରୁ ରାଗିଯାଇ କହିଲେ, "ତୁମର ଜନ୍ମ ଆଗରୁ ମୁଁ ଚାକିରି ଆରମ୍ଭ କଲିଣି। ମୋ ସାଙ୍ଗେ ଯୁକ୍ତି କରୁଛ ? ଲେଭଲ ଯନ୍ତ୍ରରେ ଭୁଲ୍ ଥାଇପାରେ କିନ୍ତୁ ବୋନିଂ ରଡ ଭୁଲ୍ ହେବନି।" ଆଉଦିନେ ଗୋଟିଏ ପମ୍ପର ଫାଉଣ୍ଡେସନ୍ କଂକ୍ରିଟ୍ କରୁଥାଏ। କଂକ୍ରିଟର୍ ଉପର ଲେଭଲ୍ ପାଇଁ ଲେଭଲ ଯନ୍ତ୍ର ବ୍ୟବହାର କରୁଥାଏ। ସନ୍ଧ୍ୟାବେଳେ ଆସି ପଚାରିଲେ କଂକ୍ରିଟର୍ ଉପରଟି ସମତଳ ଅଛିଟି ? ମୁଁ କହିଲି ଓାଟର୍ ଲେଭଲ୍‌ରେ ଲେଭଲ ନେଇଛି। ନିଶ୍ଚୟ ନିର୍ଭୁଲ୍ ହେବ। ତାଙ୍କର ବିଶ୍ୱାସ ହେଲାନି। ଖଲାସି ୨ ଜଣଙ୍କ ହାତରେ ପାଣି ବୁହାଇ ଗୋଟିଏ ମାଟିବନ୍ଧ କରି ପାଣି ଢାଳିଲେ। ପାଣିର ଗଭୀରତା ମାପି ସାରିଲା ପରେ

ଯାଇ ସନ୍ତୁଷ୍ଟ ହେଲେ। ଦିନେ ଜଣେ ଓଭରସିଅର୍ ଗୋଟିଏ କଲଭାର୍ଟର ସ୍ଲାବ୍ ପଡ଼ିବାର ୨୦ ଦିନ ପରେ ସେଣ୍ଟେରିଂ ଖୋଲିଦେଲେ। ତାର କେତେ ଘଣ୍ଟା ପରେ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ମିଶ୍ର ସାହେବ ଯାଇ ପହଞ୍ଚିଲେ। ୨୧ ଦିନ ପୂର୍ବରୁ ସେଣ୍ଟେରିଂ ଖୋଲାଯାଇଥିବା ଶୁଣି ରାଗରେ ପଞ୍ଚମ ହୋଇଗଲେ। ତାପରେ ଯାହା କଥୋପକଥନ ହେଲା ନିମ୍ନରେ ଦିଆଗଲା-

ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର - ଗୋଟିଏ ଗାତ ଖୋଲି ଦିଅ।

ଓଭରସିଅର - yes, sir ।

ଇଞ୍ଜିନିୟର : ତା' ଭିତରେ ମୋତେ ଠିଆ କରାଇ ଦିଅ।

ଓଭର ସିଅର : Yes Sir,

ଇଞ୍ଜିନିୟର: ମୋ ଉପରେ ମାଟି ଘୋଡ଼ାଇ ଦିଅ।

ଓଭରସିୟର : Yes Sir,

ଇଞ୍ଜିନିୟର:What?you want to give me"Kabar"? I shall finish you.

ତା କେତେଦିନ ପରେ ସେହି ଯୁବକ ଓଭରସିଅର୍‌ଙ୍କର ବିଭାଘର ଠିକ୍ ହେଲା। ଛୁଟି ମାଗିବାରୁ ମିଶ୍ର ସାହେବ ସିଧା ମନା କରିଦେଲେ। ତା'ପରେ ଭାବୀ ଶ୍ୱଶୁର ଆସି ଏକଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କୁ ଛୁଟି ପାଇଁ ଅନୁରୋଧ କଲେ। ଏହା ଶୁଣି ମିଶ୍ର ସାହେବ କହିଲେ ମୋ ପାଖରେ ୨୦ ଜଣ ଓଭରସିୟର ଅଛନ୍ତି। ତାକୁ ଛାଡ଼ି ତୁମେ ଆଉ ଯାହା ସହ ତୁମର ଝିଅ ବାହାଘର କରିବ ତାକୁ ମୁଁ ଛୁଟିଦେବି।

ଏହା ସେ ଦିନ କଲୋନୀରେ ହସର ଏକ ଚହଳ ସୃଷ୍ଟି କରିଥିଲା। ସମୁଦାୟ ଡିଭିଜନର କାମ ପାଇଁ ମୁଣ୍ଡଳି ଠାରେ ଗୋଟିଏ ସେଣ୍ଟ୍ରାଲ୍ ଷ୍ଟୋର୍ ଥାଏ। ଗେଟ୍ ପାଖରେ ଥାଏ ଗୋଟିଏ ଅଫିସ୍। ଷ୍ଟୋର୍ ଏସ.ଡ଼ି.ଓ. ରାମାୟା ସାହେବ ଅବିବାହିତ ଥିବାରୁ ସେହି ଅଫିସ୍‌ରେ ସନ୍ଧ୍ୟାବେଳେ ଆମର ଆଡ଼ା ଜମେ। ପ୍ରତିଦିନ ମିଶ୍ର ସାହେବ ରବର ଯୋତା ପିନ୍ଧି ଛପି ଛପି ଷ୍ଟୋରରୁ କାଳେ କିଏ କିଛି ଚୋରି କରୁଛି ଚେକ୍ କରନ୍ତି। ଦିନେ ମୁଁ ରାମାୟା ସାହେବ, ପ୍ରାଣକୃଷ୍ଣ ଆଚାର୍ଯ୍ୟ, ବିଶୋଇ ବାବୁ, ଗଣେଶନ୍ ବସି ଖୁସିଗପ କରୁଛୁ। ମିଶ୍ର ସାହେବ ରବର ଯୋତା ପିନ୍ଧି ଛପି ଛପି ଅନ୍ଧକାର ମଧ୍ୟରେ ଷ୍ଟୋର୍‌ରେ ପ୍ରବେଶ କଲେ। ରାମାୟା ସାହେବ ହଠାତ୍ ତାଙ୍କ ପଛେ ପଛେ

ଗୋଟିଏ ଟର୍ଚ୍ଚ ଧରି ଚାଲିଲେ। କିଛି ବାଟ ଗଲା ପରେ ତାଙ୍କ ମୁହଁକୁ ଟର୍ଚ୍ଚ ପକାଇ ରାମିୟା ସାହେବ କହିଲେ "ହଁମାରା ଷ୍ଟୋର ମେଁ କୌନ ହେ ?" ଏହା ଦେଖି ମିଶ୍ର ସାହେବ ରାଗରେ ପାଚିଗଲେ। ସେ ବଡ଼ ବଡ଼ ପାଦ ପକାଇ ଚାଲୁଥାଆନ୍ତି ଓ କହୁଥାନ୍ତି। Mr. Ramiah, today you have thrown torch light on my face. Tomorrow you may throw stone at me. Why do not you go to Bangalore, get one bloody girl and marry. I am afraid of these bachelors. They have no fear for their service। ତାଙ୍କ ପଛେ ପଛେ ରାମିୟା ସାହେବ ଚାଲିଥାନ୍ତି। କହୁଥାନ୍ତି Sir, Excuse me Sir, I did not know that you are inside the store. Sir, why did not you tell me, I would have sent 2 khalashis with petromax light. ଏଣେ ଷ୍ଟୋର୍ ଅଫିସ୍‌ର ଏ ନାଟକ ଦେଖି ଆମେ ବେଶ୍ ଆମୋଦ ଅନୁଭବ କରୁଥାଉ।

ମୁଣ୍ଡଲି ରହଣି କାଳ ମଧ୍ୟରେ ପି.ଏସ.ସି. ଆସିଷ୍ଟାଣ୍ଟ ଇଞ୍ଜିନିୟର ପୋଷ୍ଟ ପାଇଁ ଇଣ୍ଟରଭିୟୁ ହେଲା। କିଏ କହିଲା, ସୁଟ୍ ଓ ଟାଇ ପିନ୍ଧି ନ ଗଲେ personality ପାଇଁ ନମ୍ବର ମିଳିବନି ତ କିଏ କହିଲା Indian ଚିପା କୋଟ ପିନ୍ଧି ଯିବା ଦରକାରୀ ମୁଁ କିନ୍ତୁ ସାଧାରଣ ପେଣ୍ଟ ଓ ଟି' ସାର୍ଟ ପିନ୍ଧି ଇଣ୍ଟରଭିଉକୁ ଗଲି। ଇଣ୍ଟରଭିୟୁର ପ୍ରଶ୍ନ ଓ ଉତ୍ତର ପାଇଁ ତ ଟିକିଏ ପ୍ରସ୍ତୁତି ଦରକାର। ଭାବିଲି କେଉଁଠାରେ ଓ କି କାମ କରୁଛ ପଚାରିଲେ, କଣ କହିବି ? କୋଠା, ରାସ୍ତା, ପାଣିପାଇପ୍ ଓ ପଥର ଯୋଡ଼ାଇ କାମ କରୁଛି କହିଲେ- ଚିଫ୍ ଇଞ୍ଜିନିୟର ଏତେ ପ୍ରଶ୍ନ ପଚାରିବେ ଯେ ତାର ଉତ୍ତର ଦେବା ବୋଧ ହୁଏ ସମ୍ଭବ ହେବନି। ତେଣୁ ଭାବିଲି କହିବି ମୁଁ ପୁରୀ ମେନ୍ କେନାଲ୍ ଖୋଳା ଦାୟିତ୍ୱରେ ଅଛି। ନିଶ୍ଚୟ ପଚାରିବେ, ପୁରୀ ମେନ୍ କେନାଲର ତଳ ଓସାର, ପାଣିର ଗଭୀରତା, ସ୍ଲୋପ୍, ଆୟକଟ୍ ଓ ପାଣି ବହନ କ୍ଷମତା କେତେ ? ଏଗୁଡ଼ିକ ତ ସାଇନ୍‌ବୋର୍ଡ଼ ଉପରେ ଲେଖା ହୋଇଛି। ତେଣୁ ସଙ୍ଗେ ସଙ୍ଗେ କହିପାରିବି। ସତକୁ ସତ ବେନେଟ ସାହେବ ଉପରୋକ୍ତ ପ୍ରଶ୍ନଗୁଡ଼ିକ ପଚାରିଗଲେ। ତାପରେ ପଚାରିଲେ ପ୍ରତ୍ୟହ କେତେ ଲୋକ କାମ କରୁଛନ୍ତି ଓ କେତୋଟି ମେସିନ୍ କାମ କରୁଛି ଓ ଦୈନିକ କେତେ ମାଟି ଖୋଳା ଯାଉଛି। ଭାବିଲି ମୋର ଅବସ୍ଥା କାଲ ବନ୍ଧୁର ଅବସ୍ଥା ହେବ ନାହିଁତ ? ଭାବିଲି ଯଦି ଦୈନିକ ଜଣେ

ଲୋକର ମାଟି ଖୋଳିବା କ୍ଷମତା ୭୦ କି ୭୫ ଘନଫୁଟ୍ କରି ୪୦୦ କି ୪୨୫ରେ ଗୁଣେ ତେବେ କାଗଜକଲମ ଦରକାର ହେବ। ସେହିପରି କେନାଲରେ କାମ କରୁଥିବା ଷ୍ଟ୍ରେପରର ମାଟି ବୋହିବା କ୍ଷମତାକୁ ୧୬୨ ଘନଫୁଟ ଧରି ପ୍ରତ୍ୟେହ ୭୦ କି ୮୦ ଟ୍ରିପ୍ କରି ହିସାବ କଲେ ହିସାବ ବହୁତ ସମୟ ଲାଗିବ। ହଠାତ୍ ସାହସ ସଞ୍ଚୟ କରି କହିଲି, ଦୈନିକ ୧୦୦୦ ଲୋକ କାମ କରୁଛନ୍ତି। ପ୍ରତ୍ୟେକଙ୍କର ମାଟି ଖୋଳିବା କ୍ଷମତା ୧୦୦ ଘନ ଫୁଟ, ତେଣୁ ସେମାନେ କରୁଛନ୍ତି ୧ ଲକ୍ଷ ଘନଫୁଟ। ୩ଟି ଷ୍ଟ୍ରେପର୍ କାମ କରୁଛନ୍ତି। ହାରାହାରି ଗୋଟିଏ ବନ୍ଦ ରହୁଛି। ୨ଟି କାମ କରୁଛନ୍ତି। ତାଙ୍କ ବହନ କ୍ଷମତା ୧୬୨ ଘନ ଫୁଟ ହୋଇଥିଲେ ମଧ୍ୟ ଏହା ପୁରୁଣା ମେସିନ୍ ହୋଇଥିବାରୁ ହାରାହାରି ୧୦୦ ଘନ ଫୁଟ ମାଟି ଆଣୁଛି ଓ ଦିନକୁ ୧୦୦ ଟ୍ରିପ୍ କରୁଛି। ଏହିପରି ୩ଟି ଷ୍ଟେପ୍ର ଦିନକୁ ୨୦,୦୦୦ ମାଟି ଖୋଳୁଛନ୍ତି। ତେଣୁ ସମୁଦାୟ ଦିନକୁ କାମହେଉଛି ୧ ଲକ୍ଷ ୨୦ ହଜାର ଘନଫୁଟ। ସଙ୍ଗେ ସଙ୍ଗେ ବେନେଟ୍ ସାହେବ କହି ପକାଇଲେ very good, you can go now କହିବା ବାହୁଲ୍ୟଯେ ସେ ମୋତେ ଇରିଗେସନ୍ କୋଠାବାଡ଼ି ଓ P.H.D. Cadre ପାଇଁ ବଛା ଯାଇଥିବା ୧୬ଜଣ ଇଞ୍ଜିନିୟରଙ୍କ ମଧ୍ୟରେ ସର୍ବୋଚ୍ଚ ସ୍ଥାନ ଦେଇ ଦେଲେ।

ମୁଣ୍ଡଳିରେ ରହଣିକାଳ ମଧ୍ୟରେ କୋଠା ତିଆରି ଠାରୁ ଆରମ୍ଭ କରି, ପାଣି ପାଇପ୍ ଫିଟିଂ, କାଷ୍ଟ ଆଇରନ ପାଇପ୍ ଗୁଡ଼ିକୁ ସିସା ସାହାଯ୍ୟରେ ଯୋଖିବା ଆଦି ବିଭିନ୍ନ କାର୍ଯ୍ୟରେ ଟ୍ରେନିଂ ପାଇବାର ସୁବିଧା ଜୁଟିଲା। ବିଶେଷ କରି ମୁଣ୍ଡଳିରେ କାମ କରୁଥିବା ରଘୁନାଥ ତ୍ରିପାଠୀ, ଗୋପାଳ ପଟ୍ଟନାୟକ, ନିର୍ମଳ ପଟ୍ଟନାୟକ, ଲଡୁ ପଟ୍ଟନାୟକ, ପଞ୍ଚାନନ ଧଳ ଆଦି ସିନିୟର ଓଭରସିୟରମାନଙ୍କ ଠାରୁ ଉପଦେଶ ଗ୍ରହଣ କରିବାର ସୁଯୋଗ ମିଳିଥିଲା। ୧୯୫୮ ମସିହା ଏପ୍ରିଲ୍ ପହିଲା ଦିନ ଏକ କୌତୂହଳପୂର୍ଣ୍ଣ ଘଟଣା ଘଟିଲା। ନିର୍ମଳ ପଟ୍ଟନାୟକଙ୍କ ସ୍ତ୍ରୀ କାନ୍ତି ସେଦିନ ସକାଳେ କଲୋନୀରେ ବାସ କରୁଥିବା ସମସ୍ତଙ୍କ ଘରକୁ ପିଅନ ହାତରେ ଖବର ପଠାଇଦେଲେ ଯେ ସେ ହଇଜା ରୋଗରେ ହଠାତ୍ ଆକ୍ରାନ୍ତ ହୋଇ ପଡ଼ିଛନ୍ତି। ତାଙ୍କର ପରିସ୍ରା ବନ୍ଦ ହୋଇଯାଇଛି ଓ ହାତଗୋଡ କାଲୁଆ ମାରିଲାଣି। ମୁଁ ଅବିବାହିତ ଥିଲେ ମଧ୍ୟ ତାଙ୍କ ପରିବାର ସହ ଅନ୍ତରଙ୍ଗତା ଦୃଷ୍ଟିରୁ ମୋ ପାଖକୁ ମଧ୍ୟ ଖବର ପଠାଇଥିଲେ।

ଏହା ଶୁଣି କଲୋନୀ ସାରା ସ୍ତ୍ରୀ ଲୋକ ତାଙ୍କ ଘରକୁ ଯାଇ ଏପ୍ରିଲ୍‌ଫୁଲ୍ ହେଲେ, ସବୁ ସ୍ତ୍ରୀମାନେ ମୁହଁ ଶୁଖାଇ ଆସି ତାଙ୍କ ସ୍ୱାମୀଙ୍କୁ ନିଜ ନିଜର ଅପଦସ୍ତ ହେବା କାହାଣୀ ଶୁଣାଇଲେ। ଏହା ଶୁଣି ଧବଳ ଚୌଧୁରୀ, ମୁଁ, ପ୍ରାଣକୃଷ୍ଣ ଆଚାର୍ଯ୍ୟ ଆଦି କେତେ ଜଣ ବସି ଚିନ୍ତା କଲୁ, କଣ କଲେ ନିର୍ମଳ ପଟ୍ଟନାୟକ ଓ ତା ସ୍ତ୍ରୀଙ୍କ ଠାରୁ ଆମେ ଏ ଅପମାନର ପ୍ରତିଶୋଧ ନେବୁ। ସଙ୍ଗେ ସଙ୍ଗେ ଗୋଟେ ଚିଠି ଟାଇପ୍ ହେଲା, ମୁଣ୍ଡଳି ନରାଜ ରାସ୍ତାରେ ତୁମେ ନିମ୍ନଧରଣର ପଥର ସଂଗ୍ରହ କରି ବିଲ୍ କରିଛି। ଏଥିପାଇଁ କାହିଁକି ତୁମକୁ charge sheef କରା ନ ଯିବ। ତାର କାରଣ ଦର୍ଶାଅ Executive Engineer K.S. Mishra ଙ୍କ ଦସ୍ତଖତକୁ ଅବିକଳ ନକଲ କରି ଅଫିସ୍ ଚିଠି ଯେଭଳି ଦିଆଯାଏ ସେହି ଭଳି ଢଙ୍ଗରେ ତାଙ୍କ ଘରେ ବିକ୍ରମ ପିଅନ ଚିଠି ଦେଇ ଆସିଲା। K.S. Mishra ଭୁବନେଶ୍ୱର ଯାଇଥାଆନ୍ତି। ଦେଖ କି ମଜା ନିର୍ମଳ ପଟ୍ଟନାୟକର। ବାଳ ଛିଣ୍ଡାଇ ବାୟାଙ୍କ ଭଳି ଅଫିସ୍‌କୁ ଧାଇଁଲେ। ସେଠାରେ ଏକଜ୍ୟୁକିଟିଭ୍ ଇଞ୍ଜିନିୟରଙ୍କୁ ନ ଦେଖି ଅଫିସ୍ ଆଗରେ କାନ୍ଦି ଗଡ଼ିଲେ। ମୋର ସବୁ ସରିଗଲା। ମୋର ପିଲା ଭାସିଗଲେ। ମୁଁ ତ ସସ୍‌ପେଣ୍ଡ ହୋଇଯିବି। ସେ କଣ୍ଟ୍ରାକ୍ଟର ଖରାପ ପଥର ଆଣିଥିଲା। ମୁଁ ମାପିବାକୁ ମନା କରୁଥିଲି। ମୋତେ ମିଶ୍ର ସାହେବ କହିଲେ ମାପି ଦିଅ। ମାର୍ଚ୍ଚ ମାସ ଖର୍ଚ୍ଚ ଦେଖାଇବାକୁ ହେବ। ଏପ୍ରିଲ୍‌ରେ କଣ୍ଟ୍ରାକ୍ଟର ଭଲ ପଥର ଆଣି ଭରଣା କରିଦେବ। ମୁଁ କ'ଣ କରିବି ? ମୁଁ ଆତ୍ମହତ୍ୟା କରିଦେବି। ମୋର ପିଲାଙ୍କୁ ବିଷ ଖୁଆଇ ଦେବି। ଏହିଭଳି ଘଣ୍ଟାକରୁ ଅଧିକ ସମୟ ସେ ଅଫିସ୍ ଆଗରେ ଗଡ଼ିଲେ। କଲୋନୀ ସାରା ଲୋକ ଏ ଦୃଶ୍ୟ ଦେଖୁଥାନ୍ତି। ସକାଳର ସେ ଅପମାନ ଭୁଲି ଅନେକ ସ୍ତ୍ରୀଲୋକ ଆସି କାନ୍ତିଙ୍କୁ ସାନ୍ତ୍ୱନା ଦେଉଥାନ୍ତି। ଏଣେ ମିଶ୍ର ସାହେବଙ୍କର ଫେରିବା ସମୟ ହୋଇଗଲାଣି। ସେ ୬ ଘଣ୍ଟା ନ ପୂରିଲେ ଫେରନ୍ତିନି। ଯଦି ୬ ଘଣ୍ଟା ପୁରି ନଥାଏ ତେବେ ଗୋବିନ୍ଦପୁର ଡାକବଙ୍ଗଳାରେ ୧୫/୨୦ ମିନିଟ୍ ବସି ଫେରନ୍ତି। ନ ହେଲେ ଅଧା ଡି.ଏ. ଦାବି କରିପାରିବେ ନାହିଁ। ଯେ କୌଣସି ମୁହୂର୍ତ୍ତରେ ଫେରିପାରନ୍ତି। ଧବଳବାବୁ ଓ ମୁଁ ଯାଇ ନିର୍ମଳବାବୁଙ୍କୁ ବୁଝାଇଲୁ। ଏହା ମିଛ। ଆମେ ତୁମକୁ April-fool କରିଥିଲୁ। ତୁମ ସ୍ତ୍ରୀ କଲୋନୀ ସ୍ତ୍ରୀଲୋକଙ୍କୁ ଯେଉଁ April-fool କଲେ ତାର ପାଲଟା ବାଣ ଛାଡ଼ିଥିଲୁ। କିନ୍ତୁ ନିର୍ମଳ

ବାବୁ ବୁଝିବାକୁ ନାରାଜ। ତୁମେ ସବୁ ମୋତେ ସାନ୍ତ୍ୱନା ଦେବାକୁ ମିଛ କହୁଛ। ଏତ K.S. Mishra ଙ୍କ ଦସ୍ତଖତ। ଏଣେ ମିଶ୍ର ସାହେବଙ୍କ ଆସିବାବେଳ ହୋଇ ଯାଇଛି। ଆମ ଅବସ୍ଥା ସାଙ୍ଘାତିକ। ଶେଷରେ ବୟୋଜ୍ୟେଷ୍ଠ ଓଭରସିୟର ରଘୁବାବୁ ତାଙ୍କୁ ବୁଝାଇଲେ ଓ ଯେଉଁ ଲୋକ ଜାଲ ଦସ୍ତଖତ କରିଥିଲା, ସେ କରି ଦେଖାଇବା ପରେ ଯାଇ ନିର୍ମଳବାବୁ ଶାନ୍ତ ହେଲେ।

କାଶୀ ଶରଣ ମିଶ୍ରଙ୍କର ଏକମୁହାଁ ଶାସନ, ପ୍ରେମାନନ୍ଦ ବାବୁଙ୍କ ସରଳ ହସ ହସ ବ୍ୟବହାର, ରାମିୟା ସାହେବ ଓ ଶର୍ମା ସାହେବଙ୍କର ସମସ୍ତଙ୍କ ସହିତ ବନ୍ଧୁତା ସହିତ ରହିଥିଲା ବୃନ୍ଦାବନ ବାବୁଙ୍କ କର୍ମତତ୍ପର ଜୀବନ। ସକାଳେ ଉଠି ଆଗେ କାମକୁ ବାହାରି ପଡ଼ିବେ। ଡ୍ରାଇଭର ଆସିନଥିଲେ ନିଜେ ଗାଡ଼ି ଚଳାଇ ଓଭରସିୟର ଓ ଟ୍ରେନିଂ ଆସିଷ୍ଟାଣ୍ଟ ଇଞ୍ଜିନିୟର ମାନଙ୍କୁ ଛାଡ଼ିବାକୁ ବାହାରି ପଡ଼ିବେ। ଆସିଷ୍ଟାଣ୍ଟ ଇଞ୍ଜିନିୟର ପଦବୀକୁ ପ୍ରମୋସନ ପାଇବା ପରେ ମୋତେ ମୋର ପୂର୍ବ ସେକସନ୍ ଛାଡ଼ିବାକୁ ପଡ଼ିଲା। ମୋତେ ଦାୟିତ୍ୱ ଦିଆଗଲା ମହାନଦୀ, କାଠଯୋଡ଼ି, କୁଆଖାଇ ଓ ବିରୂପା ନଦୀର କ୍ରସ ସେକ୍ସନ ନେଇ ପୂର୍ବ ବର୍ଷ କ୍ରସ୍ ସେକ୍ସନ୍ ସହିତ ତୁଳନା କରିବାକୁ। ବୃନ୍ଦାବନବାବୁଙ୍କ ଗାଡ଼ିରେ ଆମକୁ ସକାଳେ ସର୍ଭେକୁ ପଠାଯାଏ। ସନ୍ଧ୍ୟାବେଳେ ପୁଣି ଗାଡ଼ି ଆମକୁ ନେଇଆସେ। ଦିନେ ନାୟକ ସାହେବ ନିଜେ ସନ୍ଧ୍ୟାବେଳେ ଆମକୁ ଆଣିବାକୁ ଯାଇଥିଲେ। ବାରଙ୍ଗ ନଳାରେ ବାଲି ଉପରେ ଗାଡ଼ି ଆଣିବା ବେଳେ ସେ ଯେଉଁ ଫୋର ହୁଇଲ୍ ଗିୟର୍ ପକାଇଥିଲେ ତାହା ଆଉ ପରିବର୍ତ୍ତନ କରିନାହାନ୍ତି। ବାଟରେ ଗାଡ଼ିର ପେଟ୍ରୋଲ ସରିଗଲା। କାରଣ କଣ ଦେଖୁ ଦେଖୁ ଜାଣିଲୁ ଫୋର୍ ହୁଇଲ୍‌ରେ ପ୍ରାୟ ୨୦ କି.ମି. ବାଟ ଆମେ ଆସିଲୁଣି। ୮ କି.ମି. ବାଟ ଆମକୁ ଚାଲି ଚାଲି ଆସିବାକୁ ପଡ଼ିଲା। ସେଥିପାଇଁ ତାଙ୍କର ଦ୍ୱିଧା ନଥାଏ। ହସି ହସି ଆମ ସହ ଚାଲିଥାନ୍ତି। ସେତେବେଳକୁ ତାଙ୍କର ପ୍ରମୋଶନ ହୋଇସାରିଥାଏ। ମିଶ୍ର ସାହେବ ଡେପୁଟେସନ୍‌ରେ ଗଲେ ସେ ହେଡ଼୍‌ୱାର୍କସ ଡିଭିଜନରେ ରହିବେ। ସରକାରୀ ଅର୍ଡ଼ର। ସେ ଯାଇ ପାରିବେନି। କିନ୍ତୁ ତାଙ୍କର ଦୁଃଖ ନଥାଏ। ଦ୍ୱିଗୁଣ ଉତ୍ସାହର ସହିତ ସେ କାମ କରୁଥାନ୍ତି। ହାୟ, ଭଗବାନ ଏଭଳି କର୍ମଠ, ଇଞ୍ଜିନିୟରିଂ ପ୍ରୋଫେସନ୍ ପାଇଁ ଜୀବନକୁ ଉତ୍ସର୍ଗ କରିଥିବା ଯୋଗ୍ୟ ଇଞ୍ଜିନିୟରଙ୍କୁ ଅବେଳରେ

ନେଇଯିବାରୁ ଓଡ଼ିଶାର ଯେଉଁ ଅପୂରଣୀୟ କ୍ଷତି ଘଟିଛି ତାହା ପୂରଣ କରିବ କିଏ ? ଯେଉଁଦିନ ଏକସିଡ଼େଣ୍ଟରେ ତାଙ୍କର ମୃତ୍ୟୁ ସମ୍ବାଦ ଖବରକାଗଜରୁ ପଢ଼ିଲି, ସେଦିନ ମୋ ଆଖି ଆଗରେ ଭାସୁଥାଏ ଡଲି, ଲିଲି, ପ୍ରଦୀପ, ଦିଲ୍ଲିପ ଓ ଅଶୋକଙ୍କର ସରଳ ମୁହଁ ଗୁଡ଼ିକ। ଏତେ ଛୋଟ ଛୋଟ ପିଲାଙ୍କୁ ଭସାଇଦେଇ ସେ ଚାଲିଗଲେ। ପିଲାମାନେ କିପରି ମଣିଷ ହେବେ ? କିନ୍ତୁ ଭଗବାନ ବଡ଼ଲୋକ। ଆଗେଇ ଆସିଲେ ତାଙ୍କର ଅଜା ଆଈ। ପିଲାମାନେ ବାପାଙ୍କ ଅନ୍ତେ ଦ୍ୱିଗୁଣ ଉତ୍ସାହର ସହିତ ପାଠପଢ଼ି ଡାକ୍ତର ଇଞ୍ଜିନିୟର, ଲେକଚର ହେବାର ଗୌରବ ଲାଭ କରିପାରିଛନ୍ତି।

ଏହିଭଳି ହସ ଖୁସିରେ ମୋର ଜୀବନର ପ୍ରଥମ ବର୍ଷଟି ଅତିବାହିତ ହୋଇଗଲା। ୩ ମାସ ଟ୍ରେନିଂ ପରେ ୧୯୫୮ ଜୁଲାଇ ମାସରେ ପୋଷ୍ଟିଂ ହେଲା ବଲାଙ୍ଗିର ଇରିଗେସନ୍ ସବ୍‌ଡିଭିଜନରେ। ଏହି ସବ୍‌ଡ଼ିଭିଜନଟି ସମ୍ପୂର୍ଣ୍ଣ ନୂତନ। ଅଫିସ ପାଇଁ ଭଡ଼ାଘର ନେବାଠୁଁ ଆରମ୍ଭ କରି ଟେପ୍, ଚେନ୍ ଲେଭଲ ଯନ୍ତ୍ର କିଣା, ପିଅନ ଓ କିରାଣୀ ପୋଷ୍ଟିଂ ମଧ୍ୟ କରାଇବାକୁ ପଡ଼ିଲା।

ଜୁଲାଇ ଓ ଅଗଷ୍ଟ ଦୁଇମାସ ମଧ୍ୟରେ ଅଫିସ୍‌କୁ ସଜାଡ଼ି ଦେବା ପରେ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ବିଜୟାନନ୍ଦ ତ୍ରିପାଠୀଙ୍କୁ ଯାଇ ପଚାରିଲି, ମୁଁ ବର୍ତ୍ତମାନ କ'ଣ କରିବ ?" ସେ କହିଲେ, ଓଭରସିଅର ତ ପୋଷ୍ଟିଂ ହୋଇନାହାନ୍ତି, ପୋଷ୍ଟିଂ ହୁଅନ୍ତୁ ସର୍ଭେ କାମ ଆରମ୍ଭ ହେବ। ଏଥିରେ ମୋର ମନ ବୁଝିଲାନି। ମୁଁ କହିଲି ଓଭରସିୟର ନ ହେଲେ ମଧ୍ୟ ମୁଁ ନିଜେ ସର୍ଭେ କରିପାରିବି। ଆପଣ ମୋତେ ଅର୍ଡ଼ର ଦିଅନ୍ତୁ। ସେ ସଙ୍ଗେ ସଙ୍ଗେ ମଥାନ ପୋଲ ପ୍ରୋଜେକ୍ଟର ସର୍ଭେ ଏଷ୍ଟିମେଟ୍ ସୁପରିଟେଣ୍ଡିଂ ଇଞ୍ଜିନିୟରଙ୍କୁ ପଠାଇ ଦେଲେ ଓ ମୋତେ ସର୍ଭେ କରିବାକୁ ଅର୍ଡ଼ର ଦେଇଦେଲେ। ସଙ୍ଗେ ସଙ୍ଗେ ମୁଣ୍ଡଳିରୁ ଆଣିଥିବା ପିଅନ ଖେତରାକୁ ଧରି ସେପ୍ଟେମ୍ବର ମାସର ମଧ୍ୟ ଭାଗରେ ଚାଲିଲି ସର୍ଭେ କରିବାକୁ ମଥାନ ପୋଲା। ଏହା ଭିତରେ ଶ୍ରୀ କୈଳାସ ଚନ୍ଦ୍ର ରାଉତରାୟ ମୋ ସବଡିଭିଜନରେ ଜୁନିୟର ଇଞ୍ଜିନିୟର ଭାବେ ଯୋଗ ଦେଇଥାନ୍ତି। ଟିଟିଲାଗଡ଼ ଠାରୁ ପ୍ରାୟ ୧୨ କି.ମି. ଚାଲି ଚାଲି ଯାଇ ପହଞ୍ଚିଥିଲୁ ବିଜେପୁରରେ। ସେଠାରେ ଏକ କୋଠରୀ ବିଶିଷ୍ଟ ରେଷ୍ଟସେଡ୍ ହେଲା ଆମର ଆଶ୍ରୟସ୍ଥଳୀ। ଆମେ ଦୁଇଜଣ ଆୟକଟ ଓ ରିଜରଭଏର ସର୍ଭେରେ ଲାଗିଥାଉଁ,

ମଝିରେ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଆସି ଆମ ପ୍ରୋଗ୍ରେସ୍ ଦେଖି ସନ୍ତୋଷ ପ୍ରକାଶ କରିଥିଲେ ଓ ଗୋଟିଏ ପିକ୍‌ଅପ୍ ଭେନ୍ ପଠାଇ ଦେଇଥିଲେ। ଗାଡ଼ିଟିଏ ମିଳିବାରୁ ଆମେ ଖୁବ୍ ଶୀଘ୍ର ସର୍ଭେ ସାରିଦେଲୁ। ୧୯୫୮ ମସିହା ଡିସେମ୍ବର ମାସର ମଧ୍ୟ ଭାଗରେ ପଡ଼ିଲା, ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ବାଞ୍ଛାନିଧି ସାହୁଙ୍କର ଇନ୍‌ସପେକସନ୍। ତାଙ୍କ ନାମ ଶୁଣିଲେ ଆସିଷ୍ଟାଣ୍ଟ ଇଞ୍ଜିନିୟର ଓ ଓଭରସିୟରଙ୍କ ମନରେ ଶଙ୍କା ଜାତ ହୁଏ। ମାଥାନପୋଲା ଡେମସାଇଟ୍ ଦେଖିଯିବା ପରେ ବେଲଗାଁ ଡାକ ବଙ୍ଗଳାରେ ତାଙ୍କୁ କଣ୍ଟୁର ମେପ୍‌ତକ ଦେଖାଇ ବୁଝାଇଲି। ସେ ଆଶ୍ଚର୍ଯ୍ୟ ହୋଇ ତ୍ରିପାଠୀ ସାହେବଙ୍କୁ ପଚାରିଲେ ଏଠାରେ ତ ଓଭରସିୟର ପୋଷ୍ଟିଂ ହୋଇନାହାନ୍ତି। ଏତେ ସର୍ଭେ କାର୍ଯ୍ୟ ହେଲା କିପରି ? ସଙ୍ଗେ ସଙ୍ଗେ ବିଜୟାନନ୍ଦବାବୁ କହିଲେ ଏ କାର୍ଯ୍ୟ ଏସ.ଡ଼ି.ଓ ନିଜେ ଓ ଜଣେ ଜୁନିୟର ଇଞ୍ଜିନିୟର ମିଶି କରିଛନ୍ତି। ସେ ଆଶ୍ଚର୍ଯ୍ୟ ହୋଇଗଲେ। ତ୍ରିପାଠୀ ସାହେବଙ୍କୁ କହିଲେ He is wasted here। ସେ ଫେରିବାର ୪ ଦିନ ପରେ ନୟାଗଡ଼ ଇରିଗେସନ୍ ସବଡ଼ିଭିଜନ (ଯାହା ଅଧିନରେ ବୁଢ଼ା ବୁଢ଼ିଆଣୀ - ମଧ୍ୟମ ଜଳସେଚନ ଯୋଜନା କାର୍ଯ୍ୟକାରୀ ହେବାକୁ ଯାଉଥାଏ) କୁ ମୋର ପୋଷ୍ଟିଂ ଅର୍ଡ଼ର ପାଇଲି। ବଲାଙ୍ଗିରରେ ଅବସ୍ଥାନମାତ୍ର ୫ମାସ ହୋଇଥିଲେ ମଧ୍ୟ ଏହା ଏକ ଆନନ୍ଦଦାୟକ ସମୟ ଥିଲା। ସେହି ୫ ମାସ ସମୟ ମଧ୍ୟରେ ମୁଁ ବଲାଙ୍ଗୀରର ଅଧିକାଂଶ ପ୍ରସ୍ତାବିତ ଜଳସେଚନ ଯୋଜନା ଦେଖିବାର ସୁଯୋଗ ପାଇଥିଲି। ଗାଇସିଲେଟ୍ ଠାରେ ପରବର୍ତ୍ତୀ କାଳରେ ନିର୍ମିତ ବେରେଜର ପ୍ରଥମ ପରିକଳ୍ପନା କରିବାର ଗୌରବ ମୁଁ ଲାଭ କରିଥିଲି। ପରବର୍ତ୍ତୀ କାଳରେ ବଲାଙ୍ଗୀର ଜିଲ୍ଲାର ଆର.ଇ.ଓ. ଏକଜିକ୍ୟୁଟିଭ୍ ଇଞ୍ଜିନିୟର ହିସାବରେ ମୋର ପହିଲି ସ୍ୱପ୍ନର ତାଜମହଲ ମଥାନ୍‌ପୋଲା ନିର୍ମାଣ କରିବାର ସୁଯୋଗ ପାଇଥିଲି।

ଦିନ ସାରା ସର୍ଭେ କଲାପରେ ରାତ୍ରିରେ ବିଜେପୁର ଗ୍ରାମର ଅଧିବାସୀ ମାନଙ୍କର ମନଖୋଲା ଗୀତ, ଅତ୍ୟନ୍ତ ଆନନ୍ଦ ଦିଏ। ମଝିରେ ମଝିରେ ଶୀକାର କରିବାକୁ ଯିବାର ସୁଯୋଗ ମିଳେ। ଯଦିଓ ମୁଁ ନିଜେ ଶୀକାରୀ ନୁହେଁ, ଅମା ଅନ୍ଧକାର ରାତ୍ରିରେ ବ୍ୟାଘ୍ରର ଗର୍ଜନ ମଧ୍ୟରୁ ଆଲୁଅ ପକାଇ ମିରିଗ ଓ ବାରହା ଅନ୍ୱେଷଣ ଅତ୍ୟନ୍ତ ରୋମାଞ୍ଚକର। ସେତେବେଳେ ମାଥାନପୋଲା ବନ୍ଧର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ଘନଜଙ୍ଗଲରେ ପରିପୂର୍ଣ୍ଣ ଥାଏ। ଦିନବେଳେ ମଣିଷଖିଆ ବ୍ୟାଘ୍ରର ଗର୍ଜନ ଶୁଣିବାକୁ

ମିଳେ। ଲେଭଲ୍ ନେବା ସମୟରେ ଦୁଇଜଣ ଖଲାସୀ ଟାଙ୍ଗିଆ ଧରି ଠିଆ ହୋଇଥାନ୍ତି। ଟିକିଏ ଖସ୍ ଖସ୍ ଶବ୍ଦ ହେଲେ, ଟାଙ୍ଗିଆର ସଦ୍‌ବ୍ୟବହାର ପାଇଁ ପ୍ରସ୍ତୁତ ହୋଇଥାନ୍ତି। ଏଭଳି ବିପଦଶଙ୍କୁଳ ପ୍ରୋଜେକ୍ଟର ସର୍ଭେ କରି, ପରବର୍ତ୍ତୀ କାଳରେ ତାର ନିର୍ମାଣ ଶେଷ କରି ୧୨୦୦ ହେକ୍ଟର ଜମିକୁ ଦୋ ଫସଲି ପରିବାର ଗୌରବ ମୋତେ ମିଳିଥିଲା। ଏବେ ଟିଟିଲାଗଡ଼ ବେଲଗାଁ ରାସ୍ତା ଦେଇଯିବା ବେଳେ, ଚିର ମରୁଡ଼ି ପ୍ରପୀଡ଼ିତ ଏ ଅଞ୍ଚଳଟିର ସବୁଜିମା ଦେଖିଲେ ମୋର ଛାତି କୁଣ୍ଢେମୋଟ ହୋଇଯାଏ। ମନରେ ଆସେ ଗଭୀର ଆତ୍ମସନ୍ତୋଷ। ଏହା ଜଣେ ଇରିଗେସନ୍ ଇଞ୍ଜିନିୟରଙ୍କ ଜୀବନରେ ସାର୍ଥକତା।

ସ୍ୱଳ୍ପ ରହଣିକାଳ ମଧ୍ୟରେ ମୁଁ ଯେଉଁ ବନ୍ଧୁମାନଙ୍କ ସମ୍ପର୍କରେ ଆସିଥିଲି ସେମାନଙ୍କ ମଧ୍ୟରେ ମୋର ଅଗ୍ରଜ ତୁଲ୍ୟ ଇଞ୍ଜିନିୟର ନିମାଇ ଚରଣ ପାଣି ଓ ମୂରଲିଧର ମେହେର ପ୍ରଧାନ। ଚାକିରି ଜୀବନର ପହିଲି ପାହାଚରେ ପଦାର୍ପଣ ସମୟରେ ନିମାଇବାବୁ ଜୀବନ ଗଢ଼ିବା ପାଇଁ ଓ ଇଞ୍ଜିନିୟରିଂ ପ୍ରେଫେସନ୍‌ରେ ସୁନାମ ଅର୍ଜନ ପାଇଁ ପ୍ରଥମ ପଥ ପ୍ରଦର୍ଶକ ହୋଇ ରହିଯାଇଛନ୍ତି। ସତେ ଯେପରି ପ୍ରଥମ ଦର୍ଶନରୁ ମାନସିକ ସ୍ତରରେ ଆମର ଏକ ନିବିଡ଼ ବନ୍ଧନ ହୋଇଯାଇଛି। ୰ ମୂରଲୀଧର ମେହେରଙ୍କ ଘର ତରଭା ଗ୍ରାମରେ। ପାଠପଢ଼ା ସରିବା ପରେ ସେ ତାଙ୍କର ବ୍ୟବସାୟିକ ଜୀବନ ଆରମ୍ଭ କରିଥାଆନ୍ତି। ଅଳ୍ପ କେତେଦିନ ପରିଚୟ ଫଳରେ ସେ ମୋ ସହ ଓ କୈଳାସବାବୁଙ୍କ ସହିତ ଏତେ ନିବିଡ଼ ହୋଇପଡ଼ିଥିଲେ ଯେ ପ୍ରାୟ ପ୍ରତିଦିନ ୨/୩ ଘଣ୍ଟା ସମୟ ଆମ ସହିତ କଟାନ୍ତି। ବଲାଙ୍ଗୀରରୁ ବିଦାୟ ନେବା ଦିନ ଛଳ ଛଳ ଆଖିରେ ସେ ପଚାରିଲେ, "ଏତେଦୂରକୁ ଚାଲିଯାଉଛନ୍ତି। ଆଉ କେବେ ଦେଖାହେବ ?" ଭଗବାନ ଏହି ବିଦାୟକୁ ଅନ୍ତିମ ବିଦାୟରେ ପରିଣତ କରିଦେଲେ, ମୋର ବଲାଙ୍ଗୀର ଛାଡ଼ିବାର ଅଳ୍ପଦିନ ପରେ ଗୋଟିଏ ଜିପ୍ ଏକ୍ସିଡ଼େଣ୍ଟରେ ସେ ଚିରଦିନ ପାଇଁ ବିଦାୟ ନେଇଗଲେ, କିନ୍ତୁ ତାଙ୍କର ସ୍ମୃତି ଚିରଦିନ ପାଇଁ ଅଲିଭା ହୋଇ ରହିଗଲା ମୋ ହୃଦୟ ପଟରେ।



## ନବମ ପରିଚ୍ଛେଦ

# ବିବାହ ବନ୍ଧନରେ ମୁକ୍ତଆକାଶର ପକ୍ଷୀ

୩ଟି ଭଉଣୀଙ୍କ ପରେ ମୋର ଜନ୍ମ। ଇଞ୍ଜିନିୟରିଂ ପାଶ୍ କରିବା ବେଳକୁ ବାପାଙ୍କୁ ୬୫ ବର୍ଷ ବୟସ ହୋଇଗଲାଣି। ପୁଅ ପାଶ୍ କରି ଋକିରି କଲାମାତ୍ରେ ତାଙ୍କୁ ବିବାହ ଦେବାକୁ ସବୁ ବାପା ମାଙ୍କ ଆଗ୍ରହ। ପ୍ରସ୍ତାବରେ ମଧ୍ୟ ଅଭାବ ନାହିଁ। ପୁଅ ଇଞ୍ଜିନିୟର। ଓଡ଼ିଶାରେ ଇଞ୍ଜିନିୟରିଂ କଲେଜ ନଥାଏ। ଇଞ୍ଜିନିୟରଙ୍କ ସଂଖ୍ୟା ହାତ ଆଙ୍ଗୁଳିରେ ଗଣି ଦେଇହେବ। ପ୍ରସ୍ତାବ ଉପରେ ପ୍ରସ୍ତାବ ଜମା ହେଇଗଲା। ମୋର ଗୋଟିଏ ସର୍ତ୍ତ। ଯୌତୁକ ଯେପରି କୌଣସି ପ୍ରସ୍ତାବର ପ୍ରତିବନ୍ଧକ ନ ହୁଏ। ସମ୍ଭ୍ରାନ୍ତ ପରିବାରରୁ ଝିଅଟିଏ ଆସିବ। ସେ ସୁଶ୍ରୀ ସୁଶିକ୍ଷିତା ହୋଇଥିବ। ଯୌତୁକ ଲୋଭରେ କୌଣସି ଆଡ଼କୁ ବାପା ଯେପରି ନ ଢଳନ୍ତି ଏହା ଥିଲା ବାପାଙ୍କୁ ମୋର ଅନୁରୋଧ। ଅନେକ ଆଡୁ ପ୍ରସ୍ତାବ ଆସିଲା। ଶିକ୍ଷା ପାଇଁ ଯେଭଳି କଣ୍ଟକମୟ ପଥ ଅତିକ୍ରମ କରିବାକୁ ପଡ଼ିଥିଲା ବିଭାଘର ସ୍ଥିର ହେବା ପାଇଁ କମ ଜଟିଳ ପରିସ୍ଥିତିରେ ସମ୍ମୁଖୀନ ହେବାକୁ ପଡ଼ିନାହିଁ।

ଭଦ୍ରକରୁ ଗୋଟିଏ ପ୍ରସ୍ତାବ ଆସିଲା, ଭାବିଲି ମୁଁ ତ ସେଠାରେ ଛାତ୍ର ଥିଲି, ତେଣୁ ସୁବିଧାରେ ସମସ୍ତଙ୍କ ଅଗୋଚରରେ ଝିଅଟିକୁ ଦେଖିଦେଇ ନିଷତ୍ତି ନେବି। କିନ୍ତୁ ଏହା ଭିତରେ ଭଦ୍ରକରେ ମୋର ନାମ ହୋଇଯାଇଛି ବୋଲି ମୁଁ ଜାଣି ନଥିଲି। ନିଜ ଗୋଡ଼ରେ ଛିଡ଼ାହୋଇ ବାଗୁରାଇ ହାଇସ୍କୁଲର ଜଣେ ଛାତ୍ର ଇଞ୍ଜିନିୟର ହୋଇପାରିଛି ବୋଲି ସମସ୍ତଙ୍କ ମୁହଁରେ ମୋର ପ୍ରଶଂସା। ଜଣେ ବନ୍ଧୁଙ୍କ ସହାୟତାରେ ଝିଅଟିକୁ ଦେଖିବାକୁ ଗଲି। ଭାବିଲି ସେହିଦିନ ରାତିରେ ଫେରିଆସିବି। କିନ୍ତୁ ସନ୍ଧ୍ୟାବେଳକୁ ଦେଖିଲି ମୋର ବନ୍ଧୁ ଓ ପୂର୍ବତନ ଶିକ୍ଷକମାନେ ଆଉ ୩/୪ଟି ପ୍ରସ୍ତାବ ଧରି ଉପସ୍ଥିତ। ଯେତେ ନାହିଁ କଲେ ମଧ୍ୟ ମାନୁ ନାହାନ୍ତି। ମୋତେ ଏକ ପ୍ରକାର ବାଧ୍ୟ କରି ସେମାନେ କେତେ ଗୁଡ଼ିଏ ଝିଅ ଦେଖାଇ ଦେଲେ ଓ ନାନା କଥା କହି ମୋର Brain Wash କରି ଗୋଟିଏ ପ୍ରସ୍ତାବରେ ରାଜି କରାଇ ଦେଲେ। କିଶୋରୀ ବାବୁ ଘରେ ନଥିଲେ। ତେଣୁ ଏଭଳି ଏକ ଜଟିଳ ପରିସ୍ଥିତିରେ ତାଙ୍କର ସୁଚିନ୍ତିତ

ଉପଦେଶ ନେଇ ପାରି ନଥିବାରୁ ମନଟା ଭଲ ଲାଗିଲାନି। ତେଣୁ ପୁଣିଥରେ ଗୋଟିଏ ସପ୍ତାହ ପରେ ତାଙ୍କୁ ଦେଖା କରି ଗତ ସପ୍ତାହରେ ଭଦ୍ରକ ରହଣି କାଳ ମଧ୍ୟରେ ମୋତେ କିପରି ସାଙ୍ଗମାନେ ଓ ଶିକ୍ଷକମାନେ ନାନା ଭାବେ ପ୍ରଭାବିତ କରି ଗୋଟିଏ ପ୍ରସ୍ତାବରେ ରାଜି କରାଇ ଦେଇଛନ୍ତି, ତାହା ବୁଝାଇ କହିଲି, ପ୍ରସ୍ତାବଟିରେ ତାଙ୍କର ଆଶୀର୍ବାଦ ଓ ଅନୁମୋଦନର ଅଭାବ ଲକ୍ଷ୍ୟ କଲି। ତାଙ୍କର ଆର୍ଶୀବାଦ ନ ପାଇଲେ ମୁଁ କେବେ ବିବାହ କରିବିନି ସେ ଜାଣନ୍ତି। ସେ ନିଜେ ବ୍ରହ୍ମଚାରୀ। କୌଣସି ବିଭାଘର ବିଷୟରେ ସେ କେବେ ମୁଣ୍ଡ ଖେଳାନ୍ତି ନି। କିନ୍ତୁ ମୁଁ ଥିଲି ତାଙ୍କ ପାଇଁ ବ୍ୟତିକ୍ରମ। ତେଣୁ ଆଉ କେଉଁଠି ପ୍ରସ୍ତାବ ଅଛି ପଚାରିଲେ। ମୁଁ ସବୁ ଗୁଡ଼ିକ ତାଙ୍କ ଆଗରେ କହିପକାଇଲି। ସେ ସବୁ ଶୁଣି କହିଲେ ଦୟାନିଧି ଖୁଣ୍ଟିଆଙ୍କ ଝିଅଟି ତୋ ପାଇଁ ଭଲ ହେବ।

ଏହା ମଧ୍ୟରେ ମୋର ବଲାଙ୍ଗିର ଜିଲାକୁ ବଦଳି ହୋଇସାରିଥାଏ। ତେଣୁ ବିବାହ ପ୍ରସ୍ତାବରେ ଆପାତତଃ ପୂର୍ଣ୍ଣଛେଦ ପଡ଼ି ରହିଲା।

ଜୀବନ ସାରା ଦେଖିଆସିଛି କିଶୋରୀ ବାବୁଙ୍କ ମୁଖ ନିସୃତବାଣୀ କେବେ ଅନ୍ୟଥା ହୋଇନି। ଶଙ୍କର୍ଷଣ ବାବୁ ଭଦ୍ରକରେ ସବ୍‌ଇନ୍ସପେକ୍ଟର ଥିବା ସମୟରେ ଦୟାନିଧି ଖୁଣ୍ଟିଆଙ୍କୁ ଚିହ୍ନି ଥିଲେ। ସେ ପ୍ରସ୍ତାବଟି ପ୍ରତି ଅଧିକ ଆଗ୍ରହ ଦେଖାଇଲେ। ଶଙ୍କର୍ଷଣ ବାବୁଙ୍କର କଥାଅନୁସାରେ ମୋର ବନ୍ଧୁ ବିନୋଦବିହାରୀ ପଲାଇ ଏ ପ୍ରସ୍ତାବଟି ନେଇ ଅଗ୍ରସର ହେଲେ। ତାଙ୍କର ବନ୍ଧୁ ବଂଶୀଧର ଖୁଣ୍ଟିଆଙ୍କ ଦ୍ୱିତୀୟ ଭଉଣୀ ଉମା ସହ ମୋର ବିବାହ ପ୍ରସ୍ତାବ ଆଗେଇବାରେ ଲାଗିଲା। କିନ୍ତୁ ଏଠାରେ ମଧ ଗୋଟିଏ ବିରାଟ ପ୍ରତିବନ୍ଧକ ଦେଖାଦେଲା। ଉମାଙ୍କର ବଡ଼ ଭଉଣୀ ରମା ଅପା ଯେ କି ମୋ ସମବୟସୀ, ତାଙ୍କର ସେତେବେଳକୁ ବିଭାଘର ହୋଇ ନଥାଏ। ବଡ଼ ଭଉଣୀର ବିଭାଘର ନ ହେଲେ ସାନ ଭଉଣୀର ବିଭାଘର କିଭଳି ସମ୍ଭବ? ଏହିଭଳି ଦ୍ୱନ୍ଦ୍ୱ ମଧ୍ୟରେ ଆଲୋଚନା ପର୍ଯ୍ୟାଲୋଚନା ଚାଲିଲା। ପ୍ରାୟ ୬ ମାସ। ନଦୀ ନାଳ ପରିବେଷ୍ଟିତ ଗମନାଗମନର ସୁବିଧା ନଥିବା ନିପଟ ମଫସଲରେ ଆମର ଘର। ଘରଟି ପୁରୁଣାକାଳିଆ ଏକ ବିରାଟ ଖଞ୍ଜା। ଆମ ଗ୍ରାମକୁ ଆସିବାକୁ ହେଲେ ଖରାଦିନେ କେବଳ ବାସୁଦେବପୁର ପର୍ଯ୍ୟନ୍ତ ଆସିବା ସମ୍ଭବ। ଅନ୍ୟ ସମୟରେ ଜଗନ୍ନାଥ ସଡ଼କର ଜାମୁଝାଡ଼ିଠାରେ ବସ୍‌ରୁ ଓହ୍ଲାଇ ସେଠାରୁ ଶଗଡ଼ କିମ୍ବା ସବାରୀ ସାହାଯ୍ୟରେ ୨୦ କି.ମି. ପଥ ଅତିକ୍ରମ କଲେ ଗ୍ରାମରେ ପହଞ୍ଚିବା ସମ୍ଭବ। ବର୍ଷାଦିନେ

ବାସୁଦେବପୁର ଠାରୁ ଆମ ଗ୍ରାମ ଏକ ପ୍ରକାର ବିଚ୍ଛିନ୍ନ ହୋଇଯାଏ। ବାସୁଦେବପୁର ଠାରେ ଏକ ନାମକୁମାତ୍ର ଡାକ୍ତରଖାନା ଥାଏ। ତାହା ପୁଣି ଘରଠାରୁ ୭ କି.ମି. ଦୂର। ଏଭଳି କି ଗ୍ରାମ ମଧ୍ୟରେ ଯାତାୟତରେ ମଧ୍ୟ ସୁବିଧା ନଥାଏ ଗୋଟାଏ ସାହିର୍ ଅନ୍ୟ ସାହିକୁ ଯାତାୟତ କରିବାକୁ ହେଲେ ଗୋଟାଏ ଗୋହିରୀ ଅତିକ୍ରମ କରିବାକୁ ହୁଏ। ଏଭଳି ଏକ ଗ୍ରାମକୁ ବୋହୂ ହୋଇ ଆସିବା ପାଇଁ ଜଣେ ଆଧୁନିକା ଶିକ୍ଷିତା ଝିଅର ଯଥେଷ୍ଟ ମାନସିକ ଦୃଢ଼ତା ଥିବା ଆବଶ୍ୟକ। ପୁଣି ଏକ ବିରାଟ ଏକାନ୍ନବର୍ତ୍ତୀ ପରିବାର। ଶାଶୁ ଶ୍ୱଶୁର, ଖୁଡ଼ିଶାଶୁ, ପିଉସୀ ଶାଶୁ, ଯା, ଦେଢ଼ଶୁର, ଦେବର ମିଶି ୧୪ ଜଣ। ବହୁ ଦେବ ଦେବୀ ପୂଜା ପରେ, ପରିଣତ ବୟସରେ ମୋତେ ପାଇଛନ୍ତି, ବାପା ଓ ବୋଉ। ସେମାନଙ୍କର ଇଚ୍ଛା ଏଭଳି ବୋହୂଟିଏ ଆସିବ, ଯେ ସମସ୍ତଙ୍କର ମନ ନେଇ ଚଳିପାରିବ। ଭାଇମାନଙ୍କର ଇଚ୍ଛା, ଯେଉଁ ଝିଅଟି ଏ ଘରକୁ ଆସିବ ସେ ଯେଭଳି ତାଙ୍କ ଭାଇଙ୍କୁ ତାଙ୍କ ଠାରୁ ଛଡ଼ାଇ ନ ନିଏ। ଭଉଣୀ ମାନଙ୍କର ଇଚ୍ଛା, ତାଙ୍କର ସୁନାନାକୀ ଭାଉଜ ତାଙ୍କୁ ଯଥେଷ୍ଟ ଆଦର କରିବା ସଙ୍ଗେ ସଙ୍ଗେ ପ୍ରତିବର୍ଷ ପର୍ବପର୍ବାଣୀରେ ତାଙ୍କୁ ଉପଯୁକ୍ତ ଉପହାର ଦେବା ପାଇଁ ଭାଇଙ୍କୁ ପ୍ରେରଣା ଦେବ।

ଯେତେବେଳେ ଭଦ୍ରକ ହରିପୁର ଖୁଣ୍ଟିଆ ଘରେ ପ୍ରସ୍ତାବଟି ଆଗେଇଲା, ଏହା ସମସ୍ତଙ୍କ ମନକୁ ପାଇଲା। ବେଶୀ ଆଗ୍ରହ ପ୍ରକାଶ କଲେ ବାପା ବୋଉ, ଶଙ୍କର୍ଷଣ ବାବୁ, କାଶୀନାଥ ଦାଶ ଶର୍ମା, ଭିଣେଇ ନକୁଳ ବିଶ୍ୱାଳ ଓ ରାଧାକୃଷ୍ଣ ନାୟକ। ପରିବାର ଦୁଇଟି ମଧ୍ୟରେ ସାମଞ୍ଜସ୍ୟ ରହିଛି। ଝିଅଟି ଶିକ୍ଷିତା, ଗୌରବର୍ଣ୍ଣା, ତନୁ ପାତଳୀ। ଭାଇ ଓ ଭଉଣୀମାନେ ଶିକ୍ଷିତ ଓ ଭଦ୍ର। କିଶୋରୀ ବାବୁଙ୍କ ଆର୍ଶୀବାଦ ଏହି ଝିଅ ପାଇଁ ମିଳିଛି। ଆଉ କ'ଣ ଦରକାର? ପ୍ରଜାପତି ଘଟସୂତ୍ର। ଏହା ଭିତରେ ୧୯୫୮ ଡିସେମ୍ବର ମାସରେ ମୋର ବଲାଙ୍ଗିରରୁ ନୟାଗଡ଼କୁ ବଦଳି ହୋଇସାରିଥାଏ। ନୟାଗଡ଼ ଯିବା ବାଟରେ ବିନୋଦବାବୁ ମୋତେ ବଂଶୀଭାଇଙ୍କ ଘରକୁ ନେଇଗଲେ। ସାଙ୍ଗରେ ଯାଇଥିଲେ ମୋର କକା କାଶୀନାଥ ଦାଶଶର୍ମା। ସେ ଜଣେ ସ୍ନେହୀ ପରୋପକାରୀ ମଣିଷ। ବେଦ କର୍ମକାଣ୍ଡରେ ଶାସ୍ତ୍ରୀ ଡିଗ୍ରୀ ପାଇଥିଲେ ପୁରୀ ସଂସ୍କୃତ ମହାବିଦ୍ୟାଳୟରୁ। ଇରମ ଗୁଳିକାଣ୍ଡରେ ତାଙ୍କର ବାମହସ୍ତଟି ଅକାମି ହୋଇଯାଇଥିଲା। ଆଧାତ୍ମିକ ଓ ସାମାଜିକ ଦୃଷ୍ଟିକୋଣରୁ ପ୍ରସ୍ତାବଟିକୁ ବିଚାର କରିବାକୁ

ସେ ଯାଇଥିଲେ। ୧୯୫୯ ଜାନୁୟାରୀ ମାସ ୩ ତାରିଖ ଦିନ ସୁ-ପ୍ରଭାତରେ ଆମେ ପହଞ୍ଚିଲୁ ତାଙ୍କ ଘରେ। କଥାବାର୍ତ୍ତାରୁ ଜାଣିଲି ଆମ ଘର ଭଳି ତାଙ୍କ ପରିବାରଟି ଏକ ସମ୍ଭ୍ରାନ୍ତ ପରିବାର। ବାପା ଶିକ୍ଷକ। ସବୁପିଲା ଅଧ୍ୟବସାୟ ବଳରେ ଉପରକୁ ଉଠିଛନ୍ତି। ଏହି କଥାବାର୍ତ୍ତା ମଝିରେ ଗୋଟିଏ ଗୌରବର୍ଣ୍ଣ ତନୁ ପାତଳୀ ଝିଅ ଜଳଖିଆ ପ୍ଲେଟ୍ ଧରି ଉପସ୍ଥିତ ହେଲା। ତାକୁ ଦେଖିବା ମାତ୍ରେ ମୋର ମନେ ହେଲା ବହୁଦିନରୁ ଖୋଜୁଥିବା ସାଥୀଟି ମୋ ଆଗରେ ଠିଆ ହୋଇଛି। ବିଧି ରକ୍ଷା ପାଇଁ ଗୋଟିଏ ମିଠା, ୨/୩ ଖଣ୍ଡ ଫଳ ଗ୍ରହଣ କଲି। ବାଟରେ କକା କହିଲେ ସାମାଜିକ ଓ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ପ୍ରସ୍ତାବଟି ଅତି ଉତ୍ତମ। କିନ୍ତୁ ଝିଅଟି ଅତିମାତ୍ରାରେ ପତଳା। ମୁଁ କହିଲି ଝିଅ ବିଭାଘର ପରେ ବଦଳି ଯାଆନ୍ତି। ଏତିକିରୁ ସେ ମୋ ମନ କଥା ଜାଣି ଗଲେ। ତାପରେ ଅଳ୍ପ ସମୟ ଶଙ୍କର୍ଷଣ ବାବୁଙ୍କ ସହ ଆଲୋଚନା ପରେ ଆମର ସ୍ୱୀକୃତି ତାଙ୍କୁ ଜଣାଇ ଦିଆଗଲା। ପାଖେଇ ଆସିଲା ସେଇ ସ୍ୱପ୍ନ ମନ୍ଦିର, ଦିନଟି ଯାହା ଜୀବନରେ ଥରଟିଏ ଆସେ।

୧୯୫୯ ମସିହା ଫେବୃୟାରୀ ୨୨ ତାରିଖ ମାଘ ପୂର୍ଣ୍ଣିମା ଦିନ ବିଭାଘର ଦିନ ଧାର୍ଯ୍ୟ, ୨୧ ତାରିଖ ରାତିରୁ ଗାଁରୁ ବାହାରିଲେ ବରଯାତ୍ରୀ। ସେତେବେଳେ ଗାଁରେ ନ ଥିଲା ବେଣ୍ଡପାର୍ଟି, ଗ୍ରାମ୍ୟ ବାଦ୍ୟକାର ମହୁରିଆଙ୍କ ମହୁରୀ ଶବ୍ଦ ସଂଗେ ମିଶିଥାଏ ତେଲିଙ୍ଗୀ ବାଜାର ଉନ୍ମାଦନା ଓ ବାଣ ଫୁଟାଇ ବାସୁଦେବପୁର ଠାରୁ ବସ୍‌ରେ ଭଦ୍ରକ ଆସି ସେଠାରୁ ଟ୍ରେନ୍ ଯୋଗେ ଭୁବନେଶ୍ୱର ପହଞ୍ଚିବା ବେଳକୁ ସନ୍ଧ୍ୟା ଆଗତ ପ୍ରାୟ। ଆମ ନିଜର ଭାଇ ଓ ବନ୍ଧୁଙ୍କୁ ଛାଡ଼ି ଗ୍ରାମରୁ କେତେକ ଭଦ୍ରବ୍ୟକ୍ତି ମଧ୍ୟ ଆସିଥିଲେ। ତା ବ୍ୟତୀତ ମୋର ପ୍ରଥମ କର୍ମସ୍ଥଳୀ ମୁଣ୍ଡଳି ଓ ବର୍ତ୍ତମାନ କର୍ମସ୍ଥଳୀ ନୟାଗଡ଼ରୁ ସବୁ ଆସିଷ୍ଟାଣ୍ଟ ଇଞ୍ଜିନିୟର ଓଭରସିୟର କିରାଣୀ ଓ ପିଅନ ଏହି ବିଭାଘରରେ ଯୋଗ ଦେଇଥିଲେ। ଅତି ସୁସ୍ଥ ଓ ଶାନ୍ତ ବାତାବରଣ ମଧ୍ୟରେ ବିଭାଘର କାର୍ଯ୍ୟ ସମ୍ପୂର୍ଣ୍ଣ ହେଲା। ବିଶେଷ କରି ଆମ ସହିତ ଆସିଥିବା ମୋର କକା କାଶୀନାଥ ଦାଶ ଶର୍ମା ଯେ କି ବେଦ ଓ କର୍ମକାଣ୍ଡରେ ସାହିତ୍ୟାଚାର୍ଯ୍ୟ, ବିବାହ କର୍ମ ବେଳେ ଯେଉଳି ବିବାହ ମନ୍ତ୍ର ଉଚ୍ଚାରଣ ପୂର୍ବକ କର୍ମ ସଂପନ୍ନ କଲେ ତାହା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଥିଲା। ବିଭାଘର ଉପଲକ୍ଷେ ବନ୍ଧୁ ବିନୋଦ ବିହାରୀ ପଲାଇ ଲେଖିଥିବା କବିତାଟି ଅତ୍ୟନ୍ତ ମନ ମୁଗ୍ଧକର ଥିଲା। ମୋର ତିନି ଜଣ ଅନ୍ତରଙ୍ଗ ବନ୍ଧୁଙ୍କର

ନବବିବାହିତ ଦମ୍ପତିଙ୍କୁ ଜୀବନଯାତ୍ରା ପାଇଁ ଯେଉଁ ଆହ୍ୱାନ ଦେଇଥିଲେ, ତାହା ମୋ ଭଳି ଅନେକଙ୍କର ପଥ ପ୍ରଦର୍ଶକ ହେଉ, ଏହା ହିଁ କାମନା। ସେହି କବିତାଟିର ନକଲ ନିମ୍ନରେ ଦେଲି:

## ଭାସ୍କର ଓ ଉମାଙ୍କର ଶୁଭପରିଣୟ ଉପଲକ୍ଷେ

## ସ୍ମୃତି ଗୀତି

ସେଦିନ ଆଳାପ ସବୁ ମନେଅଛି -
କୈଶୋରର ପ୍ରାନ୍ତେ -
ତୁମେ ଯେବେ ଚାହିଁଥିଲ,
ମୁଗ୍ଧ ନେତ୍ରେ-
ନୀଳିମାକ୍ତ ବର୍ଣ୍ଣିଳ ଦିଗନ୍ତେ।
ମଳୟ ବଳୟଧାରେ ରଚିଥିଲା ସଙ୍ଗୀତ ମର୍ମର
ଝରଧାରା ଗତି ଛନ୍ଦେ ଜାଗିଥିଲା ସ୍ୱରର କଲ୍ଲୋଳ
ପାହାଡ଼ ଚରଣ ତଳେ ଦିଗହଜା ଏଣୀର ନୟନ
ପ୍ରଣୟୀ ସନ୍ଧାନେ ଯେବେ ହେଉଥିଲା ତ୍ରସ୍ତ, ଛନ ଛନ।
ସନ୍ଧ୍ୟାର ଶୀକର ସ୍ପର୍ଶେ
ଶ୍ୟାମଦୂର୍ବା ହସୁଥିଲା ଯେବେ
ଗୋପାଳ ବାଳକ ବଂଶୀ ମୂର୍ଚ୍ଛନାରେ
ତରୁଣୀଏ ତେବେ
ଛିନ୍ନ ଚିତ୍ତେ ଗଲା ଚାଲି ବହୁ ଦୂରେ
ଅଚିହ୍ନା ସେ ହାୟଃ
ମୂହର୍ତ୍ତକ ପାଇଁ କରି ତୁମକୁ ସେ
ସ୍ତବ୍ଧ ନିଃସହାୟଃ।
ତାପରେ ଶପଥ ନେଲ
ତୁମେ ବନ୍ଧୁ
ସେ ଶପଥ ଭୀମ ଭୟଙ୍କର
ମମତା ଦୁର୍ବଳ ପ୍ରାଣେ
ହାଣିବାକୁ କଠୋର କୁଠାର।

x x x

ଗିରିଗର୍ବ ଅଭିମାନ ଭାଙ୍ଗିଚୂରି
ଧୂଳିରେ ମିଶାଇ
ସାଗର ମିଳନଛନ୍ଦ – ତଟନୀର
ଅଚିରେ ତୁଟାଇ
ନିର୍ବିକାରେ ଜନପଦ ଜଳାଧାରେ
କରି ପରଣିତ
ସ୍ଥପତି ସାଜିଲ ତୁମେ ହେ ଭାସ୍କର
ମହା ଅବିନୀତ ।
ମମତା ବିମୁଖ ତୁମ ରୁଦ୍ର ମନ
କେ କରିଛି ଜୟ
କିଏ ସେ ଲାବଣ୍ୟମୟୀ 'ଉମା', ଗୌରୀ ?
କାହାର ବିଜୟ ?
ରୂପର ନା ତପସ୍ୟାର ?
କିଏ ସେ ଅପେକ୍ଷାମଣା ?
ହେଉ ଯାହା ତାଙ୍କ ପରିଚୟ
ସେ ଯେ କିନ୍ତୁ ନିଶ୍ଚୟ ଲଳନା
ଏଥିରେ ତ ନାହିଁଛି ସନ୍ଦେହ
କୁଣ୍ଠିତ ଚହାଣୀ ତଳେ ଯେବେ ତାଙ୍କ
ଜାଗିବ ସରମ
କର୍କଶ ଶିଳାର ଗୁଣ ତେଜି ବନ୍ଧୁ
ହୋଇବ ନରମ
ବେଦନାର ହସ ଯେବେ ଅଧରରେ
ଉଠୁଥିବ ଥରି
କବିଭାବେ ସେ ସ୍ପନ୍ଦନ ବୁକେ ତୁମ
ରଖିବ ଉଦ୍ଧରି
ବିରହ ନ ଦେବ ଦୀର୍ଘ
ବ୍ୟବଧାନ ନ କରିବ ଗୁରୁ
ତାଙ୍କ ଅଧିକାର ବନ୍ଧୁ
ମାନିନେବ ନିଜ ଅଧିକାରୁଁ ।

ବିନୋଦ, ନିର୍ମଳ, ହରିଶ ।

ତା'ପରଦିନ ସମସ୍ତଙ୍କ ଠାରୁ ଆଶୀର୍ବାଦ ନେଇ ବରକନ୍ୟା ଗୋଟିଏ କାରରେ ଓ ଅନ୍ୟମାନେ ଟ୍ରେନ୍ ଓ ବସ୍ ଯୋଗେ ଗ୍ରାମକୁ ଫେରିଲୁଁ। ପୁଣି ଗମେଇ ନଦୀଠାରୁ ଆରମ୍ଭ ହେଲା ସବାରୀ ପାଲିଙ୍କି ବାଦ୍ୟକାରମାନଙ୍କର ପଟୁଆର। ବାଦ୍ୟକାରମାନଙ୍କ ଗହଣରେ ବାଣଫୁଟାଇ ପାଲିଙ୍କିରେ ବସି ଖଣ୍ଡା ଧରି ବୀର ଦର୍ପରେ ବିବାହ ହେବାକୁ ଯିବା ଓ ବିବାହ ପର ଦିନ କନ୍ୟା ସହ ବାଦ୍ୟକାରଙ୍କ ଗହଣରେ ପ୍ରତ୍ୟାବର୍ତ୍ତନର ଆନନ୍ଦ, ପୁଷ୍ପ ସୁଶୋଭିତ କାର୍‌ରେ ଯିବାରେ ମିଳିବ କାହୁଁ? ବିବାହ ପରେ ଚତୁର୍ଥୀ ଭୋଜି। ଭୋଜି ଖାଇ ଗ୍ରାମବାସୀମାନେ ଆନନ୍ଦ ସାଙ୍ଗକୁ ସେମାନଙ୍କର ଯେଉଁ ଅନାବିଳ ଆନ୍ତରିକ ଆଶୀର୍ବାଦ, ତାହା ଆଜିର ଆମର ସହରି ସଭ୍ୟତାରେ ମିଳିବା କଷ୍ଟକର? ସେ ସମୟର ବିବାହରେ ଏତେ ଆଡ଼ମ୍ବର, ସାଜସଜ୍ଜା ନଥିଲା। କିନ୍ତୁ ନିମନ୍ତ୍ରିତ ଅତିଥିମାନଙ୍କର ଉପଯୁକ୍ତ ଚର୍ଚ୍ଚା ସହ ଭୂରି ଭୋଜନ ଦେବାର ବ୍ୟବସ୍ଥା ମଧ୍ୟରେ ରହିଥିଲା ନିଷ୍ଠା ଓ ଆନ୍ତରିକତା। ନିମନ୍ତ୍ରିତ ଗୁରୁଜନମାନେ ବରକନ୍ୟାଙ୍କୁ ଅନ୍ତରର ସହ ଆଶୀର୍ବାଦ କରୁଥିଲେ। ଆଉ ଗାଁର ଝିଅ, ବୋହୂ ମାନଙ୍କୁ ଖୁସି ଦେଖେ କିଏ? ଉମାକୁ ଦେଖିବାକୁ ପିମ୍ପୁଡ଼ି ଧାର ଭଳି ଝିଅ ବୋହୁଙ୍କର ଧାଡ଼ି ଛୁଟିଥାଏ। ସବୁରି ମୁହଁରେ ତାର ପ୍ରଶଂସା। ଭୀମ ନାୟକ ତାଡ଼କେଶ୍ୱରଙ୍କୁ ପୂଜା କରି ଯେ ଭଳି ଗୁଣବନ୍ତ ପୁଅ ପାଇଥିଲେ, ସେହିଭଳି ରୂପବତୀ, ଗୁଣବତୀ ବୋହୂଟିଏ ପାଇଲେ। ଏତେ ପାଠ ପଢ଼ିଛି, ସହରରେ ବଢ଼ିଛି। ଟିକିଏ ଗର୍ବ ନାହିଁ। ବଡ଼କୁ ଯଥାମାନ୍ୟ ଦେବାରେ ଓ ସାନଙ୍କୁ ସ୍ନେହ ଆଦର ଢାଳିଦେବାରେ ବୋହୂଟି ସଦା ତତ୍ପର । ମଫସଲି ସ୍ତ୍ରୀ ଲୋକଙ୍କୁ ଟିକିଏ ଘୃଣା ନାହିଁ। ସମସ୍ତଙ୍କୁ ଡାକି ହାକି ଆଦର କରି ବସାଉଛି। ଭାସ୍କରର ବାପା ମାଆ ବଡ଼ ଭାଗ୍ୟବାନ। ଯାହାର ମନ ଯେଡ଼େ ତାର ପ୍ରଭୁ ତେଡ଼େ। ଗ୍ରାମ୍ୟ ସରଳତାର ଏ ସବୁ ଥିଲା ଅତି ବାସ୍ତବ ମତାମତ।

ଏତ ଗଲା ଭାବପ୍ରବଣତାର ସମୟ। ତାପରେ ଆସିଲା ବାସ୍ତବ ଦୁନିଆ। ୮ ଦିନ ପରେ ଉମାକୁ ଧରି ଆସିଲି ମୋର କର୍ମକ୍ଷେତ୍ର ନୟାଗଡ଼କୁ। ସାଙ୍ଗରେ ଆସିଲେ ବୋଉ। ତାର ଅଳ୍ପଦିନ ପରେ ସାନଭାଇ ନିଶାକର ମଧ୍ୟ ଆସି ଆମ ସହିତ ରହିଲା। ମୋର ଦୁଇଭାଇ ପ୍ରଭାକର ଓ ନିଶାକର। ପ୍ରଭାକର ଅଳ୍ପ ଶିକ୍ଷା ପରେ କୃଷି କର୍ମରେ ନିଯୁକ୍ତ ହେଲା। ବଡ଼ ବାପାଙ୍କ ପୁଅ ପ୍ରାଣବନ୍ଧୁ କଲିକତାରେ ଦୁଧ ବ୍ୟବସାୟ

କରୁଥାନ୍ତି। ଦାଦାଙ୍କର ୩ ପୁଅ ବାଇଧର, ରଥ ଓ ମୂରଲୀ। ବାଇଧର ଭାଇ ମୋଠାରୁ ୨ ବର୍ଷ ବଡ଼ ଓ ରଥ ମୋ ଠାରୁ ବର୍ଷେ ସାନ। ସେ ଦୁଇ ଜଣ ମଧ୍ୟ ଋଷକୁ ନିଜର ଜୀବନର ପନ୍ଥା ଭାବେ ଗ୍ରହଣ କରିସାରିଥାନ୍ତି। ବାଇଧର ଭାଇ କିନ୍ତୁ ଧାନ ଚାଉଳର ବ୍ୟବସାୟ ଗାଁରେ କରୁଥାନ୍ତି। ମୂରଲୀ ଓ ନିଶାକରଙ୍କୁ ପାଠପଢ଼ାଇ କିଭଳି ମଣିଷ କରିବି ତାହା ମୋର ବଡ଼ ଚିନ୍ତାର ବିଷୟ ଥାଏ। ତେଣୁ ତ୍ରିଭାନ୍ଦ୍ରମରେ ପାଠ ପଢ଼ିବା ବେଳଠୁ ତାଙ୍କ ପଢ଼ା ବିଷୟରେ ମୁଁ ଯତ୍ନଶୀଳ ଥାଏ। କିନ୍ତୁ ଦୁର୍ଭାଗ୍ୟର କଥା ଏହା ଯେ ମୂରଲୀର ପାଠପଢ଼ା ପ୍ରତି ପ୍ରବଳ ଆଗ୍ରହ ସତ୍ତ୍ୱେ ସେ ବେଶୀ ଦୂର ଆଗେଇ ପାରୁ ନଥାଏ। ଶେଷରେ ମୋର କେତେକ ବନ୍ଧୁଙ୍କ ପରାମର୍ଶ କ୍ରମେ ତାକୁ ଆଇ.ଟି.ଆଇ. ପଢ଼ାଇ ତାର ଜୀବିକା ନିର୍ବାହର ଉପଯୁକ୍ତ ପନ୍ଥା ସ୍ଥିର କରିଦେଲି। ସେ ହୀରାକୁଦ ଆଇ.ଡ଼ି. ସି.ରେ ଜଣେ ପଦସ୍ଥ ଅଫିସର ଭାବେ ଚାକିରୀ କରି ଅବସର ନେଇଛି। କିନ୍ତୁ ନିଶାକର, ତା ପାଇଁ ମୋର କେତେ ଆଶା, କେତେ ସ୍ୱପ୍ନ। ପ୍ରଥମ ଋକିରି ଜୀବନ ମୁଣ୍ଡଳିରେ ପ୍ରଥମେ ତାକୁ ରଖି ପଢ଼ାଇଲି। ସେଠାରେ ହାଇସ୍କୁଲ ନଥିଲା, ନିଜେ ପଢ଼ାଏଁ, ଆଇ.ଏସ.ସି. ପଢୁଥିବା ସମୟରେ ଜଣେ କୃତି ଟିଉସନ ମାଷ୍ଟର ଭାବରେ ମୁଁ ନାମ ଅର୍ଜନ କରିସାରିଥାଏ। କିନ୍ତୁ ନିଶାକର ପାଖରେ ମୁଁ ହାରିଗଲି। ସେଠାରେ ସେ ପଢ଼ିଲାନି। ଭାବିଲି, ତା ପାଇଁ ଅଧିକ ପରିଶ୍ରମ କରି ଲାଭ ନାହିଁ, ତାକୁ ତା ବାଟରେ ଛାଡ଼ିଦେବି। କିନ୍ତୁ ବିବାହ ପରେ ତା ପାଇଁ ଜଣେ ସ୍ୱୟଂ ନିଯୁକ୍ତ ଆଡ୍‌ଭୋକେଟ୍ ଆସିଗଲେ। ସେ ଆଉ କେହି ନୁହେଁ। ମୋର ଜୀବନସାଥୀ ଉମା। ତାର ଜିଦ୍, ତୁମେ ପୂର୍ବ ନିଷ୍ପତ୍ତି ବଦଳାଅ। ତାକୁ ପାଖକୁ ନେଇ ଆସ। ଅନ୍ୟ ଭାଇ ମାନଙ୍କୁ ତ ପଢ଼ାଇବାରେ ସୁବିଧା ପାଇଲନି, ଅନ୍ତତଃ ଏ ଭାଇଟି ପଢୁ। ତାର ଇଚ୍ଛା ପୂରଣ କରିବାକୁ ତାକୁ ପାଖକୁ ଆଣି ନବମ ଶ୍ରେଣୀରେ ନାମ ଲେଖାଇଲି। ଘରେ ବୋଉ, ସ୍ତ୍ରୀ, ସାନ ଭାଇ ଓ ଜଣେ ପିଅନ, ଏଭଳି ହଠାତ୍ ବଡ଼ ପରିବାରଟିଏ ସୃଷ୍ଟି ହୋଇଗଲା। ଦରମା ମୋଟେ ୨୨୯ ଟଙ୍କା ଅବଶ୍ୟ ସେ ସମୟର ୨୨୯ ଟଙ୍କା ବର୍ତ୍ତମାନର ୨୦,୦୦୦ ଟଙ୍କା ସହ ସମାନ ହେବ। ଜଣେ ଉପଯୁକ୍ତ ସହଧର୍ମିଣୀ ଭଳି, ମୋ ସହିତ ହାତ ମିଳାଇ ଆଗେଇ ଆସିଲା ଉମା। ଆୟର ସେହି ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ସେ ଘରଚଳାଇ ନେଲା।

ସ୍ୱାଧୀନତା ପରେ ପୁରାତନ ଜମିଦାରୀ ପ୍ରଥା ଲୁପ୍ତ ହେବା ପାଇଁ ବିଲ୍ ଆଗତ ହୋଇଥାଏ। ପୁରାତନ ଜମିଦାରମାନେ ଭୂ-ସଂସ୍କାର ଭୟରେ ଜମିଜମା ଗୁଡ଼ିକର ଗୋଟିଏ କିନାରା କରିବାକୁ ବ୍ୟାକୁଳ। ବଇଁଞା ଜମିଦାର ଜଗବନ୍ଧୁ ପଣ୍ଡାଙ୍କର କିଛି ଘରୋଇ ଠାକୁର ସମ୍ପତ୍ତି ଥାଏ। ଏହାକୁ ଗ୍ରାମର କେତେକ ଅଧିବାସୀ ଭାଗଋଷେ ସୂତ୍ରରେ ଭୋଗ ଦଖଲ କରୁଥାନ୍ତି। କେତେକ ଋଷୋପଯୋଗୀ ଓ ପତିତ ଜମି ମଧ୍ୟ ରହିଥାଏ। ଭୂ-ସଂସ୍କାର ଓ ଭାଗଚାଷ ଆଇନର ସାହାଯ୍ୟ ନେଇ ଋଷୀମାନେ ତାଙ୍କୁ କେତେବେଳେ ବେଦଖଲ କରି ଦେବେ ସେହି ଭୟ ତାଙ୍କ ମନରେ ସଞ୍ଚାରିତ ହୋଇଥାଏ। ସେହିପରି ଅନନ୍ତପୁର (ପେଷ୍ଟାର) ସାହିର ଜନ୍ମେଜୟ ଦାସ ଓ ତାଙ୍କ ଭାଇମାନଙ୍କ ମନରେ ଗୁଡ଼ ଗ୍ରାମରେ ଥିବା ତାଙ୍କ ଜମିରୁ ବେଦଖଲ ହେବାର ଭୟ ଉପୁଜିଥାଏ। ଏହି ସୁଯୋଗ ନେବାକୁ ଆଗେଇ ଆସିଲେ ବାପା ଓ ତାଙ୍କୁ ଆପ୍ରାଣ ସାହାଯ୍ୟ କଲେ ମୋର ଜଣେ କକା କାଶୀନାଥ ଦାଶଶର୍ମା, ସର୍ବୋପରି ସ୍ୱାର୍ଥତ୍ୟାଗ କରି ସହଯୋଗ କରିବାକୁ ଆଗେଇ ଆସିଲେ ଉମା। ସହରରେ ବଢ଼ି, ଆଧୁନିକ ସମାଜର ସଂସ୍ପର୍ଶରେ ଆସି ମଧ୍ୟ ବିଭାଘର ସମୟରେ ଆଣିଥିବା ସମସ୍ତ ଅର୍ଥ ଏଥିରେ ଖଟାଇବାକୁ ଆଗେଇ ଆସିଲେ ସେ। ଅବଶ୍ୟ ବିଭାଘର ସମୟରେ ଶଶୁର ଯେତେବେଳେ ପଋରିଥିଲେ ଜ୍ୱାଇଁ କଣ ନେବ? ମୋର ମତ ନେଇ ଶଙ୍କର୍ଷଣ ବାବୁ ତାଙ୍କୁ କହିଥିଲେ ଚଢ଼ିବା ପାଇଁ ତ ସରକାର ତାଙ୍କୁ ଗୋଟିଏ ଗାଡ଼ି ଦେଇଛନ୍ତି। ତେଣୁ ସେ ମଟର ସାଇକେଲ କରିବ କ'ଣ? ତାର ତ ଘଣ୍ଟା, ଖଟ, ସୋଫା, ଡ୍ରେସିଂ ଟେବୁଲ ଆଦି ଉପକରଣ ସେ ନିଜେ ବଲାଙ୍ଗିରରେ ଭଲ ସାଗୁଆନ ଓ ଶିଶୁକାଠରେ ତିଆରି କରିସାରିଛି। ତେଣୁ ସେ ଗୁଡ଼ିକରେ ଅର୍ଥ ନ ଖଟାଇ ଆପଣ ଝିଅକୁ ଟଙ୍କା ଦେଇ ଦିଅନ୍ତୁ। ବିଭାଘର ପରେ ଦୁଇ ଜଣ ଯାହା ଭାବିବେ କିଣିବେ। ବିଭାଘର ପରେ ଏହି ଅର୍ଥର ବିନିଯୋଗ କରି ଉମା ୮.୪ ଏକର ଜମି ମାତ୍ର ୩୩୦୦ ଟଙ୍କାରେ କିଣିବା ପାଇଁ ଆଗଭର ହୋଇଆସିଲା। ଯେ କୌଣସି ଝିଅ ଏ ଅର୍ଥରେ ଶାଢ଼ୀ, ରିଫ୍ରିଜେରେଟର ବା ଏଭଳି କିଛି କିଣିବାକୁ ଆଗଭର ହୋଇଥାନ୍ତା। ଉମା ଭିନ୍ନ ଉପାଦାନରେ ଗଢ଼ା। ସେ ମୋତେ ବୁଝାଇଲା ଶସ୍ତାରେ ଜମି ମିଳୁଛି। ଏଭଳି ସୁବିଧା ଜୀବନରେ ଥରେ ଆସେ। ଏହି ଜମି ତକ ଥିଲେ ସେଥିରୁ ଆମେ

ଘଉଳ ଆଣି ଚଳିଯିବା। ତା ବ୍ୟତୀତ ପ୍ରତିବର୍ଷ ଜମିର ଉତ୍ପାଦିତ ଫସଲ, ବିକି ଆମେ ଭବିଷ୍ୟତ କର୍ମପନ୍ଥା ସ୍ଥିର କରିପାରିବେ। ପେଣ୍ଟ, ସାର୍ଟ, ଶାଢ଼ୀ, ରିଫ୍ରିଜେରେଟର କିମ୍ବା ମଟର ସାଇକେଲ କ'ଣ ଆମେ କିଣି ପାରିବାନି ? ସେତେବେଳକୁ ଟେକେନିକେଲ୍ ଦରମା କମିଶନ୍ ରିପୋର୍ଟ ବାହାରି ସାରିଥାଏ। ବର୍ଦ୍ଧିତ ହାର ଦରମା ମିଳି ନଥାଏ। ବାକିୟା ଦରମା ପାଇଗଲେ ଆମେ ସେଗୁଡ଼ିକ କିଣିବା। ମୋ କଥା ମାନ। ଜମିତକ ଶସ୍ତାରେ ମିଳୁଛି। ଏତକ ଜମି ହାତକୁ ଆସିଗଲେ ଆମର ଭବିଷ୍ୟତ ଯୋଜନା ପରିକଳ୍ପନା ସୁବିଧାଜନକ ହେବ। ଆଜି ପରିଣତ ବୟସରେ ଭାବୁଛି ତାର କଥା ସେଦିନ ଥିଲା କେତେ ମୂଲ୍ୟବାନ। ନବପରିଣିତା ସରଳମତି ଝିଅଟିର ବିଶେଷ ବୁଦ୍ଧି ମୋତେ ସେଦିନ ପ୍ରଥମ ଆଲୋକ ବର୍ତ୍ତିକା ଦେଖାଇଥିଲା ଓ ସାରା ଜୀବନ ସେ ମୋର ପଥଦର୍ଶିକା ହୋଇ ରହିଯାଇଛି। ଖାଲି ସେତିକି ନୁହେଁ, ଯେଉଁ ପରିବାରକୁ ସେ ବଧୂ ହୋଇଯାଇଥିଲା, ଜମି ଥିଲା ସେ ପରିବାରର ପାରଂପାରିକ ଅବଲମ୍ବନ ଓ ଅଧିକ ଜମିର ମାଲିକ ହେବା ପରିବାରର ପ୍ରତ୍ୟେକଟି ବ୍ୟକ୍ତି ତଥା ମୋ ବାପାଙ୍କ ପାଇଁ ଥିଲା ଚିର ପୋଷିତ ସ୍ୱପ୍ନ। କୋଠାବାଡ଼ି, ଆଧୁନିକ ସାଜସରଞ୍ଜାମ ଠୁଁ ମାଟି ମାଆ ଥିଲା ସେମାନଙ୍କ ପାଇଁ ସ୍ୱର୍ଗ ସଂପଦ ପରି ଅନନ୍ୟ, ଅତୁଳନୀୟ।

ସେ ଘରର ଜ୍ୟେଷ୍ଠ ବଧୂ, ମୋର ଉଚ୍ଚଶିକ୍ଷିତା ସହଧର୍ମିଣୀ ଯେ ତାର ତୀକ୍ଷ୍ଣ ମେଧା ବଳରେ ଏଇ ସୂକ୍ଷ୍ମ ମୂଲ୍ୟବୋଧଟିକୁ ଧରିପାରିଥିଲ, ସେଇ ବୟସରେ ଯେ କୌଣସି ଯୁବତୀ ବଧୂ ପକ୍ଷେ ଏହା ଥିଲା ଅତ୍ୟନ୍ତ ପ୍ରଶଂସନୀୟ।



# ଦଶମ ପରିଚ୍ଛେଦ

# ବୁଢ଼ା-ବୁଢ଼ୀଆଣୀ ଜଳସେଚନ ଯୋଜନା ଓ ମୁଁ

ଏକ ନାଟକୀୟ ପରିସ୍ଥିତିରେ ମୋର ନୟାଗଡ଼ ସବ୍‌ଡ଼ିଭିଜନକୁ ବଦଳି ହେଲା। ୧୯୫୯ ମସିହା ଜଳସେଚନ ବିଭାଗର ଏକ ବୈପ୍ଳବିକ ସମୟ। ଏହି ବର୍ଷ ମୂଳ P.W.D, କୋଠାବାଡ଼ି ରାସ୍ତା ଓ ଜଳସେଚନ ଏଭଳି ଦୁଇଭାଗରେ ବିଭକ୍ତ ହୋଇଗଲା। ନୟାଗଡ଼ P.W.D. ସବ୍‌ଡ଼ିଭିଜନରୁ ମହାନଦୀ ଓ କୁସୁମି ନଦୀର ମାଳବନ୍ଧ ଉଛେଇନାଗ ଓ ସୁଳିଆ କ୍ଷୁଦ୍ର ଜଳସେଚନ ଯୋଜନା ଓ ସବୁ କ୍ଷୁଦ୍ର ଜଳସେଚନ ଯୋଜନା ହସ୍ତାନ୍ତର ହୋଇଆସିଲା। ନୟାଗଡ଼ ସେକସନ୍ ଅଧିନରେ କ୍ଷୁଦ୍ର ଜଳସେଚନ ନୟାଗଡ଼ ନଦୀବନ୍ଧ ଖଣ୍ଡପଡ଼ା ସେକସନ୍ ଅଧିନରେ ମହାନଦୀ ନଦୀବନ୍ଧ ସେକସନ୍ ଓ ବୁଢ଼ାବୁଢ଼ୀଆଣୀରେ ୨ଟି ସେକସନ୍ ରହିଲା। ସବ୍‌ଡ଼ିଭିଜନ ଅଧିନରେ ରସାନନ୍ଦ ସ୍ୱାଇଁ, ନନ୍ଦକିଶୋର ପଟ୍ଟନାୟକ, ଆଶୁତୋଷ ମିଶ୍ର, ଲକ୍ଷ୍ମଣ ମିଶ୍ର ଏଭଳି ୪ ଜଣ ଓଭରସିଅର ଥାଆନ୍ତି।

ଓଡ଼ିଶାର ଇଞ୍ଜିନିୟରଙ୍କ ଅଭାବ ଯୋଗୁଁ ହୀରାକୁଦ ଡ଼େମର ନିର୍ମାଣ ଦାୟିତ୍ୱ CWPC ନେଇଥିଲେ। ଫଳରେ ଡ଼େମ ଓ କେନାଲ ତିଆରିର ଆଧୁନିକ ଜ୍ଞାନ ଆହରଣରେ ଓଡ଼ିଶାର ଇଞ୍ଜିନିୟରମାନେ ବଞ୍ଚିତ ହୋଇଥିଲେ। ସ୍ୱାଧୀନତା ପରେ କ୍ଷୁଦ୍ର ଜଳସେଚନର ଦାୟିତ୍ୱ ନ୍ୟସ୍ତ ଥିଲା ଜିଲାର କଲେକ୍ଟର ଓ ବିଡ଼ିଓଙ୍କ ଉପରେ। ଜଳସେଚନ ବିଭାଗର ଇଞ୍ଜିନିୟରମାନେ କେବଳ ମହାନଦୀ ଓ ଋଷିକୁଲ୍ୟାର କେନାଲର ରକ୍ଷଣାବେକ୍ଷଣ କରୁଥିଲେ।

ନୟାଗଡ଼ ସବ୍‌ଡ଼ିଭିଜନ ଦାୟିତ୍ୱ ନେବା ପରେ ପ୍ରଥମେ ଉଛେଇ ନାଗଝର ଓ ସୁଳିଆର କେନାଲ କାର୍ଯ୍ୟ ହାତକୁ ନିଆଗଲା। କ୍ଷୁଦ୍ର ଜଳସେଚନ ଯୋଜନା ଓ ମଧ୍ୟମ କିମ୍ବା ବୃହତ ଜଳସେଚନର କେନାଲ ନିର୍ମାଣ ପ୍ଲାନିଂ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ ବୋଲି ପ୍ରଥମେ ମୋତେ ମୋର ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଜନାର୍ଦ୍ଦନ ତ୍ରିପାଠୀ କହିଥିଲେ। ଉଛେଇ ନାଗଝରର କେନାଲ ପ୍ଲାନିଂ ଓ ଡିଜାଇନରେ ବହୁତ

ନୂତନ ଡିଜାଇନ୍ କରିବାକୁ ପଡ଼ିଲା । ଏହି କେନାଲ ପାଇଁ କେନାଲ ସାଇଫନ୍,ଏକୁଇଡ଼କ୍ଟ, ସୁପରପ୍ୟାସେଜ୍, ଫଲ୍, ରୋଡ଼ କ୍ରସିଂ ଆଦି ସବୁ ପ୍ରକାର ଡିଜାଇନ୍ କରିବାକୁ ପଡ଼ିଲା । ଏତେ ଛୋଟ ଜଳସେଚନ ଯୋଜନାର ଏକୁଇଡ଼କ୍ଟ ଅର୍ଥନୈତିକ ଦୃଷ୍ଟିରୁ ଯେତେ ସମ୍ଭବ ଶସ୍ତା କରିବାକୁ ପଡ଼ିବ । ତେଣୁ ଏକଇଡ଼କ୍ଟ ପିଲର ଓ ସ୍ଲାବକୁ ହ୍ୟମ ପାଇପ୍ ଦ୍ୱାରା ନିର୍ମାଣ ପାଇଁ ଡିଜାଇନ୍ କରାଗଲା । ଇଞ୍ଜିନିୟରିଂ କଲେଜରେ ପଢ଼ିଥିବା ପାଠକୁ କାର୍ଯ୍ୟରେ ପରିଣତ କରି ମାତ୍ର ୨ ବର୍ଷରେ ୧୫୦୦ ଏକର ଜମିକୁ ଜଳସେଚନ କରିବାର ଆନନ୍ଦ କେବଳ ଭୁକ୍ତଭୋଗୀ ହିଁ ଅନୁଭବ କରିପାରିବ । ସେହିପରି ସୁଳିଆ କେନାଲରେ ଦୁଇଟି କେନାଲ ସାଇଫନ୍ ତିଆରି ହେଲା । କେନାଲ ପାଣି ୧୦ ଫୁଟ ତଳେ ଗୋଟିଏ ନାଳକୁ ଅତିକ୍ରମ କଲା । ଇଞ୍ଜିନିୟର ଜୀବନରେ ପ୍ରଥମ ସୋପାନରେ ଏତେ ବଡ଼ ହେଡ଼ ଥିବା କେନାଲ ସାଇଫନକୁ ତିଆରି କରି ଜମିକୁ ଜଳସେଚନ କରିବାର ସୌଭାଗ୍ୟ ପ୍ରଥମେ ଅନୁଭବ କରିଥିଲି ସୁଳିଆ ଯୋଜନାର କେନାଲ ସାଇଫନରୁ ।

ନୟାଗଡ଼ର ଆଉ ଗୋଟିଏ Challenge ହେଲା ନାଳବନ୍ଧ ଯୋଜନା । ମହାନଦୀ କୂଳରେ ସିଦ୍ଧମୂଳା ଠାରୁ ବଡ଼ ବର ପର୍ଯ୍ୟନ୍ତ ପ୍ରାୟ ୨୫ କିମି ମାଳବନ୍ଧ ସହିତ କୁସୁମି ନଦୀ କୂଳରେ ଥିବା ୩୦ କିମି ମାଳବନ୍ଧର ରକ୍ଷଣାବେକ୍ଷଣ ଯେ କୌଣସି ଇଞ୍ଜିନିୟର ପାଇଁ ଏକ ଆହ୍ୱାନ । ଏହି ନଦୀବନ୍ଧ ଗୁଡ଼ିକର ଉଦ୍ଦେଶ୍ୟ ଡ଼େଲଟାରେ ଥିବା ନଦୀବନ୍ଧ ଯୋଜନା ଠାରୁ ଭିନ୍ନ । ଡେଲ୍‌ଟାରେ ଥିବା ନଦୀବନ୍ଧ ଗୁଡ଼ିକ ଋଷଜମି ଓ ଜନବସତିକୁ ବନ୍ୟା ଦାଉରୁ ରକ୍ଷା ପାଇଁ ଉଦ୍ଦିଷ୍ଟ । ଡେଲଟା ଅଞ୍ଚଳର ବନ୍ୟା ପାଣି ୮/୧୦ ଦିନ ପର୍ଯ୍ୟନ୍ତ ରହେ । କିନ୍ତୁ ନୟାଗଡ଼ ନଦୀବନ୍ଧ ଉଦ୍ଦେଶ୍ୟ ଭିନ୍ନ । ଏହାର ଉଦ୍ଦେଶ୍ୟ ଜମିକୁ ବାଲିରୁ ରକ୍ଷା କରିବା ।

ନଦୀର ପିଛିଲା ପାଣି (Back water) ଜମି ପାଇଁ ଉପଯୁକ୍ତ । Back water ସାହାଯ୍ୟରେ ଜମିରେ ପଟୁ ପଡ଼ିଥାଏ । ତେଣୁ ଅଧିକ ଫସଲ ଆମଦାନୀ ହୁଏ । ତେଣୁ ନଦୀବନ୍ଧ ମଝିରେ ଗୋଟିଏ ଗୋଟିଏ ସ୍ଥାନରେ Back water ପାଇଁ ସ୍ଥାନ ଛାଡ଼ି ଦିଆଯାଏ । ୧୯୬୦ ମସିହାରେ ହଠାତ୍ ହୀରାକୁଦରୁ ଜଳ ନିଷ୍କାସନ ଫଳରେ କଟକ ଓ ପୁରୀ ଜିଲାର ଏକ ପ୍ରଳୟକାରୀ ବନ୍ୟା ହୋଇଥିଲା । ଫଳରେ କୁସୁମି ଓ

ମହାନଦୀର ମାଳବନ୍ଧରେ ବହୁତ ଘାଇ ସୃଷ୍ଟି ହୋଇଥିଲା । ସେତେବେଳେ ମହାନଦୀର ଏହି ମାଳବନ୍ଧ ଗୁଡ଼ିକୁ ଯାତାୟତର କୌଣସି ସୁବିଧା ନଥିଲା । ତ୍ରିପାଠୀ ସାହେବ, ମୁଁ ଓ ଖଣ୍ଡପଡ଼ାର ତହସିଲଦାର ଅଲ୍ଲିବାବୁ କଣ୍ଟିଲୋ ଠାରୁ ଡଙ୍ଗା ସାହାଯ୍ୟରେ ପଦ୍ମାବତୀ ଓ ବଡ଼ ବର ପର୍ଯ୍ୟନ୍ତ ପ୍ରାୟ ୧୫ କିମି ବାଟ ଡଙ୍ଗାରେ ଗଲୁ । ସେଠାରେ ପଦ୍ମାବତୀ ବନ୍ଧର ଘାଇ ଦେଖି ତାର ମରାମତିର ବନ୍ଦୋବସ୍ତ କରି ପୁଣି ଡଙ୍ଗାରେ ଫେରିଲୁ । ଯିବାକୁ ଏକ ଘଣ୍ଟା ଲାଗିଲା । କିନ୍ତୁ ଫେରିବାକୁ ଲାଗିଲା ୪ ଘଣ୍ଟା । ପ୍ରବଳ ବନ୍ୟା ସମୟରେ ମହାନଦୀର ନୌକା ବିହାର ଅତ୍ୟନ୍ତ ଆନନ୍ଦଦାୟକ । କଣ୍ଟିଲୋର ନୀଳମାଧବ ମନ୍ଦିର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ବନ୍ୟା ସମୟରେ ମନ୍ଦିର ପାର୍ଶ୍ୱରେ ଘଣ୍ଟା ଘଣ୍ଟା ବସି ଶୀତଳ ସମୀରଣର ଉପଭୋଗ ଅତ୍ୟନ୍ତ ଆମୋଦଦାୟକ । ସେତେବେଳେ ସ୍ୱତଃ ମନକୁ ଆସେ ପ୍ରାକ୍ ଐତିହାସିକ ଯୁଗରେ ପ୍ରଭୁ ନିଳାଦ୍ରିବିହାରୀ ମହାନଦୀ କୂଳରେ ଥିବା ଏହି ଗିରିକନ୍ଦରକୁ ତାଙ୍କ ବାସସ୍ଥଳି ରୂପେ ଗ୍ରହଣ କରି ପ୍ରକୃତିର ପୂଜାରୀ ବୋଲି ନିଜକୁ ପରିଚିତ କରାଇଛନ୍ତି । ଏଭଳି ପରିବେଶ ପରବର୍ତ୍ତନ ପାଇଁ ସେ ପୁରୀରେ ସମୁଦ୍ରର ବେଳାଭୂମିକୁ ନିଜର ବାସସ୍ଥଳୀ ଭାବେ ନିରୁପଣ କରିଛନ୍ତି ।

ସେଟ୍‌ଲମେଣ୍ଟ ମ୍ୟାପ୍ (Settlement Map) ର ବ୍ୟବହାର କରି ଆୟକଟ Contour ସର୍ଭେ ପଦ୍ଧତି ପ୍ରଥମେ ଜନାର୍ଦ୍ଦନ ତ୍ରିପାଠୀ ପ୍ରଚଳନ କରି ସର୍ଭେ କ୍ଷେତ୍ରରେ ଏକ ବୈପ୍ଳବିକ ଚିନ୍ତାଧାରା ସୃଷ୍ଟି କରିଥିଲେ । ଏହାଦ୍ୱାରା Contour survey ର horizontal control ରହିଲା ଓ Land Acquistism ପାଇଁ ପଥ ସୁଗମ ହୋଇଗଲା । ତା ବ୍ୟତୀତ Water course alignment ଜମି ଭୂ-ଅର୍ଜ୍ଜନ ମଧ୍ୟ ସୁଗମ ହୋଇଗଲା ।

ପ୍ରୋଜେକ୍ଟ ରିପୋର୍ଟ ଲେଖା ସମୟରେ ଅନ୍ୟ ଏକ ସମସ୍ୟା ଆସି ଉଭା ହେଲା । ତା ହେଉଛି ଡେମ ଓ ସ୍ପିଲଓ୍ୱେ ଡିଜାଇନ୍ । ସ୍ପିଲଓ୍ୱେ ପାଇଁ ପଥର ଚଟାଣ କୌଣସି ଡେମରେ ନାହିଁ । ଏକ ଆକସ୍ମିକ ପରିସ୍ଥିତିରେ ଏହି ସ୍ପିଲଓ୍ୱେ ଡିଜାଇନର ସମାଧାନ ହୋଇଗଲା । ୧୯୬୧ ମସିହା ଜୁଲାଇ ମାସ । ତ୍ରିପାଠୀ ସାହେବ dam ପରିଦର୍ଶନ କରି ଫେରୁଥାନ୍ତି । ଦେଖିଲୁ ଗୋଟିଏ ଶଗଡ଼ିଆ କାଠ ଧରି ଜଙ୍ଗଲରୁ ଫେରୁଛି । ତାକୁ ପଚାରିବାରୁ ସେ କହିଲା ନଦୀର ଡାହାଣ ପାଖରେ ପାହାଡ଼ ମଝିରେ

ଗୋଟିଏ ରାସ୍ତା ରହିଛି। ସେହି ବାଟେ ଆମେ କାଠ ଆଣୁଛୁ। ତ୍ରିପାଠୀ ସାହେବ ସଙ୍ଗେ ସଙ୍ଗେ ଗୋଟିଏ Contour map କରାଇ ଡ୍ରିଲିଂ କରାଇଲେ। ଆଶ୍ଚର୍ଯ୍ୟର କଥା ଡେମର FRL ର ଉପରେ ରହିଛି, granite ପଥରର ଚଟାଣ। ସେ ପର୍ଯ୍ୟନ୍ତ ଆମେ USSR ବହିରୁ chute spillway copy କରି ତାହାକୁ ବୁଢ଼ାବୁଢ଼ୀଆଣି ଡେମ୍‌ରେ ବ୍ୟବହାର କରିବାକୁ ଚାହୁଁଥିଲୁ ଏହାକୁ Saddle spillway କୁ ପରିବର୍ତ୍ତନ କଲୁ। ସେହିଦିନଠାରୁ ସବୁ ପ୍ରୋଜେକ୍ଟରେ Saddle spilling adopt କରାଗଲା। ସେତେବେଳେ Soil mechanic ର ପ୍ରସାର ଓଡ଼ିଶାରେ ହୋଇନଥାଏ। ହୀରାକୁଦର ବନ୍ଧ ନିର୍ମାଣ ପଦ୍ଧତି ଅବଲମ୍ବନ କରିବାକୁ ସ୍ଥିର କରି dam section adopt କରାଗଲା। ଏହିଭଳି ବୁଢ଼ାବୁଢ଼ିଆଣୀ ବନ୍ଧର ପ୍ରୋଜେକ୍ଟ ରିପୋର୍ଟ CPWC କୁ ପଠାଇ ଅନୁମୋଦନ ଅଣାଗଲା। ଆଶ୍ଚର୍ଯ୍ୟର ବିଷୟ ପ୍ରୋଜେକ୍ଟ ରିପୋର୍ଟ ଯିବାର ୪ ମାସ ମଧ୍ୟରେ ସିଡ୍‌ବ୍ଲୁପିସିର ଅନୁମୋଦନ ମିଳିଗଲା। ସଂଗେ ସଂଗେ ଡ଼େମ୍ କାର୍ଯ୍ୟ ଆରମ୍ଭ ହୋଇଗଲା। ହିରାକୁଦ ବନ୍ଧ ପାଇଁ ବ୍ୟବହାର ହୋଇଥିବା exeavator ଓ ଡମ୍ପର ଗୁଡ଼ିକୁ ଡ଼େରଜାଙ୍ଗ ଓ ଧନେଇ ଡ଼େମରେ ବ୍ୟବହାର କରାଗଲା। ଓଡ଼ିଶାର ମଜୁରୀ ଶସ୍ତା ହୋଇଥିବାରୁ ମାଟିବନ୍ଧର କାମ ସାଧାରଣ ଟ୍ରକ୍ ଓ ଶ୍ରମିକ ନିଯୁକ୍ତି ଦ୍ୱାରା କରିବାକୁ ସ୍ଥିର ହେଲା। ଯୋନାଲ ସେକ୍‌ସନ୍ ନ କରି filter chimney ଦେଇ ସ୍ଥାନୀୟ ମାଟିର ବ୍ୟବହାର କରି ମାଟିବନ୍ଧ ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା। spillway ପାଇଁ ପ୍ରଥମେ saddle ଟିକୁ ପଥର ଚଟାଣ ପର୍ଯ୍ୟନ୍ତ ଖୋଳାଗଲା। ସବୁ ମିଡ଼ିଅମ ପ୍ରୋଜେକ୍ଟ ମଧ୍ୟରେ ବୁଢ଼ାବୁଢ଼ୀଆଣୀ ପ୍ରୋଜେକ୍ଟକୁ ଆଗେଇ ଚାଲିଲା ଓ ୧୯୬୫ ମସିହା ସୁଦ୍ଧା ସମ୍ପୂର୍ଣ୍ଣ ହୋଇପାରିଲା।

କେନାଲ କାମ ପାଇଁ ଶରଣକୂଳଠାରେ ଆଉ ଗୋଟିଏ sub-division ଖୋଲା ହେଲା, ତାର SDO ହେଲେ, ମୋର ବନ୍ଧୁ ଦୟାନିଧି ନାୟକ। ସେ ଜଣେ ସରଳ ଅମାୟିକ ଭଦ୍ରବ୍ୟକ୍ତି। ପ୍ରଥମ ପରିଚୟରୁ ଦୁଇଟି ପରିବାର ଏକ ଡୋରିରେ ବନ୍ଧା ହୋଇ ଆଜୀବନ ବନ୍ଧୁତା ଡୋରିରେ ବନ୍ଧା ହୋଇରହିଯାଇଛନ୍ତି।

ବୁଢ଼ାବୁଢ଼ୀଆଣୀ ଯୋଜନା ସହିତ ଆଉ କେତେ ଗୁଡ଼ିଏ ଯୋଜନାର ସର୍ଭେ କାମ ହାତକୁ ନିଆଯାଇଥିଲା।

ଖଣ୍ଡପଡ଼ାର ସୁନାମୁହି, ସିଂହପଡ଼ା, ମୋଡ଼ାନାଳ ଓ କୋଷ୍ଠା ଯାହାକି ପରବର୍ତ୍ତି କାଳରେ ଆରଇଓ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଭାବେ ନିର୍ମାଣ କରିବାର ଗୌରବ ଅର୍ଜନ କରିଥିଲି, ତାର ପ୍ରଥମ ସର୍ଭେ ଓ ସ୍ଥାନ ନିରୂପଣ ଜନାର୍ଦ୍ଦନ ତ୍ରିପାଠୀଙ୍କ ପ୍ରେରଣା ଓ ଉପଦେଶ ଯୋଗୁ ସମ୍ଭବ ହୋଇଥିଲା।

୧୯୫୯ ଜାନୁୟାରୀଠାରୁ ୧୯୬୨ ସେପ୍ଟେମ୍ବର ପର୍ଯ୍ୟନ୍ତ ପ୍ରାୟ ୪ ବର୍ଷ ସମୟ ବହୁତ ଆନନ୍ଦର ସହିତ ନୟାଗଡ଼ ଓ ଶରଣକୂଳରେ କଟିଥିଲା। ସେହି ସମୟରେ ଘଟିଥିବା କେତୋଟି ଘଟଣା କାଲିଭଳି ମନେ ହେଉଛି। ଥରେ ବୁଢ଼ା ବୁଢ଼ୀଆଣୀ ମେନ୍ କେନାଲ ଦେଖିବାକୁ ତ୍ରିପାଠୀ ସାହେବଙ୍କ ସହ ଗଲୁ। ୫ କି.ମି. ବାଟ ଜଙ୍ଗଲ ଭିତରେ ଚାଲି ଚାଲି ଯାଇ ପହଞ୍ଚିଲୁ, ଡ଼େମ୍ ସାଇଟ୍‌ରେ ସେଠାରେ ମୁଁ ବାଛିଥିବା ସେଡ଼େଲସ୍ପିଲୱେ ତାଙ୍କୁ ଦେଖାଇଲୁ। ତ୍ରିପାଠୀ ସାହେବଙ୍କର ଏହି ଟୁର୍‌ଟି ଥିଲା ସବୁଠାରୁ ଫଳପ୍ରଦ ଟୁର। ଶଗଡ଼ିଆଙ୍କ ସହ କଥାବାର୍ତ୍ତା ସ୍ଥଳରେ ଯେଉଁ ସେଡ଼େଲ ସ୍ପିଲୱେ ସେ ଉଦ୍ଭାବନ କଲେ ତାହା ପରବର୍ତ୍ତୀ କାଳରେ ସବୁ ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ଯୋଜନା ପାଇଁ କାର୍ଯ୍ୟକାରୀ କରାଗଲା। ଖାଇଲାବେଳକୁ ପ୍ରାୟ ୪ଟା। ଖାଇ ବସିଛୁ ହେଲା ପ୍ରବଳ ବର୍ଷା। ସ୍ଥାନୀୟ ଖଲାସୀମାନେ କହିଲେ ନଦୀ ସଙ୍ଗେ ସଙ୍ଗେ ବଢ଼ିଯିବ, ପାରି ହୋଇ ହେବନି। ଚାଲି ଚାଲି ଆସି ଡୁଆଣ୍ଟନଦୀ କୂଳରେ ପହଞ୍ଚିବା ବେଳକୁ ସନ୍ଧ୍ୟା ଆଗତ ପ୍ରାୟ। ନଦୀରେ ପ୍ରବଳ ସ୍ରୋତ। ଯେତେ ଚେଷ୍ଟା କଲେ ବି ନଦୀ ପାରି ହୋଇପାରିଲୁନି। ଓଦା ସଡ଼ ସଡ଼ ହୋଇ ଫେରି, ଗଉଡ଼ଫୁଟ ପଞ୍ଚାୟତ ଘରେ ଯାଇବସିଲୁ। ରାତି ଗଡ଼ି ଚାଲିଲା, ହେଲା ୧୦, ୧୧, ୧୨, ୧, ୨ଟା ଭୋକ ହେଲାଣି। ଏଣେ ତ୍ରିପାଠୀ ସାହେବଙ୍କ ସିଗାରେଟ୍ ସରିଗଲା। ସିଗାରେଟ୍ ଥିବା ପର୍ଯ୍ୟନ୍ତ ତାଙ୍କର ଖାଇବା ଦରକାର ନାହିଁ। କହିଲେ ଗଉଡ଼ଫୁଟ ଗାଁରେ ତ ସିଗାରେଟ୍ ମଳିବନି କିଛି ବିଡ଼ି ମିଳିବ ? ତାଙ୍କ ପାଇଁ କିଛି ବିଡ଼ି ଆସିଲା। କହିଲେ ପିଲାଏ ଭୋକ ଲାଗିଲାଣିକି ? ମୁଁ କହିଲି ଭୋକ ଲାଗିଲେ ଏଠାରେ କଣ ମିଳିବ ଯେ ? ସେ ସଙ୍ଗେ ସଙ୍ଗେ ମୁଢ଼ି ବରାଦ କଲେ। ଆମ ସଙ୍ଗେ ବସି ମୁଢ଼ୀ ଖାଇଲେ। ସେଦିନ ସେ ମୁଢ଼ୀ ଖିଆର ଆନନ୍ଦ, ପାଲାଉ ଚିକେନ୍‌ରେ ମିଳିବ କାହୁଁ ? ଆଉ ଥରେ କୁଆଁରିଆ ନଦୀ ଉପରେ ପ୍ରସ୍ତାବିତ ଡେମ ଦେଖିବାକୁ ଗଲୁ। ରାସ୍ତା

ନଥାଏ। ଟପୋସିଟ୍‌ରୁ ଗୋଟିଏ ଶଗଡ଼ ଦଣ୍ଡା ବାହାର କରି ଚାଲିଲୁ। ନକ୍ସାରୁ ଜାଣିଲୁ ଦୂରତା ୧୫ କିମି, ମାତ୍ର ୩ କିମି ଯାଉଛୁ ପଡ଼ିଲା କାଦୁଅ। ଜିପ୍‌ଟି କାଦୁଅରେ ଲାଖିଗଲା। ତ୍ରିପାଠୀ ସାହେବ ଗୋଟିଏ ସ୍ଥାନ ଦେଖିବାକୁ ସ୍ଥିର କରିଛନ୍ତି, କେବେ ନ ଦେଖି ଫେରିବେନି। ଚାଲି ଚାଲି ଡେମ୍ ପାଖରେ ପହଞ୍ଚିବା ବେଳକୁ ଦିନ ଗୋଟାଏ। ଡ଼େମର ଲମ୍ବ ଦେଢ଼ କିମି। ପୁଣି ସ୍ପିଲୱେ ସ୍ଥାନ ନିରୂପଣ ଅଛି। ପାଖରେ ଓଡ଼ିଶୀରାଣୀ ଠାକୁରାଣୀ। ଡେମ୍ ଏକସିସ୍‌ରେ ଓଡ଼ସର ଗ୍ରାମ। ଭୋକରେ ପେଟ ଜଳିଲାଣି। ଗାଁକୁ କିଛି ମୁଢ଼ୀ କିଣିବାକୁ ପିଅନ ପଠାଇଲୁ। ଏହି ଦୁଇ ଘଣ୍ଟା ମଧ୍ୟରେ ଗ୍ରାମରେ ପ୍ରଚାର ହୋଇସାରିଥାଏ ଯେ, ଏଠାରେ ଡେମ୍ ତିଆରି ହୋଇ ଗାଁ ଜମିତକ ବୁଡ଼ିଯିବ ଓ ଗାଁଟି ଉଠିଯିବ। ମୁଢ଼ୀ ମୁଠାଏ ବିକିବାକୁ କେହି ରାଜି ନୁହଁନ୍ତି। ହଠାତ୍ ଦେଖିଲି ତ୍ରିପାଠୀ ସାହେବ ବେଲପତ୍ର ତୋଳିବାରେ ଲାଗିଛନ୍ତି। କହିଲେ ପିଲାଏ ଆମର ମୁନୀ ଋଷିମାନେ ଭୋକ ହେଲେ ଏହି ବେଲପତ୍ର ଭକ୍ଷଣ କରି କ୍ଷୁଧା ନିବାରଣ କରନ୍ତି। ପୁଣି ୧୨ କି.ମି ଚାଲିଲେ ଗାଡି ପାଖରେ ପହଞ୍ଚିବୁ। ଫେରି ନୟାଗଡ଼ରେ ଖାଇବା ବେଳକୁ ସନ୍ଧ୍ୟା ୭।

୧୯୬୦ ମସିହା ଡିସେମ୍ବର ମାସ। ତ୍ରିପାଠୀ ସାହେବ ବୁଢ଼ାବୁଢ଼ୀଆଣୀ ଯୋଜନାକୁ ପରିଦର୍ଶନରେ ଆସିଥାନ୍ତି। ନୟାଗଡ଼ରେ ରହଣି ଦିନ ସେ ପ୍ରାୟ ଆମ ଘରେ ଖାଆନ୍ତି। ସେ ଉମାକୁ ବହୁତ ପ୍ରଶଂସା କରନ୍ତି। ସବୁ ଆସିଷ୍ଟାଣ୍ଟ ଇଞ୍ଜିନିୟରଙ୍କୁ କହନ୍ତି ତୁମେ ଭାସ୍କରର ସ୍ତ୍ରୀ ଭଳି ଝିଅଟିଏ ଆଣ। ସେ ତୁମର ସହଧର୍ମିଣୀ ଓ ସହକର୍ମିଣୀ ହେବ। ତ୍ରିପାଠୀ ସାହେବ ଆସିବା ଦିନ ଉମାର ଖୁସି ଦେଖେ କିଏ। ଭିନ୍ନ ଭିନ୍ନ ତରକାରୀ କରିଥିବ। ତାଙ୍କ ସ୍ତ୍ରୀ ଶକୁନ୍ତଳା ନାନୀ ମଝିରେ ଆସନ୍ତି। ସର୍କିଟ୍ ହାଉସ୍‌ରେ ନ ରହି ଦିନ ସାରା ରହନ୍ତି ଆମ ଘରେ। ଭଡ଼ା ଘର ମାତ୍ର ୨ଟି ବଖରା। ପୁଣି ଘରେ ବୋଉ ଓ ସାନଭାଇ। ଆମକୁ ମାଡ଼ି ପଡ଼ିଲା ପରି ଲାଗେ। କିନ୍ତୁ ତାଙ୍କର ଆନ୍ତରିକ ଆଗ୍ରହ ଦେଖି ଆମକୁ ସନ୍ତୋଷ ଲାଗେ। ଲଞ୍ଚ ଖିଆ ପ୍ରାୟ ଲଡୁବାବାଙ୍କ ବା ରଘୁନାଥଙ୍କ ପ୍ରସାଦରେ ଚଳେ। ଦିନେ ଦିନେ ସେ କହନ୍ତି ଜଣେ ଓଭରସିଅରଙ୍କ ଘରେ ଆଜି ଖାଇବା। ସେତେବେଳେ ବିଶ୍ୱନାଥ ପ୍ରଧାନ ଓଭରସିଅର ନିଜ ପରିବାର ସହ ଓଡଗାଁରେ ଏକ ଭଡ଼ାଘରେ ରହୁଥିଲେ। ସେଦିନ ସେ କହିଲେ; ଆଜି ପ୍ରଧାନ

ଘରେ ଲଞ୍ଚ ଖାଇବା। ପ୍ରଧାନବାବୁଙ୍କ ଖୁସି ଦେଖେ କିଏ ? ପ୍ରକାର ପ୍ରକାର ତରକାରି। ଚିକେନ୍ ମାଛଭଜା ଆଦି ପ୍ରସ୍ତୁତ କରିଥାନ୍ତି। ସେତେବେଳେ ଆଜି ଭଳି ଟେଲିଭିଜନ ନଥିଲା। କ୍ରିକେଟ୍ ଖେଳ ରେଡ଼ିଓ କମେଣ୍ଟ୍ରିରୁ ଯାହା ଶୁଣୁଥିଲୁ। ସେ ଦିନ ଭାରତ ଓ ଅଷ୍ଟ୍ରେଲିଆ ମଧ୍ୟରେ କଲିକତାରେ ଟେଷ୍ଟ ମ୍ୟାଚ୍ ଚାଲିଥାଏ। ଭାରତ ପରାଜୟର ସମ୍ମୁଖୀନ। କିନ୍ତୁ ପରାଜୟର ମୁକାବିଲା କରୁଥାନ୍ତି ଭାରତ ପକ୍ଷରୁ ଜଣେ ଉଦୟମାନ ଖେଳାଳୀ ଏମ.ଏଲ. ଜୟସୀମା। ସେତେବେଳକୁ ସେ ୫ ଦିନ ଯାକ ବ୍ୟାଟିଂ କରି ବିଶ୍ୱର ଏକ ନୂତନ ରେକର୍ଡ ସୃଷ୍ଟି କରିସାରିଥାନ୍ତି। ଅଷ୍ଟ୍ରେଲିଆର ଖେଳାଳୀମାନେ ଶତଚେଷ୍ଟା କରି ମଧ୍ୟ ତାଙ୍କୁ ଆଉଟ୍ କରି ପାରୁନଥାନ୍ତି। ଅଷ୍ଟ୍ରେଲିଆ ପକ୍ଷରୁ ଖେଳୁଥାନ୍ତି ଅଫ୍‌ସ୍ପିନର ବେନଡ଼ ପେସ୍ ବୋଲର ଡେଭିଡ଼ସନ୍ ଓ ଲିଣ୍ଡୱାଲ। ଲଞ୍ଚ ନେଲାବେଳକୁ ଜୟସୀମା କରିଥାନ୍ତି ୯୯ ରନ। ଭାରତକୁ ପରାଜୟରୁ ରକ୍ଷା କରିବାକୁ ସକ୍ଷମ ହୋଇସାରିଥାନ୍ତି। କ୍ରିକେଟ୍ ପ୍ଲେୟାରମାନଙ୍କ ଲଞ୍ଚ ଆୱାରରେ ଆମେ ମଧ୍ୟ ଲଞ୍ଚଖିଆ ବଢ଼ାଇ ଦେଲୁ। ଲଞ୍ଚ ପରେ ଜୟସୀମା ଆସିବେ, ଆଉ ଗୋଟିଏ ରନ୍ ନେଇ ତାଙ୍କର ଶତକ ପୂର୍ଣ୍ଣ କରିବେ। ସେଦିନ ଧନେଇ ଯୋଜନାର ଭିତ୍ତିପ୍ରସ୍ତର ସ୍ଥାପନ ଦିବସ। ଓଡ଼ଗାଁ ଠାରୁ ଧନେଇ ପ୍ରାୟ ୪୦ କି.ମି. । ଘଣ୍ଟାଏ ସମୟ ଲାଗିବ। ଦିନ୨ଟାରେ ଭିତ୍ତିପ୍ରସ୍ତର ପଡ଼ିବ। ୧୨.୪୦ରେ ଖେଳ ଆରମ୍ଭ ହେଲା । ଜୟସୀମା ଶତକ ହାସଲ କଲେ ରେଡ଼ିଓ ବନ୍ଦ କରି ଆମେ ଚାଲିବୁ ଧନେଇ ଅଭିମୁଖେ। କିନ୍ତୁ କାହିଁ ଜୟସୀମାଙ୍କ ଶତକ। ଗଲା ଅଧଘଣ୍ଟେ, ଗଲା ୪୫ ମିନିଟ୍ ସମୟ ହୋଇଗଲାଣି। ଯିବାକୁ ହେବ, ଏଣେ ଜୟସୀମା ଗୋଟିଏ ରନ୍ ନେଇ ପାରୁନାହାନ୍ତି। ରେଡ଼ିଓ ଛାଡ଼ିଯିବାକୁ କାହାରି ମନ ହେଉନି। ବାଜିଲା ୧.୩୦ ହଠାତ୍ ଜୟସୀମା ଗୋଟିଏ ଅସମ୍ଭବ ରନ୍ ନେବାକୁ ଚେଷ୍ଟା କରି ରନ୍ ଆଉଟ୍ ହୋଇଗଲେ ମନଟା ସମସ୍ତଙ୍କର ଖଟା ହୋଇଗଲା। ସମୟ ଆଉ ୨୦ ମିନିଟ, ୪୦ କିମି ବାଟ ଷ୍ଟିଅରିଂ ଧରିଲେ ତ୍ରିପାଠୀ ସାହେବ। ବାପ୍‌ରେ ବାପ୍ କି ସ୍ପିଡ୍! ଘଣ୍ଟା ୧୦୦ କିମିରୁ ୧୨୦ କି.ମି. ପାଖରେ। ରାସ୍ତା ଅଣଓସାରିଆ, ମେଟାଲ ରାସ୍ତା। ମୁଖ୍ୟମନ୍ତ୍ରୀ ଡଃ. ହରେକୃଷ୍ଣ ମହତାବ ନିଜେ ଆସିବେ ଭିତ୍ତିପ୍ରସ୍ତର ସ୍ଥାପନ ପାଇଁ। ଠିକ୍ ୨ଟା ରେ ପହଞ୍ଚିଲୁ ଧନେଇ ଡ଼େମ୍ ପାଖରେ। ମୁଖ୍ୟମନ୍ତ୍ରୀ ଆମେ ପହଞ୍ଚିବାର ମାତ୍ର ୫ ମିନିଟ୍ ପରେ ପହଞ୍ଚିଲେ। କିନ୍ତୁ

ଧନେଇ ପହଞ୍ଚିବା ପରେ ଦେଖାଗଲା ଯେ ଗାଡ଼ିର ବିଏରିଂ ଜାମ୍ ହୋଇଯାଇଛି। ଗାଡ଼ିଟି ସିନା ମରାମତି ହେଲା, କିନ୍ତୁ ତ୍ରିପାଠୀ ସାହେବ ଆମ ସହ ମିଶି ରେଡ଼ିଓ ଶୁଣିବା ଓ ସମସ୍ତେ ମିଶି ରେଡ଼ିଓ କମେଣ୍ଟ୍ରିର ଆନନ୍ଦ ଉପଭୋଗର ଭାଗ୍ୟ ପୁଣି ଏଭଳି ଏକ ପରିସ୍ଥିତିରେ କେତେ ଜଣଙ୍କୁ ମିଳେ ?

୧୯୫୯ ଠାରୁ ୧୯୬୧ ପର୍ଯ୍ୟନ୍ତ ୨ ବର୍ଷ ଧରି ଜନାର୍ଦ୍ଦନ ତ୍ରିପାଠୀ ମୋର କାହିଁକି ସାରା ଡିଭିଜନର ଦିଗଦର୍ଶକ ହୋଇ ରହିଥିଲେ। ତାଙ୍କର ଯେତେବେଳେ ବଦଳି ହେଲା ସମସ୍ତେ ଭାବିଲେ ତାଙ୍କୁ ଭୁବନେଶ୍ୱରରେ ଫେୟାରୱେଲ୍ ନ ଦେଇ ଦେବେ ବାହାରେ। ସେହି ଅନୁସାରେ ଯୋଜନା ପ୍ରସ୍ତୁତ ହେଲା। ବାଲୁଗାଁରେ ଡିଭିଜନ ଅଫିସ୍‌ର ସବୁ ଷ୍ଟାଫ୍ ଓ ସବୁ ସବ୍‌ଡ଼ିଭିଜନର ଷ୍ଟାଫ୍ ଏକତ୍ର ହେଲେ। ଚିଲିକାରେ ନୌକାରେ ଭ୍ରମଣ, କାଳୀଜାଇଙ୍କ ଦର୍ଶନ, ସକାଳ ଲଞ୍ଚ, ରାତ୍ରି ଡିନର। ସାରା ରାତି କେହି ଶୋଇ ନାହାନ୍ତି। ସେ ଯେଉଁଭଳି ସାରା ଡିଭିଜନକୁ ଗୋଟିଏ ପରିବାର ଭଳି ବାନ୍ଧି ରଖିଥିଲେ ସେହିଭଳି ଗୋଟିଏ ପାରିବାରିକ ପରିବେଶରେ ବିଦାୟ ନେଲେ। ତାଙ୍କ ପରି ଜଣେ ସୁଦକ୍ଷ ଅଫିସରଙ୍କ ଅଧୀନରେ କାର୍ଯ୍ୟ କରିବାର ଅବକାଶ ପାଇ ମୁଁ ନିଜକୁ ଧନ୍ୟ ମନେ କଲି। ଉନ୍ନତ ମସ୍ତିଷ୍କ ସହ ମହତ ହୃଦୟର ସମ୍ମିଶ୍ରଣ ଘଟିଥିଲା ତାଙ୍କଠି। କଠୋର କର୍ତ୍ତବ୍ୟନିଷ୍ଠାର ସେ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ। କେରଳ ଇଉନିଭରସିଟି ମୋତେ ଇଞ୍ଜିନିୟରିଂ ଡିଗ୍ରୀ ଦେଇଥିଲା। କିନ୍ତୁ ପୋଥିଗତ ବିଦ୍ୟାର ସଫଳ ରୂପାୟନ ହୋଇଥିଲା ତ୍ରିପାଠୀ ସାହେବଙ୍କ ପରି ଜଣେ କର୍ମଠ, କଷ୍ଟ ସହିଷ୍ଣୁ ଏବଂ ଉଦାରଚେତା ଅଫିସରଙ୍କ ସାହଚର୍ଯ୍ୟ ତଥା ଦିଗ୍‌ଦର୍ଶନ ଫଳରେ।

ବିବାହର ବର୍ଷେ ପରେ ମୋର ପ୍ରଥମ ପୁତ୍ର ସନ୍ତାନ ଶୁଭେନ୍ଦୁ (ବୁଲୁ)ର ଜନ୍ମ ହେଲା ୧୯୬୦ ମସିହା ମାର୍ଚ୍ଚ ୨୩ ତାରିଖରେ। ୧୯୬୦ ଜୁଲାଇ ମାସ ଭୁବନେଶ୍ୱର ଯାଇଥାଏ, ହଠାତ୍ ଫୋନ୍ ବାର୍ତ୍ତାରେ ପାଇଲି, ଉମା ଅବସ୍ଥା ଖରାପ।

ସଙ୍ଗେସଙ୍ଗେ ଫେରିଲି ନୟାଗଡ଼। ଗାଡ଼ିର ବ୍ରେକ୍ ଧରୁ ନଥାଏ। କିନ୍ତୁ ଘରେ ଦେହ ଖରାପ କଥା ଶୁଣି ଡ୍ରାଇଭର ବେଶ୍ ବେଗରେ ଗାଡ଼ି ଚଳାଉଥାଏ। ବେଗୁନିଆ ଅଛି ଆଉ ୨ କି.ମି.। ହଠାତ୍ ଦେଖିଲି ଗାଡ଼ି ଗୋଟାଏ ଆଡ଼କୁ ଟାଣି ହୋଇଯାଉଛି। ଡ୍ରାଇଭର ଷ୍ଟିଏରିଂ କାଟିବା ବେଳକୁ ଗାଡ଼ିର ଚକ୍ ବୁଲିଯାଉଛି। ଏହା ଯେ ଟାଇରଡ୍

କଟିଯିବା ଲକ୍ଷଣ, ତାହା ଜାଣିପାରିଲି। ପ୍ରଥମ ପେଡ଼ାଲ ବ୍ରେକ୍‌ରେ ଗାଡ଼ିଟି ଅବଶ୍ୟ ଅଳ୍ପ ବୁଲିଗଲା। ପୁଣି ଗାଡ଼ିଟି ଚାଲିଲା ଦ୍ୱିତୀୟ ଗଛ ଅଭିମୁଖେ। ଡ୍ରାଇଭର ୨ୟ ପେଡ଼ାଲ ବ୍ରେକ୍ ମାରିଲା। ଗାଡ଼ିଟି ସମକୋଣରେ ବୁଲିଯାଇ ବିଲ ଭିତରକୁ ଗଡ଼ିଗଲା। ଷ୍ଟିଅରିଂ ଫେଲ୍ ମାରିଲା ବେଳେ ଦେଖିଛି ଗାଡ଼ି ୪୦ ମାଇଲ ବେଗରେ ଗତି କରୁଥିଲା। ଏଭଳି ଏକ ସାଂଘାତିକ ଦୁର୍ଘଟଣାରୁ କିପରି ରକ୍ଷା ପାଇଲି ତାହା ସେହି ସର୍ବମୟ କର୍ତ୍ତାଙ୍କୁ ଜଣା।

୧୯୬୧ ମସିହା ଅଗଷ୍ଟ ମାସ। ହଠାତ୍ ଉମା ଟାଇଫଏଡ୍ ରୋଗରେ ପୀଡ଼ିତ ହେଲା। ଆମର ଦ୍ୱିତୀୟ ସନ୍ତାନ ଜନ୍ମ ହେବାକୁ ଆଉ ଅଳ୍ପଦିନ ବାକିଥାଏ। ଅଗଷ୍ଟ ୧୦ ତାରିଖ ଦିନ, ଏହି ଟାଇଫଏଡ୍ ରୋଗ ଥିବା ଅବସ୍ଥାରେ ଦ୍ୱିତୀୟ ସନ୍ତାନ ଏକ କନ୍ୟାରତ୍ନ ଜନ୍ମ ହେଲା। ପ୍ରସବ ପରେ ଉମାର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଲା। ନୟାଗଡ଼ର ଡାକ୍ତର ଆଦାମ୍ ଅଲି ବେଗ୍‌ଙ୍କ ପରାମର୍ଶ ଅନୁସାରେ ତାକୁ କଟକ ମେଡ଼ିକାଲ କଲେଜ ଡାକ୍ତରଖାନାକୁ ସ୍ଥାନାନ୍ତର କଲି। ରାତି ୧୨ଟା ବେଳକୁ ଆମେ ପହଞ୍ଚିଲୁ କଟକରେ। ଆଦାମବାବୁଙ୍କ ସାଙ୍ଗ ଡାକ୍ତରାଣୀ ଉର୍ମିଳା ମହାନ୍ତି ଦାୟିତ୍ୱରେ ଥାଆନ୍ତି। ସେ ସଙ୍ଗେ ସଙ୍ଗେ ଡାକ୍ତରଖାନାରେ ଏଡ଼ମିସନ୍ କରିଦେଲେ। ଡାକ୍ତରଖାନାରେ ଏଡ଼ମିସନ୍ ପୂର୍ବରୁ ଡାକ୍ତରମାନେ ଯେଉଁ କଡ଼ା ଫିସ୍ ନିଅନ୍ତି, ତାହା ଦେବା ମୋ ପକ୍ଷେ ସମ୍ଭବ ହେଲାନି। ଏହା ମୋର ସବୁ ଠାରୁ ବଡ଼ ଭୁଲ୍ ହୋଇଗଲା ଓ ସେଥିପାଇଁ ମୋର ପରିବାରକୁ ବହୁତ କଷ୍ଟ ସହିବାକୁ ପଡ଼ିଲା। ଯେଉଁ ଗାଡ଼ି ଆମକୁ ନେଇ କଟକ ଯାଇଥିଲା, ସେହି ଗାଡ଼ିରେ ଆଦାମବାବୁ ଫେରି ଆସିଲେ। ରହିଗଲୁ ମୁଁ, ମୋର ବୋଉ, ଏକ ଘରୋଇ ଚାକର ବିମ୍ବାଧର ୧୪ ମାସର ଶିଶୁ ବୁଲୁ। ବୋଉ ଡାକ୍ତରଖାନାରେ ଉମାକୁ ଜଗି ରହିଲେ। ଗୋଟିଏ ଭଡ଼ା ଘର ନେଇ ରହିଲୁ ମୁଁ, ବୁଲୁ ଓ ଦାଦାଙ୍କ ପୁଅ ମୁରଲୀ। ପରେ ବାପା ଆସି ଆମ ସହ ଯୋଗଦେଲେ। କଟକ ବଡ଼ଡାକ୍ତରଖାନା ମୋ ପାଇଁ ନୂଆ। ସେଠାରେ କାମ କରୁଥିବା ମୋ ସାଙ୍ଗ ବିମଳ କର, ବିଜୟ ବିଦ୍ ଓ କୃଷ୍ଣମୋହନ ପଟ୍ଟନାୟକ ନଥାନ୍ତି। ଅଳ୍ପଦିନ ଆଗରୁ ଗଭର୍ଣ୍ଣର ସୁକ୍‌ତାନକର ମେଡ଼ିକଲ ପରିଦର୍ଶନ କରି ତାଙ୍କର କଟୁ ମନ୍ତବ୍ୟ ପ୍ରକାଶ କରିଥାନ୍ତି। ସମସ୍ତେ ଭୟରେ ଥରହର। ଏଣେ ଡାକ୍ତରମାନେ ତାଙ୍କର ପ୍ରାକ୍ଟିସ୍

ଚଳାଇଥାନ୍ତି। ନିୟମ ଖାଲି ରୋଗୀ ଓ ତାଙ୍କ ପରିବାର ପାଇଁ। କେହି ମେଡ଼ିକାଲ ଭିତରକୁ ପରିଦର୍ଶନ ସମୟ ବାହାରେ ଯାଇପାରିବେନି। ପୁଣି ଆମକୁ ମିଳିଥାଏ ସାଧାରଣ ୱାର୍ଡ଼ରେ ବେଡ୍‌ ତେଣୁ ପରିଦର୍ଶନ ସମୟ ବାହାରେ ଯିବାକୁ ମନା। ପରିଦର୍ଶନ ସମୟରେ ଡାକ୍ତର ନଥାନ୍ତି। ତେଣୁ କଣ ଚିକିତ୍ସା ହେଉଛି ଓ କଣ କରିବା ଦରକାର, ମୁଁ କିଛି ଜାଣିପାରୁ ନଥାଏଁ। ବେଡ୍‌ ଋର୍ଜରେ ଥାଆନ୍ତି ପ୍ରଫେସର ଜ୍ୟୋସ୍ନା ଦେଇ ଓ ଆସୋସିଏଟ୍‌ ପ୍ରଫେସର୍‌ ସୁଖଲତା ଦାସ। ଅଗଷ୍ଟ ୧୬ ତାରିଖ ଦିନ ସନ୍ଧ୍ୟା ୪ଟାରୁ ଜ୍ୟୋସ୍ନା ଦେଇଙ୍କ ପାଖରେ ଅପେକ୍ଷା କଲି ସନ୍ଧ୍ୟା ୭ଟା ପର୍ଯ୍ୟନ୍ତ । ହଠାତ୍‌ ସେ ଘରୁ ବାହାରି ପ୍ରାଇଭେଟ୍‌ କଲ୍‌ରେ ଋଲିଗଲେ। କହିଲେ କାଲି ଅବଶିଷ୍ଟ ରୋଗୀମାନଙ୍କୁ ଦେଖିବେ। ମନକଷ୍ଟରେ ଫେରିଲି। ୧୭ ତାରିଖ ଦିନ ପୁଣି ତାଙ୍କ ଘରକୁ ଗଲି। ସନ୍ଧ୍ୟା ୬ଟା ବେଳକୁ ମୋର ପାଳି ପଡ଼ିଲା। ମୁଁ ଯେତେବେଳେ କହିଲି ମୋ ସ୍ତ୍ରୀ ଆପଣଙ୍କ ଡାକ୍ତରଖାନାରେ ଅଛି, ମୁଁ କିଛି ଜାଣି ପାରୁନି। ସେ ସଙ୍ଗେ ସଙ୍ଗେ କହିଲେ "ଡାକ୍ତରଖାନା ରୋଗୀ, ଏଠାକୁ କାହିଁକି ଆସିଛନ୍ତି ? ମୁଁ ମୋଟେ ଶୁଣିବିନି।" ମୁଁ ତାଙ୍କ ଆଗରେ ୫୦ଟଙ୍କା ଥୋଇ କହିଲି ମୁଁ ଜଣେ ଏସିଷ୍ଟାଣ୍ଟ୍‌ ଇଞ୍ଜିନିୟର, ମୋର ସ୍ତ୍ରୀର ଟାଇଫଏଡ଼୍‌ରେ ପୀଡ଼ିତ। ଜ୍ୱର ଅବସ୍ଥାରେ ଡ଼େଲିଭରି ହୋଇ ସେ ରକ୍ତଶୂନ୍ୟ ହୋଇଯାଇଛି। ଆପଣ ଦୟାକରି ତାକୁ ଟିକେ ଦେଖନ୍ତୁ। ସେ ତ ଟଙ୍କା ରଖିଲେ ନାହିଁ, ବରଂ ଏକପ୍ରକାର ତାଙ୍କ ଲୋକଙ୍କ ଦ୍ୱାରା ବାହାର କରିଦେଲେ। ତାପରଦିନ ଅର୍ଥାତ୍‌ ଅଗଷ୍ଟ ୧୮ ତାରିଖ ଦି ୱାର୍ଡ଼ରଗେଟ୍‌ ପାଖରେ ଜଗି ତାଙ୍କୁ ନମସ୍କାର ହୋଇ ଯେତେବେଳେ ଅନୁରୋଧ କଲି ସେ ଶୁଣି ନ ଶୁଣିଲା ପରି ଋଲିଗଲେ, ଫିସ୍‌ତ ନେଲେନି ଜଣେ ଏତେ ବ୍ୟସ୍ତ ହୋଇ କହୁଛି ତାର କଥା ପ୍ରତି ଖାତିର ନାହିଁ। ଡାକ୍ତରଖାନା ରୋଗୀ ପ୍ରତି ନଜର ନାହିଁ। ଏହିପରି ଦୁଇ ଥର ଚେଷ୍ଟା ପରେ ଭାବିଲି ଆସୋସିଏଟ୍‌ ପ୍ରଫେସର ସୁଖଲତା ଦାସଙ୍କୁ ଦେଖାକରିବି। ତାଙ୍କୁ କହିବାରୁ ସେ ମଧ ଶୁଣିଲେ ନାହିଁ। ମୁଁ ସେଦିନ ସ୍ଥିର ସିଦ୍ଧାନ୍ତ କରିଥାଏ, ଆଜି ନିଷ୍ଠୟ ତାଙ୍କୁ ଉମାର କ'ଣ ହୋଇଛି ପଋରିବି। ମୁଁ ଚୌକିଦାରର ମନା ନ ମାନି ତାଙ୍କ ପଛେ ପଛେ ଗଲି ଓ କହିଲି ମୁଁ ଜଣେ ଅଫିସର୍‌। ମୋ ସ୍ତ୍ରୀ ଏଠାରେ ପଡ଼ିଛି। ତା ପାଇଁ ମୁଁ ଟଙ୍କା ଖର୍ଚ୍ଚ କରିବାକୁ ପ୍ରସ୍ତୁତ। ଆପଣ ମୋ କଥା ଟିକିଏ

ଶୁଣନ୍ତୁ। ସେତ ଶୁଣିଲେ ନାହିଁ। ବରଂ ଚୌକିଦାରଙ୍କୁ କହିଲେ ବର୍ତ୍ତମାନ ଡ୍ରେସିଂ ସମୟ। ତାଙ୍କୁ କହନ୍ତୁ ଶୀଘ୍ର ୱାର୍ଡ଼ ଛାଡ଼ି ଚାଲିଯିବେ। ମନକଷ୍ଟରେ ଫେରିଲି। ଏଣେ ଉମା କହୁଥାଏ ମୋ କଥା କେହି ବୁଝୁନାହାନ୍ତି। ଆସି କହୁଛନ୍ତି ସବୁ ଠିକ୍ ଅଛି। ବେଳେବେଳେ ଦେହ କଣ ହୋଇଯାଉଛି। କାଲି ପରିଦର୍ଶନ ସମୟରେ ତୁମେ ଆସିବାବେଳକୁ ମୋ ଉପରେ ଚଦର ଘୋଡ଼ାଇ ମୋ ଶବ ବାହାରକୁ ବାହାର କରି ଦିଆଯାଇଥିବ।

ତାପରଦିନ ୨୦ ତାରିଖ । ଭାବିଲି ହାଉସ୍ ସର୍ଜନଙ୍କୁ ଦେଖା କରି ଦୁଃଖ କହିବି। ହାଉସ୍ ସର୍ଜନ ଥାନ୍ତି, ମୁରଲୀଧର ରାଉତ। ତାଙ୍କୁ ଦେଖା ମିଳିଲା ରାତି ୯ଟାରେ। ସେ ଅବଶ୍ୟ କ୍ଳାନ୍ତ ହୋଇଥିବାରୁ ବେଶି କିଛି କହିଲେ ନାହିଁ। ତା ପରଦିନଠୁ ଉମା ଠାରୁ ଶୁଣିଲି ସେ ଟିକିଏ ତା କଥା ଅଧିକ ଗୁରୁତ୍ୱ ଦେଇ ବୁଝୁଛନ୍ତି। ତାପରଦିନ ୨୧ ତାରିଖ, ଦିନ ସାରା ଡାକ୍ତରଖାନାରେ ପାଗଳଙ୍କ ଭଳି ବୁଲୁଥାଏ। କାଳେ କିଏ ଚିହ୍ନାଲୋକ ଦେଖା ହୋଇଯିବକି ? ହଠାତ୍ ଦେଖିଲି ପୂର୍ବରୁ ନୟାଗଡ଼ରେ କାମ କରୁଥିବା ଡାକ୍ତର ରସିକ ମୋହନ ପଟ୍ଟନାୟକଙ୍କୁ। ତାଙ୍କୁ ସବୁ ଦୁଃଖ କହିବାରୁ ସେ ଯାଇ ନିଜେ ଡାକ୍ତରାଣୀ ସୁଖଲତା ଦାସଙ୍କ ସହ କଥାବାର୍ତ୍ତା ହେଲେ। ସେତେବେଳକୁ ଆମେ ଆସିବା ୭ ଦିନ ହେଲାଣି। ନୟାଗଡ଼ରୁ ଆମେ ଆସିବା ସମୟରେ ଉମା ତାର କଣ ହୋଇଯାଇଛି ବୋଲି ବ୍ୟସ୍ତ ହେବାରୁ ଆଦାମ୍‌ବାବୁ ୨ ଟୋପା ଲେଖାଏଁ ଲିକୁଇଡ୍ କୋରାମିନ୍ ଦିନକୁ ୨ ଥର ଖାଇବାକୁ ଦେଇଥିଲେ। ତାହା ସେହିପରି ଚାଲିଥାଏ। ଜ୍ୱର ଛାଡୁ ନଥାଏ। ଆଦାମ ବାବୁ ଦେଇଥିବା କ୍ଲୋରୋମାଇସେଟିନ୍ ସରିଯାଇଥାଏ। କେହି କୋରାମିନ୍ ବନ୍ଦ କରିବାକୁ ବା ଅଧିକ କ୍ଲୋରୋମାଇସେଟିନ୍ ଖାଇବାକୁ କହୁନଥାନ୍ତି। ପ୍ରଥମ ଥର ପାଇଁ ସୁଖଲତା ଦାସ ଆସି ପରୀକ୍ଷା କରି ଔଷଧ ଖାଇବାର ଏଭଳି ବ୍ୟତିକ୍ରମ ହୋଇଛି ବୋଲି କହିଲେ ଓ କୋରାମିନ୍ ବନ୍ଦ କରିବାକୁ କହିଲେ। ଅବଶ୍ୟ ଧିରେ ଧିରେ ଜ୍ୱର ଛାଡ଼ିଗଲା ଏବଂ ୧୪ ଦିନ ରହିବା ପରେ ଆମେ ୨୮ ତାରିଖ ଦିନ ଫେରିଲୁ। କେବଳ ଉମାର ଭାଗ୍ୟବଳ ଥିବାରୁ ସେ ଯମ ମୁହଁରୁ ଫେରି ଆସିଲା। ସେତେବେଳେ ଓଡ଼ିଶାରେ ଥିବା ଗେଜେଟେଡ୍ ଅଫିସରଙ୍କ ସଂଖ୍ୟା ଖୁବ୍ ବେଶୀରେ ୨୦୦ ହେବ।

ଜଣେ ଅଫିସରଙ୍କ ସ୍ତ୍ରୀ ଯଦି କଟକ ବଡ଼ ଡାକ୍ତରଖାନାରେ ଏଭଳି ହଇରାଣ ହେଲା ସାଧାରଣ ରୋଗୀଙ୍କ ଅବସ୍ଥା ଯାହା ହେଉଥିବ ତାହା ସମସ୍ତେ ଅନୁମାନ କରିପାରୁଥିବେ। କିନ୍ତୁ ପୁଣି ୨ ଥର ଟାଇଫଏଡ୍ ରିଲାପସ୍ କଲା। କିନ୍ତୁ ମୋର ସେତେବେଳକୁ ଆତ୍ମବିଶ୍ୱାସ ବଢ଼ିଗଲାଣି ଓ ମୁଁ ଧୈର୍ଯ୍ୟ ଧରି ଅଦାମବାବୁଙ୍କ ଚିକିତ୍ସାରେ ତାଙ୍କୁ ରଖି ଭଲ କରିପାରିଲି। ଏତେ ଦୁଃଖ ଭିତରେ ଏକମାତ୍ର ଉଜ୍ଜ୍ୱଳ ବର୍ତ୍ତିକା ଦୁଇଟି ଥାଆନ୍ତି ପୁଅ ବୁଲୁ ଓ ନୂତନ ଜନ୍ମିତ ଝିଅ ଲୁଲି। ଲୁଲିର ମୁହଁଟି ଅବିକଳ ସୁମ ଅପା ମୁହଁ ପରି। ତାରି ରଙ୍ଗ, ତାରି ପରି ଆଖି। ହସ ହସ ମୁହଁ। ମା'ଠାରୁ ଯତ୍ନ ନ ପାଇ ମଧ୍ୟ ଡାକ୍ତରଖାନାରେ ସେ ସବୁବେଳେ ହସୁଥାଏ। ମା' କ୍ଷୀର କଣ ଜାଣିନାହିଁ। ବାହାର କ୍ଷୀର ଖାଇ ସେ ନୀରବରେ ଥାଏ। କାନ୍ଦ ଖୁବ୍ କମ୍। ହସ ବେଶୀ। କିନ୍ତୁ ଉମାର ସ୍ୱାସ୍ଥ୍ୟର ଉନ୍ନତି ଘଟିବାକୁ ବହୁତ ଦିନ ଲାଗିଲା। ବର୍ଷେ ପର୍ଯ୍ୟନ୍ତ ସେ ପ୍ରାୟ ଶଯ୍ୟାଶାୟନୀ। ଘର କାମ ଓ ଝିଅର କାମ କରିପାରେନି।

ସାଧାରଣ ଚଲାବୁଲା କରିବା ବ୍ୟତୀତ ଅଧିକ ସେ କିଛି କରିପାରେନି। ଅଧିକ ସମୟ ଶୋଇ ରହିବାକୁ ପଡ଼େ। ତାର ଅଙ୍ଗପ୍ରତ୍ୟଙ୍ଗର ଚଳନର ମନ୍ଥରତା ଫଳରେ ଯେଉଁ ତନୁପାତଳୀ ଝିଅଟି ମାତ୍ର ୨ବର୍ଷ ଆଗରୁ ବୋହୂ ହୋଇ ଆସିଥିଲା, ତାର ଶରୀର ଧିରେ ଧିରେ ମୋଟା ହେବା ଫଳରେ ସଦାବେଳେ ରୋଗାକ୍ରାନ୍ତ ହେବାରେ ଲାଗିଲା। ମୋ ପୂଜ୍ୟ ଗୁରୁ କିଶୋରୀବାବୁ ଥରେ ଶରଣ କୂଳକୁ ବୁଲି ଆସିଥାନ୍ତି। ଉମା ଦେହ ଖରାପ ଖବର ଶୁଣି ସେ ବହୁତ ବ୍ୟସ୍ତ ହେଲେ। ଉମା ତାଙ୍କ ସାଙ୍ଗର ଝିଅ ଓ ସେ ତାକୁ ମୋ ପାଇଁ ନିର୍ବାଚନ କରିଛନ୍ତି। ସେ ତାଙ୍କର ଅତି ଆଦରଣୀୟା। ତା ଶରୀରରେ ଅଧିକରୁ ଅଧିକ ଯତ୍ନ ନେବା ପାଇଁ ମୋତେ ତାଗିଦ୍ କରିଗଲେ। ତାଙ୍କର ମହୌଷଧି ହେଉଛି ତାଙ୍କର ମାଳିଜପ, ସେ ଉମା ପାଇଁ କଣ କଲେ କେଜାଣି, ତାପରେ ପରେ ଉମାର ଦେହ ଧିରେ ଧିରେ ଭଲ ହେବାକୁ ଲାଗିଲା।

୧୯୫୯ ଜାନୁୟାରୀ ଠାରୁ ୧୯୬୨ ସେପ୍ଟେମ୍ବର ପର୍ଯ୍ୟନ୍ତ ନୟାଗଡ଼ ଓ ଶରଣକୂଳରେ ରହଣି ଦିନଗୁଡ଼ିକ ଅପାଶୋରା ହୋଇରହିଛି।

ଶରଣକୂଳରେ ପ୍ରସିଦ୍ଧ ଲଡୁବାବାଙ୍କ ମନ୍ଦିର ବଡ଼ ପ୍ରତ୍ୟକ୍ଷ ଦେବତା। ଲିଙ୍ଗ ଆକୃତି ଅପେକ୍ଷାକୃତ ବଡ଼। କିନ୍ତୁ ତାଙ୍କର ଲିଙ୍ଗ ବେଷ୍ଟନ କଲାଭଳି ନାଗଟିଏ ନାହିଁ।

ଠାକୁରଙ୍କର ସୁନା ରୂପା ଅନେକ। ବିଭିନ୍ନ ଭକ୍ତମାନେ ହାତ, ଗୋଡ଼, ଆଖି ବୃଷଭ, ନାଗ, କାନ ଆଦି ଦେଇଛନ୍ତି। ସେତେବେଳେ ସିଭିଲ ଏସଡ଼ିଓ ଥାନ୍ତି ଭ୍ରମରବର ଜେନା। ସେ ପ୍ରସ୍ତାବ କଲେ ଲଡୁବାବାଙ୍କ ପାଇଁ ରୂପାର ନାଗଟିଏ ତିଆରି କରିବେ। ଠାକୁରଙ୍କ ରୂପା ନେଇ କଟକରେ ତରଳା ଗଲା। କିନ୍ତୁ କଟକରେ କୌଣସି କାରିଗର ଏତେ ବଡ଼ ନାଗ ତିଆରି ପାଇଁ ରାଜି ହେଲେନି। ସେମାନେ କହିଲେ ଏତେ ବଡ଼ ନାଗ ତିଆରି ଜାଣି ନାହାନ୍ତି। ବରହମପୁରକୁ ରୂପା ମୁଣ୍ଡାଟି ପଠାଗଲା। ସେଠାରେ ମଧ୍ୟ କେହି ନାଗ ତିଆରି କରିପାରିଲେନି। ଭ୍ରମରବାବୁ ଓ ଆମ୍ଭେମାନେ ଭାବିଲୁ, ରୂପା ତରଳାଇବା ଗୋଟାଏ ବିରାଟ ଭୁଲ ହୋଇଗଲା। ହଠାତ୍ ଫିତା ଝୁମୁକା ବିକୁଥିବା ମାତାଲଟିଏ ଆସି କହିଲା, ସେ ନାଗ ସାପ କରିଦେବ। ଏହା ତାର କୌଳିକ ବୃତ୍ତି, ତାର ବାପା ଜେଜେ ବାପା ସୁନାରୂପା କାମ କରୁଥିଲେ। ସେ ପିଲା ଦିନେ ଏହା ଶିଖିଛି। ଅବଶ୍ୟ କେତେଦିନ ହେଲା, ସେ ଏ କାର୍ଯ୍ୟ କରୁନି। କିନ୍ତୁ ସେ କାର୍ଯ୍ୟଟି କରିଦେଇପାରିବ, ବୋଲି ତାର ବିଶ୍ୱାସ । ମାତାଲ ଲୋକ, କାଳେ ରୂପାତକ ନେଇ ପଳାଇବ ଭାବି ତାକୁ ବଳରାମଙ୍କ ମନ୍ଦିର ଭିତରେ ଏଣ୍ଡୋଭମେଣ୍ଟ ସୁପରଭାଇଜରଙ୍କ ତତ୍ତ୍ୱାବଧାନରେ କାମ କରିବାକୁ କୁହାଗଲା। ପ୍ରଥମଦିନ ରୂପାକୁ ପିଟିପିଟି ଗୋଟାଏ ଲମ୍ବା ଦଉଡ଼ି ଭଳି କରିଦେଲା। ସନ୍ଧ୍ୟାବେଳେ ସେ ଗୋଟିଏ ଡ୍ରଇଂ ମାଗିଲା। ସ୍କୁଲର ଡ୍ରଇଂ ଶିକ୍ଷକଙ୍କୁ ଡ୍ରଇଂ କରିବାକୁ କୁହାଗଲା। ତାପର ଦିନ ସେ ଆସି କହିଲା - ଯେ ଡ୍ରାଇଂର ଆବଶ୍ୟକତା ନାହିଁ। ଠାକୁର ନିଜେ ଡ୍ରଇଂ ପଠାଇ ଦେଇଛନ୍ତି। ଆପଣମାନେ ଆସନ୍ତୁ ମନ୍ଦିରରେ ଡ୍ରଇଂ ଦେଖିଯିବେ। ତାର କଥା ରକ୍ଷା କରି ଆମେ ସବୁ ଯାଇ ବଳରାମଙ୍କ ମନ୍ଦିରରେ ଦେଖିଲୁ ଯେ ଯେଉଁ ସ୍ଥାନରେ ମିସ୍ତ୍ରୀ ନାଗସାପ ତିଆରି କରିବା ଆରମ୍ଭ କରିଥିଲା ସେହି ସ୍ଥାନରେ ଗୋଟାଏ ୧୦ ଫୁଟ୍ ଲମ୍ବର ନାଗ କାତି ଛାଡ଼ି ଦେଇଯାଇଛି। ନୟାଗଡ଼ର ପୁରୁଣା ବଜାର ସ୍ଥିତ ବଳରାମଙ୍କ ମନ୍ଦିରରେ ପ୍ଲିନ୍ଥ ବହୁତ ଉଚ୍ଚା। ନାଗସାପ ମନ୍ଦିର ଉପରକୁ କିପରି ଚଢ଼ିଲା ତାହା ମୋତେ ଆଜି ପର୍ଯ୍ୟନ୍ତ ବିଶ୍ୱାସ ଆସୁନି। ଏତେ ଉପରକୁ ସାପ ଉଠିବା ସମ୍ଭବ ନୁହେଁ ବୋଲି ସମସ୍ତେ କହିଲେ। ମାତାଲଟି ନାଗ ସାପ ତିଆରି କରିଦେଲା। ସେଥିରେ ସୁନାପାଣି ଦିଆଯାଇ ବାବାଙ୍କ ପାଖରେ ଏହା ଅଦ୍ୟାବଧି ଶୋଭା ପାଉଛି। କହିବାବାହୁଲ୍ୟ ଯେ ମାତାଲଟି ସେହି ଦିନୁ ମଦ ପିଇବା ଛାଡ଼ିଦେଲା। କ୍ରମେ ତାର

ଉତ୍ତୋରତ୍ତର ଉନ୍ନତି ହେଲା ଓ ସେ ତାର ପୂର୍ବ ପ୍ରତିଷ୍ଠା ଫେରି ପାଇଲା। ଲଡ୍ଡୁବାବାଙ୍କ ଭଳି ଓଡ଼ଗାଁର ରଘୁନାଥଙ୍କ ମହିମା ଅପାର। ମନ୍ଦିର ଦୁଇଟିରେ ଶୃଙ୍ଖଳାର ସହିତ ପୂଜା ଓ ଆରାଧନା କରାଯାଏ। ଦୁଇଟି ଯାକ ମନ୍ଦିରରେ ଅନ୍ନଭୋଗ ମିଳେ। ଥାଳିକୁ ସେ ସମୟରେ ୬ ଅଣା, ୨ ଜଣ ଖାଇବେ। ପ୍ରସାଦ ଅତି ସୁସ୍ୱାଦ।

ନୟାଗଡ଼ରେ କଲେଜଟିଏ ନଥାଏ। ଉଚ୍ଚ ଶିକ୍ଷା ପାଇଁ ଛାତ୍ରମାନଙ୍କୁ ଖୋର୍ଦ୍ଧା ବା ଭୁବନେଶ୍ୱରକୁ ଯିବାକୁ ପଡୁଥାଏ । ସବୁ ଅଫିସର ବସି ସ୍ଥିର କଲେ ଯେ କଲେଜଟିଏ ପ୍ରତିଷ୍ଠା କରିବେ। ଘର ତିଆରି ଉପକରଣ କିଣିବା ପାଇଁ ଅର୍ଥର ଆବଶ୍ୟକ। ମୁଁ ମଝିରେ ମତ ଦେଲି କାମଟି ଆରମ୍ଭ କରିଦିଆଯାଉ। ବାଟ ଆପେ ଆପେ ଦିଶିବ। ସତକୁ ସତ ବାଟ ଆପେ ଆପେ ଦିଶିଗଲା। ବିରାଟ କଲେଜ ବିଲ୍ଡିଂ ଆରମ୍ଭ ହୋଇଗଲା। ନୟାଗଡ଼ ସବ୍‌ଡ଼ିଭିଜନର ସବୁ ଲୋକଙ୍କୁ ଅନୁରୋଧ କରାଗଲା, ଯାହାର ଭୂ-ରାଜସ୍ୱ, ଯେତେ ତାର କଲେଜ ଚନ୍ଦା ସେତିକି। କି ଅଭୁତପୂର୍ବ ଉତ୍ସାହ। ନୟାଗଡ଼ରେ ପ୍ରତ୍ୟେକ ଅଧିବାସୀ ଭାବିଲେ, ଏ କଲେଜଟି ତାଙ୍କର ନିଜର। ଅର୍ଥର ଅଭାବ ରହିଲାନି। ଗୋପାଳ ପଟ୍ଟନାୟକ ପ୍ରିନ୍ସିପାଲ୍ ଭାବେ କଲେଜରେ ଯୋଗଦାନ କଲେ। ମାତ୍ର ଦୁଇ ବର୍ଷ ଭିତରେ ନୟାଗଡ଼ କଲେଜ ଏକ ପୂର୍ଣ୍ଣାଙ୍ଗ କଲେଜ ଭାବେ ମୁଣ୍ଡ ଟେକି ଠିଆ ହେଲା।

୧୯୬୨ ମସିହା ଜୁଲାଇ ମାସରେ ଆଉ ଗୋଟିଏ କୌତୁହଳପୂର୍ଣ୍ଣ ଘଟଣା ଘଟିଥିଲା। ତାହା ବର୍ଣ୍ଣନା ନ କରି ରହିପାରୁ ନାହିଁ। ମୋର ସାଙ୍ଗ ଦୟାନିଧି ନାୟକ ଯେ କି ମାତ୍ର ୮ ମାସ ଆଗରୁ ବୁଢ଼ାବୁଢ଼ିଆଣୀ କେନାଲ ସବ୍‌ଡ଼ିଭିଜନକୁ ଆସିଥିଲେ, ହଠାତ୍ ବଦଳି ଅର୍ଡ଼ର ପାଇଲେ ଆର.ଇ.ଓକୁ। ସେତେବେଳେ ଆର.ଇ.ଓ ନାମ ଶୁଣିଲେ ଇଞ୍ଜିନିୟରମାନଙ୍କ ମନରେ ହୃତକମ୍ପ ଜାତ ହେଉଥିଲା। ସେ ତାଙ୍କର ଜଣେ ବନ୍ଧୁ ଲୋକନାଥ ଚୌଧୁରୀଙ୍କ ସହାୟତାରେ ତତ୍‌କଳୀନ ଉପମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କୁ ତାଙ୍କ ବଦଳି ବନ୍ଦ ପାଇଁ ଅନୁରୋଧ କରିବାକୁ ଯାଇଥିଲେ। ମୋତେ ସାଙ୍ଗରେ ନେଇ ଯାଇଥିଲେ। ବୀରେନ୍ ମିତ୍ରଙ୍କ ଦରବାର ବିଷୟରେ ବହୁତ କଥା ଶୁଣିଥିଲି। କୌତୁହଳ ବଶତଃ ସେଠାରେ କ'ଣ ଘଟୁଛି ତାହା ସ୍ୱଚକ୍ଷୁରେ ଦେଖିବାକୁ ଯାଇଥିଲି। ବାରଣ୍ଡାରେ ଯେ ବସିବ ତାର ନାମ ପ୍ରାଇଭେଟ୍ ସେକ୍ରେଟେରୀ ସୁର ଦାସ ଟିପି ନେବେ। ଜଣ ଜଣକୁ ଡାକଯିବ। ନୂଆ ଚକିରି, ନାମ ମନ୍ତ୍ରୀଙ୍କ ଖାତାରେ ଲେଖା

ହୋଇଗଲେ କାଳେ ଅସୁବିଧା ହୋଇପାରେ ଭାବି ବାହାରେ ବୁଲୁଥିଲୁଁ। ବୀରେନ୍ ମିତ୍ର ଗୋଟିଏ ଆରାମ ଚୌକିରେ ଖୋଲାଦେହରେ ବସିଥାନ୍ତି, ସୁର ବାବୁ ଜଣ ଜଣ କରି ନାମ ଡାକୁଥାନ୍ତି। କାହାକୁ ୨ପଦ କଥା, କାହାକୁ ଟଙ୍କା ଦେଇ ବିଦା କରନ୍ତି। ଏହି ସମୟରେ ଜଣେ କିରାଣୀ ଆସି ଆପତ୍ତି କଲେ ଯେ ତାଙ୍କ ସ୍ତ୍ରୀଙ୍କ ଦେହ ଖରାପ। ତାଙ୍କୁ ଘରଟିଏ ମିଳିଲେ ସ୍ତ୍ରୀଙ୍କୁ ଆଣି ଚିକିତ୍ସା କରନ୍ତେ। କିନ୍ତୁ ତାଙ୍କୁ କିଛି ଟଙ୍କା ଦେଇ ବିଦାୟ କରିବାକୁ ଉପମୁଖ୍ୟମନ୍ତ୍ରୀ ଆଦେଶ ଦେଲେ। ସେ ଟଙ୍କା ନେବାକୁ ମନା କରିବାରୁ ତାଙ୍କୁ ଆଉ କିଛି ଅଧିକ ଟଙ୍କା ଦେଇ ବିଦା କରାଗଲା। ଏହା ଶୁଣି ବାରଣ୍ଡାରେ ବସିଥିବା ଗୋଟିଏ ପିଅନ ଉଚ୍ଚସ୍ୱରରେ କ୍ରନ୍ଦନ କଲା। ତାକୁ ପାଖକୁ ଡାକି ପଚାରିବାରୁ ସେ କହିଲା ଯେ ତାର ସ୍ତ୍ରୀ ଦେହ ଖରାପ। ଆଗଥର ଡେଲିଭରିରେ ପିଲାଟି ନଷ୍ଟ ହୋଇଯାଇଛି। ଏଥର ତାକୁ ଆଣି ଚିକିତ୍ସା ନ କଲେ ସେ ମରିଯିବ। ଉପମୁଖ୍ୟମନ୍ତ୍ରୀ ଜଣେ କିରାଣୀଙ୍କୁ ଘର ଦେବାକୁ ମନା କଲେଣି। ସେତ ପିଅନ ଲୋକ। ତା କଥା କଣ ଶୁଣିବେ? ଏହା କହୁଥାଏ ଓ କାନ୍ଦୁଥାଏ। ବୀରେନ୍ ବାବୁ କହିଲେ ସୁର, ତିୱାରୀ ସାହେବ (ଇଷ୍ଟେଟ୍ ଅଫିସର)ଙ୍କୁ ଫୋନ କର। ସେ ତାଙ୍କୁ ଗୋଟିଏ ଘର ଦେଇ ଦିଅନ୍ତୁ। କିନ୍ତୁ ପିଅନଟିର କାନ୍ଦ ବନ୍ଦ ହେଉନି। ଆଜ୍ଞା ତିୱାରି ସାହେବ କଣ କାହା କଥା ଶୁଣନ୍ତି? ସେ ଖାଲି ହଁ କରିବେ। ମୋତେ କେବେ ଘର ମିଳିବନି। ମୋ ସଂସାର ଭାସିଯିବ। ମୋ ସ୍ତ୍ରୀ ମରିଯିବ। ମୁଁ କଣ ଆଉ ଥରେ ବିଭା ହୋଇପାରିବି। ଏଁ..ଏଁ.ଏଁ... ହଠାତ୍ ଉପ-ମୁଖ୍ୟମନ୍ତ୍ରୀ ଆଦେଶ ଦେଲେ ତିୱାରୀଙ୍କ କୁହ ଏଇଠାକୁ ଫାଇଲ୍ ଧରି ନିଜେ ଆସନ୍ତୁ। ତିୱାରି ସାହେବ୍ ଫାଇଲ ଧରି ଆସିଲେ। ମନ୍ତ୍ରୀଙ୍କ ଘରେ କ୍ୱାର୍ଟର ଏଲଟ୍‌ମେଣ୍ଟ୍ ହୋଇ ସେ ପିଅନ ହାତକୁ ଅର୍ଡ଼ର ବଢ଼ାଇ ଦେଲା ପରେ ଯାଇ ସେ ନିରବ ହେଲା। ସେ ପିଅନଟି ମିଛ କହି ଥାଇପାରେ, ସେ ଛଳନା କରିଥାଇପାରେ ବା ତା କଥା ସତ ହୋଇପାରେ, କିନ୍ତୁ ଗରିବ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ବୀରେନ୍ ମିତ୍ର ଯେଉଁ ଉଦାର ମନୋଭାବ ଦେଖାଇ ଯାଇଛନ୍ତି ତାର ପଟାନ୍ତର ନାହିଁ।

ଆସିଷ୍ଟାଣ୍ଟ୍ ଇଞ୍ଜିନିୟର ହେବାର ମାତ୍ର ଚାରିବର୍ଷ ପରେ ଅପ୍ରତ୍ୟାଶିତ ଭାବରେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ପାହ୍ୟାକୁ ମୋର ପଦୋନ୍ନତି ହୋଇଗଲା। ୧୯୬୧ ମସିହାରେ ଓଡ଼ିଶା ଆସେମ୍ବ୍ଲି ପାଇଁ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହୋଇ ନୂତନ ସରକାର ଗଠିତ ହେଲା। ବିଜୁପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଭାବେ ଯୋଗଦେଲେ। ତାଙ୍କର

ଡ଼ାଇନାମିକ୍ ନେତୃତ୍ୱ ଫଳରେ ଓଡ଼ିଶାରେ ବହୁତ ଗୁଡ଼ିଏ ଯୋଜନା ହାତକୁ ନିଆଗଲା। ପାରାଦ୍ୱୀପ ବନ୍ଦର, ଦୈତାରୀଠାରୁ ପାରାଦ୍ୱୀପ ପର୍ଯ୍ୟନ୍ତ ଏକ୍ସପ୍ରେସ୍ ହାଇୱେ, ପାଞ୍ଚ ନମ୍ବର ଜାତୀୟ ରାଜପଥରେ ଥିବା ମୁଖ୍ୟ ନଦୀ ମହାନଦୀ, ବ୍ରାହ୍ମଣୀ, ଖରସୁଆଁ, ବୈତରଣୀ, ବୁଢ଼ାବଳଙ୍ଗ ଉପରେ ପୋଲ ନିର୍ମାଣ ଓ ସଡ଼କର ଉନ୍ନତି, ବାଲିମେଳା ବହୁମୁଖୀ ଯୋଜନା ଆଦି କାର୍ଯ୍ୟ ହାତକୁ ନିଆଗଲା। ଏଥିପାଇଁ ବହୁତ ଇଞ୍ଜିନିୟର ଆବଶ୍ୟକ ହେଲେ। ସେତେବେଳେ ବୁର୍ଲାଠାରେ ଇଞ୍ଜିନିୟରିଂ କଲେଜଟିଏ ଓ କଟକଠାରେ ଇଞ୍ଜିନିୟରିଂ ସ୍କୁଲଟିଏ ଥାଏ। ହଠାତ୍ ଆରମ୍ଭ ହୋଇଗଲା ଭଦ୍ରକ, ବରହମପୁର, ଝାରସୁଗୁଡ଼ା, କେନ୍ଦ୍ରାପଡ଼ା ଇଞ୍ଜିନିୟରିଂ ସ୍କୁଲ ଓ ରାଉରକେଲା ଇଞ୍ଜିନିୟିରିଂ କଲେଜ। ପ୍ରମୋଶନ କ୍ଷିପ୍ର ଗତିରେ ହେବାକୁ ଲାଗିଲା। ଚାକିରୀରେ ଯୋଗଦାନ ସମୟରେ ଭାବିଥିଲି ପ୍ରାୟ ୧୦/୧୨ ବର୍ଷ ପରେ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ପଦବୀକୁ ପ୍ରମୋଶନ ପାଇବି। କିନ୍ତୁ ମାତ୍ର ଚାରି ବର୍ଷ ପରେ ପ୍ରମୋଶନ ପରେ ପୋଷ୍ଟିଂ ହେଲା ବୁର୍ଲାରେ। ମୋର ଅତିପ୍ରିୟ ବୁଢ଼ାବୁଢ଼ୀଆଣୀ ଯୋଜନା ଓ କର୍ମସ୍ଥଳୀ ନୟାଗଡ଼ ଓ ଶରଣକୁଳ ଠୁଁ ବିଦାୟ ଦେଇ ଚାଲିଲି ବୁର୍ଲା ଅଭିମୁଖେ।



## ଏକାଦଶ ପରିଚ୍ଛେଦ

# ଜୀବନର ଏକ ଦୁଃଖମୟ ଅଧ୍ୟାୟ

ବୁର୍ଲାରେ ସୁପରିନ୍‌ଟେଣ୍ଡେଣ୍ଟ୍ ଇଞ୍ଜିନିୟର ଥାଆନ୍ତି, ଜନାର୍ଦ୍ଦନ ତ୍ରିପାଠୀ। ତେଣୁ ସ୍ଥାନଟି ବହୁତ ଦୂର ହେଲେ ମଧ୍ୟ ନିଜ ପରିବାରର ଲୋକଙ୍କ ପାଖକୁ ଗଲା ପରି ଲାଗିଲା। ପହଞ୍ଚିବା ପୂର୍ବରୁ ସି-ଟାଇପ୍ ବଙ୍ଗଳା ଏଲଟ୍‌ମେଣ୍ଟ୍ ହୋଇସାରିଛି। ଆମର ତୃତୀୟ ସନ୍ତାନ ଜନ୍ମ ହେବା ପାଇଁ ଆଉ ଅଳ୍ପଦିନ ବାକିଥାଏ। ଉମା ତାର ଭାଇଙ୍କ ଘରେ ଭୁବନେଶ୍ୱରରେ ରହିଲା। ତା ପାଖରେ ବର୍ଷକର ଝିଅ ଜୁଲି ରହିଲା। ମୁଁ ବାପା, ବୋଉ ଓ ଅଢ଼େଇବର୍ଷର ପୁଅ ବୁଲୁକୁ ଧରି ବୁର୍ଲା ଗଲି। ଉତ୍ତରାଞ୍ଚଳ ଇରିଗେସନ୍ ଡିଭିଜନ ଅଧୀନରେ ହିରାକୁଦ ଜଳସେଚିତ ଅଞ୍ଚଳକୁ ଛାଡ଼ିଦେଲେ ସମ୍ବଲପୁର ବଲାଙ୍ଗିର ଓ ସୁନ୍ଦରଗଡ଼ ଜିଲ୍ଲାର ସମସ୍ତ ମଧ୍ୟମ ଜଳସେଚନ ଯୋଜନା ଏହି ଗୋଟିଏ ଡିଭିଜନ ଅଧୀନରେ ଥାଏ। ୩ଟି ଜିଲା ପାଇଁ ୩ଟି ସବ୍‌ଡିଭିଜନ।

୧୯୬୨ ମସିହା ଅକ୍ଟୋବର ୧୭ ତାରିଖ ଦିନ ଉମାର କୋଳ ଉଜ୍ଜ୍ୱଳ କରି ଜନ୍ମ ହେଲା ଇଲା। ତାର ଜନ୍ମର ପ୍ରାୟ ମାସକ ପରେ ଉମା ଓ ପିଲାମାନଙ୍କୁ ନେଇଯିବା ପାଇଁ ଆସିଲି। ସେତେବେଳକୁ ମହାନଦୀ ଓ ବିରୂପା ଉପରେ ପୋଲ ନିର୍ମାଣ ସରି ନଥାଏ। ତେଣୁ ୨ ଦିନ ପରେ ଫେରିବା ପାଇଁ Ferry ରିଜର୍ଭ କରିଦେଇ ଆସିଲି। ଫେରିବାର ସବୁ ଯୋଗାଡ଼ ସରିଲା। ହଠାତ୍ ସମସ୍ତେ ଗାଡ଼ି ରିକୁଇଜିସନ୍ କରି ପୁରୀ ଯିବାକୁ ବାହାରିଲେ। Ferryରେ ପାରି ହେବାର ସମୟ ୩ଟା। ତେଣୁ ପ୍ରସ୍ତାବ ହେଲା ବଡ଼ିଭୋରରୁ ପୁରୀ ବାହାରିଯିବା। ତାହେଲେ ୧୨ଟା ସୁଦ୍ଧା ଫେରି ଆମେ ବୁର୍ଲା ଫେରିଯିବୁ। ରାତ୍ରି ୪ଟାରୁ ସମସ୍ତେ ଉଠି ନିତ୍ୟକର୍ମ କରିବାରେ ବ୍ୟସ୍ତ ରହିଲେ। ହଠାତ୍ ଶାଶୁ ମୁହଁ ଧୋଉଥିବା ଅବସ୍ଥାରେ ତଳେ ପଡ଼ିଗଲେ। ତାଙ୍କର କଣ ହୋଇଛି ବୋଲି ପ୍ରଥମେ ଜାଣି ହେଲାନି। ପ୍ରଥମେ ଗୋଡ଼ ହାତ ସେକା ଗଲା। ଡାକ୍ତର ଆସି ଦେଖି କହିଲେ ଯେ ତାଙ୍କର ରକ୍ତଚାପ ବଢ଼ିଯାଇଛି ଓ ଗୋଟିଏ ପାଖ ପାରାଲିସିସ୍ ହୋଇଯାଇଛି। ସଙ୍ଗେ ସଙ୍ଗେ ଆମ୍ବୁଲାନ୍ସରେ

ଡାକ୍ତରଖାନା ନିଆଗଲା। ଦେଖାଗଲା ଯେ ବ୍ଲଡ୍‌ପ୍ରେସର ୨୦୦/୧୪୦। ଅମ୍ଳଜାନ ଖୋଜିଲା ବେଳକୁ ସିଲିଣ୍ଡର କାମ କରୁନି। ସକାଳ ୭ଘ.୩୦ ମିନିଟରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା। ପାଖରେ ଥିଲେ ତାଙ୍କ ପୁଅ ବୋହୂ ଓ ଆମେ ଝିଅ ଜ୍ୱାଇଁ। ଶାଶୁଙ୍କର ଅକାଳ ବିୟୋଗର ଧକ୍କା ଉମାକୁ ବହୁତ ବାଧିଲା। ତାଙ୍କର ସେତେବେଳକୁ ବୟସ ମାତ୍ର ୫୪ବର୍ଷ। ରୋଗ ନାହିଁ, ବ୍ୟାଧି ନାହିଁ, କଷ୍ଟଭୋଗି ନାହାନ୍ତି, କାହାକୁ କଷ୍ଟ ଦେଇ ନାହାନ୍ତି, ସେ ଚାଲିଗଲେ। ବଂଶୀଭାଇ ଅତ୍ୟନ୍ତ ମର୍ମାହତ ହୋଇପଡ଼ିଲେ। ସେଦିନ ଶ୍ୱଶୁର ଭଦ୍ରକରେ ଥାନ୍ତି। ରମାଅପା ଓ ଶାଳୀ ସୁଶୀଳା ଥାନ୍ତି କଟକରେ। ବଂଶୀଭାଇ ଶାଶୁଙ୍କର ସବୁଠାରୁ ଆଦରଣୀୟ ଥିଲେ। ତାଙ୍କର ବିୟୋଗ ପୁଣି ଏଭଳି ଆକସ୍ମିକ ଭାବେ, ସାରା ପରିବାର ସ୍ତବ୍ଧ ହୋଇପଡ଼ିଲେ। ମୁଁ ହୋଇଗଲି ନିର୍ବାକ। ଖାଲି ଭାବୁଥାଏ, କାହିଁକି ପୁରୀ ଯିବାର ପୋଗ୍ରାମ କଲି। ହୁଏତ ପୋଗ୍ରାମ ହୋଇ ନଥିଲେ ସେ ପଡ଼ିଯାଇ ନ ଥାନ୍ତେ ଓ ଆଉ କିଛିଦିନ ଅଧିକ ବଞ୍ଚିଥାନ୍ତେ।

ଶାଶୁ ଥିଲେ ତାଙ୍କ ଘରର ପ୍ରେରଣାର ଉତ୍ସ। ମୋର ଦାଦା ଶ୍ୱଶୁର ଓ ଖୁଡ଼ୀ ଶାଶୁଙ୍କ ଠାରୁ ଶୁଣିଛି, ସେ ବିବାହ ହୋଇ ଆସିବାବେଳେ ସାକ୍ଷାତ୍ ଦୁର୍ଗାଙ୍କ ଭଳି ଦେଖାଯାଉଥିଲେ। ତାଙ୍କ ବାପାଙ୍କ ଘର ଭଦ୍ରକ ନିକଟ ଗେଲପୁରରେ। ସେ ଥିଲେ ଜଣେ ପ୍ରାଥମିକ ଶିକ୍ଷକ। ତାଙ୍କର ୩ଟି ଝିଅ। ଶାଶୁଙ୍କ ଉପର ଓ ତଳ ଭଉଣୀ ବିବାହର ଅଳ୍ପଦିନ ପରେ ଅକାଳ ବିୟୋଗ ଫଳରେ ସେ ତାଙ୍କ ବାପାଙ୍କର ଆଦରଣୀୟା କନ୍ୟା ଥିଲେ। କେବଳ ବାପା ମା'ଙ୍କ ସେବାର ଦାୟିତ୍ୱ ନେବା ପାଇଁ ସେ ତାଙ୍କର ସମୁଦାୟ ଜମି ବାପାଙ୍କର ସାନ ଭାଇଙ୍କ ପୁଅମାନଙ୍କୁ ଦାନ କରି, ୩ଟି ଦାଦା ପୁଅ ଭାଇଙ୍କୁ ଥଇଥାନ କରିଥିଲେ। ନିଜେ ଉଚ୍ଚଶିକ୍ଷା ଲାଭ କରି ନଥିଲେ ମଧ୍ୟ ତାଙ୍କର ଶିକ୍ଷା ପ୍ରତି ବିଶେଷ ଆଗ୍ରହ ରହିଥିଲା। ଘର ଠାରୁ ଭଦ୍ରକ ବହୁତ ଦୂର ଯୋଗୁଁ ପିଲାମାନଙ୍କୁ ବାପାଙ୍କ ପାଖରେ ରଖି ଓ ପରେ ହଷ୍ଟେଲ୍‌ରେ ରଖି ପାଠ ପଢ଼ାଇଥିଲେ। ନିଜେ କଷ୍ଟ ସହି ଶିକ୍ଷକତା କରୁଥିବା ସ୍ୱାମୀଙ୍କର ମାସିକ ବେତନରେ ଗୋଟିଏ ପୁଅ ଓ ୩ଟି ଝିଅକୁ ହଷ୍ଟେଲ୍‌ରେ ରଖି ପାଠ ପଢ଼ାଇବା ପାଇଁ ତାଙ୍କୁ କମ୍ କଷ୍ଟ ସହିବାକୁ ପଡ଼ିନାହିଁ। ତା ପରେ ପୁଅକୁ ବାହା କରି ଦେଇ ପୁଅବୋହୂ ଓ ନାତିନାତୁଣୀଙ୍କ ଯତ୍ନ ନେବା ସଙ୍ଗେ ସଙ୍ଗେ ଶ୍ୱଶୁର ଓ ଶଳାଙ୍କ ପଇସାରେ ଭୁବନେଶ୍ୱର

ସହରରେ ଗୋଟିଏ ବିରାଟ ପରିବାର ଚଳାଇବା ସଙ୍ଗେ ସଙ୍ଗେ ଝିଅ ବାହାଘର ପାଇଁ ଅର୍ଥ ସଂଗ୍ରହ କରି ସେ ଜଣେ ସୁଗୃହିଣୀ ଓ ସୁପରିଚାଳିକା ଭାବେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ। ତାଙ୍କର ରୋଗ କଥା ସେ କେବେ କାହାକୁ କହିନାହାନ୍ତି। ପୁଅ, ବୋହୂ, ଝିଅ, ନାତି, ନାତୁଣୀ, ଶାଶୁ ଓ ସ୍ୱାମୀଙ୍କୁ ମିଶାଇଲେ ୧୨ ଜଣ। ସେ ଦିନ ରାତି କାର୍ଯ୍ୟରତ ଥାଆନ୍ତି। କେତେବେଳେ ରୋଷେଇରେ ତ କେତେବେଳେ ଛୋଟପିଲାଙ୍କ ଯତ୍ନ ନେବା କାର୍ଯ୍ୟରେ। କେହି ତାଙ୍କୁ ବିଶ୍ରାମ ନେବା ଦେଖି ନାହିଁ। ତେଣୁ ତାଙ୍କର ଦେହ ଖରାପ ଅଛି ବୋଲି କିଏ କାହିଁକି ସନ୍ଦେହ କରିବ? ମୃତ୍ୟୁ ପୂର୍ବରୁ ମୁଁ ଯେତେବେଳେ ତାଙ୍କର ହାଇବ୍ଲଡ୍ ପ୍ରେସର ଦେଖିଲି ଉମାକୁ ପଚାରିଲି ବୋଉଙ୍କର ବ୍ଲଡ୍‌ପ୍ରେସର ଆଗରୁ ଦେଖିଲକି? ସେ କହିଲା ବୋଉତ କେବେ ତା ଦେହ ଖରାପ୍ କଥା କହେନି। ସେ ସବୁବେଳେ କର୍ମତତ୍ପର। ଆମେ କିଭଳି ଜାଣିବୁ ଯେ ତାଙ୍କର ଏତେ ବେଶୀ ବ୍ଲଡ୍‌ପ୍ରେସର ଅଛି ବୋଲି?

ଚାକିରିର ପ୍ରଥମାବସ୍ଥାରେ ମୋର ଟିକିଏ ଖାଇବା ସଉକି ହୋଇଯାଇଥିଲା। ଅନେକ କହନ୍ତି ପୁଅର ପେଟ ଚିହ୍ନେ ମା। କିନ୍ତୁ ଆଶ୍ଚର୍ଯ୍ୟର କଥା ମୋ ଖାଇବା ସଉକକୁ ଠିକ୍ ଚିହ୍ନି ଥିଲେ ମୋର ଶାଶୂ। ମୁଁ ଭୁବନେଶ୍ୱରକୁ ଟୁର୍‌ରେ ଆସିବା ଶୁଣିଲେ ଆରମ୍ଭ ହୋଇଥାଏ ତାଙ୍କ ରୋଷେଇ। ଆଳୁ ଓ ବାଇଗଣକୁ ମଲାନିଆଁରେ ପକାଇ ପୋଡ଼ାଯିବ। ସେଥିରେ ବଡ଼ି ଓ ଜୀରାଗୁଣ୍ଡ ପଡ଼ି ଚଟଣୀ ହେବ। କଦଳୀପତ୍ରରେ ଛୋଟ ମାଛ ବାଟିରେ ବସାଇ ପତର ପୋଡ଼ା କରାଯିବ। ଶାଗ ସେ ନିଜେ ଭାଜି ଥିବେ। କେଉଁଦିନ ଆମ୍ବଖଟା ଓ କେଉଁଦିନ ଓଉଖଟା ହେଉଥିବ। କେଉଁ ଦିନ କଞ୍ଚା ମାଛ ବେଶର ଦେଇ କରିଥିବେ ଓ ଅନ୍ୟ ଦିନେ ମାଛର କାଲିଆ। ଆଜି ବାଇଗଣ ଭଜା ତ ତା ପରଦିନ ଦହି ବାଇଗଣ ତରକାରୀ। କେରଳରେ ପଢୁଥିବା ବେଳେ ଭେଣ୍ଡି ଭର୍ତ୍ତା ଓ କଡ଼ା କଲରା ଭଜା ଖାଇବା ଅଭ୍ୟାସ ହୋଇଯାଇଥିଲା। ଜାଣିଲା ପରି ସେ ସେହିଭଳି କଲରା ଭାଜି ରଖିଥାନ୍ତି। ତାଙ୍କ ମୃତ୍ୟୁପରେ ବହୁତ ଥର ଶଶୁର ଘରେ ଖାଇଛି। କିନ୍ତୁ ତାଙ୍କ ଅମୃତ ହାତ ତିଆରି ସୁଆଦିଆ ତରକାରୀ ମୋ ଜୀବନ ଇତିହାସର ଏକ ଅସମ୍ପୂର୍ଣ୍ଣ ପୃଷ୍ଠା ହୋଇରହିଯାଇଛି। ବିଭାଘରର ମାତ୍ର ୩ ବର୍ଷ ପରେ ସେ ଆମକୁ ଛାଡ଼ି ଚାଲିଗଲେ। ତାଙ୍କ ମୃତ୍ୟୁ ଫଳରେ ତାଙ୍କ ପରିବାର ତଥା ଆମ ପରିବାରର ଯେଉଁ ଅପୂରଣୀୟ କ୍ଷତି ଘଟିଲା, ତାହା

ବର୍ଣ୍ଣନାତୀତ। ତ୍ରିପାଠୀ ସାହେବଙ୍କୁ କହି ଘରଟି ବଦଳାଇ ଦେଇ ସଚ୍ଚିଦାନନ୍ଦ ସିହ୍ନାଙ୍କ ପାଖ ଘରେ ରହିଲୁ। ଉମା ଶ୍ରୀମତୀ ସିହ୍ନାଙ୍କ ସାଙ୍ଗ ପାଇ ଟିକିଏ ଆଶ୍ୱସ୍ତା ହେଲା।

ମୁଁ ମଧ୍ୟ କାର୍ଯ୍ୟରେ ଅଧିକ ମନଯୋଗ ଦେବାର ସୁବିଧା ପାଇଲି। ତ୍ରିପାଠୀ ସାହେବଙ୍କ ପ୍ରେରଣା ପାଇ ମୁଁ ଦ୍ୱିଗୁଣ ଉତ୍ସାହରେ କାମ କରିବାକୁ ଲାଗିଲି। ନର୍ଦ୍ଦନ ଇରିଗେସନ୍ ଡିଭିଜନଟିରେ ଦୁଇବର୍ଷ ଧରି ଓଡ଼ିଆ ଇଞ୍ଜିନିୟର ନଥିଲେ। ତେଣୁ ଅନୁସନ୍ଧାନ କାର୍ଯ୍ୟରେ ବହୁତ ବ୍ୟାଘାତ ଘଟିଥିଲା। ବଲାଙ୍ଗିରରେ ଜିଲ୍ଲାରେ ଲୋୟର ଲନ୍ଥ ଜଳସେଚନ ଯୋଜନାର ଅନୁସନ୍ଧାନ କାର୍ଯ୍ୟ ଚାଲିଥାଏ। ସୁନ୍ଦରଗଡ଼ ଜିଲ୍ଲାରେ ପିତାମହଲ ଯୋଜନାରେ ଅନୁସନ୍ଧାନ କାର୍ଯ୍ୟ ସରିଯାଇ ରିପୋର୍ଟ ଲେଖା କାର୍ଯ୍ୟ ଆରମ୍ଭ ହୋଇସାରିଥାଏ। ସମ୍ବଲପୁର ଜିଲ୍ଲା ପାଇଁ ଯୋଜନାବଦ୍ଧ ଭାବେ କୌଣସି ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ ହୋଇ ନଥାଏ। ଟପୋସିଟ୍‌ରୁ ଦେଖାଗଲା ଯେ ଏକ ଖଣ୍ଡବିଖଣ୍ଡିତ ପର୍ବତମାଳା ନୂଆପଡ଼ାଠାରୁ ହୀରାକୁଦ ବନ୍ଧ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଛି। ଅଙ୍ଗନଦୀର କେତେଗୁଡ଼ିଏ ଉପନଦୀ ଏହି ପର୍ବତମାଳାକୁ ମଝିରେ ମଝିରେ ଦୁଇଭାଗ କରି ତା ମଧ୍ୟରେ ପ୍ରବାହିତ ହୋଇ ତା ସହିତ ମିଳିତ ହୋଇଛନ୍ତି। ଏହି ଉପନଦୀ ଗୁଡ଼ିକୁ ଆମେ ନାମକରଣ କଲୁ ସାଇପଲା, ଡୁମେର ବାହାଲ, ପଥରାଲ, ଝାରବନ୍ଧ ଓ ସାଲଡ଼ିହି। ତାପରେ ନିଜେ ଅଙ୍ଗନଦୀ ଦୁଇପାହାଡ଼ ମଧ୍ୟରେ ପ୍ରବାହିତ ହୋଇଛି ତା ପର ଉପନଦୀ ହେଲେ ଚିରାର ଓ ସୁରଙ୍ଗି। ଆଶ୍ଚର୍ଯ୍ୟର ବିଷୟ ପ୍ରଥମ ୫ଟି ଯାକ ନଦୀର ପତନ ପ୍ରାୟ ସମାନ ଓ ଦୁଇଟି ପାହାଡ଼କୁ ଏକ କ୍ଷୁଦ୍ର ମାଟି ବନ୍ଧ ଦ୍ୱାରା ବାନ୍ଧିଦେଲେ, ଗୋଟିଏ ଗୋଟିଏ ଜଳଭଣ୍ଡାର ସୃଷ୍ଟି ହେବା ସମ୍ଭବ ହେବ। ଟିରୋଲି ଠାରେ ଅଙ୍ଗନଦୀ ଉପରେ ଗୋଟିଏ ବନ୍ଧ କରାଯାଇପାରିବ। କିନ୍ତୁ ଚିରାର ଓ ସୁରଙ୍ଗି ନଦୀ ଉପରେ ବନ୍ଧ ବାନ୍ଧି ଦେଲେ ମଧ୍ୟପ୍ରଦେଶର କେତେକ ଅଂଶ ଜଳମଗ୍ନ ହେବ। ତେଣୁ ସାଇପଲା ଡୁମେଇ ବାହାଲ, ପଥୋରାଲ, ଝାରବନ୍ଧ ଓ ସାଲଡ଼ିହି ଉପରେ ଜଳଭଣ୍ଡାର ଓ ଅଙ୍ଗନଦୀ ଉପରେ ଟିରୋଲିଠାରେ ଜଳଭଣ୍ଡାର ସୃଷ୍ଟି କରି ନୂଆପଡ଼ାଠାରୁ ପଦ୍ମପୁର ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଅଞ୍ଚଳ ଜଳସେଚିତ ହୋଇପାରିବ। ତାପରେ କେନାଲଟି କଣ୍ଟୁରରେ ଯାଇ ଚିରାର ଓ ସୁରଙ୍ଗି ନଦୀ ଦ୍ୱୟକୁ ଆନିକଟ ସାହାଯ୍ୟରେ ଅତିକ୍ରମ କରି ଜିରା ଜଳଭଣ୍ଡାର ସହ ସଂଯୋଜିତ ହେବ। ତା ପରେ ଏହା କୁଲିଆରି, ଦନ୍ତା ଓ ଝାଇଁ ନଦୀକୁ ପିକ୍‌ଅପ୍ ଆନିକଟ୍ ସାହାଯ୍ୟରେ ଅତିକ୍ରମ କରି ହୀରାକୁଦ

କେନାଲର ଉପରି ଭାଗକୁ ଜଳସେଚିତ କରିବ। ବିସ୍ତୃତଃ ହୀରାକୁଦ ଲିଫଟ୍ କେନାଲ ଯେଉଁ ଅଞ୍ଚଳକୁ ଜଳସେଚିତ କରିବାର ଯୋଜନା ଥିଲା ତାର ଅଧିକାଂଶ ଅଞ୍ଚଳ ଏ ଯୋଜନା ଦ୍ୱାରା ଜଳସେଚିତ ହେବ।

ତିଆରି ହେଲା ଆଦ୍ୟ ଅନୁସନ୍ଧାନ ବା ରେକନଏସେନ୍ସ ରିପୋର୍ଟ। ସର୍ଭେ ପାଇଁ ଏଷ୍ଟିମେଟ୍। ଏଡ଼ିସିନାଲ୍ ଚିଫ୍ ଇଞ୍ଜିନିୟର ମାଧବଚନ୍ଦ୍ର ପାଣି ଥରେ ବୁର୍ଲା ଓ ରାଉରକେଲା ଟୁର୍‌ରେ ଆସିଥିଲେ। ମୁଁ ଓ ତ୍ରିପାଠୀ ସାହେବ ତାଙ୍କୁ ଆମର ଯୋଜନା ବିଷୟ ବିଷଦଭାବେ ବୁଝାଇଲୁ।

ସେ ବହୁତ ଖୁସି ହୋଇଗଲେ। ହଠାତ୍ ମୋର ବଦଳି ଅର୍ଡ଼ର ଆସିଲା। ବଲାଙ୍ଗୀର ଆର.ଇ.ଓକୁ। ହଠାତ୍ ବଦଳି ଅର୍ଡ଼ର ପାଇ ମୁଁ ଯେତିକି ଆଶ୍ଚର୍ଯ୍ୟ ହେଲି ତାଠାରୁ ବେଶୀ ଆଶ୍ଚର୍ଯ୍ୟ ଓ ବିବ୍ରତ ହୋଇ ପଡ଼ିଲେ ତ୍ରିପାଠୀ ସାହେବ। ତାଙ୍କର ବହୁତ ଦିନର ସ୍ୱପ୍ନ- ସମ୍ବଲପୁର ଜିଲା, ବଲାଙ୍ଗିର ଜିଲା ଓ ସୁନ୍ଦରଗଡ଼ ଜିଲ୍ଲାରେ କେତେଗୁଡ଼ିଏ ଜଳସେଚନ ଯୋଜନା ଅନୁସନ୍ଧାନ କରି ଏକ ମାଷ୍ଟରପ୍ଲାନ୍ ତିଆରି କରିବା। ମୋ ଜରିଆରେ ସେ ତାଙ୍କର ସ୍ୱପ୍ନର ବାସ୍ତବଚିତ୍ର ଆଙ୍କିବାକୁ ପ୍ରଥମ ଗାର ଟାଣିଲାବେଳକୁ ମୋର ବଦଳି ଅର୍ଡ଼ର ତାଙ୍କୁ ଅତ୍ୟନ୍ତ ବିବ୍ରତ କରିପକାଇଲା। ସେ ଯାଇ ପାଣି ସାହେବଙ୍କୁ କହିଲେ, ପାଣି ସାହେବ ତାର ଅଳ୍ପଦିନ ଆଗରୁ ଆମ କାମର ପ୍ଲାନିଂ ଦେଖି କରିଯାଇଥାନ୍ତି। ସେ ଯାଇ ଜଳସେଚନ ଉପମନ୍ତ୍ରୀ ପ୍ରହ୍ଲାଦ ମଲ୍ଲିକ ଓ ସେକ୍ରେଟେରୀ କର୍ତ୍ତାର ସିଂଙ୍କୁ କହିଲେ "ମୋର ଡିପାର୍ଟମେଣ୍ଟରେ ୫୦ ଜଣ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଅଛନ୍ତି। ଆର.ଇ.ଓ ଚିଫ୍ ଇଞ୍ଜିନିୟର ଯାହାକୁ ଚାହାନ୍ତି ନେଇପାରନ୍ତି। କିନ୍ତୁ ମୁଁ ଡିପାର୍ଟମେଣ୍ଟର ସେହି ଜ୍ୟୋତି ଭାସ୍କର ଚନ୍ଦ୍ର ନାୟକଙ୍କୁ ଛାଡ଼ି ପାରିବି ନାହିଁ।" ଏହା ଶୁଣି କର୍ତ୍ତାର ସିଂହ ସ୍ତମ୍ଭୀଭୂତ ହୋଇପଡ଼ିଲେ। ଭୁବନେଶ୍ୱରରେ ପାଣି ସାହେବଙ୍କ ଏହି ଉକ୍ତି ଶୁଣି ଅନେକ ଇଞ୍ଜିନିୟର ଆଚମ୍ବିତ ହୋଇ ପଡ଼ିଲେ। ପାଣି ସାହେବ କେବେ କୌଣସି ଇଞ୍ଜିନିୟରଙ୍କ ପାଇଁ ଓକିଲାତି କରନ୍ତିନି। ସେ କିଭଳି ଏପରି କଥା କହିଲେ ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। ବାସ୍ ଏତିକିରେ ଅର୍ଡ଼ର କେନ୍‌ସଲ୍ ହୋଇଗଲା।

'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ' ।

ଭଗବତ ଗୀତାର ଏହି ମହତବାଣୀ ଅନୁସରଣ କରି ନିଷ୍ଠାପର ଭାବେ ପରିଶ୍ରମ କଲେ, ସୁଫଳ ଅବଶ୍ୟମ୍ଭାବୀ। ଏହି ବିଶ୍ୱାସ ମୋର ଦୃଢ଼ ହେଲା ଓ ମୁଁ ଦ୍ୱିଗୁଣ ଉତ୍ସାହ ସହିତ କାର୍ଯ୍ୟ କରିବାରେ ଲାଗିଲି। ପିତାମହଲ ପ୍ରୋଜେକ୍ଟ ରିପୋର୍ଟ ଲେଖାଚାଲିଲା। ଏହାର ରିପୋର୍ଟ ଲେଖା ବୁଢ଼ାବୁଢ଼ିଆଣୀ ରିପୋର୍ଟ ଠାରୁ ଉନ୍ନତଧରଣର ଥିଲା। କାରଣ ଏହା ଭିତରେ ବହୁତ ଗୁଡ଼ିଏ ପ୍ରୋଜେକ୍ଟ ରିପୋର୍ଟ ଲେଖାଯିବା ଫଳରେ ମୋ ସମେତ ଆମ ରାଜ୍ୟର ଇଞ୍ଜିନିୟରମାନେ ଅପେକ୍ଷାକୃତ ଅଧିକ ଅଭିଜ୍ଞତା ଅର୍ଜନ କରିସାରିଥାନ୍ତି। ପିତାମହଲ ରିପୋର୍ଟ ଲେଖାବେଳେ ଆମେ ତାର ମାଟି ବନ୍ଧର ସ୍ଲିପ୍‌ସର୍କଲ୍ ଏନାଲିସିସ୍ କରି ଡେମର ନିରାପତ୍ତା ପରୀକ୍ଷା କରିପଠାଇଲୁ। କଟ୍ ଅଫ୍‌ର ଗଭୀରତା ନିର୍ଣ୍ଣୟ ପାଇଁ କେତେଗୁଡ଼ିଏ ଗାତ ଖୋଳା ଯାଇଥିଲା। ଦେଖାଗଲା ଯେ ନଦୀର ଦକ୍ଷିଣପାର୍ଶ୍ୱ ପିଟ୍‌ରେ ଯେଉଁ ଗଭୀରରେ ୧ଫୁଟ୍ ବହଳର ନଦୀ ବାଲି ଗରଡ଼ା ମିଳୁଛି ତା ଠାରୁ ୨୦୦ ଫୁଟ୍ ଦୂରରେ ସେହି ବାଲି ଗରଡ଼ା କିଞ୍ଚିତ୍ ଅଧିକ ଗଭୀରତାରେ ମିଳୁଥିଲେ ମଧ୍ୟ ଉଭୟ ପିଟ୍‌ରେ ବାଲିଗରଡ଼ାର ଲେଭଲ ସମାନ। ପୁଣି ୨୦୦ ଫୁଟ ଡାହାଣକୁ ପିଟ୍ ଖୋଳିଲେ ସେହି ଲେଭଲରେ ବାଲିଗରଡ଼ା ଏହିଭଳି ଆମେ ୩୦୦୦ ଫୁଟ୍ ପର୍ଯ୍ୟନ୍ତ ପିଟ୍ ଖୋଳି ଖୋଳି ଦେଖିଲୁ ଯେ ସେଠାରେ ୩୫ ଫୁଟ୍ ଗଭୀରରେ ଏକା ଲେଭଲରେ ବାଲିଗରଡ଼ା ରହିଛି। ଅବଶ୍ୟ ତା ପରେ ଏହି ବାଲିଗରଡ଼ା ବା ରିଭର ସିଙ୍ଗଲସ୍ ଅଦୃଶ୍ୟ ହୋଇଗଲା। ଏହାର ଅର୍ଥ ପ୍ରାକ୍ ଐତିହାସିକ ଯୁଗରେ ନଦୀଟି ତାର ଗତିପଥ ପରିବର୍ତ୍ତନ କରି ୩୦୦୦ ଫୁଟ ଦୂରକୁ ଘୁଞ୍ଚିଯାଇଛି। ସେହି ଅନୁସାରେ କଟ୍ ଅଫ୍ ଡିଜାଇନ୍ ହେଲା ଓ ପରବର୍ତ୍ତୀ କାଳରେ ଏହି ଡେମ୍ ନିର୍ମାଣ ପାଇଁ ବିଶେଷ ସହାୟକ ହେଲା। ଏହାର ଦାୟିତ୍ୱରେ ଥିଲେ ଦେବୀ ପ୍ରସାଦ ବହିଦାର ଏସ.ଡ଼ି.ଓ। ବଲାଙ୍ଗିରରେ ଲୋୟର ଲନ୍ଥ ପ୍ରୋଜେକ୍ଟର ସର୍ଭେ କାମ ଜୋର ସୋର୍‌ରେ ଚାଲିଥାଏ। ୩ଟି ଜିଲ୍ଲା ସର୍ଭେ କାମ ତଦାରଖ କରିବା ପାଇଁ ବହୁତ ଦଉଡ଼ିବାକୁ ପଡୁଥାଏ। ଦିନେ ମେ ମାସ ଖରାରେ ଲୋୟର୍ ଲନ୍ଥ ସର୍ଭେ ଦେଖିବାକୁ ଯାଇଥିଲି। ଉଦୁଉଦିଆ ଦିପହରରେ ରହିବାର ସୁବିଧା ନ ଥିଲା। ଷ୍ଟାଫ୍ ସବୁ ଜଣଙ୍କର ଦାଣ୍ଡ ଗୁହାଳଘରେ ଖରାବେଳଟି କଟାଉଥିଲେ। ଭଲଲାଗିଲାନି। ଖରାରେ ଫେରିଆସିଲି। ବୁର୍ଲାରେ ପହଞ୍ଚିବାବେଳକୁ ସନ୍ଧ୍ୟା ଆଗତ

ପ୍ରାୟ। ଏତେ ବଡ଼ ଖରାରେ ଆସିବାଟା ଭୁଲ୍ ହୋଇଗଲା। ରାତି ସାରା ଜ୍ୱର, ମୋର ଜ୍ଞାନ ନାହିଁ। ଡାକ୍ତରମାନେ କହିଲେ ସନଷ୍ଟ୍ରୋକ୍ ହୋଇଗଲା। ଭାଗ୍ୟ ଜୋରଥିବାରୁ ବଞ୍ଚିଗଲେ। ମୁଁ ଭାବିଲି ମନ୍ଦ ଦଶାଟିଏ କଟିଗଲା। ଶରୀରମାଦ୍ୟଂ ଖଲୁ ଧର୍ମ ସାଧନମ୍। ମୋତେ ଟିକିଏ ଅଧିକ ସାବଧାନତା ଅବଲମ୍ବନ କରିବାକୁ ହେବ।

ସମ୍ବଲପୁର ସବ୍ ଡ଼ିଭିଜନରେ ଏସ.ଡ଼ି.ଓ ଥିଲେ ଶ୍ରୀହର୍ଷ ପଣ୍ଡା ଓ ପରେ ଆସିଲେ ଗଙ୍ଗାଧର ପାଢ଼ୀ। 'ସଇପଲା' ଓ 'ତୁମେର ବାହାଲ' ଏପରି ଦୁଇଟି ମଧ୍ୟମ ଜଳସେଚନ ଯୋଜନାର ସର୍ଭେ ହାତକୁ ନିଆଗଲା। ପାଇକମାଲ ପାଖ ଜାମସେଠ ଠାରେ ଥିବା ରେଭିନ୍ୟୁ ରେଷ୍ଟସେଡ଼୍‌ରେ କେମ୍ପ୍ କରାଗଲା। କିନ୍ତୁ ସର୍ଭେ କାମ ପାଇଁ ପ୍ରଧାନ ପ୍ରତିବନ୍ଧକ ହୋଇ ଠିଆ ହେଲା ଓଭରସିଅର ସମସ୍ୟା। ମାତ୍ର ୨ ଜଣ ଓଭରସିଅର କେତେ ସର୍ଭେ କରିବେ? ସେମାନଙ୍କୁ ସାଇପଲା ସର୍ଭେରେ ନିଯୁକ୍ତ କରାଗଲା। ଏହି ଗତିରେ ସର୍ଭେ କଲେ ପ୍ରୋଜେକ୍ଟ ଦୁଇଟିର ସର୍ଭେ କରିବାକୁ ୨ ବର୍ଷରୁ ଅଧିକ ସମୟ ଲାଗିଯିବ। ଗୋଟାଏ ଚିନ୍ତା ମୁଣ୍ଡକୁ ଢୁକିଲା ବୁର୍ଲା ଇଞ୍ଜିନିୟରିଂ କଲେଜରେ ୩ୟ ବାର୍ଷରେ ୧୦୦ ଜଣ ସିଭିଲ୍ ଇଞ୍ଜିନିୟରିଂ ଛାତ୍ର ପଢୁଛନ୍ତି। ସେମାନେ ଗ୍ରୀଷ୍ମାବକାଶରେ ଦୁଇମାସ ଟ୍ରେନିଂ ନେବେ। ସାଧାରଣତଃ ସେମାନେ ଦିନେ ଦୁଇଦିନ ହାଜିରା ପକାଇଦେଇ ପଳାନ୍ତି। ଟ୍ରେନିଂ ସରିବା ୩/୪ ଦିନ ଥାଏ ଆସି ସାର୍ଟିଫିକେଟ୍ ନିଅନ୍ତି। ସେମାନଙ୍କୁ ଯଦି ତୁମର ବାହାଲ ପ୍ରୋଜେକ୍ଟର ସର୍ଭେରେ ଲଗାଯାନ୍ତା ତେବେ ଏକ ସମୟରେ ସଇପଲା ଓ ତୁମେର ବାହାଲ ଦୁଇଟି ଯାକର ସର୍ଭେ ସରିଯାଆନ୍ତା। ତ୍ରିପାଠୀ ସାହେବଙ୍କୁ ଏହି ପ୍ରସ୍ତାବ ଦେବାରୁ ସେ ପ୍ରିନ୍ସପାଲଙ୍କ ସହ ପରାମର୍ଶ କରି ୫୦ ଜଣ ଛାତ୍ରଙ୍କୁ ମୋ ଅଧିନକୁ ଟ୍ରେନିଂ ପାଇଁ ପଠାଇ ଦେଲେ। ଭୀମକୁଣ୍ଡ ପାଖରେ ଗୋଟିଏ ଏଲୁମିନିଅମ୍ ସେଡ଼୍ ଥିଲା। ତାକୁ ଆଣି ମାଣ୍ଡୋସିଲର୍ ଆମ୍ବ ତୋଟାରେ ବସାଇଦେଲି ଗୋଟିଏ ଯନ୍ତ୍ରକୁ ୨ ଜଣ ଛାତ୍ର। ଜଣେ ଅମିନ୍ କାମ କରିବ ଓ ଆଉ ଜଣେ ଯନ୍ତ୍ର ସାହାଯ୍ୟରେ ଲେଭଲ ନେବେ। ୬ ଜଣଙ୍କୁ ଡ଼ବଲ ଲେଭଲିଂରେ ଲଗାଇ ଦିଆଗଲା। କି ଉତ୍ସାହ! ଇଞ୍ଜିନିୟରିଂ କଲେଜର ଛାତ୍ରମାନେ ଏ ଭଳି ଉତ୍ସାହର ସହିତ କାମ କରିବେ ବୋଲି ମୋର ବିଶ୍ୱାସ ନଥିଲା। ୨୦/ ୨୫ ଦିନ ଭିତରେ ତୁମେର ବାହାଲ ରିଜର୍ଭର ସର୍ଭେ ଓ ଆୟକଟ୍ ସର୍ଭେ ସରିଗଲା। ରିପୋର୍ଟ ଲେଖିବା ପାଇଁ ପିଲାମାନଙ୍କୁ ଆବଶ୍ୟକୀୟ ୧୦ ଦିନ ଟ୍ରେନିଂ ଦିଆଗଲା।

ସେ ବେଚରେ ଦାଶରଥୀ ନନ୍ଦ, ଦୀନବନ୍ଧୁ ନନ୍ଦ, ରାଖାଲ ଦାସ, ବୈଷ୍ଣବ ନାୟକ ଆଦି ଉଦୀୟମାନ ଇଞ୍ଜିନିୟର ଥିଲେ। ପରବର୍ତ୍ତୀ କାଳରେ ଅନେକ ମୋ ପାଖରେ କାମ୍ କରିଛନ୍ତି ଓ ଛାତ୍ର ଜୀବନର ସେହି ଟ୍ରେନିଂ ତାଙ୍କର ଅଶେଷ ଉପକାର କରିଛି ବୋଲି ବର୍ଣ୍ଣନା କରିଛନ୍ତି।

ଜୁନ୍ ମାସରେ ଇଞ୍ଜିନିୟରିଂ କଲେଜ ପିଲାଙ୍କ ଟ୍ରେନିଂ ସରିଲା। ଟ୍ରେନିଂ ସରିବା ଦିନ ସେମାନେ ଯେଉଁ ମୂଲ୍ୟବାନ କାମ କରିଛନ୍ତି ସେଥିପାଇଁ ତ୍ରିପାଠୀ ସାହେବ ସେମାନଙ୍କୁ ବହୁତ ସାଧୁବାଦ ଦେଲେ ଓ ଏକା ସମୟରେ ୨ଟି ମିଡ଼ିୟମ୍ ପ୍ରୋଜେକ୍ଟର ସର୍ଭେ ସରି ଯାଇଥିବାରୁ ସନ୍ତୋଷ ପ୍ରକାଶ କଲେ। ବର୍ଷାଦିନ ଆସିଗଲା। ଏବେ ରିପୋର୍ଟ ତିଆରି କରି ନଭେମ୍ବର ବେଳକୁ ୨ଟି ରିପୋର୍ଟ CWPC ଚାଲିଯିବ। କିନ୍ତୁ ପ୍ରବାଦ ଅଛି "Man proposes God disposes" ତାହାହିଁ ହେଲା। ଜୁନ୍ ମାସର ଶେଷ ସପ୍ତାହରେ ମୋର ପୁରୀ ଆର.ଇ.ଓ ଡିଭିଜନକୁ ବଦଳି ହୋଇଗଲା। ଏହା ୧୯୬୩ ମସିହା ଜୁନ୍ ମାସ କଥା। ତ୍ରିପାଠୀ ସାହେବ ମୋ ବଦଳି ପାଇଁ ଏତେ ବିରକ୍ତ ହୋଇପଡ଼ିଲେ ଯେ ସଇପଲା ଓ ତୁମେର ବାହାଲ ପ୍ରୋଜେକ୍ଟ ରିପୋର୍ଟକୁ ଅନାଇଲେ ନାହିଁ। ସେ ଯେତେବେଳେ ଇରିଗେସନ୍‌ର ମୁଖ୍ୟଯନ୍ତ୍ରୀ ପଦ ପାଇ ଭୁବନେଶ୍ୱରକୁ ୧୯୬୮ ମସିହାରେ ଆସିଲେ ପୂର୍ବ ରେକର୍ଡ଼ ବାହାର କରି ପ୍ରୋଜେକ୍ଟ ରିପୋର୍ଟ ଲେଖା ଆରମ୍ଭ କଲେ। ମୋ ବଦଳି ଫଳରେ ପ୍ରୋଜେକ୍ଟ ଦୁଇଟି ୬ ବର୍ଷ ପଛେଇ ଗଲା।

ବାରମ୍ବାର ବଦଳି, ତା ପୁଣି ଆର.ଇ. ଓକୁ। ଘର ନାହିଁ, ଅଫିସ୍ ନାହିଁ। ନିଜର ଚେକ୍ ଡ୍ରଇଂ ପାୱର ନାହିଁ, ବିଲ୍ କରି ସିଭିଲ୍ ଏସ.ଡ଼ି.ଓ ବା ଅନ୍ୟ ଜିଲା ଅଫିସରଙ୍କୁ ପଠାଇଲେ; ଟ୍ରେଜେରିରେ ବିଲ ପାଶ୍ ହେବ। ନୂଆ ସଂସ୍ଥା। ଆଦୌ ଭଲ ଲାଗୁ ନ ଥାଏ। ପୁଣି ସେଥିରେ ଥିବା ଚିଫ୍ ଇଞ୍ଜିନିୟର ବାଞ୍ଛାନିଧି ସାହୁ ପାର୍ସନାଲ ଆକ୍ରୋସ ରଖି ବାରମ୍ବାର ସେହି ଆର.ଇ.ଓ.କୁ ବଦଳି ଅର୍ଡ଼ର କରାଉଛନ୍ତି। କେତେଥର ପାଣି ସାହେବଙ୍କୁ କହିବି। ଭଲ ଲାଗୁ ନଥାଏ, କିନ୍ତୁ ଗୋଟିଏ ଖବର ମନକୁ ତୃପ୍ତି ଦେଉଥାଏ, ତାହା ହେଉଛି ପୁରୀରେ ପୋଷ୍ଟି। ଉମା ବୁଝାଇଲା, ପୁରୀରେ ପୋଷ୍ଟି କେତେ ଜଣଙ୍କର ଭାଗ୍ୟରେ ଯୁଟେ। ପୁରୀରେ ତ ଇରିଗେସନ୍ ପାଇଁ ଡିଭିଜନ

ନାହିଁ। ଜଗନ୍ନାଥଙ୍କୁ ଦର୍ଶନ କରିହେବ। ବେଳାଭୂମିରେ ପିଲାମାନେ ସନ୍ଧ୍ୟାସମୀରଣ ସେବନ କରିପାରିବେ। ଆଉ କାହାରିକୁ କହିବା ଦରକାର ନାହିଁ। ବୁର୍ଲାରେ ଯୋଗ ଦେବାର ମାତ୍ର ୧୦ ମାସ ପରେ ଜିନିଷପତ୍ର ପେକିଙ୍ଗ୍ କରି ୧୯୬୩ ଜୁଲାଇ ମାସରେ ଚାଲିଲୁ ପୁରୀ। ସିଧା ରାସ୍ତା ନାହିଁ। ଟ୍ରକ୍‌ରେ ଜିନିଷ ନେଇ ମହାନଦୀ ପାରି ହେବା ଅସୁବିଧା। ମେରାମଣ୍ଡଳି ଷ୍ଟେସନ୍ ପର୍ଯ୍ୟନ୍ତ ଟ୍ରକରେ ଜିନିଷ ଆଣି ଟ୍ରେନ୍‌ରେ ପଠାଗଲା ପୁରୀ। ଏହା ଭିତରେ ଆମର ଗୋଟିଏ ପୁରୁଣା ଫିଆଟ କାର୍ କିଣା ସରିଥାଏ। ଗାଡ଼ିଟି ଧରି ଆମେ ଯାଇ ରହିଲୁ ହେରା ଗୌରୀ ସାହିର ଏକ ଭଡ଼ା ଘରେ। କାହିଁ ବୁର୍ଲାର 'ଟ' ଟାଇପ୍ କ୍ୱାର୍ଟର, କାହିଁ ହେରାଗୌରୀ ସାହିର ଦୁଇ ବଖୁରିଆ ଭଡ଼ାଘର? ପିଲାମାନେ ଏକାବେଳେକେ ଅଣନିଃଶ୍ୱାସୀ ହୋଇପଡ଼ିଲେ। ମାତ୍ର ୧୦ ଦିନ ଅବସ୍ଥାନ ପରେ ବାଧ ହୋଇ ଅନ୍ୟ ବ୍ୟବସ୍ଥା ପର୍ଯ୍ୟନ୍ତ ଅଫିସରର ରେଷ୍ଟରୁମ୍‌ରେ ଗୋଟିଏ ମାସ କଟାଇବାକୁ ପଡ଼ିଲା।

ପୁରୀ ଆର.ଇ.ଓ ଡିଭିଜନ। ଅବିଭକ୍ତ ପୁରୀ ଜିଲ୍ଲା ଜୁରିସଡ଼ିକସନ୍। କ୍ଷୁଦ୍ର ଜଳସେଚନ ଯୋଜନା, ରାସ୍ତା, କୋଠାବାଡ଼ି ଠାରୁ ଆରମ୍ଭ କରି ବ୍ଲକ୍ କାମ ତଦାରଖ ପର୍ଯ୍ୟନ୍ତ ବହୁତ କାମ। ତା ସାଙ୍ଗକୁ ଆର.ଇ.ଓ. ନୂତନ ସଂସ୍ଥା, ଯୋଜନାବଦ୍ଧ କାମ ଶୃଙ୍ଖଳାର ସହିତ କରିବା କଷ୍ଟକର। ଆର.ଏଣ୍ଡ.ବି ଇରିଗେସନ୍ ରେଭିନ୍ୟୁ କୋପରେଟିଭ୍, ଏଗ୍ରିକଲଚର ଏଭଳି ବିଭିନ୍ନ ସଂସ୍ଥାରୁ ଇଞ୍ଜିନିୟର ମାନେ ଏହି ସଂସ୍ଥାକୁ ଡେପୁଟେସନ୍‌ରେ ଆସିଥାନ୍ତି। ତେଣୁ କାମ ଶୃଙ୍ଖଳା ସହକାରେ କରିବା ମୁସ୍କିଲ। ପୁଣି ଏକଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କର ଚେକ୍ ଡ୍ରଇଂପାୱାର ନାହିଁ। କ୍ଷୁଦ୍ର ଜଳସେଚନ ଯୋଜନା। ରାସ୍ତା କୋଠାବାଡ଼ି ଠାରୁ ଆରମ୍ଭ କରି ବ୍ଲକ୍ କାମ ତଦାରଖ ପର୍ଯ୍ୟନ୍ତ ବହୁତ କାମ। କ୍ଷୁଦ୍ର ଜଳସେଚନ କାମ ହେଉଛି ଡିପାର୍ଟମେଣ୍ଟର। ସେଥିପାଇଁ ବିଲ୍ କରି ଟ୍ରେଜେରୀକୁ ପଠାଯିବ। କ୍ଷୁଦ୍ର ଜଳସେଚନ କାମ ବ୍ୟତୀତ ରେଭିନ୍ୟୁ କୋପରେଟିଭ୍, ସ୍ୱାସ୍ଥ୍ୟ ଏଗ୍ରିକଲଚର ଭେଟିନାରୀ, ଏକ୍‌ସାଇଜ୍, ସି.ଡ଼ି, ଶିକ୍ଷା, ଆଦିବାସୀ ଓ ଗ୍ରାମ ମଙ୍ଗଳ ଏପରି ବହୁତ ଗୁଡ଼ିଏ ଡିପାର୍ଟମେଣ୍ଟର କାମ ଆର.ଇ.ଓ. ଜରିଆରେ ହେଉଥାଏ। ଏହି କାମଗୁଡ଼ିକର ମେଜରମେଣ୍ଟ ଓ ଚେକ୍ ମେଜରମେଣ୍ଟ କରି ଉଦ୍ଦିଷ୍ଟ ବିଭାଗୀୟ ଜିଲ୍ଲାସ୍ତରୀୟ ଅଫିସରଙ୍କ ପାଖକୁ ପଠାଇବାକୁ ହେବ। ସେ

ଟ୍ରେଜେରୀରୁ ଆଗରୁ ଏ.ସି. ବିଲ୍ କରି ଟଙ୍କା ଉଠାଇଥିବେ ଓ କଣ୍ଟ୍ରାକ୍ଟରଙ୍କୁ ଏଡ୍‌ଭାନ୍ସ ଦେଇ ଥିବେ। କାରଣ ଏଡ୍‌ଭାନ୍ସ ନ ନେଲେ କଣ୍ଟ୍ରାକ୍ଟର ସିମେଣ୍ଟ ଓ ଛଡ଼ କିଣି ପାରିବ ନାହିଁ। ଆମ ବିଲ୍ ଗଲେ ସେ ଡ଼ି.ସି. ବିଲ୍ କରି ଟ୍ରେଜେରୀକୁ ଦେବେ। ଏଭଳି ୩ ଶ୍ରେଣୀରେ ପାଣି ଉଠିବ। ତେଣୁ କାମ ଶୃଙ୍ଖଳାର ସହିତ କରିବା ଅସମ୍ଭବ। ତା ସାଙ୍ଗକୁ ସେତେବେଳେ ଜିଲ୍ଲା ପରିଷଦ ଥାଏ। ଟିକିଏ ଡେରି ହେଲେ ଜିଲ୍ଲା ପରିଷଦ ମିଟିଂରେ ପ୍ରବଳ ପାଟି, ମୋ ଆଗରୁ ପୁରୁଣା ଡିଷ୍ଟ୍ରିକ୍ଟବୋର୍ଡ଼ର ଜଣେ ଇଞ୍ଜିନିୟର ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଥିଲେ। ଦୁର୍ଗାଚରଣ ପାଢ଼ୀ ଅଳ୍ପଦିନ ପାଇଁ ପୁରୀ ଡିଭିଜନରେ ଥିଲେ। ଉଭୟ ଅପେକ୍ଷାକୃତ ବୟସ୍କ ବ୍ୟକ୍ତି ହୋଇଥିବାରୁ ଘରିଆଡ଼େ କାର୍ଯ୍ୟ ପରିଦର୍ଶନ କରି ଶୃଙ୍ଖଳା ଆଣିବା ଉଭୟଙ୍କ ପକ୍ଷେ ସମ୍ଭବ ହୋଇ ନଥିଲା । ସେତେବେଳକୁ ପୁରୀ ଡ଼ିଭିଜନ ଅଧୀନରେ ୭ଟି ସବ୍ ଡ଼ିଭିଜନ ଓ ୨୯ଟି ବ୍ଲକ୍ ଥାଏ। ସବୁ ବ୍ଲକ୍ ଓ ସବ୍‌ଡିଭିଜନ ପରିଦର୍ଶନ କରି ପୁରୁଣା କାମ ତଦାରଖ କରି ଶୃଙ୍ଖଳା ଆଣିବାକୁ ପ୍ରାୟ ୪ ମାସ ଲାଗିଗଲା। ସେତେବେଳେ ଡେରାସ, ଜୟମଙ୍ଗଳ, ହଡ଼ା, ଉଚ୍ଛେଇ ନାଗଝର, ମେଣ୍ଢାଶାଳ, ମୋଡ଼ନାଳା, କୋଷ୍ଟା, ସିଂହାପଡ଼ା, ମହାନ୍ତି ପଲି, ଆଦି କ୍ଷୁଦ୍ର ଜଳସେଚନ ଯୋଜନା କାର୍ଯ୍ୟକାରୀ ହେଉଥାଏ। ସବୁ ଜଳସେଚନ ଯୋଜନାର କେନାଲ ଷ୍ଟ୍ରକଚର ଗୁଡ଼ିକୁ ଡିଜାଇନ୍ କରି କାର୍ଯ୍ୟକାରୀ କରାଗଲା। ତ୍ରିପାଠୀ ସାହେବଙ୍କ ଉପଦେଶ, ପ୍ରତି ଷ୍ଟ୍ରକ୍‌ଚର ଗୋଟିଏ ଗୋଟିଏ ଯୋଜନା। ଏହାକୁ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବାର ସୁବିଧା ଏଠାରେ ପାଇଲି।

ସେତେବେଳକୁ ଡିଷ୍ଟ୍ରିକ୍ଟବୋର୍ଡ଼ ଗୁଡ଼ିକୁ ଉଠାଇ ଦିଆଯାଇ ତାର କାମ ଗୁଡ଼ିକୁ ଆର.ଇ.ଓ ସହିତ ମିଶାଇ ଦିଆଯାଇଥାଏ। ତେବେ ତା ଅଧୀନରେ ଥିବା ରାସ୍ତା ଗୁଡ଼ିକ କୁଆଡ଼େ ଯିବ ସ୍ଥିର ହୋଇନଥାଏ। ତା ବ୍ୟତୀତ ପଞ୍ଚାୟତ ସମିତି ଅଧୀନରେ କେତେଗୁଡ଼ିଏ ଉନ୍ନତଧରଣର ରାସ୍ତା ତିଆରି ହୋଇ ସାରିଥାଏ। ରାସ୍ତାଗୁଡ଼ିକର ତାଲିକା ପ୍ରସ୍ତୁତ କରି ସେଥିରୁ କେତେକ ରାସ୍ତାକୁ ଆର.ଏଣ୍ଡ.ବି.କୁ ଦିଆଗଲା। କେତେକ ରାସ୍ତା ଆର.ଇ.ଓ ଅଧୀନରେ ରହିଲା, କେତେଗୁଡ଼ିଏ ରାସ୍ତା ପଞ୍ଚାୟତ ସମିତି ଅଧୀନରେ ଓ ବାକିତକ ରାସ୍ତା ପଞ୍ଚାୟତ ଅଧୀନରେ ରହିଲା। ସରକାରୀ ନିର୍ଦ୍ଦେଶନାମା ଅନୁସାରେ ଆର.ଏଣ୍ଡ. ବି. ରାସ୍ତା ଗୁଡ଼ିକୁ ମେଟାଲ୍‌ରୋଡ୍ କରାଯିବ।

ଆର.ଇ.ଓ ରାସ୍ତାକୁ ଗ୍ରେଡ୍-୧ ମେଟାଲରେ ଆଚ୍ଛାଦିତ କରାଯିବ, ସମିତି ରାସ୍ତା ମୁରମ୍ ରାସ୍ତା ଓ ପଞ୍ଚାୟତ ରାସ୍ତା ମାଟି ରାସ୍ତା ହୋଇରହିବ। ୫ ବର୍ଷ ପରେ ରାସ୍ତା ଗୁଡ଼ିକୁ ପୁଣିଥରେ ସମୀକ୍ଷା କରି ଉନ୍ନତ ରାସ୍ତାଗୁଡ଼ିକୁ ପର୍ଯ୍ୟାୟ କ୍ରମେ ଆର.ଏଣ୍ଡବି. ଆର.ଇଓ ଓ ସମିତିକୁ ଦିଆଯିବ। ସେହି ଅନୁସାରେ ରାସ୍ତା ରକ୍ଷଣାବେକ୍ଷଣ ପାଇଁ ସରକାରୀ ଗ୍ରାଣ୍ଟ ମଧ୍ୟ ମିଳିଲା। ରାସ୍ତା ଗୁଡ଼ିକର ବିଭିନ୍ନ ଗ୍ରେଡ୍ ହୋଇଯିବା ଫଳରେ ରାସ୍ତାଗୁଡ଼ିକର ଉନ୍ନତି ପାଇଁ ଯୋଜନାବଦ୍ଧ ଭାବରେ କାର୍ଯ୍ୟ କରି ହେଲା। ବ୍ଲକ୍‌ର ଓଭରସିଅର ମାନଙ୍କର ଗୋଟିଏ ମିଟିଂ ଡକାଯାଇ ତାଙ୍କର କାର୍ଯ୍ୟର ସମୀକ୍ଷା ସଙ୍ଗେ ସଙ୍ଗେ ଯୋଜନାବଦ୍ଧ ଭାବେ ପ୍ଲାନ, ଏଷ୍ଟିମେଟ୍ କରିବାକୁ ପରାମର୍ଶ ଦିଆଗଲା। ୪ ମାସ ପରେ ଦେଖାଗଲା ଯେଉଁ ପଞ୍ଚାୟତ ସମିତି ଚେୟାରମେନ୍ ମାନେ ଆର.ଇ.ଓ. ସଂସ୍ଥାକୁ କଟୁ ସମାଲୋଚନା କରୁଥିଲେ ସେମାନେ ଏହି ସଂସ୍ଥାର କାର୍ଯ୍ୟର ଉଚ୍ଚପ୍ରଶଂସା କରିବାରେ ଲାଗିଲେ।

ଜିଲ୍ଲା ପରିଷଦ ମିଟିଂରେ ମୁଖ୍ୟ ଅଂଶ ଗ୍ରହଣ କରନ୍ତି କଲେକ୍ଟର, ସଭିଲ ସର୍ଜନ ଓ ଆର.ଇ.ଓ. ଏକଜିକ୍ୟୁଟିଭ୍ ଇଞ୍ଜିନିୟର। ଥରେ ମୁଁ ସିଭିଲ୍ ସର୍ଜନ ବ୍ରଜ ମୋହନ ନନ୍ଦଙ୍କ ପାଖରେ ବସିଥିଲି। ମୁଁ ତାଙ୍କ ପୁତୁରା ଫନିଭୂଷଣ ନନ୍ଦର ଅନ୍ତରଙ୍ଗ ସାଙ୍ଗ ବୋଲି ପରିଚୟ ଦେଲି। ସେ ଆଶ୍ଚର୍ଯ୍ୟ ହୋଇ କିଛି ସମୟ ମୋ ମୁହଁକୁ ଅନାଇଲେ। ତାପରେ କହିଲେ ତୁମେ ଟିକିଏ ଦୂରରେ ବସିଲ। ତୁମେ ମୋ ପୁଅର ସାଙ୍ଗ ଆସି ବସିଛ ମୋ ପାଖରେ। ତା'ପରେ କଲେକ୍ଟର ଦେବୀପ୍ରସାଦ ଦାଶଙ୍କୁ କହିଲେ ଏ ହେଉଛନ୍ତି ଭାଇଙ୍କର ସବା ସାନ ପୁଅର ସାଙ୍ଗ। ଆମ ପିଲାମାନେ ବଡ଼ ହୋଇ ଉଚ୍ଚ ଆସନ ଅଳଙ୍କାର କଲେଣି। ଏହାଠାରୁ ଅଧିକ ଗୌରବର ବିଷୟ କଣ ଅଛି ? ସେ ମୋତେ ପୁଅ ଭଳି ଓ ଉମାକୁ ନିଜର ବୋହୁ ଭଳି ଦେଖିଆସିଛନ୍ତି। ପୁଣି ଉମାଠାରୁ ଯେତେବେଳେ ଶୁଣିଲେ ଯେ, ସେ ତାଙ୍କର ଗୋଟିଏ ପୁତୁରା ବୋହୂ କୁସୁମର ସାଙ୍ଗ, ତାଙ୍କର ଅମ ପରିବାର ପ୍ରତି ସ୍ନେହ ଅନେକ ଗୁଣରେ ବଢ଼ିଗଲା। ସେହିଦିନଠାରୁ ପୁରୀ ଛାଡ଼ିବା ପର୍ଯ୍ୟନ୍ତ ଉମାର ଓ ପିଲାମାନଙ୍କର ଦେହ ବିଷୟ ମୋତେ ଭାବିବାକୁ ପଡ଼େନି। ସବୁ ସେ ବୁଝନ୍ତି।

ଓଡ଼ିଶାରେ କୋଲ୍ଡଷ୍ଟୋରେଜ୍‌ର ପ୍ରବର୍ତ୍ତନ ସମୟରେ କୋପରେଟିଭ୍ ସଂସ୍ଥା ଜରିଆରେ ସାତଶଙ୍ଖ ଠାରେ ଗୋଟିଏ କୋଲ୍ଡଷ୍ଟୋରେଜ୍ ନିର୍ମିତ ହେଉଥିଲା। ମୁଁ

କାର୍ଯ୍ୟରେ ଯୋଗଦାନ ପୂର୍ବରୁ ଏହି ଘରର ବାରଣ୍ଡା ଛାତ ପଡ଼ି ସାରି ଘର କାମ ଛାତ ପତନ ପର୍ଯ୍ୟନ୍ତ ନିର୍ମିତ ହୋଇ ସାରିଥିଲା। ବର୍ଷାଋତୁ ସରିବା ସଙ୍ଗେ ସଙ୍ଗେ ଏହି କୋଠାର ଛାତ ପଡ଼ିବା ପାଇଁ ନିଷ୍ପତ୍ତି ନିଆଗଲା। ୪୦ ଫୁଟ୍ ଚଉଡ଼ା ଓ ୫୦ ଫୁଟ୍ ଲମ୍ୱ ବିଶିଷ୍ଟ ୨ ବଖରା ଘର। ମଝିରେ ୧୫ ଫୁଟ ଚଉଡ଼ା ଓ ୫୦ ଫୁଟ୍ ଲମ୍ୱ ଗୋଟିଏ ମଝିଘର। ଅଧିକ ଷ୍ଟୋରେଜ୍ ଜାଗା ମିଳିବା ଆଶାରେ ଓଲଟା ଟି ବମ ଓ ସ୍ଲାବ୍ ଡିଜାଇନ୍ ଚିଫ୍ ଇଞ୍ଜିନିୟର କରି ପଠାଇଥାନ୍ତି। ସ୍ଲାବ୍ କାଷ୍ଟିଙ୍ଗ୍ ପାଇଁ ଆବଶ୍ୟକୀୟ ସେଣ୍ଟରିଂ କରି ଡିଜାଇନ୍ ଅନୁସାରେ ରଡ୍ ବନ୍ଧାଗଲା। ଏତେ ବଡ଼ ଛାତର ଢଳେଇ ମୁଁ କେବେ କରି ନଥିଲି। ତେଣୁ ଢଳେଇ କରିବା ପାଇଁ ମୁଁ ନିଜ ପାଖରେ ଆତ୍ମବିଶ୍ୱାସର ଅଭାବ ଦେଖି ପାରିଲି। ପରବର୍ତ୍ତୀ କାଳରେ ମୁଁ ଜାଣିଲି ଏହା ମୋର ଆତ୍ମବିଶ୍ୱାସର ଅଭାବ ନଥିଲା, ଥିଲା ଭଗବାନଙ୍କ ନିର୍ଦ୍ଦେଶ। ମୁଁ ସୁପରିନ୍‌ଟେଣ୍ଡିଙ୍ଗ୍ ଇଞ୍ଜିନିୟର ଦିବ୍ୟସିଂହ ମିଶ୍ରଙ୍କୁ ଉପଦେଶ ମାଗିଲି। ସେ ଜଣେ ପୁରୁଣା କାଳିଆ ଇଞ୍ଜିନିୟର ଓ କାମ ସହିତ ଆଇନ୍ ଓ ଫାଇଲରେ ଅର୍ଡ଼ର ପ୍ରତି ତାଙ୍କର ବିଶେଷ ନଜର ଥାଏ। ସେ ନିଜେ ଆସି କୋଲ୍ଡ୍‌ଷ୍ଟୋରେଜ୍‌କୁ ୩/୪ ଘଣ୍ଟା ଧରି ପରିଦର୍ଶନ କଲେ। ବିମ୍ ଓ ସ୍ଲାବ୍‌ର ରଡ଼ ବନ୍ଧା ନିଜେ ଚେକ୍ କଲେ। ହାତୁଡ଼ି ସାହାଯ୍ୟରେ ସେଣ୍ଟରିଂ ବଲ୍ଲାଗୁଡ଼ିକୁ ପିଟି ପିଟି ପରୀକ୍ଷା କଲେ। ସଂଗୃହିତ ଚିପ୍‌ସ୍ ଓ ବାଲିର କ୍ୱାଲିଟି ଓ ପରିମାଣ ନିଜେ ପରୀକ୍ଷା କଲେ। କାମ ୨ ଦିନ ଦୁଇ ରାତି ଚାଲିବ। ୧ ୨ ଘଣ୍ଟା ପାଇଁ ଆବଶ୍ୟକୀୟ ପାଣି ଜମା ରଖିବାକୁ ଭେଟ ନିର୍ମାଣ କରିବାକୁ କହିଲେ। କୋପରେଟିଭ୍ ଡିପାର୍ଟମେଣ୍ଟ ନିଜେ ସିମେଣ୍ଟ ଜମା କରି ରଖିଥାନ୍ତି। ତାର ପରିମାଣ ଓ ଏହା ନୂଆ ସିମେଣ୍ଟ କି ନୁହେଁ ପରୀକ୍ଷା କରି ଦେଖିଲେ। ସମୁଦାୟ ୧୦୦ ଫୁଟ୍ ଲମ୍ୱ ଦେଢ଼ ଫୁଟ୍ ଚଉଡ଼ା ଓ ୩ ଫୁଟ୍ ଉଚ୍ଚତା ବିଶିଷ୍ଟ ବିମ୍ ଓ ୧୦୦ ଫୁଟ୍ ଲମ୍ୱ ୫୦ ଫୁଟ୍ ଚଉଡ଼ା ବିଶିଷ୍ଟ ୪ଟି ସ୍ଲାବକୁ କାଷ୍ଟିଂ କରିବା ପାଇଁ ଅଧିକ୍ଷଣଯନ୍ତ୍ରୀ ଉପଦେଶ ଦେଲେ ଯେ ବିମ୍ ଢଳେଇ ଆଗେ ପଡ଼ିବ। ତା ପରେ ସ୍ଲାବ୍ ତା ପରେ ବିମ୍ ଏଭଳି ଦିନ ରାତି ଢଳେଇ ଚାଲିବ। ଏ କାମ ପାଇଁ କୋପରେଟିଭ୍ ଡିପାର୍ଟମେଣ୍ଟ ତରଫରୁ ଜଣେ ସିନିୟର ଇନ୍‌ସପେକ୍ଟର ରହୁଥିଲେ। ପରିଦର୍ଶନରେ ଆସୁଥିବା ଅଫିସରଙ୍କୁ ଅନୁରୋଧ କରି ତାଙ୍କର ମନ୍ତବ୍ୟ ଗୋଟିଏ ରେଜିଷ୍ଟରରେ ଲିପିବଦ୍ଧ କରି ରଖନ୍ତି। ସେ ମଧ ଅଧିକ୍ଷଣ ଯନ୍ତ୍ରୀଙ୍କୁ ଅନୁରୋଧ

କରିବାରୁ ସେ ତାଙ୍କର ମନ୍ତବ୍ୟ ଲେଖି ଖାତାରେ ଦସ୍ତଖତ କରିଦେଲେ। ତାପରେ ଚାଲିଲା ସ୍ଲାବ୍ କାଷ୍ଟିଂ ଯୋଜନା, ମିଶ୍ର ସାହେବଙ୍କ ପରାମର୍ଶ ଅନୁସାରେ ୩ଟି ସିଫ୍ଟ୍ ପାଇଁ ୩ ଜଣ ଆସିଷ୍ଟାଣ୍ଟ୍ ଇଞ୍ଜିନିୟର ଓ ପ୍ରତି ସିଫ୍ଟ ପାଇଁ ୩ ଜଣ ଲେଖାଏ ୯ ଜଣ ଓଭରସିୟରଙ୍କୁ କାର୍ଯ୍ୟରେ ଲଗାଗଲା। ଡିସେମ୍ବର ମାସ ଶୀତରେ ୨ ଦିନ, ୨ ରାତି ଲାଗି ଆମେ ଛାତ ଢଳେଇ କଲୁ। ମୁଁ ୨ ଦିନ ଯାକ ଥିଲି। ଅଧିକ୍ଷଣଯନ୍ତ୍ରୀ ୨ ଦିନ ଯାକ ଢ଼ଳେଇ ଦେଖିବାକୁ ଆସି ୩/୪ ଘଣ୍ଟା ଲେଖାଏଁ ରହିଥିଲେ। ଢଳେଇ ସରିଲା। ତା ଉପରେ ଟେରେସ କରାଗଲା। କାନ୍ଥରେ ଥର୍ମୋକୁଲ୍ ଲଗାଇ କାଠ ରେକ୍ ତିଆରି କରି ଆବଶ୍ୟକୀୟ ଯନ୍ତ୍ରପାତି ଲାରର୍ସନ୍ ଏବଂ ଟର୍ବୋରୁ (L&T) କଣି କୋଲ୍ଡ ଷ୍ଟୋରେଜ୍‌କୁ ଚାଲୁ କରାଗଲା। କୋଲ୍ଡଷ୍ଟୋରେଜ୍‌ର ତାପମାତ୍ରା ନିୟନ୍ତିତ ହୋଇପାରିଲା ଏହା ଏକ 'ସକ୍‌ସେସ୍' ବୋଲି ସମସ୍ତେ ମୋତେ ଅଭିନନ୍ଦନ ଜଣାଇଲେ।

୧୯୬୪ ଜାନୁୟାରୀ ମାସ ବେଳକୁ ସବୁ ଆର.ଇ.ଓ.ଏକଜିକ୍ୟୁଟିଭ୍ ଇଞ୍ଜିନିୟରମାନଙ୍କୁ ଚେକ୍ ଡ୍ରଇଁ ପାୱାର ଦିଆଗଲା ଓ ପ୍ରତି ଡିଭିଜନରେ ଜଣେ ଲେଖାଏଁ ଏକାଉଣ୍ଟେଣ୍ଟ ରହିଲେ। ତେଣୁ ଆର.ଇ.ଓ ସଂସ୍ଥାର କାର୍ଯ୍ୟ ଅପେକ୍ଷାକୃତ ଶୃଙ୍ଖଳାର ସହିତ ଚାଲିଲା। କିନ୍ତୁ ରାତାରାତି ଲୋକଚରିତ୍ର ବଦଳି ଯିବନି। ତେଣୁ ବିଭିନ୍ନ ବିଭାଗରୁ ଆସିଥିବା ଏସିଷ୍ଟାଣ୍ଡ ଇଞ୍ଜିନିୟର ଓ ଓଭରସିୟର ମାନଙ୍କ ମଧ୍ୟରେ ଶୃଙ୍ଖଳାଜ୍ଞାନ ସୃଷ୍ଟି କରିବା ଓ ତାଙ୍କ ହାତରେ ନୀତିନିୟମ ଅନୁସାରେ କାମ କରିବା ଯେ କି କଷ୍ଟକର ପାଠ ତାହା ଯେ ଅଙ୍ଗେ ନ ଲିଭାଇଛି, ଜାଣିପାରିବନି। ପୁରୀ ଆର.ଇ.ଓ. ଡିଭିଜନର ଅଫିସ୍ କିମ୍ବା କ୍ୱାର୍ଟର ନ ଥିଲା। ସାମନ୍ତ ଚନ୍ଦ୍ରଶେଖର କଲେଜ ଆଗରେ ଥିବା ଗୋଟିଏ ପୋଖରୀକୁ ଅଫିସ୍ ଓ କ୍ୱାର୍ଟର ପାଇଁ ସ୍ଥାନ ନିରୁପଣ କରାଗଲା। କଲେକ୍ଟରଙ୍କ ମରୁଡ଼ି ସାହାଯ୍ୟ ପାଣ୍ଠିରୁ ଅର୍ଥ ଯୋଗାଣରେ ସାହାଯ୍ୟ କରିଥିଲେ ମୋର ବନ୍ଧୁ ସୁଧାକର ଯୋଗୀ ମହାନ୍ତି ଏସ.ଡ଼ି.ଓ. ଓ ସାମନ୍ତରାୟ ବାବୁ ତହସିଲ୍‌ଦାର ଜାଗାଟି ପୋତିଦେଇ ଯେତେବେଳେ ଘର ହୋଇଗଲା; ସମସ୍ତେ ଆଶ୍ଚର୍ଯ୍ୟ ହେଲେ ପୁରୀ ସହରରେ ଏଭଳି ଯାଗାଟିଏ କିଭଳି ସମସ୍ତଙ୍କର ଦୃଷ୍ଟିରେ ଅ'ଢୁଆଳରେ ରହିଯାଇଥିଲା।

୧୯୬୪ ମସିହା ଜାନୁୟାରୀ ମାସରେ କଂଗ୍ରେସ ଅଧିବେଶନ ଭୁବନେଶ୍ୱର ଠାରେ ଅନୁଷ୍ଠିତ ହେଲା। ଐତିହାସିକ କାମରାଜ ଯୋଜନାର ପ୍ରବର୍ତ୍ତନ ଏହି

ଅଧିବେଶନରେ ଆରମ୍ଭ ହୋଇଥିଲା। କଂଗ୍ରେସର ପୂର୍ବତନ ସଭାପତି ୟୁ.ଏନ. ଧେବରଙ୍କ ହାତରେ ଖଣ୍ଡଗିରିର ଅନତି ଦୂରରେ ତପୋବନ ଆଶ୍ରମ ସ୍କୁଲର ଭିତ୍ତି ପ୍ରସ୍ତର ସ୍ଥାପନ କରାଗଲା। ସେହିଦିନ ଠାରୁ ମୋର ଓ ଚିଫ ଇଞ୍ଜିନିୟର ମଧ୍ୟରେ ମତ ପାର୍ଥକ୍ୟ ଆରମ୍ଭ ହେଲା। ସେ କାମ ଦାୟିତ୍ୱରେ ଥିବା ଏସ.ଡ଼ି. ଓ ଏବଂ ଓଭରସିୟର ମିଶି ସାଇଟ୍ ଲେଭଲିଂ ନାମରେ ବହୁତ ଗୁଡ଼ିଏ ଫଲସ୍ ମେଜରମେଣ୍ଟ କରି ମୋ ପାଖରେ ବିଲ୍ ଥୋଇଲେ। ମୁଁ ଏହା ପାଶ୍ ନ କରିବାରୁ ସେମାନେ ମୋ ନାମରେ ନାନା କୁତ୍ସାରଟନା କରିବାରେ ଲାଗିଲେ। ଆର.ଇ.ଓ ସଂସ୍ଥାର ସୁପର ଚିଫ୍ ଇଞ୍ଜିନିୟରଙ୍କ ପୁରୀ ଘରର ମରାମତି ଦାୟିତ୍ୱରେ ଥାଆନ୍ତି ସେହି ନାମଯାଦା ଓଭରସିଅର ଆନନ୍ଦ ମିଶ୍ର। ତାର ମନମୁଖୀ ବିଲ୍ କରିବାରେ ମୁଁ ହେଲି ପ୍ରଥମ ପ୍ରତିବନ୍ଧକ। ତେଣୁ ଚାଲିଲା ଯୋଜନା କିଭଳି ମୋର ବଦଳି ହେବ। ବୁର୍ଲାରୁ ଆସିବା ବେଳେ ମୁଁ ଯାହା ଆଶଙ୍କା କରୁଥିଲି ତାହା ସତରେ ପରିଣତ ହେବାକୁ ଯାଉଛି, ବୋଲି ମୋତେ ସ୍ପଷ୍ଟ ଜଣାଗଲା। ମାତ୍ର ୭ ମାସ ରହଣି ପରେ ଯେତେବେଳେ ଚିଫ୍‌ଇଞ୍ଜିନିୟର ମୋର ବଦଳି ପାଇଁ ପ୍ରସ୍ତାବ ଦେଲେ, ଏ ସମ୍ବାଦ ଶୁଣି ପୁରୀ ଜିଲ୍ଲାର ସବୁ ଚେୟାରମେନ୍ ଓ ଜିଲ୍ଲା ପରିଷଦର ମେମ୍ବରମାନେ ଉତ୍‌କ୍ଷିପ୍ତ ହୋଇଉଠିଲେ। ମୋର ବଦଳି ବିରୁଦ୍ଧରେ ଜିଲ୍ଲାପରିଷଦରେ ଏକ ପ୍ରସ୍ତାବ ପାଶ୍ କରିବାକୁ ଚାହିଁଲେ। ମାତ୍ର ୭ ମାସ ଭିତରେ ଜିଲାରେ ଶୃଙ୍ଖଳା ଆଣି ମୁଁ ଖୁବ୍ ଲୋକପ୍ରିୟ ହୋଇସାରିଥାଏ। ମୁଁ ଜଣ ଜଣ କରି ଚେୟାରମ୍ୟାନ୍‌ମାନଙ୍କୁ ଅନୁରୋଧ କଲି, ଏଭଳି ପଦକ୍ଷେପ ନିଅନ୍ତୁ ନାହିଁ। ଏଥିରେ ମୋର ଲାଭ ପରିବର୍ତ୍ତେ ବେଶୀ କ୍ଷତି ହେବ। ଜିଲ୍ଲା ପରିଷଦର ଚେୟାରମେନ୍ ପଦ୍ମଚରଣ ସାମନ୍ତ ସିଂହାର ଉପମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯାଇ ଏହାର ପ୍ରତିବାଦ ଜଣାଇଲେ। ସେତେବେଳକୁ ଆମର ୪ର୍ଥ ସନ୍ତାନ ଜନ୍ମ ହେବାକୁ ଥାଏ। ଅନ୍ତତଃ ତାର ଜନ୍ମ ପର୍ଯ୍ୟନ୍ତ ଏକ ବଦଳି ଆଦେଶ ସ୍ଥଗିତ ରଖିବାକୁ ସେ ଅନୁରୋଧ କଲେ।

ବୋଉଙ୍କର ପ୍ରଦର ରୋଗଟି ଏହା ଭିତରେ ବାହାରି ପଡ଼ିଲା। ଗାଁରେ ବଡ଼ବାପାଙ୍କ ପୁଅ, ଦାଦାଙ୍କର ପୁଅମାନେ ଅଲଗା ହୋଇଯାଇଥାନ୍ତି। ସାନଭାଇ ନିଶାକରକୁ ଉଚ୍ଚଶିକ୍ଷିତ ପରିବାର ମୋର ଆଶା ଆଶାରେ ହିଁ ରହିଗଲା। ମୋ ଠାରୁ ପାଠ ପଢ଼ି କେତେ ଛାତ୍ର ମଣିଷ ହୋଇଯାଇଛନ୍ତି। ଆଇ.ଏସ.ସି. ପଢ଼ିଲାବେଳେ

ମୋର ଜଣେ ଉପଯୁକ୍ତ ଟିଉସନ୍ ମାଷ୍ଟର ହିସାବରେ ନାମ ମଧ୍ୟ ଥିଲା। କିନ୍ତୁ ନିଜ ଭାଇକୁ ପଢ଼ାଇ ପାରିଲିନି। ତାର ପାଠ ପ୍ରତି ଆଗ୍ରହ ଖୁବ୍ କମ୍। ଉମା ମଧ୍ୟ ତା ପାଇଁ କମ୍ ତ୍ୟାଗ ସ୍ୱୀକାର କରିନାହିଁ। ଯେତେ ଅସୁବିଧା ଥିଲେ ମଧ୍ୟ ତାକୁ ୨ଟି ନିୟମିତ ଟିଉସନ୍ ଦିଆଯାଉଥିଲା। ତାର ବହି ଓ ଖାତାରେ କେବେ ଅଭାବ କରାଯାଇନାହିଁ। ତାର ଇଚ୍ଛା ନିଶାକର ତୁମ ଭଳି ବଡ଼ ଅଫିସରଟିଏ ନ ହୋଇପାରିଲେ ବି ଅନ୍ତତଃ ତମ ଭାଇ ଭଳି ପରିଚୟ ଦେବା ଭଳି ଚାକିରିଟିଏ କରୁ। କିନ୍ତୁ ଆମର ସବୁ ଚେଷ୍ଟା ବିଫଳ ହେଲା। ଏହା ଭିତରେ ଦାଦାଙ୍କ ପୁଅ ଭାଇ ମୁରଲୀକୁ ଆଇ.ଟି.ଆଇ ଟ୍ରେନିଂ ଦେଇ ହୀରାକୁଦ ଇଣ୍ଡଷ୍ଟ୍ରିଏଲ ୱାର୍କସପ୍‌ରେ ଚାକିରି କରାଇ ଦିଆଗଲା। ତେଣୁ ଦାଦାଙ୍କ ପୁଅମାନେ ଅପେକ୍ଷାକୃତ ସଚଳ ଅବସ୍ଥାକୁ ଆସିଗଲେ। ଗାଁରେ ରହୁଥାନ୍ତି ସାନ ଭାଇ ପ୍ରଭାକର ଓ ନିଶାକର। ପ୍ରଭାକରର ବିବାହ ହୋଇସାରିଥାଏ। ତେଣୁ ବାପା ଓ ବୋଉ ପ୍ରାୟ ଗାଁରେ ରହୁଥାନ୍ତି। ବୋଉଙ୍କର ଦେହ ଖରାପ ଖବର ପାଇ ତାଙ୍କୁ ଚିକିତ୍ସାର ସୁବିଧା ପାଇଁ ପୁରୀକୁ ନେଇ ଆସିଲି। ୧୯୬୪ ମସିହା ଫେବୃୟାରୀ ୩ ତାରିଖ ଦିନ ଉମାର କୋଳ ଉଜ୍ଜ୍ୱଳ କରି ଗୋଟିଏ କନ୍ୟାରତ୍ନ (ସିଲା) ପୃଥିବୀ ପୃଷ୍ଠରେ ପଦାର୍ପଣ କଲା। ବୋଧହୁଏ ମୁଖ୍ୟମନ୍ତ୍ରୀ ମହାଶୟ ଏହି ସୁଯୋଗଟିକୁ ଅପେକ୍ଷା କରିଥିଲେ। ସଙ୍ଗେ ସଙ୍ଗେ ମୁତଲବୀ ବା ସ୍ଥଗିତ ରହିଥିବା ବଦଳି ଅର୍ଡ଼ରଟିକୁ କାର୍ଯ୍ୟକାରୀ କରିବା ପାଇଁ ତାଙ୍କ ଠାରୁ ଆଦେଶ ଆସିଗଲା। ପୁରୀରେ ରହଣି ମାତ୍ର ୮ ମାସ ପରେ ଏଭଳି ଅପ୍ରତ୍ୟାଶିତ ଭାବେ ଶେଷ ହୋଇଗଲା। ଡିଭିଜନଟିରେ ନୁହେଁ, ପୁରୀ ସହରରେ ଆଉ କିଛିଦିନ ରହିବାକୁ ସମସ୍ତଙ୍କର ଇଚ୍ଛା ଥିଲା। ସନ୍ଧ୍ୟା ସମୟରେ ଟିକିଏ ସମୟ ପାଇଲେ ଆମେ ସପରିବାର ଛୁଟି ଯାଉ ସମୁଦ୍ର କୂଳକୁ। ୨/୩ ଘଣ୍ଟା ସେଠାରେ କଟାଇଲେ ମଧ୍ୟ ମନ ବୁଝେନି। ଦୁଃଖ ବିପଦ ଆସିଲେ ଛୁଟିଯାଉ ଚକାଡ଼ୋଳା ପାଖକୁ, ତାଙ୍କରି ପାଖରେ ଦୁଃଖ କହିଦେଇ ଆସିଲେ ମନ ଶାନ୍ତିରେ ଭରିଯାଏ। ପୁଣି ସୋମବାର ଦିନ ଲୋକନାଥ ଦର୍ଶନ, ଅଧିକ ସମୟ ପାଇଲେ ସୁନାର ଗୌରାଙ୍ଗ ଓ ଅନ୍ୟାନ୍ୟ ଦେବ ଦେବୀଙ୍କ ଦର୍ଶନ। ଖାଲି ଜଗନ୍ନାଥ ମନ୍ଦିରର ଦେବ ଦେବୀଙ୍କୁ ଭକ୍ତିପୂର୍ଣ୍ଣ ପ୍ରଣାମ କରି ବସିଲେ, ଗୋଟିଏ ଦିନ ମଧ୍ୟ ଅଣ୍ଟିବ ନାହିଁ। ଅନେକ ସମୟରେ ରୋଷେଇ ବନ୍ଦ କରି ଅଭଡ଼ା

ମଗାଯାଏ। ଛୋଟ ଛୋଟ ପିଲାମାନଙ୍କର ଚକାଡ଼ୋଳାଙ୍କ ଅଭଡ଼ା ପ୍ରତି କି ଲୋଭ। ସେହି ଲୋଭ ତାଙ୍କର ସବୁଦିନ ପାଇଁ ଅପୂର୍ଣ୍ଣ ରହିଯାଇଛି। ଏବେ ମଧ୍ୟ ପୁରୀ ଗଲେ ହୋଟେଲରେ ଖାଇବାକୁ କେହି ରାଜି ହୁଅନ୍ତି ନାହିଁ। ପୁଣି ଭୋଜନ ହେବ ସେହି ଆନନ୍ଦବଜାରରେ ଥିବା ସ୍ନାନ ବେଦୀ ଉପରେ। ଜଗନ୍ନାଥଙ୍କ ପ୍ରସାଦ ତାଙ୍କ ମନ୍ଦିରରେ ସେବନ କଲେ ଯେଉଁ ଆନନ୍ଦ ତାହା ବାହାରେ ମିଳିବ କାହୁଁ ?

ବୋଉଙ୍କର ଦେହ ଟିକିଏ ଭଲ ଆଡ଼କୁ ଆସିଲା। ସେ ଗାଁକୁ ଫେରିଗଲେ। ୧୯୬୪ ମସିହା ଏପ୍ରିଲ ମାସରେ ଆମେ ଆସିଲୁ ଭୁବନେଶ୍ୱର। ଆମେ ସପରିବାର ଭୁବନେଶ୍ୱରରେ ପ୍ରଥମେ ଗୋଟିଏ ଭଡ଼ା ଘରେ ଓ ପରେ ୯ ନମ୍ବର ୟୁନିଟ୍‌ରେ ରହିଲୁ। ଭୁବନେଶ୍ୱରରେ ପୋଷ୍ଟିଂ ଅଫିସ୍‌ରେ, ଡିଜାଇନ୍ ଡିଭିଜନରେ। ଟା ସାଙ୍ଗକୁ ଆସିଷ୍ଟାଣ୍ଟ ଟୁ ଚିପ୍ ଇଞ୍ଜିନିୟର ନଥିବାରୁ ସମୁଦାୟ କାମର ଦାୟିତ୍ୱ ମୋ ଉପରେ ପଡୁଥାଏ। ଗାଡ଼ି ନାହିଁକି ଡ୍ରାଇଭର ନାହିଁ। ଘରେ ସାହାଯ୍ୟ କରିବାକୁ କେହି ନାହିଁ। ପ୍ରଥମେ ବହୁତ ଅଡୁଆ ଲାଗିଲା। ୪ଟି ପିଲା ଘରେ, କାମରେ ସାହାଯ୍ୟ କରିବା ପାଇଁ ଏକମାତ୍ର ଅର୍ଡ଼ର୍ଲି ପିଅନ ଫକୀର। ନିଜେ ଗାଡ଼ି ନେଇ ବଜାର କରିବାକୁ ପଡ଼ିବ। ଗାଡ଼ି ଖରାପ ହେଲେ ଗେରେଜରେ ଘଣ୍ଟା ଘଣ୍ଟା ଠିଆ ହୋଇ ମରାମତି କରିବାକୁ ପଡ଼ିବ। ଟା ସାଙ୍ଗଙ୍କୁ ମୁଖ୍ୟଯନ୍ତ୍ରୀଙ୍କ କୋପଦୃଷ୍ଟି। ୧୦ଟାରୁ ମିନିଟିଏ ଡ଼େରି ହେଲେ ଖୋଜା ପଡ଼ିବ। ୫ଟା ପରେ ଘଣ୍ଟା ଘଣ୍ଟା ଧରି କାମ ନ ଥିଲେ ବି ଏଣୁ ତେଣୁ କାମ ବରାଦ କରି ଘଣ୍ଟେ ଦୁଇ ଘଣ୍ଟା ବସାଇ ଦେବେ। କିନ୍ତୁ ଅଳ୍ପ କିଛି ଦିନ ପରେ ମୁଁ ଦେଖିଲି ଯେ ଭୁବନେଶ୍ୱରକୁ ମୋର ପୋଷ୍ଟିଂ ହେଉଛି ଭଗବାନଙ୍କ ଅଦୃଶ୍ୟ ହାତର ଆର୍ଶିବାଦ। ଦୀର୍ଘ ୭ ବର୍ଷ ଊକିରି କାଳ ମଧ୍ୟରେ ସଦାବେଳେ ଫିଲ୍ଡ ସବ୍‌ଡ଼ିଭିଜନ ତଥା ଡ଼ିଭିଜନରେ ରହିବା ଫଳରେ ଡ଼ିଜାଇନ୍ ପ୍ଲାନିଂ ସମ୍ବନ୍ଧୀୟ ଜ୍ଞାନର ପୂର୍ଣ୍ଣ ବିକାଶ ହୋଇପାରୁ ନଥିଲା। ସୌଭାଗ୍ୟ ବଶତଃ ମୁଁ ଜନାର୍ଦ୍ଦନ ତ୍ରିପାଠୀଙ୍କ ଭଳି ଜଣେ ଅଭିଜ୍ଞ ମେଧାବୀ ଓ ସ୍ନେହୀ ଇଞ୍ଜିନିୟରଙ୍କ ଅଧୀନରେ ବହୁତ ଦିନ ଧରି କାମ କରିବାକୁ ସୁବିଧା ପାଇଥିଲି। ତେଣୁ ମୋତେ ଡିଜାଇନ୍ ଓ ପ୍ଲାନିଂ ବିଷୟରେ ଅପେକ୍ଷାକୃତ ଉନ୍ନତ ଟ୍ରେନିଂ ମିଳି ପାରିଥିଲା। କିନ୍ତୁ ଆର.ଇ.ଓ. ଅଫିସ୍‌କୁ ଆସି ନିଜେ ବହି ଓ ଜର୍ଣ୍ଣାଲ ଦେଖି ଓଡ଼ିଶାର ବାୟୁମଣ୍ଡଳ ଓ ମିଳୁଥିବା କଞ୍ଚାମାଲର ସଦୁପଯୋଗ କରି

ଡିଜାଇନ୍ ଓ ପ୍ଲାନିଂ କରିବାର ପ୍ରଥମ ସୌଭାଗ୍ୟ ମୋତେ ମିଳିଥିଲା ଡିଜାଇନ୍ ଡିଭିଜନ... ...ହୁରି ମଧ ମୋତେ ଅଫିସ୍ କାମରେ ବିଭିନ୍ନ ଆଳ ଦେଖାଇ ଡ଼ରାଉଥିବା ମୋର ଉପରିସ୍ଥ ଅଫିସରଙ୍କ ଦଉଡ଼ କେତେ ଦୂର ତାହା ଜାଣି ପାରିଲି।

ଭୁବନେଶ୍ୱରରେ ଅଫିସ୍‌ରେ ପୋଷ୍ଟିଂ ହେବା ହେତୁ ମୋର ସବୁଠାରୁ ବଡ଼ ଉପକାର ହେଲା ୧୯୬୪ ମସିହା ଜୁଲାଇ ମାସରେ। ପୁରୀରେ ଥିବା ସମୟରେ ଯେଉଁ ସାତଶଙ୍ଖ କୋଲ୍ଡଷ୍ଟୋରେଜ୍ ନିର୍ମାଣ ଦାୟିତ୍ୱରେ ଥିଲି ହଠାତ୍ ଶୁଣିଲି ଘର ଛାତରୁ ଝର ଝର ହୋଇ ବର୍ଷା ହେବା ଭଳି ପାଣି ଗଳୁଛି। ଏ ସମ୍ବାଦ ଶୁଣି ମୁଁ ସ୍ତବ୍ଧ ହୋଇଗଲି। ଏତେ ସାବଧାନତା ଅବଲମ୍ବନ କରି ଛାତ ପକାଇଥିଲି। ମୁଁ ଜାଣିବାରେ ଗୋଟାଏ ବସ୍ତା ସିମେଣ୍ଟ ବାହାରକୁ ଯାଇନି। ବିମ୍ ଗୁଡ଼ିକ ଭାଇବ୍ରେସନ୍ କରିବାରେ ବା କଂକ୍ରିଟ୍ ମିକଶ୍ଚରରେ କଂକ୍ରିଟ୍ ଗୋଳାଇବାରେ ଟିକିଏ ମଧ ତ୍ରୁଟି ଘଟିନି। ୩ ଜଣ ଆସିଷ୍ଟାଣ୍ଟ ଇଞ୍ଜିନିୟର ୯ ଜଣ ଓଭରସିୟର, ମୁଁ ନିଜେ ଓ ଅଧିକ୍ଷଣ ଯନ୍ତ୍ରୀ ଦିବ୍ୟସିଂହ ମିଶ୍ର ଛାତ ଢଳେଇ ପଡ଼ିବା ଦୁଇ ଦିନ ଯାକ ଥିଲୁ। ଭୁଲ୍ ରହିଲା କେଉଁଠି? କିନ୍ତୁ ଆତ୍ମବିଶ୍ୱାସ ଥାଏ କାମରେ ମୁଁ ଅବହେଳା କରିବା କିମ୍ବା କୌଣସି ମତଲବ ରଖି କାର୍ଯ୍ୟ କରିନାହିଁ। କିଶୋରୀବାବୁଙ୍କ ଉପଦେଶ ମନେ ପଡ଼ିଲା। ବିପଦ ପଡ଼ିଲେ ଅଧୈର୍ଯ୍ୟ ହେବନି। ହରେ କୃଷ୍ଣ ମହାମନ୍ତ୍ର ଜପ କରିବ। ଯେ ବିପଦ ଆଣି ଦେଇଛନ୍ତି ସେ ଉଦ୍ଧାର କରିବେ। ସବୁ ସେହି ମହିମାମୟ କର୍ତ୍ତାଙ୍କୁ ଛାଡ଼ି ଦେଇ ନୀରବ ନିର୍ବିକାର ଭାବେ ରହିଲି। ମଝିରେ ଥରେ ସାତଶଙ୍ଖ ଯାଇ କୋଲ୍ଡଷ୍ଟୋରେଜ୍ ଦେଖି ଆସି ଥିଲି। ଦେଖିଲି ୩ଟି ଯାକ ବିମର ତଳେ ଦେଢ଼ ଫୁଟ୍ ଓସାର ଯାଗାରେ ବର୍ଷା ଧାର ଭଳି ପାଣି ଗଳୁଛି। ଡ୍ରଇଂ ଦେଖିଲି ଓଲଟା ଟି ବିମର ତଳେ ଏତେବଡ଼ ଛାତର ଲୋଡ଼ ନେବା ପାଇଁ ରଡ଼ ଖୁନ୍ଦା ହୋଇଛି। ରଡ଼ ରଡ଼ ମଧରେ ଫାଙ୍କ ନାହିଁ କହିଲେ ଚଳେ। ଆମେ ଭାଇବ୍ରେଟର ସାହାଯ୍ୟରେ ଯେତେ କଂକ୍ରିଟ୍ ଖୁନ୍ଦିଲେ କ'ଣ ହେବ ସେହି ଦେଢ଼ଫୁଟ୍ ପୋରସ୍ ରହିଯାଇଛି। ଷ୍ଟେବିଲିଟି ଦୃଷ୍ଟିରୁ ଛାତଟି ନିରାପଦ କିନ୍ତୁ ଡିଜାଇନରେ ଏହି ତ୍ରୁଟି ରହିଯାଇଥିବାରୁ ବିମ ତଳୁ ପାଣି ଝରୁଛି। ଏଣେ କୋପରେଟିଭ୍‌ର ରେଜଷ୍ଟାରଙ୍କୁ ପାଣି ଲିକ୍ ବିଷୟରେ ରିପୋର୍ଟ ଦେବା ପାଇଁ ମୁଖ୍ୟଯନ୍ତ୍ରୀ ତନାଘନା କରୁଥାନ୍ତି। ଦୁଇ ଚାରିଦିନ ଭିତରେ ଚିଫ୍ ଇଞ୍ଜିନିୟର ଓ ସୁପର

ଚିଫ୍ ଇଞ୍ଜିନିୟର ମେଜର ମହାନ୍ତି କୋଲ୍ଡଷ୍ଟୋରେଜ୍ ଦେଖିବାକୁ ଗଲେ। ବାହାରେ ଶୁଣୁଥାଏ ସେ ଦୁଇଜଣ ତାଙ୍କର ସମସ୍ତ ରାଗ ଏହି କୋଲଡ୍ ଷ୍ଟୋରେଜ୍‌ରେ ସୁଝାଇ ଦେବେ। ମୁଁ ତ ଅଫିସ୍‌ରେ ଥାଏ। ଅଫିସରୁ ରିପୋର୍ଟ ଗଲେ କାଳେ ମୁଁ ଜାଣିପାରିବି ଦୁଇଜଣ ଯାକ ମିଶି ଗୋଟିଏ ନୋଟସିଟ୍‌ରେ ରିପୋର୍ଟ ଦେଲେ। ଢ଼ଳେଇ କାମ ନିମ୍ନ ମାନର ହୋଇଛି। ସିମେଣ୍ଟ ବିକ୍ରି ହୋଇଛି ଚିପ୍‌ସଗୁଡ଼ିକ ଓଭର ସାଇଜ, ବାଲିରେ ପଟୁ ମିଶିଛି। ବିମ୍‌ଗୁଡ଼ିକ ଲମ୍ବା ଭାବରେ କାଷ୍ଟିଂ ନ କରି ଆଡ଼ବାଗରେ କାଷ୍ଟିଂ କରିଥିଲେ ଛାତରୁ ପାଣି ଗଳି ନଥାନ୍ତା। ଏଥିପାଇଁ ନିର୍ବାହୀ ଯନ୍ତ୍ରୀ ଭାସ୍କର ଚନ୍ଦ୍ର ନାୟକ ସମ୍ପୂର୍ଣ୍ଣ ଦାୟୀ। ତାଙ୍କୁ ସସ୍‌ପେଣ୍ଡ କରାଯାଉ। ଖାଲି ମୋର ଅଗୋଚରରେ ନୁହେଁ, ସେକ୍ରେଟେରୀଏଟ୍‌ର ସମସ୍ତ କିରାଣୀ ଓ ତଳିଆ ଅଫିସରଙ୍କ ଅଗୋଚରରେ ଚିଫ୍ ସେକ୍ରେଟେରୀ ଶିବରମଣଙ୍କ ଜରିଆରେ ଫାଇଲଟି ମୁଖ୍ୟଯନ୍ତ୍ରୀଙ୍କ ପାଖକୁ ବିଜୁଳିବେଗରେ ଯାଇ ମୋର ସସ୍‌ପେନ୍‌ସନ୍ ଅର୍ଡ଼ର ହୋଇ ଫାଇଲ୍ ଫେରିଆସିଲା। ଫାଇଲ୍ ଆସି ପହଞ୍ଚିଲା ଆସିଷ୍ଟାଣ୍ଟ ସେକ୍ରେଟେରୀ ଜଗନ୍ନାଥ ପାଢ଼ୀଙ୍କ ପାଖରେ। ତାଙ୍କର ଖାଲି ନୋଟିଫିକେସନ୍ କରିବା କଥା। ଏହା ଭିତରେ ୨/୩ ମାସ ମଧ୍ୟରେ ମୋର ସିନ୍‌ସିଅରିଟି ଓ କାର୍ଯ୍ୟଦକ୍ଷତା ତଥା ଡ଼ିଭିଜନ ମାନଙ୍କରୁ ତଥ୍ୟ ସଂଗ୍ରହ କରି ତତ୍ପରତାର ସହିତ ଉତ୍ତର ଦେଇ ଡ଼ିପାର୍ଟମେଣ୍ଟର ଅଧିକାଂଶ କିରାଣୀ ଓ ତଳିଆ ଅଫିସରଙ୍କ ମହଲରେ ମୁଁ ଲୋକପ୍ରିୟ ହୋଇପଡ଼ିଥାଏ। ଜଗନ୍ନାଥ ବାବୁ ମୋର ସସ୍‌ପେନ୍‌ସନ୍ ଅର୍ଡ଼ରଟି ଦେଖି ସ୍ତମ୍ଭୀଭୂତ ହୋଇପଡ଼ିଲେ। ସେ କାହାକୁ କିଛି ନ କହି ସିଧା ଫାଇଲ୍‌ଟି ଧରି ଗଲେ ଶିବରମଣ ସାହେବଙ୍କ ପାଖକୁ। ତାଙ୍କୁ କହିଲେ ଆପଣ କଣ କଲେ ? ଜଣେ କର୍ମଠ ଉଦୀୟମାନ ଇଞ୍ଜିନିୟରଙ୍କୁ ବିନା ଇନ୍‌କ୍ୟୁରିରେ ସସ୍‌ପେଣ୍ଡ କରିଦେଲେ। ଚିଫ୍ ଇଞ୍ଜିନିୟର ଇନ୍‌କ୍ୱାରୀ କରି ରିପୋର୍ଟ ଦେଇନାହାନ୍ତି। ତାଙ୍କୁ କୈଫୟତ୍ ମଗାଯାଇନି। କିଏ ଜାଣିଛି ଏଥିପାଇଁ କିଏ ଦାୟୀ ? ଆସିଷ୍ଟାଣ୍ଟ ଇଞ୍ଜିନିୟର, ଓଭରସିୟର୍ ଏପରିକି ନିଜେ ଚିଫ୍ ଇଞ୍ଜିନିୟର ଏହି କାର୍ଯ୍ୟ ପାଇଁ ଦାୟୀ ହୋଇପାରନ୍ତି। ଆମେ ଆଜି ତାଙ୍କୁ ସସ୍‌ପେଣ୍ଡ କରିଦେବା, କାଲି ସେ କୋର୍ଟକୁ ଯାଇ ଯେତେବେଳେ ପ୍ରମାଣ କରି ଦେବେ ଯେ ସରକାର ନିଜ କର୍ତ୍ତବ୍ୟରେ ଅବହେଳା କରିଛନ୍ତି ଓ ଜଣେ ଅଫିସରଙ୍କୁ ଅନ୍ୟର ଦୋଷ ଘୋଡ଼ାଇବାକୁ ଯାଇ ସସ୍‌ପେଣ୍ଡ

କରିଛନ୍ତି, ସେଠାରେ ସରକାରଙ୍କ ସମ୍ମାନ ରହିବ କେଉଁଠି ? ଆପଣ ଦୟାକରି ଏହାର ପୁନର୍ବିଚାର କରି ତାକୁ କୈଫୟତ ମାଗନ୍ତୁ ଓ ମୁଖ୍ୟଯନ୍ତ୍ରୀଙ୍କ ଠାରୁ ରିପୋର୍ଟ ମଗାନ୍ତୁ। ଶିବରମଣ ସାହେବ ବୁଝିଗଲେ ଓ ସେହି ଅନୁସାରେ କାର୍ଯ୍ୟ ହେଲା। ଏହି ନାଟକଟି ମୋର ଅଗୋଚରରେ ମଞ୍ଚସ୍ଥ ହୋଇଯାଇଛି।

ଏଣେ ଅଫିସ୍‌ରେ ଆସି ଚିଫ୍ ଇଞ୍ଜିନିୟର କୁମ୍ଭୀର କାନ୍ଦଣା କାନ୍ଦୁଥାନ୍ତି। ମୁଁ ନାୟକଙ୍କୁ ରକ୍ଷା କରିବାକୁ ବହୁତ ଚେଷ୍ଟା କଲି। କଣ କରିବି ? ଗଭର୍ଣ୍ଣମେଣ୍ଟ ଏଡ଼ାମେଣ୍ଟ। ଯେଉଁ ଦିନ ମୁଖ୍ୟଯନ୍ତ୍ରୀଙ୍କ ଠାରୁ ଫାଇଲ୍ ଫେରିଲା ମୋତେ ଡାକି କହିଲେ, ମିଃ ନାୟକ, ମୁଁ ତୁମ ପାଇଁ କିଛି କରିପାରିଲିନି। ତୁମେ କାହିଁକି ଏପରି ଭୁଲ୍ କଲ ? ଛାତର କଂକ୍ରିଟ୍ ଆଡ଼ବାଗରେ ନ ପକାଇ ତୁମେ ଲମ୍ବା ବାଗ୍‌ରେ ପକାଇଲ କାହିଁକି ? ନିମ୍ନ ଧରଣର ଚିପ୍‌ସ ଓ ବାଲିର ବ୍ୟବହାର କଲ କାହିଁକି ? ତୁମେ ତୁମର ଚାକିରି ପ୍ରତି ଏତେ ବଡ଼ ବିପଦ ଆଣିଲ କାହିଁକି ? ପ୍ରତିଶୋଧ ପାଇଁ ରକ୍ତମୁଖା ହୋଇ ଚିଫ୍‌ଇଞ୍ଜିନିୟର ଓ ସୁପରଇଞ୍ଜିନିୟର, ଦୁଇଜଣ ଯାକ ମୋ ବିରୁଦ୍ଧରେ ଲାଗିଛନ୍ତି ବୋଲି ମୋ କାନରେ ଖବର ପହଞ୍ଚୁଥାଏ। ଅଫିସ୍‌ରେ ଥିବା ହେତୁ ସବୁ ଫାଇଲ୍ ମଗାଇ ପଢ଼ିବାର ସୁଯୋଗ ମିଳୁଥଲା। କୋଲ୍ଡଷ୍ଟୋରେଜ୍ ଫାଇଲ୍‌ରୁ ଦେଖିଲି ସୁପରିନଟେଣ୍ଡିଂ ଇଞ୍ଜିନିୟର ଦିବ୍ୟସିଂହବାବୁ ସାଇଟ୍‌ରେ ଯାହା ଅର୍ଡ଼ର ଦେଇଛନ୍ତି ଓ କୋଅପରେଟିଭ୍ ସିନିୟର ଇନ୍‌ସପେକ୍ଟରଙ୍କ ଖାତାରେ ଯାହା ଲେଖିଛନ୍ତି ସବୁ ଫାଇଲ୍‌ରେ ଲେଖି ଚିଫ୍ ଇଞ୍ଜିନିୟରଙ୍କ ଅର୍ଡ଼ର ନେଇ ଯାଇଛନ୍ତି। ସବୁଠାରୁ ମଜା କଥା ହେଲା ଓଲଟାଟି ବିମ୍ ୩ଟି ବାରଣ୍ଡାରେ ମଧ୍ୟ ଅଛି ଓ ତଳୁ ମେନ ବିଲ୍‌ଡ଼ିଙ୍ଗ୍ ଭଳି ଝର ଝର ହୋଇ ପାଣି ଗଳୁଛି। ମୁଁ ସଙ୍ଗେ ସଙ୍ଗେ ଫାଇଲ୍ ଆଣି ଚିଫ୍ ଇଞ୍ଜିନିୟରଙ୍କ ଆଗରେ ଥୋଇ ଦେଇ କହିଲି, ଯଦି ମୁଁ ସସ୍‌ପେଣ୍ଡ ହୁଏ, ୩ ଏସିଷ୍ଟାଣ୍ଟ ଇଞ୍ଜିନିୟର, ୯ ଓଭରସିଅର, ଦିବ୍ୟସିଂହ ମିଶ୍ର ନିଶ୍ଚୟ ସସ୍‌ପେଣ୍ଡ ହେବେ ଓ ଆମ ଚିଫ୍ ଇଞ୍ଜିନିୟର ମଧ୍ୟ ସସ୍‌ପେଣ୍ଡ ହୋଇପାରନ୍ତି। ତାର କାରଣ ସେ ନିଜେ ଚିପ୍‌ସ ବାଲି ଆଦି ଠିକ୍ ଅଛି ବୋଲି ଫାଇଲ୍‌ରେ ଲେଖିଛନ୍ତି। ସେ ଆହୁରି ମଧ୍ୟ ଅର୍ଡ଼ର ଦେଇଛନ୍ତି ଯେ ବିମ୍ କାଷ୍ଟିଙ୍ଗ ଲମ୍ବ ଭାବେ ହେବ। ଏହା କହି ଅଫିସ୍ ଫାଇଲ୍ ଖୋଲି ତାଙ୍କ ଦସ୍ତଖତ ଥିବା ନୋଟ୍ ସିଟ୍‌ଟି ଥୋଇଦେଲି। ଆହୁରି

ମଧ କହିଲି ଯେ ଛାତରୁ ପାଣି ପଡ଼ିବାର କାରଣ ଏତେ ବଡ଼ ଘରକୁ ଫ୍ରେମ୍ ଷ୍ଟକଚର ଭଳି ଡିଜାଇନ୍ ନ କରି ଓଲଟା ଟି ମିବ୍ ସ୍ଲାବ ଡ଼ିଜାଇନ୍ ହୋଇଛି। ଓଲଟା ଟି ବିମର ତଳେ ବହୁତ ବେଶୀ ରଡ଼ ଦିଆଯାଇଛି ଓ ସେହି ସ୍ଥାନରେ ପୋରସ୍ ରହିଯିବା ଯୋଗୁ ଛାତରୁ ପାଣି ଗଳୁଛି। ଖାଲି ସେତିକି ନୁହେଁ ସାମାନ୍ୟ ବାରଣ୍ଡା ଯାହାର ସ୍ପାନ ମୋଟ ୧୫ ଫୁଟ ସେଠାରେ ମଧ ବିମ୍ ତଳୁ ପାଣି ଗଳୁଛି। ଏହି ତଳେଇ ମୋର ଆସିବା ପୂର୍ବରୁ ଆପଣଙ୍କ ପ୍ରିୟ ଅଧିକ୍ଷଣଯନ୍ତ୍ରୀ ଦୁର୍ଗା ଚରଣ ପାଢ଼ୀ ପଳାଇଛନ୍ତି। ସେ କହିଲେ ଯେ ସମୁଦାୟ କାମ କେବଳ ତୁମ ଅମଳରେ ହୋଇଛି ମୁଁ ସଙ୍ଗେ ସଙ୍ଗେ ରେଙ୍କ ପେପର ଫାଇଲ୍ ଖୋଲି ଦେଖାଇଦେଲି ଓ କହିଲି ଛାତର ପାଣି ଗଳିବା ପାଇଁ ଜଣେ ଇଞ୍ଜିନିୟର ଦାୟୀ। ସେ ହେଉଛନ୍ତି ମୁଖ୍ୟଯନ୍ତ୍ରୀ, କାରଣ ତାଙ୍କରି ଭୁଲ୍ ଡିଜାଇନ୍ ଯୋଗୁ କାମରେ ଏଭଳି ବିଶୃଙ୍ଖଳା ହୋଇଛି, ସେ ନିଜର ଦୋଷ ଘୋଡ଼ାଇବାକୁ ଯାଇ ଅନ୍ୟ ମୁଣ୍ଡରେ ଅଠା ବୋଳୁଛନ୍ତି। ଏହା ସରକାର ନ ବୁଝିଲେ ମୁଁ କୋର୍ଟରେ ଏହା ପ୍ରମାଣ କରିଦେବି। ମୋଠାରୁ ଏତିକି ଶୁଣି ମୁଖ୍ୟଯନ୍ତ୍ରୀ କଲମଟି ଧରି ଚୁପ୍ ହୋଇ ବସିଗଲେ। ତାଙ୍କର ପାଟିରୁ ପ୍ରାୟ ୫/ ୧୦ ମିନିଟ୍ ଧରି କଥା ବାହାରିଲା ନାହିଁ। ଫାଇଲଟିର ନୋଟସିଟ୍ ଗୁଡ଼ିକୁ ବାରମ୍ବାର ପଢୁଥାନ୍ତି। ବୋଧହୁଏ ଭାବୁଥାନ୍ତି ଆଜି ମିରିଗଟି ଖସିଗଲା। ଆଉ କେଉଁ ବାଟରେ ତାକୁ ଫାସରେ ପକାଇବେ। କିନ୍ତୁ ମିରିଗର କାତର ଡାକ ଶୁଣି ତାକୁ ଫାଶମୁକ୍ତି କରିଥିବା ସ୍ୱୟଂ ବିଶ୍ୱକର୍ତ୍ତା ଯଦି ଫାଶଟି ଖୋଲି ଦେବାକୁ ଋହିଁବେ, ତେବେ ସୀମିତ ମାନବର ଶକ୍ତି କାହିଁ ଯେ ତାଙ୍କର ଇଚ୍ଛାର ବିରୋଧାଚରଣ କରିବ ?

ଏହିଭଳି ଭାବେ ଦୁଇଟି ସ୍ଥାନରେ ଦୁଇଟି ନାଟକ ମଞ୍ଚସ୍ଥ ହୋଇ ଦୁଇଟି କୌତୁହଳପୂର୍ଣ୍ଣ ଘଟଣା ଘଟିଗଲା। ସେ ଦିନ ଅଫିସ୍‌ରେ ଘଟିଥିବା ନାଟକ ପରେ କେତେକ ମୋର ସାହସ ଓ କଥା କହିବା ଢଙ୍ଗକୁ ଉଚ୍ଚପ୍ରଶଂସା କଲେ, ଆଉ କେତେ ଜଣ କହିଲେ ସରକାରୀ ଋକିରିରେ ଏତେ ସ୍ପଷ୍ଟବାଦିତା ଅନୁଚିତ। କିନ୍ତୁ ପ୍ରାୟ ୧୦ ଦିନ ଧରି ଗୁଜବ ଓ ଏତେ ସିନିୟରଟିର ସହିତ ଛାତ ତଳେଇ କରିଥିବା ସତ୍ତ୍ୱେ ମୋ ପ୍ରତି ଆକ୍ଷେପରେ ମୁଁ ଅତ୍ୟନ୍ତ ଅତିଷ୍ଠ ହୋଇପଡ଼ିଥିଲି। ତାର ଦୁଇ ଦିନ ପରେ ଆସିଲା ସରକାରୀ ଅର୍ଡ଼ର, ନିର୍ବାହୀ ଯନ୍ତ୍ରୀ ଓ ସରକାରୀ ଯନ୍ତ୍ରୀଙ୍କ ଠାରୁ କୈଫୟତ

ମାଗି ମୁଖ୍ୟଯନ୍ତ୍ରୀ ତାଙ୍କର ରିପୋର୍ଟ ସହ ସରକାରଙ୍କୁ ଜଣାନ୍ତୁ। ଏହା ଭିତରେ ପୁରୀ ଏକଜିକ୍ୟୁଟିଭ୍‌ରେ ଇଞ୍ଜିନିୟର ଶରତ ଚନ୍ଦ୍ର ସାମନ୍ତରାୟ, ଛାତଟିକୁ ଟାରଫେଲ୍ଟରେ ଘୋଡ଼ାଇ ଦେଇ ସାରିଥାନ୍ତି। ଫଳରେ ପାଣି ଝରିବା ବନ୍ଦ ହୋଇଗଲା ଓ ବାହାରେ ହେଉଥିବା ସମାଲୋଚନା ମଧ୍ୟ ବନ୍ଦ ହୋଇଗଲା। ମୁଁ ମୋର କୈଫୟତରେ ପରିଷ୍କାର ଲେଖି ଦେଲି ଓଲଟା ଟି ବିମଓ ସ୍ଲାବ୍ ଡ଼ିଜାଇନ୍ ଓ ବିମ୍ ତଳେ ଅତ୍ୟଧିକ ଗଡ଼ ଥିବା ଯୋଗୁଁ ସେହି ସ୍ଥାନଟି ପୋରଶ ହୋଇ ପାଣି ଗଡୁଛି ଓ ଏଥିପାଇଁ ମୁଁ ଆଦୌ ଦାୟୀ ନୁହେଁ ଓ ଏହି ଡିଜାଇନ୍ ଚିଫ୍ ଇଞ୍ଜିନିୟରଙ୍କ ଅଫିସ୍‌ରେ ହୋଇଛି। ଆହୁରି ମଧ୍ୟ ମୁଁ ଛାତ ଢ଼ଳେଇ ପୂର୍ବରୁ ଅବଲମ୍ବନ କରି ଥିବା ସାବଧାନତା ଓ ଚିଫ୍ ଇଞ୍ଜିନିୟରଙ୍କ ଫାଇଲ ଅର୍ଡ଼ରର କପି କୈଫୟତ ସହ ଦେଇ ଦେଲି। ସରକାରଙ୍କୁ ରିପୋର୍ଟ ଗଲା ଏତେ ବଡ଼ ଛାତ ପାଇଁ ଟାରଫେଲ୍ଟ ଏକାନ୍ତ ଆବଶ୍ୟକ। ଆଗରୁ ଟାରଫେଲ୍ଟ ପଡ଼ି ନ ଥିଲା। ବର୍ତ୍ତମାନ ଟାରଫେଲ୍ଟ ପଡ଼ି ପାଣି ଗଳିବାକୁ ସମ୍ପୂର୍ଣ୍ଣ ରୂପେ ନିୟନ୍ତ୍ରଣ କରାଯାଇସାରିଛି। ତେଣୁ ଏଥିପାଇଁ ବାହାରିକୁ ଦାୟୀ କରିବାର ଆବଶ୍ୟକତା ନାହିଁ। ଏତିକିରେ ନାଟକର ଅବସାନ ଘଟିଲା। କିଶୋରୀବାବୁଙ୍କ ମୁଖ ନିସୃତ ଦୈବୀ ବାଣୀ ମନେ ପଡ଼ିଲା, ବିପଦରେ ଅଧୈର୍ଯ୍ୟ ହେବନି, ଯେ ବିପଦ ଆଣିଦେଇଛି ସେ ତାର ଉଦ୍ଧାରର ପନ୍ଥା ବାହାର କରିବ। ବିପଦ କାହିଁକି ଆସିଲା ପଚାରିବାକୁ ଆମେ କିଏ ? ଏହା ପଢ଼ି ପାଠକମାନେ ବିଚାର କରନ୍ତୁ ଭଗବାନ ଅଛନ୍ତି କି ନାହିଁ, ସବୁ କାର୍ଯ୍ୟର ପଛରେ ତାଙ୍କର ଅଦୃଶ୍ୟ ଇଙ୍ଗିତ କାର୍ଯ୍ୟ କରୁଛି କି ନାହିଁ ? ଯେଉଁ ଅଦିନ ଝଡ଼ ମୋର ଜୀବନ ଆକାଶରେ ସୃଷ୍ଟି ହୋଇଥିଲା ସେଥିରୁ ଉଦ୍ଧାର ପାଇବା କ'ଣ ସାଧାରଣ ମନୁଷ୍ୟ ପକ୍ଷେ ସମ୍ଭବ ?

୧୯୬୪ ମସିହା ଭାଦ୍ରବ ମାସରେ ଆମ ଗାଁରୁ କେତେକ ଲୋକ ପିତୃପକ୍ଷରେ ଶ୍ରାଦ୍ଧ ଦେବା ପାଇଁ ବାହାରିଲେ ଗୟା ଓ ବାରାଣସୀ। ସମସ୍ତଙ୍କର ଅଭିଭାବକ ଭାବେ ବାହାରିଲେ କକା କାଶୀନାଥ ଦାଶ ଶର୍ମା। ଖବର ଆସିବାରୁ ତୀର୍ଥଯାତ୍ରା ପାଇଁ କିଛି ଟଙ୍କା, ମୁଁ ବାପାଙ୍କ ପାଖକୁ ପଠାଇ ଦେଲି, ବୋଉ ବାହାରିଲେ ତୀର୍ଥ କରିବାକୁ। ବାପା ଓ ପଡ଼ୋଶୀମାନଙ୍କ ମନା ମାନିଲେନି। ବାପା ମନା କରିବାରୁ କହିଲେ ତୁମ ପଇସାରେ ମୁଁ ଯିବିନି। ମୋ ପୁଅ ପଠାଇଥିବା ପଇସା ମୋତେ ଦିଅ। ଦରକାର

ପଡ଼ିଲେ ମୁଁ ଅଲଗା ଯିବି। ଅଳ୍ପଦିନ ଆଗରୁ ସାମାନ୍ୟ ଆରୋଗ୍ୟ ଲାଭ କରି ସେ ମୋ ପାଖରୁ ଯାଇଥାନ୍ତି। ଔଷଧ ନିୟମିତ ଖାଉଥାନ୍ତି। ପରିଶ୍ରାରେ ଏଲବୁମିନ୍ ପଡୁଛି। ଖାଇବାରେ ବହୁତ କଡ଼ା ନିୟମ। ତୀର୍ଥ କରି ଗଲେ ଖାଇବା ଓ ପିଇବାରେ ନିମୟ ରହିବନି। ବୁଲାବୁଲି ଫଳରେ ଦୁର୍ବଳ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିବ। ଯେତେ କହିଲେ ସେ ମାନିଲେନି। ମୋ ପାଖକୁ ବାପା ଲେଖିଲେ ବୋଉର ଆଗ୍ରହ ଦେଖି ମୁଁ ବାଧ ହୋଇ ନିରବ ରହିଲି। ଅକ୍ଟୋବର ମାସ ୧୪ ତାରିଖରେ ଖବର ପାଇଲି ସେ ଫେରିଛନ୍ତି ଓ ଭୀଷଣ ରୋଗାକ୍ରାନ୍ତ। ସଙ୍ଗେ ସଙ୍ଗେ ଋଲିଲି ଗାଁକୁ। ସହଜେ ତାଙ୍କର ସ୍ୱାସ୍ଥ୍ୟ ଦୁର୍ବଳ ଖାଇବାର ଅନିୟମିତା, ଉପଯୁକ୍ତ ବିଶ୍ରାମ ଓ ନିଦ୍ରାର ଅଭାବରୁ ସେ ପ୍ରାୟ ଅସ୍ଥି କଙ୍କାଳ ସାର ହୋଇଫେରିଛନ୍ତି। ତାଙ୍କୁ ସ୍ଥାନାନ୍ତରିତ କରି ଚିକିତ୍ସା କରିବା ଅବସ୍ଥାରେ ସେ ନାହାନ୍ତି। ଡାକ୍ତର ଡକାଇ ଗାଁରେ ଯାହା ସମ୍ଭବ ଚିକିତ୍ସା କରାଗଲା। କିନ୍ତୁ କିଛି ଫଳି ହେଲାନି। ଅକ୍ଟୋବର ୧୭ ତାରିଖ ଦିନ ଖଡାମରା ସଂକ୍ରାନ୍ତି ଦଶହରା ଦିନ ଭୋର ୬ଟା ବେଳେ ସେ ଆମ୍ଭମାନଙ୍କୁ ଚିରଦିନ ପାଇଁ ଶୋକ ସାଗରରେ ଭସାଇଦେଇ ଋଲିଗଲେ ଆରପାରିକୁ। ମାତ୍ର ୨ ବର୍ଷ ବ୍ୟବଧାନରେ ଶାଶୁ ଓ ବୋଉଙ୍କୁ ହରାଇ ମୁଁ ଅତ୍ୟନ୍ତ ନିଃସହାୟ ହୋଇପଡ଼ିଲି। ଇହଲୀଳା ସମ୍ବରଣ କରିବା ବେଳକୁ ତାଙ୍କୁ ବୟସ ହୋଇଥିଲା ୬୬ ବର୍ଷ। ତାଙ୍କୁ କାହିଁକି ତୀର୍ଥ ଯିବା ପାଇଁ ବାରଣ କଲିନି ବୋଲି ବହୁତ ଅନୁତାପ କରି ଭାବିଲି, ସେ ହୁଏତ ତୀର୍ଥ କରିବାକୁ ଯାଇ ନ ଥିଲେ ଆଉ କିଛିଦିନ ବଞ୍ଚିଥାନ୍ତେ। ଗାଁର ଅଧିକାଂଶ ମୁଖିଆଲୋକ ମୋ ସହିତ ଏକ ମତ ହେଲେନି। ସେମାନଙ୍କ ମତରେ ମନୁଷ୍ୟର ମୃତ୍ୟୁ ହେଉଛି ଏକ ନିରାଟ ସତ୍ୟ। ଏହା ଯେ ଭଳି ହେଲେ ବି ହୋଇଥାନ୍ତା। କିନ୍ତୁ ସେ ଯଦି ତୀର୍ଥ ନ ଯାଇ ମତ୍ୟୁବରଣ କରିଥାନ୍ତେ ତେବେ ତାଙ୍କର ଜୀବନରେ ଏକ ଅବଶୋଷ ରହିଯାଇଥାନ୍ତା। ମୃତ୍ୟୁ ପୂର୍ବରୁ ତାଙ୍କର ପିତୃପୁରୁଷଙ୍କୁ ପିଣ୍ଡ ଦେଇ ଶେଷନିଶ୍ୱାସ ତ୍ୟାଗ କରିଥିବାରୁ ରୋଗ ଶଯ୍ୟାରେ ମଧ ତାଙ୍କ ମୁଖରେ ଏକ ପ୍ରଶାନ୍ତିଭାବ ଫୁଟି ଉଠୁଥିଲା। ଶେଷ ମୁହୂର୍ତ୍ତରେ ତାଙ୍କର ମନର ସନ୍ତୋଷଭାବ ଦେଖି ମୋତେ ଶାନ୍ତି ଟିକିଏ ମିଳିଥିଲା। ଜେଜେ ମାଙ୍କ ମୃତ୍ୟୁ ପରେ ସେ ହୋଇଥିଲେ ଘରର ସର୍ବମୟୀ କର୍ତ୍ତ୍ରୀ। ଦାଦା ଓ ବଡ଼ ବାପା ଙ୍କ ମୃତ୍ୟୁ ପରେ ୩ଟି ପରିବାରର ଦାୟିତ୍ୱ ନେବାକୁ ସେ ବାପାଙ୍କୁ ପ୍ରେରଣା ଦେଇ

ଆସିଥିଲେ। ସେଥିପାଇଁ ତାଙ୍କୁ କମ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିନାହିଁ। ଶାଶୁଙ୍କୁ ମୃତ୍ୟୁ ପରେ ସେ ଘରଟିକୁ ସୁରୁରୁ ରୂପେ ଚଳାଇବାର ଦାୟିତ୍ୱ ନେଇଥିଲେ। ମୁଁ ଚାକିରୀରେ ଯୋଗଦେବା ପରେ ପ୍ରାୟତ ସେ ମୋ ପାଖରେ ରହୁଥିଲେ। ବଡ଼ ପୁଅ 'ବୁଲୁ' ଥିଲା ତାଙ୍କର ଜୀବନ ସର୍ବସ୍ୱ। ବାପାଙ୍କର ସେ ଥିଲେ ପଥପଦର୍ଶିକା। ତାଙ୍କର ମୃତ୍ୟୁ ଫଳରେ ବାପାଙ୍କର ଅସୁବିଧା ହେବ ଭାବି ତାଙ୍କୁ ମୋ ପାଖକୁ ନେଇ ଆସିଲି।

ବୋଉଙ୍କର ମୃତ୍ୟୁ ସମୟକୁ ସମସ୍ତଙ୍କର ଅଗୋଚରରେ ମୋତେ ଜଣ୍ଡିସ୍ ରୋଗ ଆକ୍ରମଣ କରିସାରିଛି। କିନ୍ତୁ ମୁଁ ନିଜେ ମଧ୍ୟ ଏହା ଜାଣି ପାରୁନି। ୧୦ ଦିନ ଧରି ବିନା ତେଲ ମସଲାରେ ଖାଇବା ମୋ ପାଇଁ ଥିଲା ପ୍ରକାରନ୍ତରେ ଏକ ଆଶିଷ ସଦୃଶ। ଦଶାହ କ୍ରିୟା ପାଇଁ ବିଭିନ୍ନ ସ୍ଥାନକୁ ଯିବାକୁ ପଡ଼େ। ଗାଁରେ ଗାଡ଼ି ମଟର ନାହିଁ। ଯୁଆଡ଼େ ଯିବ ଚାଲି କରି। ମୁଁ ଚାଲିପାରୁ ନଥାଏ। ଗୋଡ଼ ଓ ହାତ ବହୁତ ବିନ୍ଧେ। ମୋତେ ୨/୩ ଜଣ ସାରା ରାତି ଘସନ୍ତି। ବୋଉଙ୍କର ୧୨ ଦିନ କାମ ସାରି ଫେରିଲୁ ଭୁବନେଶ୍ୱର। ହଠାତ୍ ମଝିଆଁ ଝିଅ ଇଲାର ହାତ ଆଙ୍ଗୁଳି ଉପରେ ବିରିପେଷା ଚକି ପଡ଼ିଗଲା। ତାର ହାତକୁ ଷ୍ଟିଚ୍ କରାଗଲା। ଏହା ଦେଖି ମୁଁ ମୂର୍ଚ୍ଛା ହୋଇଗଲି। ଡାକ୍ତର ମୋତେ ଟେକିବା ବେଳେ ଆଖି ହଳଦିଆ ହୋଇଥିବାର ଦେଖିଲେ। ପରିସ୍ରା ପରୀକ୍ଷାରୁ ଜଣାପଡ଼ିଲା ଯେ ମୁଁ ଭୀଷଣ ଜଣ୍ଡିସ୍ ରୋଗରେ ପୀଡ଼ିତ। ସେଦିନ ମୋର ଗାଡ଼ି କିଣିବା ପାଇଁ ଆସିଥିଲା, ମୋ ସାଙ୍ଗ ଡାକ୍ତର ବିମଳ କର। ସାଙ୍ଗରେ ତା ଡାକ୍ତରାଣୀ ସ୍ତ୍ରୀ ସତ୍ୟଭାମା ମଧ୍ୟ ଆସିଥିଲେ। ମୋ ଆଖି ଦେଖି ବିମଳ ଭୀଷଣ ଗାଳି କଲା। କହିଲା, ମୁଁ ତୋତେ ଜାଣେ। ତୋର ଆଗକୁ ପଛକୁ କେହି ନାହାନ୍ତି। ଶୀଘ୍ର ଯାଇ ଶୋଇପଡ଼, ଅଫିସ୍‌କୁ ଆସନା। ତୋର ଭଲମନ୍ଦ ହୋଇ ଗଲେ ପିଲାଏ ଭାସିଯିବେ। ତା କଥା ମାନି ମୁଁ ୭/୮ ଦିନ ଛୁଟି ନେଇ ରହିଲି। ବେଲପତ୍ର ରସ, ଅମୃତଭଣ୍ଡା ତରକାରୀ ସହ ଦେରାନ୍ଧା ଭାତ ଖିଆ ଓ ଘୋଳ ଦହି, ପଇଡ଼ପାଣି ପିଆରେ ମୋର ଜଣ୍ଡିସ୍ ଭଲ ହୋଇଗଲା।

କେପିଟାଲ୍ କୋପରେଟଭ୍ ହାଉସିଂ ସୋସାଇଟି ନାମକ ଗୋଟିଏ ସଂସ୍ଥା ଭୁବନେଶ୍ୱରରେ ଖୋଲିଥାଏ। ଏଥିରେ ମୁଁ ବିବାହ ପରେ ପରେ ମେମ୍ବର ହୋଇଯାଇଥିଲି। ୧୯୬୨ ମସିହା ଅଗଷ୍ଟ ମାସରେ ୧୦ ଡ଼େସିମିଲ ଆୟତନର

ପ୍ଲଟଟିଏ ମିଳିଗଲା। ଜମିଟିର ଦାମ ୬୯୨ ଟଙ୍କା। ସେହି ସମୟ ଠାରୁ ଘର ତିଆରି ଯୋଜନା ଆରମ୍ଭ ହେଲାଣି। ନୟାଗଡ଼ର ନନ୍ଦିଘୋର ଗାଁର ମିସ୍ତ୍ରୀମାନେ ଅପେକ୍ଷାକୃତ କମରେଟ୍‌ରେ ଚୌକାଠ ଓ କବାଟ ତିଆରି କରି ଦିଅନ୍ତି। ମୁଁ ଶରଣକୁଳରେ ଥିବା ସମୟରେ ଏହି ସୁବିଧାର ଉପଯୋଗ କରି କେତେ ଗୁଡ଼ିଏ ଚୌକାଠ ଓ କବାଟ ତିଆରି କରିପକାଇଥିଲି। ଭୁବନେଶ୍ୱର ଆସିବା ପରେ ବାକି ତକ ତିଆରି କରି ପକାଇଲି। ଚୌକାଠ ଗୋଟାକୁ ୧୦ ଟଙ୍କା ଓ କବାଟ ବର୍ଗଫୁଟକୁ ହାରାହାରି ୨ ଟଙ୍କା। ଏହା ଭିତରେ କୋପରେଟିଭ୍ରୁ ଲୋନ୍ ଆସି ସାରିଥାଏ। ବହୁତ ଶସ୍ତା ଯୁଗ। ସିମେଣ୍ଟ ବସ୍ତାକୁ ୬ ଟଙ୍କା ପଚିଶ ପଇସା, ଇଟା ହଜାରକୁ ୫୦ ଟଙ୍କା, ଦୈନିକ ମଜୁରୀ ୧ ଟଙ୍କା, ମିସ୍ତ୍ରୀ ମଜୁରୀ ୩ ଟଙ୍କା, ବାଲି ଟ୍ରିପ୍‌କୁ ୧୫ ଟଙ୍କା, ମାଙ୍କଡ଼ା ପଥର ଟ୍ରିପ୍‌କୁ ୪୦ ଟଙ୍କା, ଭୁବନେଶ୍ୱରରେ ଡିଜାଇନ୍‌ରେ ପୋଷ୍ଟି ହୋଇଥିବା ହେତୁ ସକାଳ ଓ ସନ୍ଧ୍ୟାରେ ଘର କାମ ଦେଖିବାକୁ ସୁବିଧା ମିଳେ। ତାପରେ ସବୁ କାମ ଠିକାରେ କରିହୁଏ। ୟୁନିଟ୍ ୯ରେ ଘର ମିଳିଥିବାରୁ ଏହା ଶହୀଦନଗରକୁ ବହୁତ ପାଖ। ତେଣୁ ଘର ତିଆରି ସୁରୁଖୁରୁରେ କରିହେଲା। ବର୍ଷେ ଭିତରେ ତଳ ତାଲାର କାମ ସରି ଉପର ତାଲା କାମ ଆରମ୍ଭ ହୋଇଗଲା। ଉମା ସବୁବେଳେ ବ୍ୟସ୍ତ ହୁଏ। ଘରଟିରେ ଆର୍କିଟେକ୍ଚରାଲ ଡିଜାଇନ୍ ଦେଲନି। କବାଟ ଚୌକାଠ ସବୁ ଶାଗୁଆନ କାଠରେ ହୋଇଥିଲେ ଭଲ ହୋଇଥାନ୍ତା। ତାକୁ ମୁଁ ବୁଝାଇ ଦେଇଥାଏ ଯେ ଏ ଘରେ ୨୫/ ୩୦ ବର୍ଷ ଧରି ରହିବାର କୌଣସି ସମ୍ଭାବନା ନାହିଁ। ଶସ୍ତା ଯୁଗରେ ଘରଟି ତିଆରି କରି ଭଡ଼ା ଲଗାଇଦେଲେ ସେ ଭଡ଼ାଟଙ୍କା ଆମକୁ ବହୁତ ସାହାଯ୍ୟ କରିବ। ସେହି ଭଡ଼ାଟଙ୍କାରେ ଆମେ ଝିଅମାନଙ୍କ ପାଇଁ ସୁନାକିଣି ପାରିବା। ଝିଅ ବାହାଘରକୁ ମଧ୍ୟ ଏହି ଟଙ୍କା ସାହାଯ୍ୟ କରିବ। ଦରକାର ପଡ଼ିଲେ ଆମେ ରହିବା ପାଇଁ ତୁମ ମନ ମୁତାବକ ଆଉ ଗୋଟିଏ ଛୋଟ ଘର କରିବା। ଏ ଘରଟି ଭଡ଼ା ଘର ହୋଇ ସାରା ଜୀବନ ଆମର ସହାୟକ ହୋଇରହିବ। ସେଥିପାଇଁ କବାଟ ଝରକା ସବୁ ଶସ୍ତାରେ କିନ୍ତୁ ଭଲ କାଠରେ କିଣିଛି। ସାଧା ଡିଜାଇନର ଘର କରିଛି। ମୋର ସେହି ଭବିଷ୍ୟତ କଳ୍ପନା ପରବର୍ତ୍ତୀ କାଳରେ ସତ ବୋଲି ପ୍ରମାଣିତ ହୋଇଛି। ଉମା ମଧ୍ୟ ମୋ ସହିତ ବର୍ତ୍ତମାନ ଏକ ମତ ଯେ ତରବରରେ ଅଧିକ ଅର୍ଣ୍ଣାମେଣ୍ଟାଲ୍

ଡିଜାଇନ୍ ନ କରି ଘର କରିବା ଅତ୍ୟନ୍ତ ବୁଦ୍ଧିମତାର କାମ ହୋଇଛି। ଗର ତିଆରି ବେଳେ ଏକମାତ୍ର ପ୍ରତିବନ୍ଧକ ଥିଲା ଅର୍ଥ। କୋପରଟିଭ୍ ଲୋନ୍ ସାଙ୍ଗକୁ ପ୍ରୋଭିଡ଼େଣ୍ଟ ଫଣ୍ଡ ଲୋନ୍ ଅଣାଯାଇ ସାରିଥାଏ। ଉମା ନାମରେ ଥିବା ଜମିଧାନର ବିକ୍ରୟ ଲବ୍ଧ ଅର୍ଥ ମଧ୍ୟ ସେଥିରେ ବିନିଯୋଗ ହୋଇସାରିଥାଏ। ତଥାପି ଅର୍ଥର ଅଧିକ ପ୍ରୟୋଜନ ହେବାରୁ ଅଗତ୍ୟା ଗାଡ଼ିଟି ବିକି ଦେଲି।

ଗାଡ଼ିଟି ବିକିଦେବାର ଅନ୍ୟ କାରଣ ମଧ୍ୟ ଥିଲା। ଚିଫ୍ ଇଞ୍ଜିନିୟରଙ୍କ ସହିତ ମୋର ଦୀର୍ଘଦିନ ଧରି ସମ୍ପର୍କ ଭଲ ନଥିବାରୁ ସେ ମୋତେ ଟୁର୍‌ରେ ଯିବା ପାଇଁ ଅନୁମତି ଦେଉ ନଥିଲେ। ଡିଜାଇନ୍ ଦାୟିତ୍ୱରେ ଥିବା ଇଞ୍ଜିନିୟରଙ୍କ ଯେ ଫିଲ୍ଡ ଇନ୍‌ସ୍ପେକସନ୍ ଦରକାର ତାହା ସେ ହୃଦୟଙ୍ଗମ କରିପାରୁ ନଥିଲେ। ଅନ୍ୟ ପକ୍ଷରେ ମୋ ଅଧୀନରେ ରହିଥିବା ତାଙ୍କ ପ୍ରିୟ ଡିଜାଇନ୍ ଆସିଷ୍ଟାଣ୍ଟ ଇଞ୍ଜିନିୟରଙ୍କୁ ନିଜ ଗାଡ଼ିରେ ଟୁର୍ କରିବାକୁ ଅନୁମତି ଓ ଆଦେଶ ଦେଉଥିଲେ। ମୁଁ ଯେତେବେଳେ ଫାଇଲ୍‌ରେ ଲେଖିପଠାଏ ସେ ଜଟିଳ ସ୍ପିଲୱେ ଡିଜାଇନ୍ ପୂର୍ବରୁ ଫିଲ୍ଡ ଇନ୍‌ସ୍ପେକସନ୍ ଦରକାର, ସେ ଅର୍ଡ଼ର ଦିଅନ୍ତି ଏହା ଫିଲ୍ଡ ସୁପରିନ୍‌ଟେଣ୍ଡେଣ୍ଟ ଇଞ୍ଜିନିୟର କରିବେ। ତେଣୁ ଡିଜାଇନ୍‌ରେ ଯେଭଳି ଶିଥିଳତା ଆସିବା କଥା ଆସିଥିଲା। ଗାଡ଼ିଟିର ଦୂର ସ୍ଥାନକୁ ଯାତାୟତ ନ ହେବା ଫଳରେ ବେଟେରୀ ଡାଉନଠୁ ଆରମ୍ଭ କରି ବିଭିନ୍ନ ଅସୁବିଧା ବାହାରିଲା। ସକାଳେ ଠେଲିବାକୁ କେହି ଲୋକ ନାହିଁ । ଗାଡ଼ି ଖରାପ ହେଲେ ଗେରେଜକୁ ନେବାକୁ ଡ୍ରାଇଭର ନାହିଁ। ମରାମତି ସମୟରେ ଜଗିବାକୁ କେହି ଲୋକ ନାହିଁ। ପୁଣି ଗାଡ଼ିର ରୋଜଗାର ନ ଥାଇ ପ୍ରତି ମାସକୁ ଗାଡ଼ିଲୋନ୍ ବାବଦ ଟଙ୍କା ସୁଝା ପେଟ୍ରୋଲ୍ ଓ ମରାମତି ବାବଦ ଟଙ୍କା ଖର୍ଚ୍ଚ। ଘର ତିଆରି ଯୋଗୁ ବିଭିନ୍ନ ଆଡୁ ଧାର। ତେଣୁ ଅତିଷ୍ଠ ହୋଇ ପଡ଼ି ଗାଡ଼ିଟିକୁ ବିକ୍ରି କରି ଦେଲି। ଗାଡ଼ି ବିକ୍ରି ଟଙ୍କାରେ ଘର କାମ ସୁରୁଖୁରୁରେ ଚାଲିଲା। କିନ୍ତୁ ଛୋଟ ଛୋଟ ପିଲାମାନଙ୍କ ଦୁଃଖ କହିଲେ ନସରେ। ଜନ୍ମରୁ ଦୁଇ ଦୁଇଟି ଗାଡ଼ି ଘରେ ରହିବା ଦେଖୁଛନ୍ତି। ହଠାତ୍ ଘରେ ଗାଡ଼ି ନାହିଁ। ସେମାନେ ଯେତେବେଳେ କହନ୍ତି ବାପା ଅନ୍ୟମାନେ ଗାଡ଼ି କିଣୁଛନ୍ତି ତୁମେ କାହିଁକି ଆମ ଗାଡ଼ି ବିକିଦେଲ ? ଆମ ଗାଡ଼ି କେବେ କିଣା ହେବ ? ଆମେ ବଜାରକୁ ସିନେମା ଦେଖିବାକୁ କିପରି ଯିବା ? ମୋ ଆଖିରେ ଲୁହ ଭରି

ଯାଏ। କଣ କିଣିବି ? ବିନା ଟୁର୍‌ରେ ହାତରୁ ପଇସା ଖର୍ଚ୍ଚ କରି ଗାଡ଼ି ରଖିବା ଭଳି ଦରମାତ ମୋତେ ମିଳୁନି। ଅବଶ୍ୟ ସେତେବେଳେ ପେଟ୍ରୋଲ ଓ ମରାମତି ପାଇଁ ୧୦୦ ଟଙ୍କା ଆବଶ୍ୟକ। ଲୋନ ଟଙ୍କା ଖର୍ଚ୍ଚ କରି ଗାଡ଼ି ଚଢ଼ିବାକୁ ମନ ବଳିଲାନି। ଆର.ଇ.ଓ. ଡିଜାଇନ୍‌ରେ ଥିବା ପର୍ଯ୍ୟନ୍ତ ତ ଆଉ ଟୁର୍ କରି ହେବନି। ଚିଫ୍‌ଇଞ୍ଜିନିୟର ସୁପର ଚିଫ୍‌ଇଞ୍ଜିନିୟରଙ୍କୁ ହାତ କରି ଆର.ଇ.ଓ.ରେ ଏକଛତ୍ର ଶାସନ କରୁଥାନ୍ତି। ସେମାନେ ଯାହା ଋହୁଁଥାନ୍ତି ହେଉଥାଏ। ସେ ଦୁଇଜଣଙ୍କୁ ଗର୍ବ କହିଲେ ନ ସରେ। ସେତେବେଳେ ତାଙ୍କୁ ଗର୍ଭିଣୀ ଗାଈ ମଧ ବାଟ ଛାଡ଼ି ଦେବ। ତାଙ୍କ ପରିସ୍ରାରେ ସେତେବେଳେ ଦୀପ ଜଳୁଥାଏ। ଏଭଳି କି ସୁପରିନ୍‌ଟେଣ୍ଡିଙ୍ଗ୍ ଇଞ୍ଜିନିୟରମାନଙ୍କୁ ଅଲଗା ଅଫିସ୍ କରାଇ ଦେଉ ନଥାନ୍ତି। ତାଙ୍କ ପାଇଁ sanction ହେଉଥିବା ଷ୍ଟାଫ୍‌କୁ ଚିଫ୍‌ଇଞ୍ଜିନିୟର ତାଙ୍କ ଅଫିସ୍‌ରେ ରଖି ନିଜ ଅଫିସ୍‌ର କଳେବର ବୃଦ୍ଧି କରିବାରେ ଲାଗିଥାନ୍ତି। ତାଙ୍କୁ କେବଳ ଜଣେ ଲେଖାଏଁ ଷ୍ଟେନୋ ଓ ପି.ଏ ଦିଆଯାଇଥାଏ। ସମ୍ବଲପୁର ବରହମପୁର ରେଞ୍ଜର ସୁପରିଟେଣ୍ଡିଂ ଇଞ୍ଜିନିୟରମାନଙ୍କୁ ମଧ ନିଜ ଅଫିସ୍‌ରେ attached ଅଫିସର ଭଳି ରଖିଥାନ୍ତି। ଏକଜକ୍ୟୁଟିଭ୍ ଇଞ୍ଜିନିୟର, ଆସିଷ୍ଟାଣ୍ଟ ଇଞ୍ଜିନିୟର ମାନଙ୍କ ହାଣ୍ଡିରେ କଳା ପଡ଼େନି। ଦୁଇ ଜଣ ମିଶି ଗୋଟିଏ ପାଖକୁ ଟୁର୍‌ରେ ଯିବେ। ଫେରି ଆସିବା ମାତ୍ରେ ଲମ୍ବା ଟ୍ରାନ୍ସଫର୍ ଅର୍ଡ଼ର। ସବୁ ଇଞ୍ଜିନିୟରମାନଙ୍କୁ ଗୋଡ଼ ବୁଢ଼ା ଅଙ୍ଗୁଳି ଟିପରେ ଦଉଡ଼ାଇଲା ଭଳି ଦଉଡ଼ାଉଥାନ୍ତି। ୧ମ ଓ ୨ୟ ପଞ୍ଚବାର୍ଷିକ ଯୋଜନାର ଛୋଟ ଛୋଟ କାର୍ଯ୍ୟଗୁଡ଼ିକ ରେଭିନ୍ୟୁ ଏଗ୍ରିକଲଚର, ଭେଟେରିନାରି, କୋପରେଟିଭ୍ ଆଦି ବିଭାଗ ହାତରେ ହେଉଥିଲା। ତାଙ୍କ ଅଧୀନରେ ଜଣେ ଲେଖାଏଁ ବର୍ଷକିଆ ଟ୍ରେନିଂ ପାଇଥିବା ସବଓଭରସିଅର ବା ଖୁବ୍ ବେଶୀ ହେଲେ ଓଭରସିଅର ଥିଲେ। ତେଣୁ କାମରେ ବହୁତ ବିଶୃଙ୍ଖଳା ଥିଲା। ବାଞ୍ଛାନିଧି ସାହୁଙ୍କୁ ଯେତେବେଳେ ରେଭିନ୍ୟୁରେ ୧୯୬୧ ମସିହାରେ ପୋଷ୍ଟିଂ ହେଲା ସେ ଶିବରମଣ ସାହେବକୁ ବୁଝାଇ ସବୁ କାମ ଆବୋରି ଆଣି ଆର.ଇ.ଓ ନାମକ ସଂସ୍ଥା ତିଆରି କଲେ। ତାଙ୍କର ଅର୍ଗେନାଇଜେସନ୍ କ୍ଷମତା ବହୁତ ବେଶୀ। କାହାକୁ ବଦଳି ଧମକ, କାହାକୁ ସସ୍‌ପେନ୍‌ସନ ଧମକ ଦେଇ ସମସ୍ତଙ୍କୁ ଡରାଇ ରଖିଥାନ୍ତି। ଏଣେ ସରକାରଙ୍କୁ ଗୁଡ଼ାଏ ଷ୍ଟେଟ୍‌ମେଣ୍ଟ ରିଟର୍ଣ୍ଣରେ ଭେଳିକି ଦେଖାଇ ଚୁପ୍ ରଖିଥାନ୍ତି।

୧ମ ଓ ୨ୟ ପଞ୍ଚବାର୍ଷିକ ଯୋଜନାରେ ଭିନ୍ନ ଭିନ୍ନ ଡିପାର୍ଟମେଣ୍ଟରେ କୋଟି କୋଟି ଟଙ୍କା ଏ.ସି. ବିଲ୍‌ରେ ଗଡୁଛି। ଶିବରମଣ ସାହେବ ମଧ ଏଭଳି ଗୋଟିଏ ସଂସ୍ଥାକୁ ସବୁ ଦାୟିତ୍ୱ ପେଲି ଦେବାକୁ ଋହୁଁଥାନ୍ତି। କଙ୍କଡ଼ାକୁ ଗୋଳି ପାଣି ସୁହାଇଲା ଭଳି ମିଳିଗଲା। ଆଇ.ଇ.ଓ ଚିଫ୍‌ଇଞ୍ଜିନିୟରଙ୍କୁ କ୍ଷମତା ଶିବରମଣ ସାହେବଙ୍କ ଦୟାରୁ ମିଳିଲା। ଇଏଣ୍ଡ ଡେଭଲପ୍‌ମେଣ୍ଟ କମିସନର ହୋଇଥିବା ସୁପର ଚିଫ୍‌ଇଞ୍ଜିନିୟର ଏଲ. କେ. ମହାନ୍ତିଙ୍କୁ ହାତମୁଠାରେ ରଖିଥାନ୍ତି। ସେ ସୁପର ଇଞ୍ଜିନିୟରଙ୍କ ଭଳି ଇଞ୍ଜିନିୟରଙ୍କ ସହିତ ବ୍ୟବହାର କରନ୍ତି। ଟୁର୍‌ରେ ଉଭୟ ଯିବେ। ଚିଫ୍‌ଇଞ୍ଜିନିୟର ଯାହା କହିବେ ସୁପର ଚିଫ୍ ଇଞ୍ଜିନିୟର ସଙ୍ଗେ ସଙ୍ଗେ ସେଥିରେ ଖିଅ ଧରି ଇଞ୍ଜିନିୟର ମାନଙ୍କର ଦୋଷ ବାହାର କରିଦେବେ। ଇଞ୍ଜିନିୟରିଂ Inspection report ଦେଉଥିବା ବଡ଼ ବଡ଼ ଇଞ୍ଜିନିୟର ମାନଙ୍କୁ ନାମଧରି ଡାକୁଥିବେ। ସତେ ଯେପରି ସମସ୍ତେ ତାଙ୍କ ଅଧସ୍ତନ କର୍ମଋରୀ। ସୁପରିନ୍‌ଟେଣ୍ଡିଙ୍ଗ୍ ଇଞ୍ଜିନିୟର ମାନେ ଓ ଏକଜକ୍ୟୁଟିଭ୍ ଇଞ୍ଜିନିୟରମାନେ କିଛି କହିପାରନ୍ତି ନାହିଁ।

ଯଦି କିଛି କହିବେ କେଉଁ ମୁହୂର୍ତ୍ତରେ ତାଙ୍କର ବଦଳି ବା ସସ୍‌ପେନ୍‌ସନ ଅର୍ଡ଼ର ଫାଇଲ୍‌ର ମୁଭ୍‌ମେଣ୍ଟ ବିଜୁଳିବେଗରେ ହୋଇ ଅର୍ଡ଼ର ଋଲିଆସିବ କେହି, କହିପାରିବେ ନାହିଁ। ଏଭଳି ପରିସ୍ଥିତିରେ ମାତ୍ର ୨ ବର୍ଷ ଆଗରୁ ଯେଉଁ ଇଞ୍ଜିନିୟରଙ୍କୁ ଇରିଗେସନ୍‌ର ଜ୍ଞାନୀ ଚିଫ୍‌ଇଞ୍ଜିନିୟର ମାଧବ ପାଣି ଡିପାର୍ଟମେଣ୍ଟର ଜ୍ୟୋତି ବୋଲି ସେକ୍ରେଟେରୀ ଓ ମନ୍ତ୍ରୀଙ୍କ ଆଗରେ ମତବ୍ୟକ୍ତ କରିଥିଲେ, ସେ ଜଣେ ଅଦରକାରି ଓ ଅସହାୟ କିଂକର୍ତ୍ତବ୍ୟବିମୂଢ଼ ସ୍ଥାଣୁ ଇଞ୍ଜିନିୟର ହୋଇପଡ଼ିଲେ। ମନ ବିଦ୍ରୋହ କରିଉଠେ। ଏ ଅନ୍ୟାୟର ମୁକାବିଲା କରିବାକୁ ହେବ। ଚିଫ୍ ଇଞ୍ଜିନିୟର ଓ ସୁପରଚିଫ୍ ଇଞ୍ଜିନିୟରଙ୍କର ଏ ମନମୁଖୀ ଶାସନକୁ ବନ୍ଦ କରିବାକୁ ହେବ। ସେଥିପାଇଁ ଦରକାର ବିଦ୍ରୋହ। ମନେ ପଡ଼ିଯାଏ ସାତଶଙ୍ଖ କୋଲ୍ଡ ଷ୍ଟୋରେଜ୍‌କୁ ନେଇ ମୋର ସସ୍‌ପେନ୍‌ସନ୍ ଫାଇଲ୍। ମନେ ପଡ଼ିଯାଏ କିଶୋରୀ ବାବୁଙ୍କ ବାଣୀ ଧୈର୍ଯ୍ୟଧର। ଭଗବାନ ସବୁ ଦେଖୁଛନ୍ତି। ସେ ଅନ୍ୟାୟକୁ ସବୁଦିନ ସହି ଯିବେନି। ଦିନେ ନା ଦିନେ ପ୍ରତିକାର କରିବେ। ପୁଣି ମନେ ପଡ଼େ ପିଲାଦିନେ ପଢିଥିବା ନୀତିବାକ୍ୟ, ଅତି ଦର୍ପେ ହତଃ ଲଙ୍କା, ଅତି ମାନେଚ କୌରବାଃ, ଅତି ଦାନେ ବଳିର୍ବଧ, ଅତି

ସର୍ବତ୍ର ବର୍ଜୟେତ୍। ତେଣୁ ଏ ଦୁଇ ଜଣଙ୍କର ପତନ ଘଟିବ। କିନ୍ତୁ କେବେ? ସେତେଦିନ ପର୍ଯ୍ୟନ୍ତ ମୁଁ ଅପେକ୍ଷା କରିପାରିବିତ? ଏଣେ ବଦଳି ପାଇଁ ଚେଷ୍ଟା କରି ଆର.ଇ.ଓ ରୁ ମୁକ୍ତି ପାଇବାକୁ ଚାହିଲେ ମୁକ୍ତି ନାହିଁ। ସେକ୍ରେଟେରିଏଟ୍‌ରେ ବନ୍ଦ କରିଦେବେ। ହଠାତ୍ ଦିନେ ଗୋଟିଏ ସାର୍କୁଲାର ଦେଖିଲି। ୩ ମାସ ପାଇଁ ରୁକିରିରୁ ରିଫ୍ରେସର କୋର୍ସ ପାଇବାର ଏକଜିକ୍ୟୁଟିଭ୍ ଇଞ୍ଜିନିୟର ପଠାଯିବେ। ମୁଁ ଆଗରୁ ବର୍ଷକିଆ ଡବ୍ଲୁଆରଡ଼ି ଏମ.ଇ ଟ୍ରେନିଂ ପାଇଁ ଚେଷ୍ଟା କରିଥିଲି। କିନ୍ତୁ ଇଞ୍ଜିନିୟର ଅଭାବରୁ ଏକଜିକ୍ୟୁଟିଭ୍ ଇଞ୍ଜିନିୟରମାନଙ୍କୁ ପଠାଯାଇ ପାରିବନି ବୋଲି ସେକ୍ରେଟେରିଏଟ୍‌ରୁ ଅର୍ଡ଼ର ଆସିଲା। ମାତ୍ର ସାଢ଼େ ଚାରିବର୍ଷ ପରେ ତ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ହୋଇଗଲୁ। ତେଣୁ ସେ ଚେଷ୍ଟା ବିଫଳ ହୋଇଥିଲା। ସଙ୍ଗେ ସଙ୍ଗେ ଦରଖାସ୍ତ କରି ଇରିଗେସନ୍‌ରୁ ଅର୍ଡ଼ର କରାଇଦେଲି ଯେ ମୋର ରିଭରସ୍‌ନ ଇରିଗେସନକୁ ହେବ ଏବଂ ମୁଁ ସେଠାରୁ ଟ୍ରେନିଂରେ ଯିବି। ମୋର ଏ ଚେଷ୍ଟା କେବଳ ଆର.ଇ.ଓ ସଂସ୍ଥା, ବିଶେଷ କରି ଚିଫ୍‌ଇଞ୍ଜିନିୟରଙ୍କ କବଳରୁ ତ୍ରାହି ପାଇବା ପାଇଁ। କିନ୍ତୁ ସବୁ ଗୋଟାଏ ଆଡ଼େ - ଭାଗ୍ୟ ଗୋଟାଏ ଆଡ଼େ। ଅର୍ଡ଼ର ଦେଖି ଚିଫ୍ ଇଞ୍ଜିନିୟର ଭାବିଲେ ମୁର୍ଗା ହାତରୁ ଖସିଗଲା। ସଙ୍ଗେ ସଙ୍ଗେ ଯାଇ ଏଡ଼ିସ୍‌ନାଲ ସେକ୍ରେଟେରୀ ବାଇଜାଲ ସାହେବଙ୍କୁ କହିଲେ, ଭାସ୍କର ଚନ୍ଦ୍ର ନାୟକ ଭଳି ଯୋଗ୍ୟ ଇଞ୍ଜିନିୟର ତାଙ୍କ ସଂସ୍ଥାରେ ନାହାନ୍ତି। ତାଙ୍କୁ ଛାଡ଼ିଦେଲେ ସଂସ୍ଥାଟି ଭୁଷୁଡ଼ି ପଡ଼ିବ। ତାଙ୍କୁ ଆମେ ପଠାଇବା। ତାର ଇରିଗେସନ୍‌କୁ ରିଭାର୍‌ସନର ଆବଶ୍ୟକତା ନାହିଁ। ବାଇଜାଲ ସାହେବ ସଙ୍ଗେ ସଙ୍ଗେ ଫାଇଲ୍‌କୁ ନେଇ ସେହିଭଳି ଅର୍ଡ଼ର କରିଆଣିଲେ। ମୋର ଦୀର୍ଘ ୧୫ ଦିନର ଚେଷ୍ଟା ମୁହୂର୍ତ୍ତକ ମଧ୍ୟରେ ଧୂଳିସାତ ହୋଇଗଲା। ଯେତେବେଳେ ବାଇଜାଲ ସାହେବ ଙ୍କୁ ସବୁ ଦୁଃଖ ଖୋଲି କହିଲି ଯେ ବହୁତ ଦୁଃଖିତ ହେଲେ। କହିଲେ ଚିଫ୍‌ଇଞ୍ଜିନିୟରଙ୍କ କଥାରୁ ଜାଣିଲି, ସେ ଆପଣଙ୍କୁ ବହୁତ ଭଲ ପାଆନ୍ତି। ଆପଣ ଜଣେ ଡାଇନାମିକ୍ ଓ କର୍ମଠ ଇଞ୍ଜିନିୟର ଓ ଆପଣଙ୍କର ଏ ସଂସ୍ଥାରେ ଅବସ୍ଥାନ ଅତ୍ୟନ୍ତ ଆବଶ୍ୟକ ବୋଲି କହିଲେ। କିନ୍ତୁ ଆପଣ କିପରି ଏଭଳି କହୁଛନ୍ତି? ଇଞ୍ଜିନିୟର ମାନଙ୍କ ଚରିତ୍ର କ'ଣ ଏଭଳି?

ଭାଗ୍ୟକୁ ଆଦରି ଚାଲିଲି ରୁର୍‌କୀ ଅଭିମୁଖେ । ୩ ମାସ ଟ୍ରେନିଂ। ମୋ ସାଙ୍ଗରେ ଗଲେ ବୈକୁଣ୍ଠନାଥ ନାୟକ। ଦୁଇଜଣ ଏସିଆନ୍ ଆଫ୍ରିକାନ୍ ହଷ୍ଟେଲ୍‌ରେ

ଗୋଟିଏ ରୁମ୍‌ରେ ରହିଲୁଁ। ବହୁଦିନ ଧରି ପଢ଼ା ସହିତ ସମ୍ପର୍କ ଛାଡ଼ି ଯାଇଥିଲା। ରିଫ୍ରେସର କୋର୍ସରେ ପାଠ ଛାତ୍ର ଜୀବନରେ ପଢ଼ିଥିବା ଜ୍ଞାନର ଖାଲି ପୁନଃ ଉଦ୍ରେକ କଲାନାହିଁ; ଆଧୁନିକ ବିଜ୍ଞାନର ପ୍ରସାର ସମ୍ବନ୍ଧରେ ମୋର ଆଖି ଖୋଲି ଦେଲା। ଡାଃ. ଭରତ ସିଂ, ଡ଼ଃ ଥୋମାସ,ଆର.ଏଲ. ଚତୁର୍ବେଦୀ, ଆର.ଏସ. ଚତୁର୍ବେଦୀ ଆଦି ଜ୍ଞାନୀ ଲୋକଙ୍କ ବକ୍ତୃତାମାଳା ଶୁଣିବାର ସୁଯୋଗ ମିଳିଲା। ତା ସାଙ୍ଗକୁ କୋଟାବେରେଜ୍, ରାଣା ପ୍ରତାପ ସାଗର ବେଆଜ ଡ଼େମ ଓ ରାମ ଗଙ୍ଗା ଡ଼େମ୍ ଦେଖିବାର ମଧ ସୁବିଧା ମିଳିଲା। ଦୀର୍ଘ ୨ ବର୍ଷ ଧରି ଆର.ଇ.ଓ ସଂସ୍ଥାରେ ଯେଉଁ ଅଶାନ୍ତି ଭିତରେ ଗତି କରୁଥିଲି ସେଥିରୁ ଶାନ୍ତି ମଧ ମିଳିଲା। ବିଭାଘରର ୬ ବର୍ଷ ହୋଇଗଲାଣି। ପିଲାମାନଙ୍କ ଜଞ୍ଜାଳରେ ଘାଣ୍ଟି ହୋଇ ଉମାକୁ କୁଆଡ଼କୁ ଟିକିଏ ବୁଲାଇବାକୁ ନେଇପାରି ନଥିଲି। ବୈକୁଣ୍ଠବାବୁଙ୍କ ପିଲାମାନେ ମଧ କୁଆଡ଼େ ଯାଇ ନଥିଲେ। ଉଭୟ ସ୍ଥିର କଲୁ ବୈକୁଣ୍ଠବାବୁଙ୍କ ସାନଭାଇଙ୍କ ସାଙ୍ଗରେ ଉମାକୁ ଓ ତାଙ୍କ ସ୍ତ୍ରୀଙ୍କୁ ଡକାଇ ଦେବୁ। ରୁରୁକୀରେ ଥିବା ଭିତରେ ଦିଲ୍ଲୀ, ଆଗ୍ରା, ମଥୁରା, ବୃନ୍ଦାବନ ଦେଖିଦେବୁ। ଫେରିବାବେଳେ ବନାରସ ଓ ଗୟା ଦେଇ ଯିବୁ। ସେହି ପ୍ରସ୍ତାବ ଅନୁସାରେ ଉମା ଓ ବୈକୁଣ୍ଠବାବୁଙ୍କ ସ୍ତ୍ରୀ ମିଶି ଜୁଲାଇ ୧୦ ତାରିଖ ବେଳକୁ ଆସିଲେ ରୁରକୀ। ୨/୪ ଦିନ ଛୁଟି ନେଇ ଦିଲ୍ଲୀ ଆଗ୍ରା, ମଥୁରା, ବୃନ୍ଦାବନ ଦେଖି ଫେରିଲୁ। ଫେରିବା ପରେ ଚିଠି ପାଇଲୁ ବଡ଼ଝିଅ ଜୁଲିର ଦେହ ବହୁତ ଖରାପ। ତାକୁ ଜ୍ୱର ହେଉଛି। ଜ୍ୱର କମୁନି। ଆଉ ୮/୧୦ ଦିନ ପରେ ଫେରିବା କଥା। ଉମା ବହୁତ ବ୍ୟସ୍ତ ହେଲା। ଆଉ ମୁହୂର୍ତ୍ତେ ରହିବାକୁ ମନ ବଳୁ ନଥାଏ। ରିଜରଭେସନ୍ ମିଳିବନି। ଚିଠି ଓ ଟେଲିଗ୍ରାମ ପଠାଗଲା। ଉତ୍ତର ଆସିଲା ଜ୍ୱର ଟିକିଏ କମିଛି। ଦେହ ଦୁର୍ବଳ ଅଛି। ସେହି ୮/୧୦ ଦିନ ଆମେ କି କଷ୍ଟରେ କାଟିଚୁ ତାହା ଆମ ମନ ଜାଣେ। ଭାବିଲି ବିନା ରିଜରଭେସନ୍‌ରେ ଆମେ ପଳାଇ ଆସିଲୁ ନାହିଁ କାହିଁକି ? ଗୋଟାଏ ଟିକେଟ୍‌ରେ ୪ ଜଣ ଥିଲୁ। ଆମର କେନସଲ୍ ହେଲେ ବୈକୁଣ୍ଠ ବାବୁଙ୍କର ମଧ କେନସଲ ହୋଇଯିବ। ବାଧ ହୋଇ ବନାରସ ଗୟା ବାଟ ଦେଇ ଫେରିଲୁ।

ଅଗଷ୍ଟ ପହିଲା ବେଳକୁ ଭୁବନେଶ୍ୱର ଫେରି ଦେଖିଲି ଜୁଲିଆ ବହୁତ ଦୁର୍ବଳ ହୋଇଯାଇଛି। ତାର ଗାଲୁଆ ହୋଇଥିଲା। ଗାଲୁଆର ପରବର୍ତ୍ତୀ ପ୍ରଭାବ ଯେ ଏତେ

ଯେ ଭୟାବହ ହେବ ତାହା କିଏ ଜାଣିଥିଲା ? ସେ କଥା କହିପାରୁ ନଥାଏ ବାପା ମା'ଙ୍କୁ ଦେଖି ତା ଆଖିରୁ ଧାର ଧାର ଲୁହ ଗଡ଼ିପଡ଼ିଲା । କିନ୍ତୁ ଆମେ କାନ୍ଦିବା ମାତ୍ରେ ନିଜେ ଲୁହ ପୋଛିପକାଇ, ତା ମାମି ଓ ମୋ ପାଖକୁ ଆସି ଆମ ଲୁହ ପୋଛି ପକାଇଲା । କିଛି କହି ପାରେନି । ସ୍ୱର ଏକାବେଳେ ଅସ୍ପଷ୍ଟ । ସଙ୍ଗେ ସଙ୍ଗେ କଟକ ନେଇ ମେଡ଼ିକେଲରେ ମୋର ବନ୍ଧୁ ଦୟାନିଧି ଦାସଙ୍କ ସହାୟତାରେ ପ୍ରଫେସର ଗୋକୁଳିବାବୁ ଓ ଆସିଷ୍ଟାଣ୍ଟ ପ୍ରଫେସର୍ ସୁନିଲ ସେନ୍‌ଙ୍କ ତତ୍ତ୍ୱାବଧନାରେ ରହିଲୁ । ଧୀରେ ଧୀରେ ତାର ଦେହ ଭଲ ହେବାକୁ ଲାଗିଲା । ଅସ୍ପଷ୍ଟ ଭାଷାରେ କଥା କହିବା ଆରମ୍ଭ କଲା । ବାପା, ମାମି, ଡାକିଲା । ସ୍ୱର କିନ୍ତୁ ପରିଷ୍କାର ହେଉ ନଥାଏ । ମଝିରେ ମଝିରେ ଜ୍ୱର ହେଉଥାଏ । ଔଷଧ ଓ ଇନ୍‌ଜେକସନ୍ ଚାଲିଥାଏ । ସପ୍ତାହରେ ଥରେ ବା ଦୁଇଥର ତାକୁ କଟକ ନେଇ ସୁନୀଲବାବୁଙ୍କୁ ଦେଖାଇ ତାଙ୍କ ପରାମର୍ଶ ଅନୁସାରେ ଚିକିତ୍ସା ହେଉଥାଏ । ତାଙ୍କର ମତ ପିଲାର ଆଶାତୀତ ଉନ୍ନତି ହେଉଛି । ତାକୁ ଡାକ୍ତରଖାନାରେ ଇନ୍‌ଡୋର ପେସେଣ୍ଟ କରି ରଖିବାର କୌଣସି ଆବଶ୍ୟକତା ନାହିଁ । କଟକ ଯିବା ଆସିବାରେ ବହୁତ ଅସୁବିଧା ହେଉଥାଏ । ଗାଡ଼ିଟି ବିକ୍ରି ହୋଇଯାଇଥାଏ । ଦୀର୍ଘ ୮ ବର୍ଷ ଧରି ଗାଡ଼ି ସହିତ ଅଭ୍ୟସ୍ତ ହୋଇଯିବା ଫଳରେ ଜୀବନର ସବୁଠୁ ବେଶୀ ଆବଶ୍ୟକ ମୁହୂର୍ତ୍ତରେ ପିଲାକୁ ଡାକ୍ତରଖାନାକୁ ନେବାକୁ ଗାଡ଼ିଟିଏ ନାହିଁ । ତଥାପି ଯେତେକଷ୍ଟ ହେଲେ ବି କଟକ ନେବାରେ କେବେ ଅବହେଳା କରାଯାଇଛି ବୋଲି ମୋର ମନେ ହେଉନି । ଅଗଷ୍ଟ ୨୫/୨୬ ତାରିଖ ବେଳକୁ ଜୁଲିଆ ପ୍ରାୟ ସୁସ୍ଥ ହୋଇ ଗଲା । ହଠାତ୍ ତାର ଦେହ ଦୁର୍ବଳ ହୋଇ ପଡ଼ି ତଣ୍ଟି ବସିଗଲା । କଟକ ନେଇଗଲି । କହିଲେ ଥଣ୍ଡା ଧରିଛି କମିଯିବ । ଅଗଷ୍ଟ ୨୮ ତାରିଖ ଦିନ ସେ ଭଣ୍ଡାରି ପାଖରେ ବସି ବାଳ କାଟି ପକାଇଲା । ଆମ ପିଅନ ଫକୀର ଅନ୍ୟ ପିଲାଙ୍କ ସହ ତାକୁ ଗାଧୋଇ ଦେଲା । ସେହିଦିନ ତାକୁ ଟିକିଏ ଅଧିକ ଜ୍ୱର ହେଲା । ସକାଳେ ତାକୁ କଟକ ନ ନେଇ ମୋର ବନ୍ଧୁ କକା ଡ଼ାଃ ବ୍ରଜ ନନ୍ଦଙ୍କୁ ଦେଖାଇ ଦେବାକୁ ନେଇ ଗଲୁ । ଆମର ଦୁର୍ଭାଗ୍ୟ ସେ ଦିନ ସେ ଘରେ ନଥିଲେ । ଡାକ୍ତରଖାନାକୁ ନେଇଗଲୁଁ । ଡାକ୍ତର ତାର୍ ଟନସିଲ୍ ଦେଖିବା ପାଇଁ ଚାମଚ ଦେଇ ଦେଖୁଥିବା ସମୟରେ ହଠାତ୍ ଆମ ଦୁଇଜଣଙ୍କ କୋଳରେ ତାର ପ୍ରାଣବାୟୁ ଉଡ଼ିଗଲା । ସେ

ଦିନର ଦୃଶ୍ୟ ଓ ଘଟଣା କେବେ ଜୀବନରେ ଭୁଲି ପାରିବିନି। ନେଇଥିଲି ଝିଅର ଚିକିତ୍ସା ପାଇଁ। ଫେରିଲି ତାର ମୃତ ଦେହ ଧରି। ଏ ଦୃଶ୍ୟ ଦେଖି ଉମା ମୂର୍ଚ୍ଛା ହୋଇଗଲା। ମୁଁ ଶେଷ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ପାଣି ଛାଟି କୋରାମିନ୍ ଦେବା ଆଦି ଚେଷ୍ଟା ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ଥିଲି। ତାପରେ କଣ ହେଲା ମୁଁ ଜାଣେନି, କେତେ ଘଣ୍ଟା ପରେ ଶଶୁର ଆସି ବୁଝାଇ ଝିଅର ମୃତ ଦେହ ଧରି ଡାକ୍ତରଖାନାରୁ ଆମକୁ ଆଣିଲେ। ଡାକ୍ତର କାହିଁକି ଏତେ ଦୁର୍ବଳ ଶିଶୁକୁ ବାଧ କରି ଘମଚ ପୁରାଇ ତଣ୍ଟି ଦେଖିବାକୁ ଚାହିଁଲେ। ତା ମୁଁ ବୁଝିପାରୁନି ? ମୁଁ କାହିଁକି କଟକ ନ ନେଇ ଭୁବନେଶ୍ୱର ଡାକ୍ତରଖାନାକୁ ନେଲି ତା ମଧ ବୁଝିପାରୁନି ? ସବୁ ବିଧିର ନିର୍ଦ୍ଦେଶ ଆମେ ସେହିଭଳି ସରଳ ଦେବଶିଶୁର ପିତାମାତା ହେବାକୁ ଅଯୋଗ୍ୟ। ସେଥିପାଇଁ ସେ ଆମକୁ ଛାଡ଼ି ଚାଲିଗଲା। ମାତ୍ର ୪ ବର୍ଷ ଭିତରେ ସେ ଆମକୁ ଯାହା ଦେଇଯାଇଛି ତାହା କେବେ ଜୀବନରେ ଭୁଲି ହେବନି। ମନେ ପଡୁଛି ତାର ମରିବାର ଆଉ ୫ ଦିନ ଅଛି ଉମା କହିଲା। ମୁଁ ଜନ୍ମାଷ୍ଟମୀ କରିବି। ଜନ୍ମାଷ୍ଟମୀ ପାଇଁ ଭୋଗ ନେଇ ଆସିବ। ମୁଁ ତ ଜାଣେନି ଯାହା ଆଣିଲି, ତା ମନକୁ ପାଇଲାନି। ଏହି ଭୋଗ ନେଇ ଆମ ଭିତରେ ଝଗଡ଼ା ହେଲା। ଉମା ବସି କାନ୍ଦିଲା। ଆଶ୍ଚର୍ଯ୍ୟର କଥା, ୪ ବର୍ଷରେ ରୋଗକ୍ରାନ୍ତ ଶିଶୁ ସେଦିନ ଉମାକୁ ଛାଡ଼ି କୁଆଡ଼େ ଗଲାନି। ଅସ୍ପଷ୍ଟ ଭାଷାରେ କହୁଥାଏ ମାମି କାନ୍ଦନି। ମାମିର ଲୁହ ପୋଛି ଦେଉଥାଏ। ନିଜର ରୋଗ ଭୁଲି ମାମିକୁ ହାତ ଧରି ଖାଇବାକୁ ଡାକୁଥାଏ। ତା କାନି ଧରି ଦିନ ସାରା ବୁଲୁଥାଏ। ତା ମାମିର ମନକଷ୍ଟ। ସେ ତେଣୁ ଆଉ କାହା ପାଖକୁ ଯିବାକୁ ନାରାଜ। ବଡ଼ ପୁଅ ବୁଲୁ ପିଲାଦିନେ ଟିକିଏ ଦୁଷ୍ଟ ଥିଲା। ସେ ଅନେକ ସମୟରେ ଜୁଲିକୁ ମାରେ। ଉମା ଯେତେବେଳେ ବୁଲୁକୁ ଦଣ୍ଡ ଦିଏ ବା ଗାଳି କରେ ସେ ବସି କାନ୍ଦିବା ମାତ୍ରେ ଭୁଲି ତା ପାଖେ ହାଜର। ଭାଇର ଆଖିରୁ ଲୁହ ପୋଛି ପକାଇ ତାକୁ କେତେ ଗେହ୍ଲା କରୁଥିବ। ବୁଲୁ ରାଗି ତାକୁ ଗାଳି କଲେ ବି ତାର ମନ କଷ୍ଟ ଥିବା ପର୍ଯ୍ୟନ୍ତ ସେ ତା ପାଖରେ ବସିଥିବ। ଯେ ଆମ ଘରକୁ ଆସିଛି ତାକୁ ଭୁଲିପାରିନି। ସେ କାହାକୁ କିଛି କହେନି। ଦୁଆର ପାଖରେ ଅତିଥି ଦେଖିଲେ ହସି ଦେଇ ଦଉଡ଼ିବ ମାମି କିମ୍ବା ବାପାଙ୍କୁ କହିବାକୁ। ହସିଦେଲେ ଗାଲ ଦୁଇଟି ପଶି ଯାଇ ଏକ କମନୀୟ ଶୋଭା ଧାରଣ କରେ। ଆଖି

ଦୁଇଟି ଠିକ୍ ନିରିହ ମୃଗ ଶିଶୁର ଆଖି ସଦୃଶ। ଦେଖିବାକୁ ତ ସାକ୍ଷାତ ଦୁର୍ଗାଙ୍କ ଭଳି। ମାମିର ରଙ୍ଗ ନେଇ ନଥିଲେ ବି ରଙ୍ଗ ବେଶ ସଫା। ଚଉଡ଼ା ମୁହଁ କେହି କହିବ ନାହିଁ ସେ ୪ ବର୍ଷର ପିଲା ବୋଲି। ଅବିକଳ ସୁମ ଅପାଙ୍କ ମୁହଁ ଓ ଗୁଣ ନେଇ ସେ ଜନ୍ମ ହୋଇଥିଲା। ଅପାଙ୍କୁ ସାରା ଜୀବନ ଝୁରି ହେଉଛି। ବୋଧହୁଏ ମୋର ଦୁଃଖ ଦେଖି ସେ ଅଳ୍ପଦିନ ପାଇଁ ମୋ ଝିଅ ରୂପରେ ଆବିର୍ଭାବ ହୋଇଥିଲା, ପୁଣି ମୋତେ ଦୁଃଖସାଗରରେ ଭସାଇ ଦେଇ ଚାଲିଗଲା। ଉମା କଥା ତ ଛାଡ଼ ମୁଁ ଜୀବନସାରା ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇ ଅଶେଷ ଧୈର୍ଯ୍ୟ ଧରି କାର୍ଯ୍ୟ କରିଛି। ଖୁବ୍ କମ୍ ଥର ହୃଦୟ ଫଟା କାନ୍ଦ କାନ୍ଦିଛି। ସୁମ ଅପାଙ୍କ ମରିବା ବେଳେ ତ ମୃତ୍ୟୁ କଣ ତାହା ବୁଝିପାରି ନଥିଲି। ତେଣୁ କାନ୍ଦିନି। କାନ୍ଦିଥିଲି ବୋଉଙ୍କର ମଲାବେଳେ ଓ ୨ୟ ଥର କାନ୍ଦିଲି ନିଜର ଅଲିଅଳ ସନ୍ତାନକୁ ସତ୍ୟନଗର ଶ୍ମଶାନରେ ମହାନିଦ୍ରାରେ ଶୁଆଇଦେଇ। ରାତିସାରା ନିଦ ହୁଏନି। ୨/୩ ଦିନ ଓ ରାତି ଅନିଦ୍ରା। ଜୁଲି ଆଖି ଆଗରୁ ଦୂରକୁ ଗଲାନି। ମନେ ପଡ଼ିଲା କିଶୋରୀ ବାବୁଙ୍କ ଉପଦେଶ। ବିପଦ ପଡ଼ିଲେ ସ୍ମରଣ କରିବୁ ସେହି ମହାମନ୍ତ୍ର:-

**"ହରେ କୃଷ୍ଣ, ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ।**
**ହରେ ରାମ ହରେ ରାମ ରାମ ରାମ ହରେ ହରେ ।"**

ସତକୁ ସତ ଏହି ମହାମନ୍ତ୍ର ଜପ ଫଳରେ ମୁଁ ପ୍ରାୟ ସପ୍ତାହକ ପରେ ନିଜକୁ ସମ୍ଭାଳି ପାରିଲି ଓ ଉମାକୁ ସାନ୍ତ୍ୱନା ଦେଇ ଆଶ୍ୱସ୍ତ କରିପାରିଲି।

ଦୁଃସଂବାଦ ଶୁଣି ସାନ୍ତ୍ୱନା ଦେବାକୁ ଆସିଲେ ଆମ ଅଫିସ୍‌ର ଇଞ୍ଜିନିୟର ମାନେ, ପିଏ ଗଣେଶ୍ୱରବାବୁ ହେଡ୍ ଆସିଷ୍ଟାଣ୍ଟ୍ ଠାରୁ ଆରମ୍ଭ କରି ପିଅନ ପର୍ଯ୍ୟନ୍ତ। ମୁଁ ଆଶ୍ଚର୍ଯ୍ୟ ହୋଇଗଲି ଜୁଲି ଖାଲି ଆମ ଦୁହିଁଙ୍କୁ ନୁହେଁ ସେ ତାର ସରଳ ନିଷ୍କପଟ ହସଦ୍ୱାର ସାରା ଅଫିସ୍ ଲୋକଙ୍କୁ କିଣି ପକାଇ ପାରିଥିଲା। ଯେ ଆସେ, ସେ ଆମକୁ ସାନ୍ତ୍ୱନା ଦେବା ଛଳରେ ତାର ଗୁଣ ବର୍ଣ୍ଣନା କରେ। ସାଙ୍ଗମାନଙ୍କ ସ୍ତ୍ରୀମାନଙ୍କଠାରୁ ଜୁଲିର ଭୁରି ଭୁରି ପ୍ରଂଶସା। କି ଆଶ୍ଚର୍ଯ୍ୟ! ୪ ବର୍ଷର ଶିଶୁ ସେ କିଭଳି ଏତେ ମଉସା ମାଉସୀଙ୍କୁ ନିଜର ଗୁଣରେ କିଣି ପକାଇଛି। ଖବର ଶୁଣି ଦଉଡ଼ି ଆସିଲେ ବ୍ରହ୍ମପୁରରୁ ତାର ମାମୁଁ। ସେ ଜୁଲିକୁ ବେଶୀ ଭଲ ପାଉଥିଲେ। ଅନୁଗୁଳରୁ ଦଉଡ଼ି

ଆସିଲେ ବନ୍ଧୁ ଦୟାନିଧି ବାବୁ, ବଲାଙ୍ଗୀରରୁ ଖବର ଶୁଣି ଦଉଡ଼ି ଆସିଲେ ଉମାର ସମ୍ପର୍କୀୟ ପିଉସୀ ପୁଅ ଭାଇ କିଶୋର ଚନ୍ଦ୍ର ନାୟକ୍, ବାରିପଦାରୁ ଆସିଥିଲେ ମୋର ଜ୍ୟେଷ୍ଠଭ୍ରାତ୍ରା ପ୍ରତିମ ହରିଶ ଚନ୍ଦ୍ର ମହାନ୍ତି। ଋକିରି କ୍ଷେତ୍ରରେ ଦୂରରେ ରହୁଥିବାରୁ କିଛିଦିନ ପାଇଁ ତାଙ୍କ ସହିତ ଯୋଗାଯୋଗ ହୋଇ ପାରି ନଥିଲା। ଜୀବନର ଏଭଳି ଏକ ଦୁର୍ଦ୍ଦିନରେ ସେ ପହଞ୍ଚି ସବୁ ଶୁଣି ଅତ୍ୟନ୍ତ ମର୍ମାହତ ହେଲେ। ଗାଁରୁ ଆସିଲେ କକା କାଶୀନାଥ ଦାଶଶର୍ମା। ଆସିଥିଲେ ଶଙ୍କର୍ଷଣ ବାବୁ। ତାଙ୍କର ଦୀର୍ଘ ୧ ମାସର ଭୁବନେଶ୍ୱରରେ ରହଣି ଓ ସାନ୍ତ୍ୱନା ଆମମାନଙ୍କୁ ଟିକିଏ ସ୍ଥିର ଓ ଶାନ୍ତି ହେବାରେ ସାହାଯ୍ୟ କଲା।

ମାତ୍ର ୩ ବର୍ଷ ବ୍ୟବଧାନରେ ହରାଇ ବସିଲି ନିଜର ଶାଶୁ ମା' ଓ ଅଲିଅଳି କନ୍ୟା। ଏ ଦୁଃଖ ଅତ୍ୟନ୍ତ ଦୁର୍ବିସହ। ଏହା ସହିବା ପାଇଁ ବହୁତ ସାହସ ଧୈର୍ଯ୍ୟ ଓ ଆତ୍ମବିଶ୍ୱାସ ଦରକାର। ଶାଶୁ ଓ ବୋଉଙ୍କ ମୃତ୍ୟୁ ସହିଯାଇଥିଲି, କାରଣ ସେମାନେ ଜୀବନର ଅନେକ ବସନ୍ତ ଅତିବାହିତ କରିଛନ୍ତି। କିନ୍ତୁ ମୋ ମା ଜୁଲି, ସେତ ଦେବଶିଶୁ। ସେ କିଛି ଜାଣେନି ନିଜକୁ ରକ୍ଷା କରି ଜାଣେନି, ତାକୁ ରକ୍ଷା ଦରିବା ମୋ କର୍ତ୍ତବ୍ୟ ମୁଁ କିନ୍ତୁ ନିଜର କର୍ତ୍ତବ୍ୟ କରିପାରିଲିନି। ଅଫିସ୍‌କୁ ଯାଉଥାଏ ଏକ ନିର୍ଜୀବ ମଣିଷ ପରି ନୂଆ କିଛି କରିବା ପାଇଁ ଉତ୍ସାହ ନ ଥାଏ। ଖାଲି ଗତାନୁଗତିକ ପନ୍ଥାରେ ଯାହା ସମ୍ଭବ ତାହାହିଁ କରୁଥାଏ।

ରୁର୍‌କି ଯିବା ଆଗରୁ ଏଡ଼ିସିନାଲ୍ ସେକ୍ରେଟାରୀ ବାଇଜାଲ୍ ସାହେବଙ୍କୁ ଚିଫ୍‌ଇଞ୍ଜିନିୟର ବାହାରେ ମୋତେ ଜଣେ ଯୋଗ୍ୟ ଇଞ୍ଜିନିୟର ବୋଲି ପ୍ରଋର କରି ଭିତରେ ଭିତରେ ହଇରାଣ କରୁଛନ୍ତି କହିଥିଲି, ବୋଧହୁଏ ତାଙ୍କ ହସ୍ତକ୍ଷେପ ହେତୁ, ରୁରକୀରୁ ଫେରିବା ପରେ ପରେ ମୋର ରାୟଗଡ଼ା ଡିଭିଜନକୁ ବଦଳି ପାଇଁ ପ୍ରସ୍ତାବ ହୋଇଥିଲା। କିନ୍ତୁ ଜୁଲିର ଦେହ ଖରାପ ହେତୁ ମୁଁ ଭୁବନେଶ୍ୱର ଛାଡ଼ି ଯିବାକୁ ମନା କଲି। ତଣ୍ଣେ ଅର୍ଡ଼ରଟି କେନସଲ ହେଲା। ଏଥିରେ ମୋତେ ବିଶେଷ ସାହାଯ୍ୟ କରିଥିଲେ ଆସିଷ୍ଟାଣ୍ଟ ସେକ୍ରେଟେରୀ, ମୋର ବନ୍ଧୁ, ଜଗନ୍ନାଥ ପାଢ଼ୀ। ତା'ପରେ ତ ଘଟିଗଲା ଜୀବନରେ ସବୁଠାରୁ ଦୁର୍ବିସହ ଦୁର୍ଘଟଣା। ତେଣୁ କାହାକୁ କିଛି ନ କହି ମୁଁ ନୀରବରେ ଜୀବନ ତରୀଟିକୁ ଚଳାଇବାରେ ଲାଗିଥାଏଁ। ହଠାତ୍ ରିପୋର୍ଟ ଆସିଲା

ଢେଙ୍କାନାଳରୁ। ସେଠାରେ ଜଳସେଚନ ଉପମନ୍ତ୍ରୀଙ୍କ ଉପସ୍ଥିତିରେ ଜିଲ୍ଲା ପରିଷଦ ଏହି ସଂସ୍ଥାଟିକୁ ଉଠାଇ ଦେବାକୁ ରିସୋଲ୍ୟୁସନ୍ କରିଛନ୍ତି। ତେଣୁ ତତ୍କ୍ଷଣାତ୍ ଢେଙ୍କାନାଳର ଆଇ.ଇ. ଓ ନିର୍ବାହଯନ୍ତ୍ରୀଙ୍କୁ ବଦଳି କରିବାକୁ ହେବ। ମୋର ଦୁଃଖରେ ସମବେଦନା ପ୍ରକାଶ କରିହେଉ ବା ଢେଙ୍କାନାଳ ଜିଲ୍ଲାକୁ ସମ୍ଭାଳିବା ପାଇଁ ଜଣେ ଯୋଗ୍ୟ ଇଞ୍ଜିନିୟର, ପୋଷ୍ଟିଂ ପାଇଁ ସେକ୍ରେଟେରୀଙ୍କ ଚାପ ଫଳରେ ହେଉ, ଚିଫ୍‌ଇଞ୍ଜିନିୟର ମୋ ନାମ ସୁପାରିଶ୍ କଲେ। ସେତେବେଳକୁ ମୋର ଗୃହନିର୍ମାଣ କାର୍ଯ୍ୟ ଅନେକଟା ଆଗେଇ ଗଲାଣି। ତଳତାଲା କାମ ସରିଯାଇ ଭଡ଼ା ଲାଗିଗଲାଣି। ଉପର ତାଲା କାମ ଆଂଶିକ ସରିଗଲାଣି। ଭୁବନେଶ୍ୱରରେ ଦଣ୍ଡେ ରହିବାକୁ ଇଚ୍ଛା ନଥାଏ। ଯୁଆଡ଼େ ଅନାଏ ଖାଲି ଜୁଲିଆ ମୋ ଆଖି ଆଗରେ ଭାସୁଥାଏ। ତେଣୁ ୧୯୬୫ ନଭେମ୍ବର ୨୭ ତାରିଖ ଦିନ ଯାଇ ଢେଙ୍କାନାଳରେ ଯୋଗଦେଲି।



## ଦ୍ୱାଦଶ ପରିଚ୍ଛେଦ

# ଓଡ଼ିଶାର ଦ୍ୱିତୀୟ ନଅଙ୍କ ଦୁର୍ଭିକ୍ଷ

ଢେଙ୍କାନାଳରେ କାର୍ଯ୍ୟ କରିବା ପାଇଁ ପରିବେଶ ଖୁବ୍ ଭଲ। ଏସ.ଡ଼ି.ଓ. ଥାଆନ୍ତି, ମୋର ବନ୍ଧୁ ଦୟାନିଧି ନାୟକ। ତାଙ୍କ ବ୍ୟତୀତ ନୁରୁଜମାନ, ଶତ୍ରୁଘ୍ନ ବାରିକ, ଦୀନବନ୍ଧୁ ନନ୍ଦ, ରାଖାଲ ଦାସ ଓ ନକୁଳ ସାହୁ ଥାଆନ୍ତି। ଡ଼ମଶାଳ, ପଣସପାଳ, ବେଗୁଆଁପାଳ, ବଉଳି, ମତାଳିଆ, ଗୁରଙ୍ଗ ପାତ୍ରପଡ଼ା ଆଦି ବହୁତ ଗୁଡ଼ିଏ କ୍ଷୁଦ୍ର ଜଳସେଚନ ଯୋଜନା କାର୍ଯ୍ୟ ହାତକୁ ନିଆଯାଇଥାଏ। ମୁଁ ଆସିବାର ୨/୩ ମାସ ଭିତରେ ସର୍ଭେ କରି ବହୁତ ଗୁଡ଼ିଏ କ୍ଷୁଦ୍ର ଜଳସେଚନ ଯୋଜନାର ପ୍ଲାନ୍ ଏଷ୍ଟିମେଟ୍ ତିଆରି କରି ପକାଇଲି। ସେଗୁଡ଼ିକ ମଧ୍ୟରେ ଆଠମଲ୍ଲିକରେ ସୁରେଶ୍ୱରୀ, ସୁସବ, ଥେଲକୋନାଳି ଲାଇଖାଲ ଅନୁଗୁଳରେ ବାଲିବନ୍ଧ, କୁମ୍ଭିରା, ତାଳଚେରର ପାସିଆପୋଷି ପାଲଲହଡ଼ାର ଅନ୍ଧାରି ଓ ଡାଲୋ, କାମାକ୍ଷାଗରର ମେଣ୍ଢାଶାଳ, ମଠକରଗୋଳା, ଡମଶାଳର ସମ୍ପ୍ରସାରଣ, ହିନ୍ଦୋଳର ବରଡ଼ାପାଳ, ଢେଙ୍କାନାଳରେ ଅପରବେଗା, ଲୋଅର ବେଗା, ସପ୍ତଶଯ୍ୟା ପ୍ରଧାନ। ଟଙ୍କାର ଅଭାବ ନାହିଁ। ଓଡ଼ିଶାରେ ପଡ଼ିଛି ମରୁଡ଼ି। ଭାରତ ସରକାର ଯଥେଷ୍ଟ ସାହାଯ୍ୟ ଦେବାକୁ ପ୍ରସ୍ତୁତ। କ୍ଷୁଦ୍ର ଜଳସେଚନ ଯୋଜନା ପାଇଁ ସର୍ଭେ କରି ପ୍ଲାନ୍ ଏଷ୍ଟିମେଟ୍ କରିପାରିଲେ ଟଙ୍କାର ଅଭାବ ନାହିଁ। ବାକି ରହିଲା ଜମି ଭୂ-ଅର୍ଜନ କାମ। କଲେକ୍ଟର ଥାନ୍ତି ଅବନୀକାନ୍ତ ରାୟ। ତାଙ୍କର ଆଦେଶ ଭୂ-ଅର୍ଜନ ପାଇଁ ଆସୁଥିବା ପ୍ରସ୍ତାବ ଅଗ୍ରାଧିକାର ଭିତ୍ତିରେ କରାଯିବ। ଜମି ୬ ମାସରୁ ୯ ମାସ ଭିତରେ ମିଳିଯାଏ। ସେକସନ୍ ୬ (୧) ନୋଟିଫିକେସନ୍ ହେବାମାତ୍ରେ କାମ ଆରମ୍ଭ ହୋଇଯାଏ। ଜଳସେଚନ ଯୋଜନା ପାଇଁ ଲୋକମାନଙ୍କ ସହଯୋଗ ମଧ୍ୟ ଅସୀମ।

ଜଳସେଚନ ଯୋଜନାଗୁଡ଼ିକୁ ତ୍ୱରାନ୍ୱିତ କରିବା ସଂଗେ ସଂଗେ ପୁରୀ ଭଳି ଢେଙ୍କାନାଳ ଜିଲ୍ଲାର ସମିତି. କାମ ଗୁଡ଼ିକରେ ଶୃଙ୍ଖଳା ଆଣିବା ଏକାନ୍ତ ଆବଶ୍ୟକ ହେଲା। ମୋ ଆଗରୁ ଥିବା ନିର୍ବାହୀଯନ୍ତ୍ରୀ ଟିକିଏ ଥିଓରିଟିକେଲ୍ ଥିଲେ ସେ ପୁଣି

ମହିଶୂର ରାଜ୍ୟର ଅଧିବାସୀ। ଲୋକ ସମ୍ପର୍କ ଖୁବ୍ କମ୍। ସମିତି ଚେୟାରମେନ୍ ତଥା ଏମ.ଏଲ.ଏ ମାନଙ୍କୁ ଦିନକୁ ପରିଦର୍ଶନ ଘଣ୍ଟା ସମୟର ବାହାରେ ସେ ଦର୍ଶନ ଦିଅନ୍ତି ନାହିଁ। ପ୍ରଥମେ ଏହି ନିୟମ ବଦଳାଇ ଦିଆଗଲା। ଯେ କେହି ଦିନର ଯେ କୌଣସି ମୁହୂର୍ତ୍ତରେ ମୋତେ ଦେଖାକରି ପାରିବେ। ମାତ୍ର ୧୬ଟି ବ୍ଲକ୍। ସବୁ ଚେୟାର୍‌ମେନ୍ ଅତ୍ୟନ୍ତ ମେଳାପି। କିନ୍ତୁ ନିଜ ସମିତିରେ ଉନ୍ନତିମୂଳକ କାର୍ଯ୍ୟ କରିବାକୁ ଆଗ୍ରହୀ। ଥରେ ସମିତି ଗୁଡ଼ିକୁ ପରିଦର୍ଶନ କରି ପ୍ରତ୍ୟେକଙ୍କ ପାଖରେ ଥିବା ସମସ୍ୟା ବୁଝିଆସିଲି। ଆସିଷ୍ଟାଣ୍ଟ ଇଞ୍ଜିନିୟରଙ୍କର ଅଭାବ ନାହିଁ। ୧୬ ଟି ବ୍ଲକ୍ ପାଇଁ ୮ ଜଣ ଆସିଷ୍ଟାଣ୍ଟ ଇଞ୍ଜିନିୟର। ମାତ୍ର ୧୫ ଦିନ ଭିତରେ ସବୁ ସମିତିର ଏଷ୍ଟିମେଟ୍ ସେଙ୍କସନ, (Estimate Sanction) ବାକିଥିବା ମେଜରମେଣ୍ଟ ଚେକ୍ ମେଜରମେଣ୍ଟ ସରିଗଲା। ତା ପରବର୍ତ୍ତୀ ଜିଲ୍ଲାପରିଷଦ ମିଟିଂରେ ମୁଁ ଯେତେବେଳେ ଚେୟାରମେନ୍ ମାନଙ୍କୁ ଜଣ ଜଣ କରି କହିଲି ଆପଣଙ୍କର ଆଉ କ'ଣ ବାକି ରହିଗଲା ଓ ଆପଣଙ୍କ ବ୍ଲକ୍ ଓଭରସିଅରଙ୍କୁ ପ୍ରସ୍ତୁତ ହୋଇଥିବା ତାଲିକା ଅନୁଯାୟୀ ରାସ୍ତା ଓ କ୍ଷୁଦ୍ର ଜଳସେଚନ ଯୋଜନାର ଏଷ୍ଟିମେଟ୍ କରିବା ପାଇଁ ମୋ ଅଫିସରକୁ ପଠାନ୍ତୁ, କଲେକ୍ଟର ଆଶ୍ଚର୍ଯ୍ୟ ହୋଇ କହିଲେ, 'କଣ ଗୋଟାଏ ମାସରେ ଚକ୍‌ପୁରା ଘୁରି ଗଲା ?" ମାସେ ଆଗରୁ ତ ଚେୟାରମେନମାନେ ଆଇ.ଇ.ଓ. ବିରୁଦ୍ଧରେ ବିକ୍ଷୋଦ୍‌ଗାର କରୁଥିଲେ। ହଠାତ୍ କାହିଁକି ସମସ୍ତେ ନୀରବ ହୋଇଗଲେ। ଜିଲ୍ଲା ପରିଷଦର ଚେୟାରମେନ୍ ବ୍ରଜ କିଶୋର ଧଳ କହି ପକାଇଲେ,"ଖଣ୍ଡାୟତ ପିଲା, ଖଣ୍ଡା ବୁଲାଇ ସମିତି ଗୁଡ଼ିକରେ ଥିବା ସବୁ ଅଳିଆ ଛେଦି ପକାଇଛି।" ପଞ୍ଚାୟତ ସମିତି ଚେୟାରମେନ୍‌ଙ୍କ ମଧ୍ୟରୁ ଅଧିକାଂଶ ମୋର ଅନ୍ତରଙ୍ଗ ବନ୍ଧୁ ହୋଇଗଲେ। ସେହି ବନ୍ଧୁତ୍ୱ ଆଜି ପର୍ଯ୍ୟନ୍ତ ଅନେକ ଅତୁଟ ରଖିଛନ୍ତି। ତାଙ୍କ ମଧ୍ୟରେ ତତ୍‌କାଳୀନ ବଅଁରପାଳ ବ୍ଲକ୍‌ର ଚେୟାରମେନ୍ ଅଦୈତ ପ୍ରସାଦ ସି ଯେ କି ପରବର୍ତ୍ତୀ କାଳରେ ଏମ.ଏଲ.ଏ. ଓ ମନ୍ତ୍ରୀ ହେଲେ ଜଣେ ଅତି ମେଳାପୀ ବ୍ୟକ୍ତି। ସେ ଜିଲ୍ଲା ପରିଷଦରେ ତାଙ୍କର ଦାବି ଦୃଢ଼ଭାବରେ ଉପସ୍ଥାପିତ କରନ୍ତି। ସେଥିପାଇଁ ସେ ଋହୁଁଥିଲେ, ଶୀଘ୍ର ଶୀଘ୍ର ତାଙ୍କର ପ୍ଲାନ୍ ଏଷ୍ଟିମେଟ୍ ପ୍ରସ୍ତୁତ ହେବା ଦରକାର। ତାଙ୍କରି ଚେଷ୍ଟା ଫଳରେ ବହୁ କ୍ଷୁଦ୍ର ଜଳସେଚନ ଟେଙ୍କ ତାଙ୍କ ବ୍ଲକ୍‌ରେ ମରୁଡ଼ି ସାହାଯ୍ୟପାଣ୍ଠିରୁ ନିର୍ମିତ

ହୋଇପାରିଲା। ଅନୁଗୁଳର ଚେୟାରମେନ୍ ଥିଲେ ଦେବରାଜ ସାହୁ। ପରବର୍ତ୍ତୀ କାଳରେ ସେ ଜଣେ ଏମ.ଏଲ.ଏ. ଓ ଉପମନ୍ତ୍ରୀ ହେବାର ଗୌରବ ଲାଭ କରିଥିଲେ। ସେ ମଧ୍ୟ ତାଙ୍କ ବ୍ଲକ୍‌ରେ କାମଗୁଡ଼ିକୁ ତ୍ୱରାନ୍ୱିତ କରିବା ପାଇଁ ଅତ୍ୟନ୍ତ ଆଗ୍ରହୀ। ଛେଣ୍ଡିପଦା ବ୍ଲକ୍‌ର ଚେୟାର୍‌ମେନ୍ ବାଳକୃଷ୍ଣ ପଟ୍ଟନାୟକ, ଜଣେ ସନ୍ନ୍ୟାସୀ। ଜରପଡ଼ା ଛେଣ୍ଡିପଦା ରାସ୍ତା ପାଇଁ ତାଙ୍କର ଆଗ୍ରହ ଥିଲା ସର୍ବାଧିକ। କିଶୋରନଗର ବ୍ଲକ୍‌ର ଚେୟାରମେନ୍ ଭଗବାନ ବେହେରା ଓ ତାଙ୍କ ସ୍ତ୍ରୀ ପାନ ବେହେରା, ଉଭୟ ଜିଲ୍ଲା ପରିଷଦର ମେମ୍ବର। ସେ ମହାତ୍ମାଗାନ୍ଧୀ ବାମୁର ଆସିଥିବାବେଳେ ସ୍ୱେଚ୍ଛାସେବକ ଭାବେ ତାଙ୍କର ବେଡ଼ିଂ ବସ୍‌ରେ ଲଦିଥିଲେ ବୋଲି ଗର୍ବ କରନ୍ତି। ସେ ପବିତ୍ରବାବୁଙ୍କ ଭଳି ସବୁକଥାରେ ଦୋଷ ବାହାର କରିବା ତାଙ୍କର ଅଭ୍ୟାସ। କିନ୍ତୁ ଯେତେବେଳେ ସେ ଦେଖିଲେ ମୋ ଚେଷ୍ଟା ଫଳରେ ବାମୁର ଓ ବଇଣ୍ଡା ମଧ୍ୟରେ ପ୍ରବାହିତ ଚିରସ୍ରୋତ ଝରଣା ଗୁଡ଼ିକ ଉପରେ ଆନିକଟ ନିର୍ମାଣ ହୋଇ ସୁରେଶ୍ୱରୀ, ସୁସବ, ଥେଲକେ ନାଳୀ ଓ ସର୍ଗିପାଲି ଆଦି ଯୋଜନା ନିର୍ମାଣ ହୋଇ ବିସ୍ତୀର୍ଣ୍ଣ ଅଞ୍ଚଳ ଜଳସେଚିତ ହୋଇପାରିଲା, ସେ ମୋର ଜଣେ ଉପାସକ ହୋଇପଡ଼ିଲେ। ପାଲ୍‌ଲାହଡ଼ାରେ ଚେୟାର୍‌ମେନ୍ ଥିଲେ ଧରଣୀଧର ପ୍ରଧାନ। ସେ ମୋର ବନ୍ଧୁଙ୍କ ଶଳା ହେବେ। ଘାସିଆପୋଷି ଓ ଡାଳୋ ଜଳସେଚନ ନିର୍ମାଣ କାର୍ଯ୍ୟରେ ଭୂ-ଅର୍ଜନ ପୂର୍ବରୁ ପ୍ରୋଜେକ୍ଟ ତ୍ୱରାନ୍ୱିତ କରିବାରେ ତାଙ୍କର ସାହାଯ୍ୟ ଅତୁଳନୀୟ। ଓଡ଼ପଡ଼ାର ଚେୟାରମେନ୍ ରାଜକିଶୋର ମିଶ୍ର ଯେ କି ଓଡ଼ିଶା ହାଇକୋର୍ଟର ପୂର୍ବତନ ପ୍ରଧାନ୍ ବିଚାରପତି ଗତିକୃଷ୍ଣ ମିଶ୍ରଙ୍କର ସାନଭାଇ, ଲୋଅର ବେଗା, ଅପରବେଗା ଯୋଜନା ନିର୍ମାଣର ବହୁତ ସହଯୋଗ କରିଛନ୍ତି। ହିନ୍ଦୋଳର ଚେୟାରମେନ୍ ବାବାଜୀଙ୍କ ଚେଷ୍ଟା ଫଳରେ ପଣସପାଳ ବେରୁଆଁପାଳ, ବରଡ଼ାପାଲ୍ ଭଳି ଯୋଜନା ଠିକ୍ ସମୟରେ ସମ୍ପୂର୍ଣ୍ଣ ହୋଇପାରିଲା। ଭୁବନର ଚେୟାରମେନ୍ ଭଗବାନ ଜେନା ଜଣେ ଫାୟାର୍ ବ୍ରେଣ୍ଡ ଚେୟାରମେନ୍। କିନ୍ତୁ ମୁଁ ଆସିବା ପରେ ଡମଶାଳ ଯୋଜନା ଯେଭଳି ଶୃଙ୍ଖଳାର ସହିତ ଚାଲିଲା ଓ ଡମଶାଳ ଏକ୍ସଟେନ୍‌ସନ୍ ଯାହାଦ୍ୱାରା ତାଙ୍କ ଗାଁ ଜଳସେଚିତ ହେବା ସଂଗେ ସଂଗେ ଭୁବନ ପର୍ଯ୍ୟନ୍ତ ପାଣି ପହଞ୍ଚିପାରିଲା, ଦେଖି ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରିଥିଲେ। କାମାକ୍ଷାନଗର ଏମ.ଏଲ.ଏ. ବୃନ୍ଦାବନ ତ୍ରିପାଠୀ ଯେ କି ପରବର୍ତ୍ତୀ

କାଳରେ ଆର.ଇ.ଓ.ର ଉପମନ୍ତ୍ରୀ ହେବାର ଗୌରବ ଅର୍ଜ୍ଜନ କରିଥିଲେ ଜଣେ କର୍ମଠ ଓ ପରିଶ୍ରମୀ ଏମ.ଏଲ.ଏ.। କୃଷକଙ୍କ ପାଇଁ ସଦାବେଳେ ତାଙ୍କ ପ୍ରାଣ କାନ୍ଦେ। ତାଙ୍କରି ଚେଷ୍ଟା ଫଳରେ ମୋ ସମୟରେ ସର୍ଭେ ହେଉଥିବା ଇନ୍ଦ୍ରଜିତ୍ ନାଳ, କୁକୁରପେଟା, ବଡ଼ଜୋରା ଡମଶାଳ ଗିଜରଭର, ବାଉଁଶନଳା, କାଳିନଦୀ ଆଦି ଜଳସେଚନ ଯୋଜନା ନିର୍ମାଣ ସମ୍ଭବ ହୋଇପାରିଲା। ଆଠମଲ୍ଲିକର ଏମ.ଏଲ.ଏ. କ୍ଷେତ୍ରମୋହନ ପାଣିଗ୍ରାହୀ ଜଣେ ମିଷ୍ଟଭାଷୀ ସରଳ ପ୍ରକୃତିର ଭଦ୍ରବ୍ୟକ୍ତି। ଢେଙ୍କାନାଳର ଏମ.ଏଲ.ଏ. ଥାନ୍ତି ରାଜମାତା ଓ ହିନ୍ଦୋଳର ଏମ.ଏଲ.ଏ. ଥାନ୍ତି କୁମୁଦଚନ୍ଦ୍ର ସିଂ, ପରଜଙ୍ଗ ପାଲଲହଡ଼ାର ଏମ.ଏଲ.ଏ. ଥାନ୍ତି ପବିତ୍ର ମୋହନ ପ୍ରଧାନ।

୧୯୬୫-୬୬ ମସିହାରେ ଓଡ଼ିଶାରେ ପଡ଼ିଲା ଭୟବହ ମରୁଡ଼ି। କଳାହାଣ୍ଡି ଓ ବଲାଙ୍ଗୀର ଜିଲ୍ଲାରେ ଦୁଇ ବର୍ଷ ଧରି ଆଦୌ ବର୍ଷା ହେଲା ନାହିଁ। ସୁନ୍ଦରଗଡ଼ ଜିଲ୍ଲା ଫୁଲବାଣୀ ଜିଲ୍ଲା ଓ କୋରାପୁଟ ଜିଲ୍ଲାରେ ମଧ ଖୁବ୍ କମ୍ ବର୍ଷ, ହେଲା। ଢେଙ୍କାନାଳ ଜିଲ୍ଲା ଉପରେ ଏହାର କୁପ୍ରଭାବ ମଧ ପଡ଼ିଲା। ତାଳଚେର, ହିନ୍ଦୋଳ, ଆଠମଲ୍ଲିକ ଓ କାମାକ୍ଷାନଗର ସବ୍-ଡ଼ିଭିଜନରେ ଦୁଇ ବର୍ଷ ଧରି ଅନାବୃଷ୍ଟି ଫଳରେ ସମୁଦାୟ ଫସଲ ନଷ୍ଟ ହୋଇଗଲା। କୂଅରୁ ପାଣି ଶୁଖିଗଲା। ଏହି ସମୟକୁ ଓଡ଼ିଶାର ଦ୍ୱିତୀୟ ନଅଙ୍କ ଦୁର୍ଭିକ୍ଷ କହିଲେ ଅତ୍ୟୁକ୍ତି ହେବନାହିଁ। ପ୍ରଭେଦ ଏହି କି ଯେ ନଅଙ୍କ ଦୁର୍ଭିକ୍ଷ ବେଳେ ଆମ ଦେଶରେ ଥିଲେ ବିଦେଶୀ ସରକାର। ସେମାନେ ଅନାବୃଷ୍ଟି ଫଳରେ ଫସଲ ନଷ୍ଟ ହେଲେ କିଭଳି ଭୟାବହ ପରିସ୍ଥିତି ସୃଷ୍ଟି ହେବ ହୃଦୟଙ୍ଗମ କରିପାରୁ ନଥିଲେ କିନ୍ତୁ ଏ ମରୁଡ଼ି ପରିସ୍ଥିତି ବେଳେ ରହିଛି ଆମର ଜାତୀୟ ସରକାର। ଖାଲି ସେତିକି ନୁହେଁ, ଲୋକଙ୍କର ଦୁଃଖ ଦୁର୍ଦ୍ଦଶାକୁ ଉପସ୍ଥାପିତ କରିବାକୁ ରହିଛି ଲୋକପ୍ରତିନିଧି ପଞ୍ଚାୟତ ସମିତି। ତା' ସାଙ୍ଗକୁ ଗମନାଗମନର ସୁବିଧା ହୋଇଯାଇଥିବାରୁ ଦେଶର ବିଭିନ୍ନ ପ୍ରାନ୍ତରୁ ଖାଦ୍ୟଶସ୍ୟ ଆସିପାରୁଛି। ଲୋକଙ୍କୁ କାମ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ଯଥେଷ୍ଟ ପରିମାଣରେ ଖାଦ୍ୟଶସ୍ୟ ବିଭିନ୍ନ ପ୍ରାନ୍ତକୁ ପଠାଯାଇ ପାରୁଛି। କେନ୍ଦ୍ର ସରକାର ସାହାଯ୍ୟ ପାଇଁ ଆଗେଇ ଆସିଲେ। କିନ୍ତୁ ଏଥିପାଇଁ ଗୋଟିଏ ସର୍ତ୍ତ, ଟଙ୍କାର ଶତକଡ଼ା ୮୦ ଭାଗ ଖର୍ଚ୍ଚ ହେବ ଭବିଷ୍ୟତରେ ମରୁଡ଼ିର ପ୍ରତିକାର ପାଇଁ। ଭବିଷ୍ୟତରେ ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳକୁ ମରୁଡ଼ି ଦାଉରୁ

ରକ୍ଷା ପାଇବାକୁ ବନ୍ଧ ନିର୍ମାଣ ବାବଦରେ ଖର୍ଚ୍ଚ କରିବାକୁ ଏବଂ ମରୁଡ଼ି ବର୍ଷ ଜଳଯୋଗାଇ ପାରିବା ଭଳି କୂଅ ପାଇଁ ଯାହା ଖର୍ଚ୍ଚ ହେବ ସେଥିପାଇଁ ଗ୍ରାଣ୍ଟ ଦେବାକୁ କେନ୍ଦ୍ର ସରକାର ଆଗ୍ରହ ପ୍ରକାଶ କରୁଥାନ୍ତି। ତେଣୁ ପ୍ଲାନ୍ ଏଷ୍ଟିମେଟ୍ କରି କାମ କରିପାରିଲେ ଟଙ୍କାର ଅଭାବ ନାହିଁ। ୧୯୬୬ ଜାନୁୟାରୀ ଫେବୃୟାରୀ ବେଳକୁ ଯେତେବେଳେ କେନ୍ଦ୍ରରୁ ଯଥେଷ୍ଟ ସାହାଯ୍ୟ ଆସି ପହଞ୍ଚିଲା, ତାକୁ ଖର୍ଚ୍ଚ କରିବା ପାଇଁ ମୁଁ ଆଗତୁରା ପ୍ଲାନିଂ କରି ସାରିଥିଲି। ଢେଙ୍କାନାଳରେ ୨ଟି ମରୁଡ଼ି ସବ୍‌ଡ଼ିଭିଜନ ସୃଷ୍ଟି ହୋଇସାରିଥାଏ। ଜିଲ୍ଲାରେ ଟ୍ରେନିଂ ନେଉଥିବା ୫୦ ଜଣ ଡିପ୍ଲୋମା ହୋଲଡ଼ର୍‌ଙ୍କୁ ମେଜରମେଣ୍ଟ ନେବା ପାଇଁ ସ୍ପେସିଆଲ୍ ପରମିଶନ୍ ସରକାରଙ୍କ ଠାରୁ ଆସି ସାରିଥାଏ। ମୁଁ ଆସିବା ପରେ ୨/୩ ମାସରେ ଜିଲ୍ଲାର ଉନ୍ନୟନ କାର୍ଯ୍ୟ କ୍ଷେତ୍ରରେ ଯେଉଁ ଶୃଙ୍ଖଳା ଆଣିପାରିଥିଲି ତା ଫଳରେ ଆଇ.ଇ.ଓ. ସଂସ୍ଥା ଖୁବ୍ ଲୋକପ୍ରିୟ ହୋଇପାରିଥାଏ। ତେଣୁ କଲେକ୍ଟର ଯେତେବେଳେ ଜିଲ୍ଲାପରିଷଦରେ ପ୍ରସ୍ତାବ ଦେଲେ ଯେ ସମସ୍ତ ମରୁଡ଼ି କାର୍ଯ୍ୟ ଆର.ଇ.ଓ ସଂସ୍ଥା ଜରିଆରେ କରାଯାଉ, ତାଙ୍କୁ ସବୁ ଚେୟାରମେନ୍ ଓ ଏମ.ଏଲ.ଏ ଏକସ୍ୱରରେ ସମର୍ଥନ କଲେ। ମରୁଡ଼ିଗ୍ରାଣ୍ଟ କ୍ଷୁଦ୍ରଜଳସେଚନ ଗ୍ରାଣ୍ଟ, ଆର.ଇ.ଓ. ରାସ୍ତା, ବିଭିନ୍ନ ବିଭାଗର କୋଠାବାଡ଼ି ନିର୍ମାଣ ବାବଦ ଗ୍ରେଣ୍ଟ ମିଶି ହୋଇଗଲା ପ୍ରାୟ ଦେଢ଼ କୋଟି ଟଙ୍କା ଯାହାକି ବର୍ତ୍ତମାନ ପରିସ୍ଥିତିରେ ୧୦/୧୫ କୋଟି ଟଙ୍କା ସହିତ ସମାନ । ଏକୁଟିଆ ତାଳଚେର ସବଡ଼ିଭିଜନରେ ୨୦୦୦ ବନ୍ଧରେ କାମ ଚାଲିଥାଏ। ଜିଲ୍ଲାର ଅଧିକାଂଶ ପୋଖରୀର ପୁନରୁଦ୍ଧାର କାର୍ଯ୍ୟ, ଆର.ଇ.ଓ. ରାସ୍ତାରେ ଗ୍ରେଡ଼-୧ ମେଟାଲ ବିଛାଇବା କାମ ମୋ ରହଣିର ୨ ବର୍ଷ ମଧ୍ୟରେ ସମ୍ଭବ ହୋଇପାରିଲା। ୨ ବର୍ଷ ମଧ୍ୟରେ ଢେଙ୍କାନାଳ ଜିଲ୍ଲାର ଜଳସେଚିତ ଜମିର ପରିମାଣ ମଧ୍ୟ ୨ ଗୁଣକୁ ବୃଦ୍ଧି ପାଇଲା। ପରିଶ୍ରମ ବହୁତ, ଢେଙ୍କାନାଳରେ ଯୋଗଦେବା ବେଳକୁ ନିର୍ବାହୀଯନ୍ତ୍ରୀଙ୍କ ଅଫିସ୍ ଓ ଘର ବ୍ୟତୀତ ଅନ୍ୟ ସ୍ଥାନରେ ଅଫିସ୍ ଓ ଘର ନଥିଲା। ଜଳସେଚନ ଯୋଜନାରେ ଘର ପାଇଁ ଥିବା ଟଙ୍କାକୁ ବିନିଯୋଗ କରି ଓ ତା ସହିତ ମରୁଡ଼ି ଅର୍ଥର କିୟଦଂଶ ମିଶାଇ ଆରମ୍ଭ ହୋଇଗଲା, ବିଭିନ୍ନ ସ୍ଥାନରେ ଘର। ଢେଙ୍କାନାଳରେ କେତୋଟି କ୍ୱାର୍ଟର ବ୍ୟତୀତ, ହିନ୍ଦୋଳରେ ଓଭରସିୟର ଅଫିସ୍ ଓ କ୍ୱାଟର, କାମାକ୍ଷାନଗରରେ ଏସ.ଡ଼ି.ଓ ଅଫିସ୍ ସମସ୍ତ ସବ-ଡ଼ିଭିଜନ ପାଇଁ କ୍ୱାର୍ଟର, ଅନୁଗୁଳରେ

ଅଫିସ୍ କ୍ୱାର୍ଟର, ଆଠମଲ୍ଲିକ ଓ ତାଳଚେରରେ ସବ୍‌ଡ଼ିଭିଜନ ଅଫିସ, ଏସ.ଡ଼ି. ଓଭରସିଅର ପାଇଁ କ୍ୱାର୍ଟର, ବାମୁର ପାଲ୍ଲହଡ଼ା, କଣିଆ, ପରଜଙ୍ଗ ଭୁବନ ଆଦି ସ୍ଥାନରେ ବହୁତ ଗୁଡ଼ିଏ କ୍ୱାର୍ଟର ତିଆରି ହୋଇଗଲା। ପରବର୍ତ୍ତୀକାଳରେ ଏହି କ୍ୱାର୍ଟର ଗୁଡ଼ିକରେ ଷ୍ଟାଫ୍ ଶାନ୍ତିରେ ରହି ନିଷ୍ଠାପର କର୍ତ୍ତବ୍ୟ ସମ୍ପାଦନ କରୁଥିବାର ଦେଖିଲେ ଅପାର ଆନନ୍ଦ ମିଳେ।

ଢେଙ୍କାନାଳର ଜଳବାୟୁ ଓ ସେଠାରେ ଥିବା ବନ୍ଧୁମାନଙ୍କ ସାହାଯ୍ୟ ଦିନସାରା ପରିଶ୍ରମକୁ ଲାଘବ କରିବାରେ ଖୁବ୍ ସହାୟକ ହେଉଥିଲା। ଆର.ଏଣ୍ଡ.ବି ର ନିର୍ବାହୀଯନ୍ତ୍ରୀ ଥାଆନ୍ତି ନିମାଇ ପାଣି ଓ କଲେକ୍ଟର ଥାଆନ୍ତି ଅବନୀକାନ୍ତ ରାୟ। କଲେକ୍ଟର ଅବିବାହିତ ଥିଲେ ଓ ୧୯୬୬ ମସିହାରେ ବିବାହ କଲେ। ଆମର ପ୍ରତିଦିନ କାହାଘରେ ଆସର ଜମେ। ଦିନେ ପାଣିବାବୁଙ୍କ ଘରେ ତ ଦିନେ କଲେକ୍ଟରଙ୍କ ଘରେ, ତାପର ଦିନ ଆମ ଘରେ। ସନ୍ଧ୍ୟାବେଳେ ତାସଖେଳ ତିନି ଘରୁ ତରକାରୀ ମଗାହୋଇ ଆସି ଗୋଟିଏ ସ୍ଥାନରେ ଭୋଜନ, ଖୁସିଗପରେ ରାତି ୧୦ କି ୧୧ ବାଜେ। ପିଲାମାନେ ଛୋଟ ଛୋଟ ହୋଇଥାନ୍ତି। ପଢ଼ା ଆରମ୍ଭ ମାତ୍ର। ରଘୁନାଥ କର ନାମକ ପିଅନକୁ ସେମାନେ ବହୁତ ଭଲ ପାଆନ୍ତି। ତେଣୁ ଉମା ଅନେକାଂଶରେ ପିଲାଙ୍କ ଜଞ୍ଜାଳରୁ ମୁକ୍ତି ପାଇ ଶାନ୍ତିରେ ନିଶ୍ୱାସ ମାରିଲା। ବେଳେବେଳେ ଜୁଲିଆ କଥା ମନେ ପଡ଼ିଗଲେ ଆମେ ଉଭୟ ନିଜକୁ ସମ୍ଭାଳି ପାରୁନି। ସେଥିପାଇଁ ଅଧିକାଂଶ ଦିନ ଉମାକୁ ବାହାରକୁ ବୁଲାଇ ନିଏ। ପାଖ ଘରେ ପିତାମ୍ବର ଧଳ ଏସ.ଡ଼ି.ଓ. ଥାନ୍ତି। ତାଙ୍କ ସ୍ତ୍ରୀ ଓ ମା' ଅତ୍ୟନ୍ତ ସ୍ନେହଶୀଳା ଓ ମେଳାପୀ। ଉମା ବିଭାଘର ପରେ ପଢ଼ାଛାଡ଼ି ଦେଇଥିଲା। ୧୯୬୫ ମସିହାରେ ଭୁବନେଶ୍ୱର ରହଣି କାଳରେ ସେ ଆଇ.ଏ. ପରୀକ୍ଷା ଦେଇ ପାଶ୍ କରି ସାରିଥିଲା। ମୁଁ କାମକୁ ବାହାରିଗଲେ ସେ ଜୁଲି ଫଟୋ ଧରି କାନ୍ଦୁଥାଏ। ସେଥିପାଇଁ ତାକୁ ପ୍ରାଇଭେଟ୍ ଭାବେ ବି.ଏ ପରୀକ୍ଷା ଦେବା ପାଇଁ ପ୍ରବର୍ତ୍ତାଇଲି। କର ପିଅନ ପିଲାମାନଙ୍କ ଦାୟିତ୍ୱ ଗ୍ରହଣ କରିବା ଫଳରେ ପାଠ ପଢ଼ିବାକୁ ତାକୁ କିଛି ସମୟ ମିଳିଲା। ସେ ୧୯୬୭ ମସିହାରେ ଘରୋଇ ଭାବେ ପରୀକ୍ଷା ଦେଇ ବିଏ ପାଶ୍ କଲା। ଏତେଦିନ ପଢ଼ାଛାଡ଼ିବା ପରେ ପିଲାମାନଙ୍କ ଜଞ୍ଜାଳରେ ପ୍ରାଇଭେଟ୍ ଭାବେ ବିଏ ପଢ଼ି ପାଶ୍ କରିବା କମ ଗୌରବର କଥା ନୁହେଁ। ସମସ୍ତେ ତାର ଧୈର୍ଯ୍ୟକୁ ପ୍ରଶଂସା କଲେ।

୧୯୬୬ ମସିହାରେ ଆମ ଗାଁର ଲୋକମାନେ ମିଶି ଗୋଟିଏ ହାଇସ୍କୁଲ କରିବାକୁ ପ୍ରସ୍ତାବ କଲେ। ସେତେବେଳକୁ ୟୁପି ସ୍କୁଲ ଓ ମାଇନର ସ୍କୁଲ ନାମରେ ୧୨ ଏକର ଚାଷ ଜମି ଜମିଦାରି ଉଚ୍ଛେଦ ସମୟରେ କରାଯାଇଥାଏ। ସେହି ଜମିର ବିକ୍ରୟଲବ୍ଧ ଶସ୍ୟ ଓ ଗ୍ରାମରୁ ଚାନ୍ଦା ଆଦାୟ କରି ହାଇସ୍କୁଲ ଆରମ୍ଭ ହୋଇଥାଏ। ମୋତେ ସାହାଯ୍ୟ ପାଇଁ ଅନୁରୋଧ କଲେ। ଉମା ଆଗଭର ହୋଇ ଆସିଲା। ତା ଯୌତୁକରେ କିଣାଯାଇଥିବା ଜମିର ଧାନକୁ ବିକି ସ୍କୁଲ ଗ୍ରାଣ୍ଟ ପାଇବା ପର୍ଯ୍ୟନ୍ତ ଦାନ କରିବାକୁ ମନସ୍ଥ କଲା। ତାର ଇଚ୍ଛା ଅନୁଯାୟୀ ଗାଁର ଲୋକମାନେ ହାଇସ୍କୁଲଟିକୁ ଜୁଲିଆ ହାଇସ୍କୁଲ ନାମରେ ନାମିତ କଲେ। ତା'ପରେ ଚାଲିଲା ଦ୍ୱନ୍ଦ୍ୱ। ଗୁଡ଼ ଓ ସୁଆଁ ମଧ୍ୟରେ। ସ୍କୁଲ କେଉଁଠାରେ ହେବ? ଶେଷରେ ଉଭୟ ଗ୍ରାମର ମୁଖ୍ୟଲୋକମାନେ ମିଶି ଗୋଟିଏ ରେଜେଷ୍ଟ୍ରି ଡ଼ିଡ଼୍ କଲେ। ସ୍କୁଲ ଉଭୟ ଗ୍ରାମର ସୀମାରେ ତିଆରି ହେବ ତା ନାମ ରହିବ ଜୁଲିଆ ହାଇସ୍କୁଲ, ଗୁଡ଼ ସୁଆଁ। ଜୁଲିଆର ନିଷ୍କପଟ ହୃଦୟକୁ ସାର୍ଥକ କରି ସ୍କୁଲଟି ତା ନାମରେ ନାମିତ ହେବାଦିନଠାରୁ ତାର ଉତ୍ତୋରୋତ୍ତର ଉନ୍ନତି ହେବାରେ ଲାଗିଛି। ମାତ୍ର ୪ ବର୍ଷ ଭିତରେ ସ୍କୁଲ ଗ୍ରାଣ୍ଟ ପାଇଗଲା। ମାତ୍ର ୧୫ ଜଣ ପିଲାଙ୍କୁ ନେଇ ଆରମ୍ଭ ହୋଇଥିବା ସ୍କୁଲରେ ଆଜି ୩୦୦ ପିଲା। ସେ ଅଞ୍ଚଳର ଏକ ଉନ୍ନତ ଅନୁଷ୍ଠାନ ହିସାବରେ ଏହା ସୁନାମ ଅର୍ଜନ କରିପାରିଛି। ଜୁଲି ଆମ ପାଖରୁ ଚାଲିଯାଇଛି ବହୁତ ଦୂରକୁ। କିନ୍ତୁ ଦେଇଯାଇଛି ଆମକୁ ଅଗଣିତ ଜୁଲି, ଯେଉଁମାନେ ତାର ନାମକୁ ସାର୍ଥକ କରି ସେହି ସ୍କୁଲରେ ବିଦ୍ୟାଧ୍ୟୟନ କରି ଜୀବନରେ ମଣିଷ ହେବାର ବାଟ ଖୋଜି ପାଉଛନ୍ତି, ନିରୀହା ସରଳ ଦେବଶିଶୁଟିକୁ ରକ୍ଷା କରିପାରିଲି ନାହିଁ। ତାକୁ ମଣିଷ କରି ରାସ୍ତାରେ ଛିଡ଼ା କରିପାରିଲି ନାହିଁ। ଶିକ୍ଷା ଆରମ୍ଭ ପୂର୍ବରୁ କେଉଁ ଅଜଣା ରାଜ୍ୟକୁ ତାକୁ ପଠାଇଦେଲି। ହେଲେ ତାରି ନାମରେ ନାମିତ ହାଇସ୍କୁଲର ପ୍ରତିବର୍ଷ ବହୁଛାତ୍ରଛାତ୍ରୀ ବିଦ୍ୟାଧ୍ୟୟନ କରି ମଣିଷ ଭଳି ବଞ୍ଚିବାର ଅଧିକାର ଲାଭ କରିପାରିଛନ୍ତି। ଏହା ହିଁ କନ୍ୟା ବିଚ୍ଛେଦ ଶୋକଦଗ୍ଧ ପିତାମାତାଙ୍କ ମନରେ କିଂଚିତ ସାନ୍ତ୍ୱନା ଆଣିଦିଏ।

# ଭାରତର ତତ୍କାଳୀନ ରାଜନୈତିକ ପରିସ୍ଥିତି

୧୯୬୭ ମସିହା ଫେବୃୟାରୀ ମାସରେ ଓଡ଼ିଶାରେ ମଧ୍ୟବର୍ତ୍ତୀ କାଳୀନ ନିର୍ବାଚନ ହେଲା । ୧୯୬୫-୬୬ ମସିହାର ମରୁଡ଼ି ଓଡ଼ିଶାବାସୀଙ୍କ ମେରୁଦଣ୍ଡ ଦୋହଲାଇ ଦେଇଥିଲା । ପୁଣି ସର୍ବଭାରତୀୟ କ୍ଷେତ୍ରରେ ଏକ ପରିବର୍ତ୍ତନର ହାଓ୍ୱା ବୋହୁଥିଲା । ୧୯୬୨ ଓ ୧୯୬୬ ମସିହାରେ ଚିନ ଓ ପାକିସ୍ଥାନ ସହ ଦୁଇ ଦୁଇଥର ଯୁଦ୍ଧ ଫଳରେ ଭାରତର ଅର୍ଥନୀତି ଦୁର୍ବଳ ହୋଇ ପଡ଼ିଥିଲା । ପଣ୍ଡିତ ଜବାହାରଲାଲ ନେହେରୁଙ୍କର ୧୯୬୪ ମସିହାରେ ମୃତ୍ୟୁପରେ ମାତ୍ର ଦେଢ଼ ବର୍ଷ ପାଇଁ ପ୍ରଧାନମନ୍ତ୍ରୀ ହୋଇଥିଲେ ଲାଲବାହାଦୂର ଶାସ୍ତ୍ରୀ । କିନ୍ତୁ ପାକିସ୍ଥାନ ରାଷ୍ଟ୍ରପତିଙ୍କ ସହ ରାଜିନାମା ପରେ ପରେ ଋଷିଆର ତାସ୍ କେଣ୍ଟଠାରେ ତାଙ୍କର ଅକସ୍ମାତ ମୃତ୍ୟୁ ହେବାରୁ ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ଆସନ ଅଳଙ୍କୃତ କଲେ । ସେ କଂଗ୍ରେସ ଓ୍ୱାର୍କିଙ୍ଗ୍ କମିଟିର ଅଧିକାଂଶ ପୁରୁଣା ସଭ୍ୟ ଯାହାଙ୍କୁ ସିଣ୍ଡିକେଟ୍ ସଭ୍ୟ କୁହାଯାଉଥିଲା ତାଙ୍କୁ ହାତମୁଠାରେ ରଖି ନିଜର ପ୍ରତିପତ୍ତି ବଢ଼ାଇବାକୁ ଚାହୁଁଥାନ୍ତି । ପ୍ରତି ରାଜ୍ୟରେ କଂଗ୍ରେସରେ ବିଭେଦ ସୃଷ୍ଟି ହୋଇସାରିଥିଲା । ଓଡ଼ିଶାରେ ହରେକୃଷ୍ଣ ମହତାବ ଜନ କଂଗ୍ରେସ ନାମକ ଏକ ପାର୍ଟି ତିଆରି କରି ନିର୍ବାଚନ ଲଢ଼ିଲେ । ସେହିପରି ବିହାର ୟୁ.ପି.ରେ କ୍ରାନ୍ତି ଦଳ ଗଠନ କରି ଚରଣ ସିଂ କଂଗ୍ରେସର ଏକ ପ୍ରତିଦ୍ୱନ୍ଦ୍ୱି ହୋଇ ଛିଡ଼ାହେଲେ । ପଶ୍ଚିମବଙ୍ଗରେ ଅଜୟ ମୁଖାର୍ଜୀଙ୍କ ନେତୃତ୍ୱରେ ଗଠିତ ହେଲା, ବଙ୍ଗଳା କଂଗ୍ରେସ । ମାନ୍ଦ୍ରାଜରେ ଆନ୍ନାଦୋରାଇଙ୍କ ନେତୃତ୍ୱରେ ଗଠିତ ହେଲା ଡ଼ି.ଏମ.କେ. ଦଳ, କେରଳ ଓ ବେଙ୍ଗଲରେ ସି.ପି.ଏମ. ଦଳ ନିଜର ସ୍ଥିତି ଦୃଢ଼ କରିବସିଲା । ଏଭଳି ପରିସ୍ଥିତିରେ ଆରମ୍ଭ ହେଲା ଭାରତର ୪ର୍ଥ ସାଧାରଣ ନିର୍ବାଚନ । ଏହି ନିର୍ବାଚନରେ ଅଧିକାଂଶ ରାଜ୍ୟରେ କଂଗ୍ରେସ ପରାଜୟର ସମ୍ମୁଖୀନ ହେଲା । ଓଡ଼ିଶାରେ କଂଗ୍ରେସ ମୋଟେ ୩୦ଟି ଆସନ ପାଇଲା । ମାନ୍ଦ୍ରାଜରେ ଆନାଦୋରାଇଙ୍କ ନେତୃତ୍ୱରେ ମିଳିତ ମନ୍ତ୍ରୀମଣ୍ଡଳ, ପଶ୍ଚିମବଙ୍ଗରେ ଅଜୟ ମୁଖାର୍ଜୀଙ୍କ ନେତୃତ୍ୱରେ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଓଡ଼ିଶାରେ ବଲାଙ୍ଗୀର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଓ ଜନ କଂଗ୍ରେସ ମିଶି ମିଳିତ ମନ୍ତ୍ରୀମଣ୍ଡଳ ଗଠନ କଲେ । ଢେଙ୍କାନାଳ ଜିଲ୍ଲାର ପାଲଲହଡ଼ା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ପବିତ୍ର ମୋହନ ପ୍ରଧାନ ଉପମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ ।

ଢେଙ୍କାନାଳରେ ପୋଷ୍ଟିଂ ହେବା ପରେ ମୋର ଦୁଃଖରେ ସମବେଦନା ପ୍ରକାଶ କରିହେଉ ବା ମୋ ପ୍ରତି ସମଗ୍ର ଢେଙ୍କାନାଳ ଜିଲ୍ଲା ପରିଷଦ ସବୁ ଏମ.ଏଲ.ଏ ଓ କଲେକ୍ଟରଙ୍କ ଦୃଢ଼ ସମର୍ଥନ ହେତୁ ଚିଫ୍ ଇଞ୍ଜିନିୟର ଓ ସୁପର ଚିଫ୍ ଇଞ୍ଜିନିୟରଙ୍କର ରାଗ ଅନେକାଂଶରେ କମି ଯାଇଥିଲା। ମୋ ବିରୁଦ୍ଧରେ ସେ ଦୁଇଜଣଙ୍କର ଷଡ଼ଯନ୍ତ୍ର ବିଷୟ ଆଉ ମୋ କାନରେ ପଡ଼େନି। ହଠାତ୍ ନିର୍ବାଚନରେ କଂଗ୍ରେସର ପରାଜୟ ଓ ଶିବରମଣ ସାହେବଙ୍କର କେନ୍ଦ୍ରକୁ ବଦଳି ହେତୁ ଉଭୟ ଦନ୍ତାହାତୀଙ୍କ ଦାନ୍ତ ଭାଙ୍ଗିଗଲା। ସିଂହଦେଓ ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିବା ପରେ ପ୍ରଥମ ଅର୍ଡ଼ର ହେଉଛି ସୁପର ଚିଫ୍ ଇଞ୍ଜିନିୟର ମାଜର୍ ଲକ୍ଷ୍ମୀକାନ୍ତ ମହାନ୍ତିଙ୍କ ବାଧ୍ୟତାମୂଳକ ଅବସର ଓ ଦ୍ୱିତୀୟ ଅର୍ଡ଼ର ହେଉଛି ଆମ ଚିଫ୍ ଇଞ୍ଜିନିୟରଙ୍କର ବଦଳି ଓ ପରେ ବାଧ୍ୟତାମୂଳକ ଅବସର। କିଶୋରୀ ବାବୁଙ୍କ ମହତବାଣୀ ମନେ ପଡ଼ିଲା। ଭଗବାନ ସବୁ ଦେଖୁଛନ୍ତି। ସେ ଉଚିତ ମୁହୂର୍ତ୍ତରେ ଦୋଷୀକୁ ଦଣ୍ଡଦେବେ। ସେ କାହିଁକି କାହାର ଗର୍ବ ଖର୍ବ କରିବାରେ ବିଳମ୍ବ କରୁଛନ୍ତି ତାହା ପ୍ରଶ୍ନ କରିବା ପାଇଁ ଆମେ କିଏ? ଦୀର୍ଘ ୫/୬ ବର୍ଷ ଧରି ମେରୀ ରାୟ ଶାସନ ଚଳାଇଥିବା ଦୁଇଜଣ ଉଦ୍ଧତ ବ୍ୟକ୍ତିଙ୍କର ଏକ ସମୟରେ ଗର୍ବ ଖର୍ବ ଭଗବାନଙ୍କ ନିର୍ଦ୍ଦେଶ ନୁହେଁ ତ ଆଉ କାହାର? ଯେଉଁ ଦୁଇ ଦନ୍ତାହାତୀ କେତେ ଲୋକଙ୍କ ଓ ସନ୍ତାନଙ୍କ ଆଖିରେ ଲୁହ ଭରି ଦେଇଛନ୍ତି ସାରା ଜୀବନ ପାଇଁ କେତେ ଇଞ୍ଜିନିୟର ଓ ଓଭରସିଅରଙ୍କୁ ଦୁର୍ନୀତିଗ୍ରସ୍ତ ହେବା ପାଇଁ ବାଧ୍ୟ କରିଛନ୍ତି ସେମାନେ ଗୋଇଠା ମାଡ଼ ଖାଇ ବିଦାୟ ହେବେ ନାହିଁ, ଆଉ ହେବ କିଏ?

ପବିତ୍ରବାବୁ ଉପ ମୁଖ୍ୟମନ୍ତ୍ରୀ ହେବାରେ ଆରମ୍ଭ ହେଲା ତାଙ୍କର ଦୁର୍ନୀତି ବିରୁଦ୍ଧରେ ଅଭିଯାନ। ପ୍ରତିଦିନ ସଭା କରି ଦୁର୍ନୀତି ବିରୁଦ୍ଧରେ ଭାଷଣ। ଆଜି ଜଣେ ଅଫିସରଙ୍କ ଘର ଖାନତଲାସ ତ କାଲି ଆଉ ଜଣଙ୍କର। ରାଜ୍ୟସାରା କୋକୁଆଭୟ ସୃଷ୍ଟି ହୋଇଗଲା। କେହି ରାତ୍ରିରେ ଶାନ୍ତିରେ ଶୋଇପାରିଲେ ନାହିଁ। ମୁଁ ପୁଣି ତାଙ୍କ ଜିଲ୍ଲାରେ କାମ କରୁଥାଏ। ସେ ସମୟରେ ବର୍ଷକୁ ଦେଢ଼ କୋଟିରୁ ଅଧିକ ଟଙ୍କାର କାମ ହେଉଥାଏ। ସେ ପ୍ରାୟ ସବୁ ଜିଲ୍ଲା ପରିଷଦ ମିଟିଂ ଓ ମରୁଡ଼ି ମିଟିଂରେ ଯୋଗ ଦିଅନ୍ତି। ଥରେ ଗୋଟିଏ ମିଟିଂରେ ମୋତେ ଦୋଷାରୋପ କରି କହିଲେ "ଆପଣଙ୍କ ଡିଭିଜନରେ ଦୁର୍ନୀତି ହେଉଛି ବନ୍ଧ ଖୋଲୁଥିବା କଣ୍ଟ୍ରାକ୍ଟର ମାନଙ୍କଠାରୁ କେତେକ

କିରାଣୀ ଉତ୍କୋଚ ନ ପାଇଲେ ତାଙ୍କ ବିଲ ପାଶ୍ କରୁନାହାନ୍ତି।” ମୁଁ ଏହା ଉତ୍ତର ଦେଇ କହିଲି ଯେ ଏହା ସତ୍ୟ ହୋଇପାରେ। ଆପଣତ ଅର୍ଡ଼ର ଦେଉଛନ୍ତି ଏଗ୍ରିମେଣ୍ଟ୍ ସେକସନ୍‌ରେ ହେବ, ବିଲ ହୋଇ ଆସି ଚେକ କଟାଯାଇ ସେକ୍‌ସନ୍‌କୁ ଫେରିଯିବ। କେବଳ ତାଳଚେରରେ ୨୦୦୦ ବନ୍ଧରେ କାମ ହେଉଛି। ପଙ୍କୋଦ୍ଧାର ହେଉଥିବା ବନ୍ଦର ପଙ୍କକୁ ଋଷୀମାନଙ୍କୁ ବୋହି ନେଇ ଯିବାକୁ କୁହାଯାଉଛି। ପ୍ରତି ବନ୍ଧରେ ୧୦୦୦ରୁ ୨୦୦୦ ଟଙ୍କା ପର୍ଯ୍ୟନ୍ତ କାମ ହେବ। ଏତେଗୁଡ଼ିଏ ଯାଗାରେ କାମକୁ ବିଛାଇ ଦେଲେ ଶୃଙ୍ଖଳା ରହିବ କେଉଁଠି ? ଲୋକଙ୍କୁ କାମ ଯୋଗାଇବାକୁ ହେବ, ପ୍ରତି ଗ୍ରାମରେ ପୋଖରୀ ପଙ୍କୋଦ୍ଧାର ନ କରି ୪/୫ଟି ଗାଁକୁ ମିଶାଇ ଗୋଟିଏ ଲେଖାଏଁ ପୋଖରୀରେ ୧୦,୦୦୦ ଟଙ୍କା ଖର୍ଚ୍ଚ କରି କାମ କଲେ ବନ୍ଧର ଉନ୍ନତି ହେବା ସଙ୍ଗେ ସଙ୍ଗେ କାମରେ ମଧ ଶୃଙ୍ଖଳା ରହନ୍ତା। ଭବିଷ୍ୟତରେ ଏହି ବନ୍ଧଗୁଡ଼ିକରେ ଅଧିକ ପାଣି ରହିଲେ ମରୁଡ଼ି ଦାଉରୁ ସେହି ଅଞ୍ଚଳର କେତେକ ଜମି ରକ୍ଷା ପାଇପାରନ୍ତା। କିଏ କାମ କରୁଛି ଓ କିଏ ଚେକ୍ ନେଉଛି ମୁଁ ଜାଣିପାରୁନି। ଦୁର୍ନୀତିର ପ୍ରତିରୋଧ ମୁଁ କରିବି କିପରି ? ଶତକଡ଼ା ୧୦ ଭାଗ କାମ ମୋର ଚେକ୍ କରିବା କଥା ମୁଁ ସେତକ କରିଛି। ମୋର ଏହି ଯୁକ୍ତିକୁ ତାଳଚେର ଏସ.ଡ଼ି.ଓ. ସୁରେନ୍ଦ୍ର ମିଶ୍ର ଓ କଲେକ୍ଟର ଅବନୀବାବୁ ଦୃଢ଼ସମର୍ଥନ କଲେ। ତା'ପର ମରୁଡ଼ି ଟଙ୍କାରୁ କେତେକ ବଡ଼ ବଡ଼ ବନ୍ଧକୁ ଅଧିକ ଟଙ୍କା ଦିଆଗଲା ଓ ବନ୍ଧଗୁଡ଼ିକର ଉପଯୁକ୍ତ ଉନ୍ନତି କରିବା ସମ୍ଭବ ହେଲା। ପବିତ୍ର ବାବୁଙ୍କ ଏହି ଦୁର୍ନୀତି ନିର୍ବାରଣ ଅଭିଯାନରୁ ଅନେକ ଚେୟାରମେନ୍ ଓ ରାଜନୈତିକ କର୍ମୀ ଫାଇଦା ଉଠାଇବାକୁ ପଛାଉ ନଥିଲେ। ସେତେବେଳେ ତାଙ୍କ ନିର୍ବାଚନମଣ୍ଡଳୀର ପରଜଙ୍ଗ ବ୍ଲକ୍‌ରେ ଚେୟାର୍‌ମେନ୍ ଥିଲେ ଅର୍ଜୁନ ଦାସ। ବ୍ଲକ୍ ବି.ଡ଼ି.ଓ. ଓ ସେ ଗୋଟିଏ ପୋଲକୁ ୪ ଭାଗ କରି ବି.ଡ଼ି.ଓ. ନିଜ କ୍ଷମତା ଭିତରେ ରଖି ଏଷ୍ଟିମେଟ୍ ସେଙ୍କସନ୍ କରି ୪ ଜଣ କଣ୍ଟ୍ରାକ୍ଟରଙ୍କ ହାତରେ କାମ କରାଇଥିଲେ। ସବୁତକ କଣ୍ଟ୍ରାକ୍ଟର ଚେୟାରମେନ୍‌ଙ୍କ ଲୋକ। ନିମ୍ନଧରଣର କାର୍ଯ୍ୟ ହୋଇଥିବା ଯୋଗୁଁ ପୋଲଟି ଭାଙ୍ଗିଗଲା। ଇନ୍‌କ୍ୱାରୀ କରି ରିପୋର୍ଟ ଦେବାକୁ କଲେକ୍ଟର କହିଲେ। ମୋ ରିପୋର୍ଟଟ୍ ବି.ଡ଼ି.ଓ.ଙ୍କ ବିରୁଦ୍ଧରେ ଓ ଚେୟାରମେନ୍‌ଙ୍କ ସ୍ୱାର୍ଥ ବିରୁଦ୍ଧରେ ଗଲା। ଉଭୟ ସୁବିଧା ଉଣ୍ଡୁ ଥାନ୍ତି ପ୍ରତିଶୋଧ ନେବାକୁ। ପରଜଙ୍ଗ

ବ୍ଲକ୍‌ରେ ମେଣ୍ଢାପଡ଼ା ନାମରେ ଗୋଟିଏ କ୍ଷୁଦ୍ର ଜଳସେଚନ ଯୋଜନାରେ କାମ ଚାଲିଥାଏ। ଢେଙ୍କାନାଳ ଜିଲ୍ଲାର ଜଣେ ଉଚ୍ଚପଦସ୍ଥ ଅଫିସର ବିମଳ କିଶୋର ମିଶ୍ର ପରଜଙ୍ଗ ଯାଇଥିଲେ। ମୋର ଅନୁପସ୍ଥିତିରେ ଚେୟାରମେନ୍ ଓ ବି.ଡ଼ି.ଓ ତାଙ୍କୁ ମେଣ୍ଢାପଡ଼ା ବନ୍ଧକୁ ଡାକିନେଇ ପେକିଂ ପଥରର ଗଭୀରତା ୯ଇଞ୍ଚ, ୧୦ଇଞ୍ଚ୍ ବୋଲି ଅଭିଯୋଗ କଲେ। ଉଚ୍ଚପଦସ୍ଥ ଆଇ.ଏ.ଏସ. ଅଫିସର୍ ବନ୍ଧ ଉପରେ ରହିଲେ। ଚେୟାରମେନ୍ ଓ ବିଡ଼ି.ଓ ଫିତା ଧରି ମାପ କରି କମ ଗଭୀରତାର ପେକିଂ ହୋଇଛି ବୋଲି କହିଲେ, ପେକିଂ ତଳେ ମୁରମ ଦିଆଯିବା ପାଇଁ ପ୍ଲାନ୍‌ରେ ଲେଖାଥାଏ। ମୁଁ ମୁରମ ନ ଦେଇ ଡେମର ନିରାପତ୍ତା ଦୃଷ୍ଟିରୁ ଓଲଟା ଫିଲଟର୍ ଦେବା ପାଇଁ ଅର୍ଡ଼ର କରିଥାଏ। ଏହା ମଧ୍ୟ ତାଙ୍କୁ କହିଲେ। କମିଶନର ସାହେବ ଭୁବନେଶ୍ୱର ଫେରି ନିମ୍ନଧରଣର କାମ ହୋଇଛି ଓ ଅଧିକ ମେଜରମେଣ୍ଟ ହୋଇଛି ବୋଲି ରିପୋର୍ଟ ଦେଲେ ଓ ଆଦେଶ ଦେଲେ ଯେ ଚିଫ୍ ଇଞ୍ଜିନିୟର ଇନ୍‌କ୍ୱାରୀ କରି ରିପୋର୍ଟ ଦେବେ। ସେତେବେଳକୁ ବାଞ୍ଛାନିଧି ସାହୁଙ୍କ ପରିବର୍ତ୍ତେ ରାମଚନ୍ଦ୍ର ପାତ୍ର ଚିଫ୍‌ଇଞ୍ଜିନିୟର ହୋଇ ଯୋଗ ଦେଇସାରିଥାନ୍ତି। ସେ ଇନ୍‌କ୍ୱାରୀ କରି ରିପୋର୍ଟ ଦେଲେ ଯେ ମେଜରମେଣ୍ଟରେ ଟିକିଏ ମଧ୍ୟ ଅଧିକ ଦିଆଯାଇନାହିଁ ଓ ମୁରମ ପରିବର୍ତ୍ତେ ଇନ୍‌ଭାରଟେଡ଼୍ ଫିଲଟର ପ୍ରବର୍ତ୍ତନ କରି ନିର୍ବାହୀ ଯନ୍ତ୍ରୀ ଡେମକୁ ନିରାପଦ କରିଛନ୍ତି। ସେ ଆହୁରି ମଧ୍ୟ ତାଙ୍କ ରିପୋର୍ଟରେ ଦର୍ଶାଇ ଥିଲେ ଯେ ଆମେ ଯଦି ଆମର ଅଫିସରଙ୍କୁ ବିଶ୍ୱାସ ନ କରି ରାଜନୈତିକ ବ୍ୟକ୍ତିଙ୍କର କଥାରେ ଭାସିଯାଇ ଅଫିସରଙ୍କ ନାମରେ ଇନ୍‌କ୍ୱାରୀ କରିବା ତେବେ ସେମାନଙ୍କର ନୈତିକ ବଳ ଭାଙ୍ଗି ପଡ଼ିବ।

ଢେଙ୍କାନାଳଠାରୁ ୧୫ କି.ମି. ଦୂରରେ ବେଗାନଦୀ ୪୨ ନମ୍ବର ଜାତୀୟ ରାଜପଥକୁ ଅତିକ୍ରମ କରିଛି। ଏହାର ଉପରିଭାଗରେ ଲୋୟର ବେଗା ଓ ଅପର ବେଗା ନାମକ ଦୁଇଟି ଆନିକଟ ନିର୍ମିତ ହୋଇ ଜଳସେଚନ କରୁଥାଏ। ଢେଙ୍କାନାଳର ସେହି ଉଚ୍ଚପଦସ୍ଥ ଅଫିସର ତାଙ୍କ ନିଜର ଜମିକୁ ଜଳସେଚିତ କରିବା ଉଦ୍ଦେଶ୍ୟରେ ଯେଉଁ ଠାରେ ବେଗା ଓ ସାର୍ବୁଲା ନଦୀ ଦ୍ୱୟର ସଙ୍ଗମ, ସେହି ସ୍ଥାନରେ ଗୋଟିଏ ଜଳଭଣ୍ଡାର ନିର୍ମାଣ କରିବାକୁ ରିପୋର୍ଟ ମାଗିଲେ। ମୁଁ ରେକ୍‌ନଏସେନ୍ସ ସର୍ଭେ କରି

ଇଣ୍ଡେକ୍ସ ନକ୍ସା ତିଆରି କଲି। ଅଳ୍ପ ଦୂରରେ ବେଗା ବ୍ରାହ୍ମଣୀ ସହିତ ମିଳିତ ହୋଇଅଛି। ବ୍ରାହ୍ମଣୀ ନଦୀରେ ବନ୍ୟା ଆସିଲେ ଏହାର ଦକ୍ଷିଣପାର୍ଶ୍ୱକୁ ବନ୍ୟା ପ୍ଳାବିତ କରେ। ଡେମ୍ ତିଆରି କରି ନେସନାଲ ହାଇୱେ ତଳକୁ ଅଳ୍ପ ଜମି ଜଳସେଚିତ ହେବ। ତା ପୁଣି ମୁରମ ଜମି। ଅନ୍ୟପକ୍ଷରେ ଲୋଅର ବେଗା ଆନିକଟ ଓ ତାର ଜଳସେଚିତ ସମୁଦାୟ ଅଞ୍ଚଳ ଜଳମଗ୍ନ ହେବ। ଜଳସେଚନ ଯୋଜନା ଦ୍ୱାରା ଉତ୍ପାଦିତ ଶସ୍ୟର ଦାମ ଓ ଜଳସେଚନ ପାଇଁ ହେବାର ଖର୍ଚ୍ଚର ଅନୁପାତ ୧.୦ରୁ କମ୍ ହେବାର ଆଶଙ୍କା ରହିଛି ବୋଲି ଦର୍ଶାଇ ଏହା ଅନୁପଯୋଗୀ ଯୋଜନା ବୋଲି ମୁଁ ରିପୋର୍ଟ ଦେଇ ଦେଲି।

ଏହା ମଧ୍ୟରେ ସପ୍ତଶଯ୍ୟା ପାହାଡ଼ର ପାଦଦେଶରେ ଗୋଟିଏ ଭୁସାବଳ କଦଳୀ ଉଦ୍ୟାନ ସୃଷ୍ଟି କରିବାକୁ ସ୍ଥାନୀୟ ଅଧିବାସୀ କଲେକ୍ଟର ଓ ସିଡ଼ି ଡିପାର୍ଟମେଣ୍ଟର ଡାଇରେକ୍ଟର ଆଗ୍ରହ ପ୍ରକାଶ କରିଥାନ୍ତି। ସପ୍ତଶଯ୍ୟା ଝରଣାକୁ ପାଇପ୍ ସାହାଯ୍ୟରେ ଏହି କଦଳୀ ବଗିଚା ପାଖରେ ପହଞ୍ଚାଇ ପାରିଲେ ପଲଲହଡ଼ାରେ ସୃଷ୍ଟି ହୋଇଥିବା ଉଦ୍ୟାନ ଭଳି ୫୦ ଏକର ବିଶିଷ୍ଟ ଆଉ ଗୋଟିଏ ରମ୍ଭା ଉଦ୍ୟାନ ଢେଙ୍କାନାଳ ଠାରେ ସୃଷ୍ଟି ହେବ ବୋଲି କଲେକ୍ଟର ସାହେବ ସ୍ୱପ୍ନ ଦେଖୁଥାନ୍ତି। ମୋତେ ଗୋଟିଏ ଏଷ୍ଟିମେଟ୍ କରିବାକୁ କୁହାଗଲା। ଏଷ୍ଟିମେଟ୍ ହେଲା ୫୦,୦୦୦ ଟଙ୍କା ଓ ଏହା ସ୍ଥାନୀୟ ଗ୍ରାମପଞ୍ଚାୟତ ଋଣ ସୂତ୍ରରେ ଆଣି ବିକ୍ରୟଲବ୍ଧ ଧନରେ ଋଣ ପରିଶୋଧ କରିବ ବୋଲି ପଞ୍ଚାୟତ ରିଜୋଲ୍ୟୁସନ୍ ହେଲା। ଜିଲ୍ଲା ପରିଷଦ ଗ୍ରାଣ୍ଟରୁ ୧୦,୦୦୦ ଟଙ୍କା ଆର.ଇ.ଓ.କୁ ଦିଆଯାଇ କାମ ଆରମ୍ଭ କରିବାକୁ କୁହାଗଲା। କାମ ମଧ୍ୟ ଆରମ୍ଭ ହୋଇଗଲା। ଏହା ଭିତରେ ନୂତନ ମନ୍ତ୍ରୀମଣ୍ଡଳ ଜିଲ୍ଲା ପରିଷଦ ଓ ପଞ୍ଚାୟତକୁ ଭାଙ୍ଗିଦେଇ ପାନି ପଞ୍ଚାୟତ ନିର୍ବାଚନ କରାଗଲା। ନୂତନ ସରପଞ୍ଚ ଲୋନ୍ ଦରଖାସ୍ତ ଦେବାକୁ ସିଧା ମନା କରିଦେଲେ। କମିଶନର ସାହେବ ଢେଙ୍କାନାଳ ଆସି ରମ୍ଭା ଉଦ୍ୟାନ ଦେଖିବାକୁ କହିଲେ। ସେତେବେଳକୁ ୨୫ ଏକର ଜମିରେ କଦଳୀ ଲାଗି ଗଛ ବଢ଼ିଯାଇ ଉଦ୍ୟାନଟି ବଡ଼ ଆକର୍ଷଣୀୟ ହୋଇଥାଏ। ମୋତେ ଯେତେବେଳେ ପଚରା ଗଲା ଯେ ଏହାର ଖର୍ଚ୍ଚ କିଏ ବହନ କରିଛି ? ମୁଁ ଉତ୍ତର ଦେଲି 'ଝରଣା ଉପରେ ନିର୍ମିତ ଆନିକଟ ଓ ବାଟରେ ତିଆରି ହୋଇଥିବା ଇନ୍‌ସ୍ପେକସନ୍ ଚେମ୍ବର ଯାହା ଇଟା ଓ ପଥରରେ ତିଆରି ହୋଇଛି ସେ ବାବଦରେ ଡିପୋଜିଟ୍ ଟଙ୍କା ଖର୍ଚ୍ଚ

ହୋଇଛି। ଜି.ଆଇ.ପାଇପ୍ ଓ ହ୍ୟୁମ୍ ପାଇପ୍‌ର ଟଙ୍କା ଡିପୋଜିଟ୍ ଆସି ନ ଥିବାରୁ ଷ୍ଟୋର୍ ସସ୍‌ପେନ୍ସ ଏକାଉଣ୍ଟ୍‌ରେ ରହିଛି। ସେ ଭୁବନେଶ୍ୱର ଫେରି ଏହି ଟଙ୍କା ମୋ ଠାରୁ ସରଚାର୍ଜ କରିବାକୁ ଲେଖିଦେଲେ, ଏଭଳି ପରିସ୍ଥିତି ବିଷୟ ମୁଁ କଲେକ୍ଟର ଅବନୀ ବାବୁଙ୍କୁ କହିଲି, ତାଙ୍କର ବଦଳି ହୋଇଯାଇଥାଏ। ତାଙ୍କରି ଆଦେଶ ଅନୁସାରେ ଏହା ହୋଇଛି ଓ ଏଥିପାଇଁ ଯେଭଳି ଭାସ୍କରର ଅସୁବିଧା ନ ହୁଏ ସେଥିପ୍ରତି ଦୃଷ୍ଟିଦେବାକୁ ତାଙ୍କ ପରେ ଆସିଥିବା କଲେକ୍ଟରଙ୍କୁ ଶେଷ ଅନୁରୋଧ ଜଣାଇ ଦେଇଗଲେ। ସେତେବେଳେ କ୍ଷୁଦ୍ର ଜଳସେଚନ ଯୋଜନା କାମବାବଦ ବନ୍ଧୁ ଟଙ୍କା ଆସୁଥିଲା। ମୁଁ ଏ ଯୋଜନାକୁ କଦଳୀ ଚାଷ ଯୋଜନା ନ କରି ସାଧାରଣ ଜଳସେଚନ ଯୋଜନା ଭାବେ ଟେକ୍‌ନିକାଲ୍ ସେକଂସନ (Technical Sanction) ଦେଲି। କଲେକ୍ଟର ଏହାକୁ Adminstrative Approval (A/A) ମଧ୍ୟ ଦେଇ ଦେଲେ। ଏଲଟମେଣ୍ଟ ନେଇଆସି ମୁଁ ଷ୍ଟକ୍ ଏଡ୍‌ଜଷ୍ଟମେଣ୍ଟ କରିଦେଲି ଓ ସେହି ଅନୁସାରେ ଇନ୍‌ସ୍ପେକସନ୍ ରିପୋର୍ଟର ଉତ୍ତର ଦେଇ ଦେଲି। କମିଶନର ହୁଏତ ଭାବିଥିବେ ମୁର୍ଗୀ ଖସିଗଲା। ଏହା ଭିତରେ ମୋର ବଦଳି ମଧ୍ୟ ହୋଇଗଲା ସେ କିନ୍ତୁ ଲାଗିଥାନ୍ତି। ସୁପରିନ୍‌ଟେଣ୍ଡିଙ୍ଗ୍ ଇଞ୍ଜିନିୟରଙ୍କୁ କହି ମୁଁ ଯିବା ପରେ ଗୋଟିଏ ରିପୋର୍ଟ କରାଇଲେ। ସୁପରିନ୍‌ଟେଣ୍ଡିଙ୍ଗ୍ ଇଞ୍ଜିନିୟର ଆସି ପ୍ରୋଜେକ୍ଟ ଦେଖି କଲେକ୍ଟରଙ୍କୁ ଏଡ୍‌ମିନଷ୍ଟ୍ରେଟିଭ୍ ଏପ୍ରୁଭାଲ ନାକଚ କରିବାକୁ କହିଲେ। ସେତେବେଳକୁ କଲେକ୍ଟର ଥାନ୍ତି ଜ୍ୟୋତିଷ କୁମାର ଭଟ୍ଟାଚାର୍ଯ୍ୟ। ସେ ରାଗି ଯାଇ ଗର୍ଭର୍ଣ୍ଣମେଣ୍ଟକୁ ଲେଖିଲେ ଯେ ଏହା ଗୋଟିଏ କ୍ଷୁଦ୍ର ଜଳସେଚନ ଯୋଜନା। ଏଥିପାଇଁ ନିର୍ବାହୀ ଯନ୍ତ୍ରୀ ଟେକ୍‌ନିକାଲ ସେଙ୍କ୍‌ସନ୍ ଦେବା ପାଇଁ କମ୍ପିଟେଣ୍ଟ ଓ ମୁଁ କଲେକ୍ଟର ରୂପେ କ୍ଷମତା ବ୍ୟବହାର କରି, ଏହାର ଏଡ୍‌ମିନଷ୍ଟ୍ରେଟିଭ୍ ମଞ୍ଜୁରି ଦେଇଛି। ଏଥିରେ ଅନ୍ୟ ଅଫିସରଙ୍କର ହସ୍ତକ୍ଷେପ ଅନୁଚିତ।

ମୋର ଆର.ଇ.ଓ.ରେ ଅବସ୍ଥାନ ୪ ବର୍ଷରୁ ଅଧିକ ସମୟ ହୋଇଗଲା। ନିଜର ଡିପାର୍ଟମେଣ୍ଟ ଜଳସେଚନ ବିଭାଗକୁ ଫେରିବା ସମୟ ହୋଇଗଲାଣି। ଆଇ.ଇ.ଓରେ ପ୍ରବେଶ ରହଣିକାଳ ଓ କାର୍ଯ୍ୟକାଳ ତ ଘଟଣାବହୁଳ। ପୁଣି ଏଠାରୁ ପ୍ରତ୍ୟାବର୍ତ୍ତନ ଏକ ରୋମାଞ୍ଚକର ପରିସ୍ଥିତିରେ ନ ହୋଇ ସାଧାରଣ ଭାବରେ ହେବା କ'ଣ ସମ୍ଭବ ? ତେଣୁ ଇରିଗେସନ୍‌କୁ ରିଭାରସନ୍ ଏକ ଚାଞ୍ଚଲ୍ୟକର ପରିସ୍ଥିତି ମଧ୍ୟରେ ଘଟିଲା। ଇରିଗେସନ୍ ବିଭାଗର ମନ୍ତ୍ରୀ ଥାନ୍ତି ସୁରେନ୍ଦ୍ର ପଟ୍ଟନାୟକ। ଉପମନ୍ତ୍ରୀ ହିମାଂଶୁ ଶେଖର ପାଢ଼ୀ। ତାଙ୍କ ଘର ବୌଦରେ। ବୌଦ ଓ ଢେ଼ଙ୍କାନାଳ ଜିଲା

ମହାନଦୀର ଦୁଇ ପାର୍ଶ୍ୱରେ ଅବସ୍ଥିତ। ଟିକରପଡ଼ା ବନ୍ଧ ବିରୋଧ କମିଟିରେ ରହି ସେ ଉଭୟ ବୌଦ ଓ ଆଠମଲ୍ଲିକରେ ତାଙ୍କର ଆନ୍ଦୋଳନ ଚାଲୁ ରଖିଥିଲେ। ଘଟଣାକ୍ରମେ ଉପମନ୍ତ୍ରୀ ହେବା ଆଗରୁ ଆଠମଲ୍ଲିକରେ ୨ ବର୍ଷ ଧରି ଚାଲିଥିବା ଉନ୍ନୟନମୂଳକ ଯୋଜନା ଗୁଡ଼ିକ ଦେଖି ସେ ସନ୍ତୋଷ ପ୍ରକାଶ କରିଥିଲେ। ମୋର ଯେତେବେଳେ ବଦଳି ପ୍ରଶ୍ନ ଉଠିଲା, ତାଙ୍କ ଅଞ୍ଚଳ ପାଇଁ ଭଞ୍ଜନଗରରେ ପୋଷ୍ଟିଂ କରିବାକୁ ସୁପାରିଶ କଲେ। ସେତେବେଳକୁ ବୌଦ ଇରିଗେସନ୍ ଡିଭିଜନ ସୃଷ୍ଟି ହୋଇ ନଥାଏ। କିନ୍ତୁ ତାଙ୍କର ମତାମତକୁ ଭ୍ରୁକ୍ଷେପ ନ କରି ମନ୍ତ୍ରୀ ମହୋଦୟ ଅନ୍ୟ ଜଣକୁ ପୋଷ୍ଟିଂ କଲେ। ଏହି ସମୟରେ ମହାନଦୀ ନର୍ଥର ନିର୍ବାହୀଯନ୍ତ୍ରୀଙ୍କର ବଦଳି ପାଇଁ ଡ଼େଲ୍ଟା ଚିଫ୍ ଇଞ୍ଜିନିୟରଙ୍କ ମତାମତ ସହିତ ଫାଇଲଟି ମଧ ଯାଇ ପହଞ୍ଚିଲା। ଘଟଣା କ୍ରମେ ଗୋଟିଏ ଫାଇଲ୍ ତଳୁ ଯାଇ ଓ ଅନ୍ୟଟି ଉପରୁ ଆସି ତାଙ୍କ ପାଖରେ ଏକ ସମୟରେ ପହଞ୍ଚିଲା। ଉପମନ୍ତ୍ରୀ ଉପରୁ ଆସିଥିବା ଫାଇଲଟି ସେକ୍ରେଟେରୀଙ୍କ ପାଖକୁ ପଠାଇଦେଲ। ତା ସଙ୍ଗେ ସଙ୍ଗେ ତଳୁ ଆସିଥିବା ଫାଇଲ୍‌ଟିରେ ଅର୍ଡ଼ର କରିଦେଲେ ଯେ ମହାନଦୀ ନର୍ଥ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଆର.ଇ.ଓ.କୁ ଯିବେ ଓ ଶ୍ରୀ ଭାସ୍କର ଚନ୍ଦ୍ର ନାୟକ ମହାନଦୀ ନର୍ଥରେ ପୋଷ୍ଟିଂ ହେବେ। ବଦଳି ନୋଟିଫିକେସନ୍ ମଧ ବାହାରି ପଡ଼ିଲା। କିନ୍ତୁ ମହାନଦୀ ନର୍ଥ ଡିଭିଜନ ଯେ ବିଭାଗୀୟ ମନ୍ତ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକଙ୍କ ନିଜର ଡ଼ିଭିଜନ। ସେଠାରେ ମୋର ପୋଷ୍ଟିଂ ପୁଣି ମନ୍ତ୍ରୀଙ୍କ ଅଗୋଚରରେ। ଏହା କିଭଳି ସମ୍ଭବ? ଦୁଇଦିନ ପରେ ଅର୍ଡ଼ର ଅନିର୍ଦ୍ଦିଷ୍ଟ ସମୟ ପାଇଁ ମୁଲତବୀ ରହିଲା। ଚାଲିଲା ଦୁଇ ମନ୍ତ୍ରୀଙ୍କ ମଧରେ ଟଣାଓଟରା। ଶେଷରେ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଆଦେଶ ଦେଲେ ଯେହେତୁ ଉପମନ୍ତ୍ରୀଙ୍କ ମତାମତ ପାଇଁ ଭ୍ରୁକ୍ଷେପ ନ କରି ଅନ୍ୟ ଜଣଙ୍କୁ ଭଞ୍ଜନଗରରେ ପୋଷ୍ଟିଂ କରିଛନ୍ତି ଓ ମୁଖ୍ୟଯନ୍ତ୍ରୀ ମହାନଦୀ ନର୍ଥ ଡିଭିଜନର ନିର୍ବାହୀ ଯନ୍ତ୍ରୀଙ୍କ ବଦଳି ପାଇଁ ସୁପାରିଶ କରିଛନ୍ତି ତାଙ୍କର ବଦଳି ହେବ। କିନ୍ତୁ ଏଥିରେ ସାମାନ୍ୟ ପରିବର୍ତ୍ତନ କରି ମୋତେ ଅନୁଗୁଳ ଡିଭିଜନରେ, ଅଜିତ ରାୟଙ୍କୁ ମହାନଦୀ ନର୍ଥରେ ଓ ରମାନାଥ ଦାଶଙ୍କୁ ଆର.ଇ.ଓ. ଢେଙ୍କାନାଳରେ ପୋଷ୍ଟିଂ ପାଇଁ ଅର୍ଡ଼ର ଦେଲେ।

ଏଭଳି ଏକ ନାଟକୀୟ ପରିସ୍ଥିତିରେ ଆର.ଇ.ଓ. ଛାଡ଼ି ଆସି ଯୋଗଦେଲି ଅନୁଗୁଳ ଡିଭିଜନରେ।

ଠଠଠ

## ତ୍ରୟୋଦଶ ପରିଚ୍ଛେଦ

# ଦେରଜାଙ୍ଗ ଜଳସେଚନ ଯୋଜନା

ଦୀର୍ଘ ସାଢ଼େ ଚାରି ମାସ ଅନିଶ୍ଚିତତା ମଧ୍ୟରେ ଗତି କରିବା ପରେ ୧୯୬୭ ମସିହା ନଭେମ୍ବର ୨୭ ତାରିଖ ଦିନ ଅନୁଗୁଳ ଡିଭିଜନ୍‌ରେ ଯୋଗଦେଲି । ଡିଭିଜନ୍‌ର ଅଧୀନରେ ଥାଏ, ଦେରଜାଙ୍ଗ ମଧ୍ୟମ ଜଳସେଚନ ଯୋଜନା, ଢେଙ୍କାନାଳ ଜିଲ୍ଲା ମଧ୍ୟରେ ବ୍ରାହ୍ମଣୀ ନଦୀର ଉଭୟ ପାର୍ଶ୍ୱରେ ଥିବା ବନ୍ୟା ନିୟନ୍ତ୍ରଣ ଯୋଜନା ଓ ଆଠଗଡ଼ ସବ୍ ଡିଭିଜନର ମହାନଦୀ ଓ ସାପୁଆ ନଦୀର ବନ୍ୟା ନିୟନ୍ତ୍ରଣ ଯୋଜନା । ଏହି ଡିଭିଜନ୍ କାମର ନୟାଗଡ଼ ସବ୍ ଡ଼ିଭିଜନ୍‌ର କାର୍ଯ୍ୟ ସହିତ ସାମଞ୍ଜସ୍ୟ ଥିଲା । ତେଣୁ ଅନୁଗୁଳକୁ ଆଗମନ ମୋତେ ନିଜ ଘରକୁ ପ୍ରତ୍ୟାବର୍ତ୍ତନ ଭଳି ଲାଗିଲା । ମୁଁ ଯୋଗ ଦେଲାବେଳକୁ ଦେରଜାଙ୍ଗର ଡ଼େମ୍ ସବ୍‌ଡ଼ିଭିଜନ୍‌ର ଏସ.ଡ଼ି.ଓ ଥାଆନ୍ତି ମହାଦେବ ମିଶ୍ର, କେନାଲ ସବ୍‌ଡ଼ିଭିଜନ୍‌ର ଏସ.ଡ଼ି.ଓ. ପ୍ରଦୀପ ଚନ୍ଦ୍ର ମହାନ୍ତି, ମେକାନିକାଲ୍ ସବ୍ ଡ଼ିଭିଜନ୍‌ର ଏସ.ଡ଼ି.ଓ ଗୋରା ଦାସ ଓ ଆଠଗଡ଼ ସବ୍ ଡ଼ିଭିଜନ୍‌ର ଦାୟିତ୍ୱରେ ଥାଆନ୍ତି ବିଶ୍ୱନାଥ ରାଉତ । ଏହା କଟକ ଇଷ୍ଟର୍ଣ୍ଣ ସର୍କଲ ଅଧୀନରେ ଥାଏ ଓ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ଥିଲେ ଦଣ୍ଡପାଣି ରଥ । ଚିଫ୍ ଇଞ୍ଜିନିୟର ଥାଆନ୍ତି ମାଧବ ଚନ୍ଦ୍ର ପାଣି ।

କାର୍ଯ୍ୟ କରିବାକୁ ସୁସ୍ଥ ପରିବେଶ । ଦେରଜାଙ୍ଗ ମାଟିବନ୍ଧ ଟେଣ୍ଡର୍ ନେଇଥାନ୍ତି ଆର.ପି.ବାତ୍ରା ଓ ସ୍ପିଲ୍‌ୱେ ନେଇଥାନ୍ତି ହିନ୍ଦ୍ ବିଲଡ଼ରସ୍ । ଡ୍ୟାମ୍ ଓ ସ୍ପିଲ୍‌ୱେ ଡିଜାଇନ୍ ସରି ଯାଇଥାଏ । ଦୁଇଜଣ ଦକ୍ଷ କଣ୍ଟ୍ରାକ୍ଟର କାମ ଦାୟିତ୍ୱରେ । ସେମାନଙ୍କୁ ଆବଶ୍ୟକୀୟ ଗାଇଡ଼େନ୍‌ସ ଦେଇଦେଲେ ଦାୟିତ୍ୱ ଶେଷ । ହୀରାକୁଦରୁ ବହୁତ ଗୁଡ଼ିଏ ପୁରୁଣା ମେସିନ୍ ଅଣାଯାଇ ଷ୍ଟୋର୍‌ରେ ଜମା ରଖାଯାଇଥାଏ । ପ୍ରଥମେ ଏହି ପ୍ରୋଜେକ୍ଟର କାର୍ଯ୍ୟ ହୀରାକୁଦ ସର୍କଲ୍ ଅଧୀନରେ ସମ୍ପାଦିତ ହେଉଥିଲା । ହୀରାକୁଦ ବନ୍ଧର ପୁରୁଣା ମେସିନ୍‌କୁ ବ୍ୟବହାର କରି ଓ ପୁରୁଣା ୱାର୍କ୍‌ଚାର୍ଜ୍ ଲୋକଙ୍କୁ କାର୍ଯ୍ୟରେ ନିଯୋଗ କରି ଏ ପ୍ରୋଜେକ୍ଟଟିକୁ ସାରିବାକୁ ପ୍ରଥମେ ଯୋଜନା ହୋଇଥିଲା । ପୁରୁଣା

ମେସିନ୍‌ରେ କାମ ନ କରି ଟେଣ୍ଡର ଡାକି ଡିଜେଲ ଟ୍ରକ୍ ଓ ଲୋକଙ୍କ ସହାୟତାରେ ମାଟିକାମ ୧୯୬୧ ମସିହାରେ ବୁଢ଼ା-ବୁଢ଼ିଆଣୀରେ ପ୍ରବର୍ତ୍ତିତ ହୋଇ ୧୯୬୪-୬୫ ବେଳକୁ ଜମିକୁ ଜଳ ଯୋଗାଇ ଦିଆଗଲା । କିନ୍ତୁ ଦେରଜାଙ୍ଗ ଯୋଜନା ସେହିଭଳି କଚ୍ଛପ ଗତିରେ ଚାଲି ୧୯୬୬ ବେଳକୁ ମାତ୍ର ୩୦ ଶତାଂଶ କାମ ସମ୍ପୂର୍ଣ୍ଣ ହେବା ସମ୍ଭବ ହେଲା । ହୀରାକୁଦ ୱାର୍କ୍ ଚାର୍ଜ୍ ଷ୍ଟାଫ୍‌ଙ୍କର ଉଦାସୀନତା ଓ ପୁରୁଣା ମେସିନ୍ ଗୁଡ଼ିକର ବାରମ୍ବାର ବ୍ରେକ୍ ଡାଉନ୍ ଫଳରେ ଦେଖାଗଲା ଏହି ଗତିରେ କାମ ଚାଲିଲେ ପ୍ରୋଜେକ୍ଟ ସରିବାକୁ ଆହୁରି ୧୦ବର୍ଷ ଲାଗିବ । ଅଧିକାଂଶ ୱାର୍କ୍‌ଚାର୍ଯ୍ୟ ଷ୍ଟାଫ୍‌ଙ୍କୁ କ୍ଷତିପୂରଣ ଦେଇ ବିଦାୟ ଦିଆଯାଇ, ଟେଣ୍ଡର୍ କରାଯାଇ କାର୍ଯ୍ୟ ଆରମ୍ଭ ହୋଇସାରିଥାଏ । ୱାର୍କ୍‌ଚାର୍ଜ୍ କର୍ମଚାରୀଙ୍କର ଛଟେଇ ଯୋଗୁଁ ଯେଉଁ ଅସନ୍ତୋଷ ଜନିତ ସମସ୍ୟା ଉପୁଜିଥିଲ, ତାହା ମୋର ପୂର୍ବବର୍ତ୍ତୀ ନିର୍ବାହୀଯନ୍ତ୍ରୀ ଅଜିତ୍ ରାୟ ସମାଧାନ କରିଦେଇ ଯାଇଥିଲେ । ମୋ ପାଇଁ ରହିଥିଲା କେନାଲ ପ୍ଲାନିଂ ଓ କେନାଲ ଷ୍ଟ୍ରକଚର୍ ଡ଼ିଜାଇନ୍ କରି କାମ କରିବା । ସୌଭାଗ୍ୟକୁ ଗୋପୀନାଥ ଦାସ ଡିଜାଇନ୍ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଥିଲେ । ସେ ଜଣେ ମିଷ୍ଟଭାଷୀ ଓ ସରଳ ପ୍ରକୃତିର ଦକ୍ଷ ଇଞ୍ଜିନିୟର । ତାଙ୍କ ଘର ପୁଣି ଅନୁଗୁଳରେ । ତାଙ୍କ ସହାୟତାରେ କେନାଲ ପ୍ଲାନିଂ ଓ ଷ୍ଟ୍ରକଚ୍‌ର ଡିଜାଇନ୍ ଖୁବ୍ ଶୀଘ୍ର ମଞ୍ଜୁରୀ ମିଳିଗଲା । ତେଣୁ କେନାଲ କାମ କରିବାରେ ବିଶେଷ ପ୍ରତିବନ୍ଧକ ହେଲାନାହିଁ । କିନ୍ତୁ ଢେଙ୍କାନାଳ ଠାରୁ ଦୂରରେ ରହିବା ଫଳରେ ଭୂ-ଅର୍ଜନ କ୍ଷେତ୍ରରେ ଅଗ୍ରଗତି ଅପେକ୍ଷାକୃତ ମନ୍ଥର ହୋଇପଡ଼ିଥିଲା । କିନ୍ତୁ ଢ଼େଙ୍କାନାଳ କଲେକ୍ଟରଙ୍କ ସହ ମୋର ପୂର୍ବ ସମ୍ପର୍କ ଯୋଗୁଁ ଏ କାର୍ଯ୍ୟ ତ୍ୱରାନ୍ୱିତ ହେବ ସମ୍ଭବ ହେଲା ।

ଯଦିଓ ମାଟିବନ୍ଧ କାମ ସରିନଥାଏ ଲିଙ୍ଗରା ନଦୀ ଉପରେ ଗୋଟିଏ କଫର ଡେମ୍ କରି ୧୯୬୫ ମସିହାରୁ ଜମିକୁ ପାଣି ଯୋଗାଇ ଦେବା କାର୍ଯ୍ୟ ଆରମ୍ଭ ହୋଇସାରିଥାଏ । ଆଶିଂକ ସମ୍ପୂର୍ଣ୍ଣ ହୋଇଥିବା ସ୍ପିଲ୍‌ୱେ ଉପରେ ନଦୀରେ ଆସୁଥିବା ଜଳର ପରିମାଣ ୩ ବର୍ଷ ଧରି ମାପ ହୋଇସାରିଥାଏ । ଏହି ପାଣିର ପରିମାଣ ଓ ବର୍ଷା ଜଳର ମାପକୁ ନେଇ ଗୋଟିଏ ରେନ୍‌ଫଲ୍ ରନ୍‌ଅଫ୍ କୋ ରିଲେସନ୍ କର୍ଭ ଅଙ୍କନ କରି ଦେଖାଗଲା ଯେ ଷ୍ଟ୍ରେଞ୍ଜ ଟେବୁଲ୍ ଦେଉଥିବା ଡ଼ିସ୍‌ଚାର୍ଜ୍ ଠାରୁ ଏହା

ଢେର ବେଶୀ । ଦେରଜାଙ୍ଗ ଜଳସେଚନ ଯୋଜନାର ରିପୋର୍ଟ୍ ୧୯୫୮-୫୯ ମସିହାରେ ଲେଖାଯାଇଥିଲା । ସେତେବେଳେ ନିର୍ଭରଶୀଳ ରନ୍‌ଅଫ୍ ଅବ୍‌ଜରଭେସନ୍ ନଥିବାରୁ ରେନ୍‌ଗେଜର ମାପକୁ ନେଇ ଷ୍ଟ୍ରେଞ୍ଜ ଟେବୁଲ୍‌ରୁ ରନ୍‌ଅପ୍ ବାହାର କରାଯାଇଥିଲା । ଏହା ଫଳରେ ରନ୍ ଅଫ୍ ପରିମାଣ ବହୁତ କମି ଯାଉଥିବାରୁ ୧୫୫ ବର୍ଗ ମାଇଲ ବିଶିଷ୍ଟ ଅବବାହିକାର ଜଳ ଦ୍ୱାରା ମାତ୍ର ୧୫୦୦୦ ଏକର ଜମିର ଜଳସେଚନ ସମ୍ଭବ ହୋଇଥିଲା । ମୁଁ ନିଜ ହାତରେ ବୁଢ଼ାବୁଢ଼ିଆଣୀ ଓ ପିତାମହଲ ପ୍ରୋଜେକ୍ଟ ରିପୋର୍ଟର ୱର୍କିଙ୍ଗ୍ ଟେବୁଲ ତିଆରି କରି ଦେଖିଛି ଯେ, ଗୋଟିଏ ବର୍ଗମାଇଲରୁ ଆସୁଥିବା ଜଳକୁ ବ୍ୟବହାର କରି ୨୦୦ ଏକର ଜମିରେ ଜଳସେଚନ କରିବା ସମ୍ଭବ । ସେହି ଅନୁପାତରେ ଦେରଜାଙ୍ଗ ଜଳସେଚନ ଯୋଜନା ୩୧୦୦୦ ଏକର ଜମିକୁ ଜଳ ଯୋଗାଇ ପାରିବ । ନ ହେଲା୨୦୦ ଏକର, ବର୍ଗ ମାଇଲକୁ ଅନ୍ୟୁନ ୧୫୦ ଏକର ହିସାବରେ ଧରିଲେ ୨୩୫୦୦ ଏକର ଜମିକୁ ଜଳ ଯୋଗାଇ ହେବ । ୧୫୫ ବର୍ଗ ମାଇଲର ଜଳକୁ ମାତ୍ର ୧୫୦୦୦ ଏକର ମଧ୍ୟରେ ସୀମାବଦ୍ଧ କରିବା ମୋତେ ଆଦୌ ଭଲ ଲାଗିଲାନି । ୱାର୍କିଂ ଟେବୁଲ କରି ଦେଖିଲି ୨୫୦୦୦ ଏକର ପର୍ଯ୍ୟନ୍ତ ଜଳ ଯୋଗାଇବା ସମ୍ଭବ ହେବ । ଚିଫ୍ ଇଞ୍ଜିନିୟର ମାଧବ ପାଣିଙ୍କୁ ହିସାବପତ୍ର ଦେଖାଇ ବୁଝାଇଦେଲି । ଅନୁଗୁଳ ଭଳି ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ଗୋଟିଏ ଏକର ଅଧିକ ଜମିକୁ ଜଳ ଯୋଗାଣ ଗୋଟିଏ ପରିବାରକୁ ଖାଦ୍ୟ ଯୋଗାଇବା ସଙ୍ଗେ ସମାନ । ଏହା ଭିତରେ ପାଣି ସାହେବ ଦେରଜାଙ୍ଗ ଗେଟ୍ ସାଇଜରେ ପରିବର୍ତ୍ତନ କରି ସ୍ପିଲଓ୍ୱେ କ୍ରେଷ୍ଟକୁ ୪୭୦ରୁ ୪୭୫କୁ ବଢ଼ାଇ ଗେଟ୍ ସାଇଜ୍‌କୁ ୨୦ ଫୁଟରୁ ୧୫ ଫୁଟକୁ କମାଇ ଦେଇ ଏଫ. ଆର.ଏଲ.କୁ ସମାନ ୪୯୦ରେ ରଖି ବନ୍ଧର ଟି.ବି.ଏଲକୁ ୫୦୦ ଲେବଲ୍‌କୁ ବଢ଼ାଇ ଦେଇସାରିଥାନ୍ତି । ଏହା ମୋତେ ସବୁଠାରୁ ବେଶୀ ସାହାଯ୍ୟ କଲା । ମୁଁ ତାଙ୍କୁ କହିଲି ଡ୍ୟାମର ଉଚ୍ଚତା ଆଉ ବଢ଼ାଇବା ଦରକାର ନାହିଁ । ଗେଟ୍‌ର ଉଚ୍ଚତା ୧୫ ଫୁଟ୍ ନ କରି ୨୦ ଫୁଟ୍ କରିବା, ଦରକାର ପଡ଼ିଲେ ୩ ଫୁଟ୍ ପାରାପେଟ୍ ଦେଇଦେବା । ଗେଟ୍‌ର ଉଚ୍ଚତା ୨୦ ଫୁଟ୍ ରହୁ । ଆମେ ୧୫ ଫୁଟ୍ ପର୍ଯ୍ୟନ୍ତ ପାଣି ରଖୁଥିବା । ଯେତେବେଳେ ଚାହିଁବା ୨୦ ଫୁଟ୍ ପାଣି ରଖିବାକୁ, ୩ ଫୁଟ୍ ଉଚ୍ଚର ପାରାପେଟ୍ ତିଆରି କରିଦେବା ।

ଆମେ କାହିଁକି ଆୟକଟ୍ ଏକ୍ସଟେନ୍‌ସନର ଦ୍ୱାର ସବୁ ଦିନ ପାଇଁ ବନ୍ଦ କରିଦେବା । ଏହା ତାଙ୍କ ମନକୁ ପାଇଲା । ମୁଁ ତିଆରି କରିଥିବା ୱାର୍କିଂ ଟେବୁଲ୍ ସହିତ ଏକ୍ସଟେନ୍‌ସନ୍ ପାଇଁ ଆୟକଟ ସର୍ଭେ କରିବା ପାଇଁ ଗୋଟିଏ ସର୍ଭେ ଇନ୍‌ଭେଷ୍ଟିଗେଟ୍ ଏଷ୍ଟିମେଟ୍ ତିଆରି କରି ସେ ସରକାରଙ୍କୁ ସୁପାରିଶ କରି ପଠାଇଦେଲେ ।

ଏହା ଭିତରେ ଆର.ଇ.ଓ.ର ଉପମନ୍ତ୍ରୀ ମାନବ୍ୟର ବୃନ୍ଦାବନ ତ୍ରିପାଠୀ ସନ୍ତ୍ରୀ ପାଖରେ ପ୍ରବାହିତ ହେଉଥିବା ନାଳ ଉପରେ ଗୋଟିଏ ଜଳଭଣ୍ଡାର ନିର୍ମାଣ କରି ଓଡ଼ାପଡ଼ା ବ୍ଲକ୍‌ର କେତେକ ଜମିକୁ ଜଳସେଚିତ କରିବାକୁ ଚାହିଁଲେ । ଜଳଭଣ୍ଡାର ହେବ ଅନୁଗୁଳ ସବ୍‌ଡ଼ିଭିଜନ୍‌ରେ କିନ୍ତୁ ଜଳସେଚିତ ହେବ ଢେଙ୍କାନାଳ ସବ୍‌ଡ଼ିଭିଜନ୍ । ଢେଙ୍କାନାଳ ଜିଲ୍ଲା ସୃଷ୍ଟି ହେବା ଦିନଠାରୁ ଅନୁଗୁଳ ଓ ଢେଙ୍କାନାଳବାସୀଙ୍କ ମଧ୍ୟରେ ବୈରତା ଲାଗି ରହିଥାଏ । ଅନୁଗୁଳ ବାସୀଙ୍କର ଆପତ୍ତି ଯେ, ଅନୁଗୁଳ ଜିଲ୍ଲାର କେନ୍ଦ୍ର ସ୍ଥଳରେ ଅବସ୍ଥିତ, ଏହା ଜିଲ୍ଲା ମହକୁମା ହେବାକୁ ଉପଯୁକ୍ତ ସ୍ଥାନ । ଏଠାରେ ଆଗରୁ ଅନୁଗୁଳ କନ୍ଧମାଳର ସଦରମହକୁମା ଥିଲା । ଜିଲ୍ଲା ମହକୁମା ଢେଙ୍କାନାଳରେ ସ୍ଥାପନ କରାଯାଇ ଅନୁଗୁଳ ପ୍ରତି ଅବହେଳା ପ୍ରଦର୍ଶନ କରାଯାଇଛି । ତେଣୁ ଅନୁଗୁଳରେ ଜଳଭଣ୍ଡାର ହୋଇ ଢେଙ୍କାନାଳ ଜଳସେଚିତ ହେବ, ତା'ପୁଣି ଦେରଜାଙ୍ଗ ଏକ୍ସଟେନ୍‌ସନ୍ ଆୟକଟ୍‌କୁ ଜଳମଗ୍ନ କରି, ଏହା ଅନୁଗୁଳ ବାସୀ ସହନ୍ତେ କିପରି ? ତାପରେ, ଢେଙ୍କାନାଳର ଏମ.ଏଲ.ଏ. ସ୍ୱତନ୍ତ୍ର ପାର୍ଟିର ଓ ସେ ପାର୍ଟିର ମନ୍ତ୍ରୀ ଆର.ଇ.ଓ. ମନ୍ତ୍ରୀ ଅନୁଗୁଳର ଏମ.ଏଲ.ଏ. କଂଗ୍ରେସର । ତେଣୁ ଚାଲିଲା ଆନ୍ଦୋଳନ । ଆନ୍ଦୋଳନର ନେତୃତ୍ୱ ନେଲେ ବଅଁରପାଳ ବ୍ଲକ୍‌ର ଚେୟାରମେନ୍ ଅଦ୍ୱୈତ ସିଂ । ଅନୁଗୁଳ ସର୍କିଟ ହାଉସ୍‌ରେ ଗୋଟିଏ ମିଟିଂ ହେଲା । ଆର.ଇ.ଓ. ତରଫରୁ ଯୋଗଦେଲେ ଅଧିକ୍ଷଣ ଯନ୍ତ୍ରୀ, ନିର୍ବାହୀଯନ୍ତ୍ରୀ, ଅନୁଗୁଳ ଡିଭିଜନ୍ ତରଫରୁ ମୁଁ ଯୋଗଦେଲି । ତା ବ୍ୟତୀତ ଆର.ଇ.ଓ.ର ଉପମନ୍ତ୍ରୀ ବଅଁରପାଳ ବ୍ଲକ୍‌ର ଚେୟାର୍‌ମେନ୍, ଓଡ଼ାପଡ଼ା ବ୍ଲକ୍ ଚେୟାରମେନ୍ ଓ ସ୍ଥାନୀୟ ସରପଞ୍ଚମାନେ ମଧ୍ୟ ଉକ୍ତ ମିଟିଂରେ ଯୋଗଦେଲେ । ଆର.ଇ.ଓ. ସୁପରଟେଣ୍ଡେଂ ଇଞ୍ଜିନିୟର କହିଲେ, ଯେ ଦେରଜାଙ୍ଗ ରିପୋର୍ଟ ଲେଖା ସମୟରେ ସେ ନିର୍ବାହୀଯନ୍ତ୍ରୀ ଥିଲେ । ସେ ବହୁତ ହିସାବ କରି ଦେଖିଛନ୍ତି ଯେ ଦେରଜାଙ୍ଗ ଜଳସେଚନ ଯୋଜନା ଦ୍ୱାରା ଆଉ ଅଧିକ

ଗୋଟିଏ ଏକର ଜମି ଜଳସେଚନ ମଧ୍ୟ ସମ୍ଭବ ନୁହେଁ । ମୁଁ କହିଲି ଯେ, ଏହା ଷ୍ଟେଞ୍ଜ୍ ଟେବୁଲ୍ ଉପରେ ପର୍ଯ୍ୟବସିତ । ୧୦୦ ବର୍ଷ ଆଗରୁ ମଧ୍ୟପ୍ରଦେଶର କେତେକ ଷ୍ଟେସନ୍‌ର ରେନଗଜ ଓ ରିଭରଗଜକୁ ନେଇ ଯେଉଁ ଷ୍ଟେଜ୍ ଟେବୁଲ୍ ତିଆରି କରିଯାଇଛନ୍ତି ତାହା ସମ୍ପୂର୍ଣ୍ଣ ନିର୍ଭରଯୋଗ୍ୟ ନୁହେଁ । ଏହା କହି ମୁଁ କରିଥିବା ହିସାବ ଓ ପାଣି ସାହେବଙ୍କ ସୁପାରିଶ ମିଟିଂରେ ଦେଖାଇଲି । କିନ୍ତୁ ଉପମନ୍ତ୍ରୀ କହିଲେ ଅଧିକ ପାଣି ମାଡ଼ିବ ବୋଲି ପ୍ରସ୍ତାବ ମାତ୍ର ହୋଇଛି । ଏକ୍ସଟେନ୍‌ସନ୍ କେବେ ହେବ ଜଣାନାହିଁ । ସେଥିପାଇଁ କ୍ଷୁଦ୍ର ଜଳସେଚନ ଯୋଜନାର କାର୍ଯ୍ୟ ବନ୍ଦ ହେବ କାହିଁକି ? ଏହା କହି ଆର.ଆଇ.ଓ ଅଧିକ୍ଷଣ ଯନ୍ତ୍ରୀଙ୍କୁ ସର୍ଭେ କରି ପ୍ରସ୍ତାବ ପଠାଇବାକୁ ଉପଦେଶ ଦେଲେ । ଏହା ଶୁଣି ବଅଁରପାଳର ଚେୟାରମେନ୍ ଅଦ୍ୱୈତ ବାବୁ ରାଗିଯାଇ କହିଲେ, ଏହା କିପରି ସମ୍ଭବ ? ଦେରଜାଙ୍ଗ ଯୋଜନା ଦ୍ୱାରା ଯେତେବେଳେ ଅଧିକ ପାଣି ଜଳସେଚିତ ହୋଇପାରିବ ବୋଲି ଜଳସେଚନ ବିଭାଗର ମୁଖ୍ୟଯନ୍ତ୍ରୀ ରିପୋର୍ଟ ଦେଇସାରିଲେଣି, ସେତେବେଳେ ମଧ୍ୟମ ଜଳସେଚନ ଯୋଜନାର ଆୟକଟକୁ ବୁଡ଼ାଇ ଗୋଟିଏ କ୍ଷୁଦ୍ର ଜଳସେଚନ ତିଆରି କରିବାକୁ ଆମେ କେବେ ଦେବୁନି । ସେଠାରେ ରକ୍ତର ନଦୀ ସିନା ପ୍ରବାହିତ ହେବ, ଖୁଣ୍ଟି ଗୋଟିଏ ମଧ୍ୟ ପୋତା ଯାଇପାରିବ ନାହିଁ । ମୁଁ ଦେଖିବି କିଏ ସେ ସ୍ଥାନକୁ ସର୍ଭେ କରିବାକୁ ଯିବ ? ଏତିକିରେ ସେ କ୍ଷୁଦ୍ର ଜଳସେଚନ ଯୋଜନାର ପୂର୍ଣ୍ଣଚ୍ଛେଦ ପଡ଼ିଲା । ଏହା କିନ୍ତୁ ମୋ ପାଇଁ ଶୁଭସଂକେତ ନଥିଲା । ଦୁଇଟି ପାର୍ଟିର କଳହ ଠାରୁ ମୋର ଦୂରରେ ରହିବା ଉଚିତ୍ ଥିଲା । କିନ୍ତୁ ଜୀବନ ସାରା ସ୍ପଷ୍ଟବାଦୀ ହୋଇଆସିଛି । ଯାହା ସତ୍ୟ ତାହା ପ୍ରକାଶ କରିବାକୁ କେବେ ପଶ୍ଚାତ୍‌ପଦ ହୋଇନି । ଏଠାରେ ତା'ର ବ୍ୟତିକ୍ରମ ହୋଇଥାନ୍ତା କିପରି ?

୧୯୬୫ରୁ ୧୯୬୭ ମସିହା ପର୍ଯ୍ୟନ୍ତ ଦୀର୍ଘ ଦୁଇବର୍ଷ ଧରି ଢେଙ୍କାନାଳ ଡିଭିଜନ୍‌ରେ ଅକ୍ଳାନ୍ତ ପରିଶ୍ରମ କରି ବହୁତ ଗୁଡ଼ିଏ କ୍ଷୁଦ୍ର ଜଳସେଚନ ଯୋଜନା, କୋଠା, ରାସ୍ତା ଓ ପ୍ରାୟ ୪୦୦୦ ପୁଷ୍କରିଣୀର ପଙ୍କୋଦ୍ଧାର କାର୍ଯ୍ୟ କରାଯାଇଥିଲା । ବର୍ଷକୁ ଦେଢ଼କୋଟି ଲେଖାଏଁ ଟଙ୍କା ଖର୍ଚ୍ଚ ହୋଇଥିଲା । ଚାରିଟି ଡିଭିଜନ୍‌ର କାମ ଗୋଟିଏ ଡିଭିଜନ୍ ଦ୍ୱାରା ସମ୍ପାଦିତ ହୋଇଥିଲା । କାମ କରିବା ପାଇଁ ମାତ୍ର ୨ଟି

ଟ୍ରକ୍ । ଏତେଗୁଡ଼ିଏ କାମକୁ ସିମେଣ୍ଟ, ରଡ଼. ହ୍ୟୁମ୍ ପାଇପ୍ ଓ ଅନ୍ୟାନ୍ୟ ଉପକରଣ ଯୋଗାଇ ଦେବା ଦୁଇଟି ଟ୍ରକ୍ ପକ୍ଷେ ଅସମ୍ଭବ । ତେଣୁ ସରକାରୀ ମାଲ୍ ବୋହିବା ପାଇଁ ପ୍ରାଇଭେଟ୍ ଟ୍ରକ୍‌ର ସାହାଯ୍ୟ ନିଆଯାଇଥିଲା । ସେଥିପାଇଁ ଟେଣ୍ଡର୍ ମଗାଗଲା । ଦୁଇଜଣ ଟେଣ୍ଡର୍ ଦେଲେ । ଲୋୟେଷ୍ଟ୍ ଟେଣ୍ଡର୍ ସିଡ଼ିଉଲ ଠାରୁ ଶତକଡ଼ା ୪୦ ଭାଗ ଅଧିକ । କେରେଜ କଣ୍ଟ୍ରାକ୍ଟରଙ୍କୁ ନେଗୋସିଏସନ୍ ପାଇଁ ଡାକିବାରୁ ସେ ରେଟ୍ ନ କମାଇ ପି.ଡ଼ବ୍ଲୁ.ଡ଼ି (ଆର ଆଣ୍ଡ ବି)ରେ ତା' ପାଇଁ ତିଆରି ହୋଇଥିଲା କମ୍ପେରେଟିଭ୍ ଷ୍ଟେଟ୍‌ମେଣ୍ଟଟି ଆଣି ଦାଖଲ କରି ତା ଅପେକ୍ଷା ରେଟ୍ କମାଇପାରିବେ ନାହିଁ ବୋଲି ମତ ପ୍ରକାଶ କଲେ । ପି.ଡ଼ବ୍ଲୁ.ଡ଼ି. (ଆର. ଆଣ୍ଡ. ବି) ତା'ର ୪୦% ଅଧିକରେ ଟେଣ୍ଡର ମଞ୍ଜୁର କରିଥିଲା । ସେତେବେଳେ ଆର.ଇ.ଓ.ର ଅଧିକ୍ଷଣ ଯନ୍ତ୍ରୀ ଥାଆନ୍ତି ରୋହିଣୀ କୁମାର ସାହୁ । ତାଙ୍କ ପାଖକୁ ଏତେ ଅଧିକ ରେଟ୍‌ରେ ଟେଣ୍ଡର ସୁପାରିଶ କରି ପଠାଇଲେ ସେ ବିରକ୍ତ ହୁଅନ୍ତି । କିଛି ଉପାୟ ଦିଶିଲାନି । ଏକାଉଟେଣ୍ଟ୍‌ଙ୍କୁ ପଚାରିଲି । ମୋ ଆଗରୁ ଥିବା ଦୁଇଜଣ ଯାକ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଏଚ.ଭି.ଏଲ. ଶାସ୍ତ୍ରୀ ଓ ବ୍ରଜ ମୋହନ ସାହୁ ୫% ଅଧିକ ରେଟ୍ ଦେଇ ଜବ୍‌ୱାର୍କ ଭାବେ କେରେଜ୍ କରାଇଥିଲେ । ଏକାଉଟେଣ୍ଟ୍ କହିଲେ, ଆପଣଙ୍କର କ୍ଷମତା ଅଛି ୫% ଅଧିକ ଦେଇପାରିବେ । ଟେଣ୍ଡର୍ ତ ଅଧିକ ଆସିଛି । ଆପଣଙ୍କ ଆଗରୁ ଦୁଇଜଣ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଏହି ପନ୍ଥା ଅବଲମ୍ବନ କରି କାର୍ଯ୍ୟ କରିଛନ୍ତି । ଏଥିରେ କୌଣସି ବୈଷୟିକ ତ୍ରୁଟି ନାହିଁ । ଏକାଉଟେଣ୍ଟ୍ ନିର୍ବାହୀଯନ୍ତ୍ରୀଙ୍କର ଅର୍ଥନୈତିକ ପରାମର୍ଶଦାତା । ତାଙ୍କର ଉପଦେଶ ଅନୁଯାୟୀ କାମ କରିବା କଥା । ସେହି ଅନୁସାରେ ଏସ.ଡ଼ି.ଓ.ଙ୍କ ଠାରୁ ରିପୋର୍ଟ ମଗାଇ ଫାଇଲ୍‌ରେ ଅର୍ଡ଼ର ଦିଆଗଲା । କେରେଜ୍ ମଧ ଏସ.ଡ଼ି.ଓ. ମାନେ କଲେ । ଛୋଟ ଛୋଟ ଭାଉଚର କରି ଏସ.ଡ଼ି.ଓ. ମାନେ ପେମେଣ୍ଟ କଲେ । ଗୋଟିଏ କି ଦୁଇଟି ବିଲ୍ ପେମେଣ୍ଟ ପାଇଁ ଡ଼ିଭିଜନକୁ ଆସିଲା । ଏହିଭଳି ଗତିରେ ପ୍ରାୟ ଦୁଇବର୍ଷ ଧରି କେରେଜ୍ ଚାଲିଲା । ମୁଁ ମଧ ଢେଙ୍କାନାଳ ଡିଭିଜନ ଛାଡ଼ି ଚାଲିଆସିଲି ଅନୁଗୁଳକୁ । ଯେଉଁମାନେ ଆର.ଇ.ଓ.ରେ ଜବ୍ ୱାର୍କ ଭାବେ କାମ କରୁଥିଲେ ଭାବିଲେ ୫% ଅଧିକରେ କାମ କରି କିଛି ଲାଭ ମିଳୁଛି । ପିଡ଼ବ୍ଲୁଡ଼ି (ଆର.ଆଣ୍ଡ.ବି)ରେ ଯେ ୪୦ରୁ ଅଧିକ ରେଟ୍‌ରେ

କାମ କରୁଛି ସେ କେତେ ଲାଭ ନ କରୁଥିବ ? ସେମାନେ ମଧ୍ୟ ପିଡ଼ବ୍ଲୁଡ଼ି (ଆରଆଣ୍ଡବି) ରେ ଟେଣ୍ଡର ପକାଇଲେ । ଫଳରେ ସ୍ୱାର୍ଥ ପାଇଁ ଦୁଇଟି ଗୋଷ୍ଠୀ ମଧ୍ୟରେ ଚାଲିଲା ବିବାଦ । ଉଭୟ ଉଭୟଙ୍କ ବିରୁଦ୍ଧରେ ପିଟିସନ୍ ପକାଇଲେ । ପି.ଡ଼ବ୍ଲୁ.ଡ଼ି (ଆର ଆଣ୍ଡ ବି)ର ଚିଫ୍ ଇଞ୍ଜିନିୟର ମମତାଜ ଅଲ୍ଲି ଏହି ପିଟିସନ୍ ପ୍ରତି ଆଦୌ ଗୁରୁତ୍ୱ ଦେଲେନି । କିନ୍ତୁ ଆର.ଇ.ଓ.ର ଉପମନ୍ତ୍ରୀ ଏହି ପିଟିସନ୍ ଉପରେ ଚାହିଁଲେ ଅନୁଗୁଳ ସର୍କିଟ ହାଉସ୍ ମିଟିଂରେ ଘଟିଥିବା ଘଟଣା ଉପରେ ପ୍ରତିଶୋଧ ନେବାକୁ । ଚାଲିଲା ଇନ୍‌କ୍ୱାରି, ମୋର ଅଗୋଚରରେ ମୋ ବିରୁଦ୍ଧରେ ଗୋଟିଏ ବିରାଟ ରିପୋର୍ଟ ମୁଖ୍ୟଯନ୍ତ୍ରୀଙ୍କ ଜରିଆରେ ସରକାରଙ୍କ ପାଖକୁ ଚାଲିଗଲା । ପି.ଏଣ୍ଡ.ସି ଡିପାର୍ଟମେଣ୍ଟ (ଆର.ଇ.ଓ ସେତେବେଳେ ପି.ଏଣ୍ଡ.ସି. ଅଧୀନ) ଏହାକୁ ଭିଜିଲାନ୍ସ ଇନ୍‌କ୍ୱାରି ପାଇଁ ପଠାଇଲେ । ଯେତେବେଳେ ଭିଜିଲାନସ୍ ଇନ୍ସପେକ୍ଟର ମୋ ବିରୁଦ୍ଧରେ କେଉଁ କେଉଁ ବିଷୟରେ ଇନ୍‌କ୍ୱାରି କରୁଛନ୍ତି ବୋଲି ଜାଣିଲି ମୁଁ ରିପୋର୍ଟର ଏକ ନକଲ ସଂଗ୍ରହ କରି ସିଧା ଅଧିକ୍ଷଣ ଯନ୍ତ୍ରୀଙ୍କୁ ପଚାରିଲି ଯେ ସେ କିପରି ଡ଼କାଯାଇଥିବା ଟେଣ୍ଡର ଓ ମୋର କାର୍ଯ୍ୟ ଫଳରେ ସରକାରଙ୍କର କେତେ ଲାଭ ହୋଇଛି ନ ଲେଖି ଓଲଟା ମୁଁ ଅସଦ୍ ଉଦ୍ଦେଶ୍ୟ ରଖି ଏ କାର୍ଯ୍ୟ କରିଛି ବୋଲି ଲେଖିଛନ୍ତି ? ଘାଟ ତିଆରି ହେବାଦିନଠାରୁ ସଦାବେଳେ ଲୋଡ଼୍‌ଟ୍ରକ୍ ଭୁବନବାଟେ ଯାଏ କାରଣ ଭୁବନ ଘାଟରେ ପାଣି ଅଧିକ ଥିବାରୁ ଡଙ୍ଗା ଯିବା ସମ୍ଭବ ହୁଏ ଓ ହାଲୁକା ଗାଡ଼ି କମଗରାବାଟେ ଯାଏ । ସେ କିଭଳି ଓଲଟା ଲେଖିଛନ୍ତି ଓ ସେ କିପରି କାଠଯୋଡ଼ି ଓ ମହାନଦୀ ମଧ୍ୟବର୍ତ୍ତୀ ଅଞ୍ଚଳ କଟକ ସିଟି ନୁହେଁ ବୋଲି ଲେଖିପାରିଛନ୍ତି ? ସେ ମୋ ପ୍ରଶ୍ନର ଉତ୍ତର ନ ଦେଇପାରି ନୀରବ ରହିଲେ । ମୁଁ ଢେଙ୍କାନାଳ ଡିଭିଜନକୁ ଆସି ଷ୍ଟାଫ୍ ମାନଙ୍କୁ କହିଲି, "ତୁମ୍ଭେମାନେ ମୁଁ ଥିବା ସମୟରେ ମୋ ପ୍ରତି ଏତେ ଅନୁଗତ ଥିଲ, ଆଜି ଯେତେବେଳେ ଫାଇଲ୍‌ଟାଏ ଖୋଜା ପଡ଼ିଲା କେହି ପରିଶ୍ରମ କଲନି । ଆଜି ମୋ ବିରୁଦ୍ଧରେ ଭିଜିଲାନ୍ସକୁ ରିପୋର୍ଟ ଗଲା । ସେ ଫାଇଲ୍ ନ ମିଳିଲେ ଆଜି ଅଫିସ୍ ଛାଡ଼ିବିନି । ଏହା କହି ମୁଁ ଏକଜୁକ୍ୟୁଟିଭ୍ ଇଞ୍ଜିନିୟରଙ୍କ ରୁମ୍ ଭିତରେ ନ ବସି ହଲ ଭିତରେ ବସିଲି । ଫାଇଲ୍ ଖୋଜା ଚାଲିଲା । ମାତ୍ର ୪୫ ମିନିଟ୍ ଭିତରେ ଫାଇଲ୍‌ଟି ମିଳିଗଲା । ଆସିଷ୍ଟାଣ୍ଟ

ଇଞ୍ଜିନିୟରଙ୍କୁ ଡାକି କହିଲି, ଆମେ ମଝିରେ, ଟାଉନ୍ ପଡ଼ିଲେ ଯଥା ଅନୁଗୁଳ ଓ କାମାକ୍ଷାନଗର, କଉରାସ୍ତା ଆଦି ପାଇଁ ଯେଉଁ ଅଧିକ ରେଟ୍ ଦେବା କଥା ଦେଉନାହାନ୍ତି । ସେ ସବୁ ପାଇଁ କଣ୍ଟ୍ରାକ୍ଟରମାନେ କେତେ ପାଇବା କଥା ଓ ସମୁଦାୟ କେତେ ପାଇଛନ୍ତି ତା'ର ଏକ ତୁଳନାତ୍ମକ ତାଲିକା ପ୍ରସ୍ତୁତ କରନ୍ତୁ । କଟକର ସିଟି ମେପ ଓ ଦୁଇଟି ଯାକ ନଦୀ ଘାଟର ଲଗବୁକ୍ ସଂଗ୍ରହ କରନ୍ତୁ । ଫେରିବା ବେଳେ ପେଟ୍ରୋଲ ପମ୍ପ ପାଖରେ ଏହି ପିଟିସନ୍‌ର ସୂତ୍ରଧର ନେତ୍ରାନନ୍ଦ ମିଶ୍ରଙ୍କୁ ଦେଖିଲି । ତାଙ୍କୁ କହିଲି, ମୁଁ ତ ସ୍ୱପ୍ନରେ ସୁଦ୍ଧା ତୁମର ଅମଙ୍ଗଳ ଚିନ୍ତା କରିନି । ଜବ୍‌ଓ୍ୱାର୍କରମାନଙ୍କ ଜରିଆରେ ମାଲ୍ ବୋହିବା ପାଇଁ ମୋର କୌଣସି ମନ୍ଦ ଉଦ୍ଦେଶ୍ୟ ନଥିଲା । ଥିଲା କେବଳ ଗୋଟିଏ ଉଦ୍ଦେଶ୍ୟ, ଢେଙ୍କାନାଳ ଜିଲ୍ଲାରେ ଉନ୍ନତିମୂଳକ କାମ ହେଉ ଓ ଲୋକମାନେ କାମଧନ୍ଦା ପାଇ ମଉଡ଼ିର ମୁକାବିଲା କରିପାରନ୍ତୁ । ତୁମେ ଆଜି ନିଜର ସ୍ୱାର୍ଥ ପାଇଁ ପିଟିସନ୍ ଲେଖି ମୋ ମନରେ ଯେଉଁ ଅଶାନ୍ତି ସୃଷ୍ଟି କରିଛ ସେଥିପାଇଁ ମୋ ହୃଦୟ କାନ୍ଦୁଛି, ଭଗବାନ କ'ଣ ନାହାନ୍ତି ? ସତରେ ଭଗବାନ ବୋଲି ଯଦି କିଛି ଥାଏ ତେବେ ଯେ ଏହାର ସୂତ୍ରଧର ଓ ଯେ ଏ ଅଶାନ୍ତି ସୃଷ୍ଟି କରିଛି ସେ ନିଶ୍ଚୟ ଦଣ୍ଡ ପାଇବ ।" ଏକ ନିଃଶ୍ୱାସରେ ଏତିକି କହିପକାଇ ଗାଡ଼ିରେ ଅନୁଗୁଳ ଚାଲିଗଲି । ଲୋକଙ୍କ ମୁଖରୁ ଶୁଣିଲି ସେ ପି.ଡ଼ବ୍ଲୁ.ଡ଼ି. (ଆର ଆଣ୍ଡ ବି)ରେ କେରେଜ କାର୍ଯ୍ୟ କରିବା ପୂର୍ବରୁ ତାଙ୍କର କିଛି ନଥିଲା । କେରେଜ କାମ ନେବା ପରେ ତିନୋଟି ଟ୍ରକ୍ ଓ ଗୋଟିଏ ଫିଆଟ୍ କାର୍ କିଣି ଗୋଟିଏ ବିରାଟ ଘର ତିଆରି କରି ଅତ୍ୟନ୍ତ ପ୍ରତିପତ୍ତିଶାଳୀ ଲୋକ ହୋଇପାରିଥିଲେ । ଏ ସଂପତ୍ତି ସବୁ ଅଚିରେ ହାତ ଛଡ଼ା ହୋଇଗଲା ଏବଂ ସେ ତାଙ୍କର ପୂର୍ବାବସ୍ଥାକୁ ଫେରିଆସିଲେ । ସେଦିନ ଅନ୍ତରରୁ ଉଦ୍‌ଗତ କୋହ ସଂଭାଳି ନ ପାରି ଏତେଗୁଡ଼ାଏ କଥା ଏକାବେଳକେ କହି ପକାଇଥିଲି । ପରେ ଅନୁତାପ କଲି ମୋ ମନର ବ୍ୟଥାକୁ ମନରେ ମାରି କିଛି ନ କହିଥିଲେ ବରଂ ଭଲ ହୋଇଥାଆନ୍ତା ବୋଲି ଭାବିଲି । ଆସିଷ୍ଟାଣ୍ଟ ଇଞ୍ଜିନିୟର ପିତାମ୍ବର ଧଳ ପୂରା ତାଲିକା କରି ଦେଖାଇ ଦେଲେ ଯେ ଆମେ ଜବ୍‌ଓ୍ୱାର୍କର ମାନଙ୍କୁ ମୋଟ ଉପରେ ସିଡ୍ୟୁଲରେଟ୍‌ରୁ କମ ଦେଇଛୁ । କମଗରା ବାଟେ ଲୋଡ଼୍‌ଟ୍ରକ୍ ଯିବାକୁ ପି.ଡ଼ବ୍ଲୁ.ଡ଼ି. (ଆର.ଆଣ୍ଡ.ବି)ର ନିଷୋଧାଜ୍ଞା ଓ କଟକ ସିଟି ମେପ୍ ଦେଇ ଚିଫ୍

ଇଞ୍ଜିନିୟର, ଆର.ଇ.ଓ.ଙ୍କ ପାଖକୁ ରିପୋର୍ଟଟିଏ ଦେଲି । ମୁଖ୍ୟମନ୍ତ୍ରୀ ଥାନ୍ତି ଆର୍ତ୍ତବନ୍ଧୁ ମହାନ୍ତି । ମୁଁ କେବେ ତାଙ୍କ ପାଖରେ କାମ କରିନଥିଲି । ଶୁଣିଥିଲି ସେ କେବେ ତାଙ୍କର ଅଧିନସ୍ଥ କର୍ମଚାରୀମାନଙ୍କୁ ପକାଇ ଦେବେନି । ତାଙ୍କୁ ସବୁକଥା କହିଲି । କିଭଳି ମରୁଡ଼ି ପରିସ୍ଥିତିରେ ବର୍ଷକୁ ଦେଢ଼କୋଟି ଟଙ୍କା କାମ କରାଯାଉଥିଲା ଓ ଟ୍ରକର ଅଭାବ ବେଳେ କମ ରେଟ୍‌ରେ କାମ କରି ସରକାରଙ୍କର ପ୍ରାୟ ୪୫ ହଜାର ଟଙ୍କା ଲାଭ କରିବା ସତ୍ତ୍ୱେ ମୋ ବିରୁଦ୍ଧରେ ଭିଜିଲାନସ୍ ଇନ୍‌କ୍ୱାରି ହୋଉଛି ବୋଲି କହିଲି, ତା ପରଦିନ ଫାଇଲ୍ ମଗାଇ ସେ ଚାରିଟି ମାତ୍ର ବାକ୍ୟ ଲେଖି ସରକାରଙ୍କୁ ତାଙ୍କ ରିପୋର୍ଟ ପଠାଇଦେଲେ ।

Sri B.C. Nayak as E.E. R.E. Division did some carrage by job work after inviting tenders. The inquiring officer reported without going through the tender file. Now the file has been located which will go to prove that the report of the S.E. Northen Rural Engineering Circle is not correct. I recommend that the case may be dropped or re-inquired by a superintending Engineer un-connected with the work.

ବାସ୍ ଏତିକିରେ ସେ କେଶ୍‌ଟି ଡ୍ରପ୍ ହୋଇଗଲା ଓ ଦୀର୍ଘ ୬ ମାସର ମୋର ମାନସିକ ଅଶାନ୍ତିରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ମୋର ୩ ବର୍ଷ ରହଣି କାଳ ମଧ୍ୟରେ ଦେରଜାଙ୍ଗ ଜଳସେଚନ ଯୋଜନାରେ ରେକର୍ଡ଼ ପରିମାଣ କାମ ସମ୍ପୂର୍ଣ୍ଣ ହୋଇପାରିଲା । ସମୁଦାୟ ୫ କୋଟି ଘନଫୁଟ୍ ମାଟିରୁ ମାତ୍ର ଦୁଇ କୋଟି ଘନଫୁଟ୍ ୧୯୬୦ରୁ ୬୭ ଭିତରେ ହୋଇଥିଲା, ମାତ୍ର ଦୁଇ ବର୍ଷରେ ବାକି ତିନିକୋଟି ମାଟି କାର୍ଯ୍ୟ ସମ୍ଭବ ହୋଇପାରିଲା । ସ୍ପିଲଓ୍ୱେର ସିଭିଲ୍ କାମ ମଧ୍ୟ ସମ୍ପୂର୍ଣ୍ଣ ହୋଇପାରିଲା । କେବଳ ଗେଟ୍‌ର ପାର୍ଟ ଲାଗିବା ପାଇଁ ସ୍ପିଲଓ୍ୱେକୁ ୭ ଫୁଟ୍ ତଳେ ରଖାଗଲା । ସମୁଦାୟ ୧୫,୦୦୦ ଏକର ଆୟକଟ ମଧ୍ୟରୁ ୮,୦୦୦ ଏକର ଜମିକୁ ଜଳଯୋଗାଇ ଦିଆଗଲା । ବାକି ୭ ହଜାର ଏକର ଜମିରେ କେନାଲ ଖନନ ପାଇଁ କେନାଲ ଡିଷ୍ଟ୍ରିବ୍ୟୁଟେରୀ ଓ ମାଇନର ଏଲାଇନମେଣ୍ଟ ହୋଇ ଭୂ-ଅର୍ଜନ କାର୍ଯ୍ୟ ସମ୍ପାଦିତ ହେଲା ।

ଏହା ଭିତରେ ସ୍ୱତନ୍ତ୍ର ଓ ଜନ କଂଗ୍ରେସ ମିଳିତ ସରକାର ଅବସର ଗ୍ରହଣ ବୟସ ୫୮ରୁ ୫୫କୁ ଖସାଇ ଦେଇଥାନ୍ତି । ଏହା ଫଳରେ ବହୁ ସିନିୟର ଅଫିସର

ଅବେଳରେ ଅବସର ଗ୍ରହଣ କଲେ । ମାଧବ ପାଣି ଓ କେ.ସି. ଦାସଙ୍କ ଅବସର ଫଳରେ ଜନାର୍ଦ୍ଦନ ତ୍ରିପାଠୀ ଜଳସେଚନ ବିଭାଗର ମୁଖ୍ୟଯନ୍ତ୍ରୀ ହେଲେ । ଇଷ୍ଟର୍ଣ୍ଣ ସର୍କଲର ଅଧିକ୍ଷଣ ଯନ୍ତ୍ରୀ ବନ୍ୟା ନିବାରଣର ଅତିରିକ୍ତ ମୁଖ୍ୟଯନ୍ତ୍ରୀ ହେଲେ । ପ୍ରଶାନ୍ତ ପାତ୍ର ଇଷ୍ଟର୍ଣ୍ଣ ସର୍କଲର ଅଧିକ୍ଷଣ ଯନ୍ତ୍ରୀ ହେଲେ । ଜନାର୍ଦ୍ଦନ ତ୍ରିପାଠୀ ସାହେବଙ୍କର ନିର୍ଦ୍ଦେଶକ୍ରମେ ଛୋଟ ମାଇନର ଓ ସବ୍ ମାଇନର ପାଇଁ ତିଆରି ହେଉଥିବା ସ୍କିନ୍ ଟାଇପ୍ ଓ କାସ୍କେଡ୍ ଟାଇପ୍ ଫଲର ପରିବର୍ତ୍ତନ କରାଯାଇ ଷ୍ଟେପ୍ ଫଲ ପ୍ରବର୍ତ୍ତନ କରାଗଲା । ଏହା ପରବର୍ତ୍ତୀ କାଳରେ ସବୁ ପ୍ରୋଜେକ୍ଟରେ ପ୍ରବର୍ତ୍ତିତ ହେଲା । ବହୁଦିନ ଧରି ଜମିର ଚକବନ୍ଦୀ ହେଉ ନଥିଲା । ତ୍ରିପାଠୀ ସାହେବଙ୍କ ଚେଷ୍ଟା ଫଳରେ ଓଡ଼ିଶାର ସବୁ ପ୍ରୋଜେକ୍ଟର ଚକବନ୍ଦୀ କରାଯାଇ ଜଳକର ଆଦାୟ ହେଲା ଓ ରିପେୟାର ଗ୍ରାଣ୍ଟ ମିଳିଲା । ପ୍ରଶାନ୍ତ ପାତ୍ର ଓ ତାଙ୍କ ସ୍ତ୍ରୀ ଅତ୍ୟନ୍ତ ମେଳାପି । କଟକ ଗଲେ ତାଙ୍କ ଘରେ ନ ଖୁଆଇ ଛାଡ଼ନ୍ତିନି । ସବୁ ଡ଼ିଭିଜନ ମିଶି ୨/୩ ମାସରେ ଥରେ ମିଳିତ ହୁଅନ୍ତି । ଏଭଳି ପିକ୍‌ନିକ୍ ଥରେ ପାରାଦ୍ୱୀପ, ଯାଜପୁର, ନୂଆପାଟଣାରେ ହୋଇଥିଲା । ସେ ସାରା ସର୍କଲର ଲୋକଙ୍କ ଭାତୃ ବନ୍ଧନରେ ବାନ୍ଧି ରଖିଥିଲେ । ପାତ୍ର ସାହେବ ଅଳ୍ପ କଥା କହନ୍ତି । ସେତେବେଳେ ଯାଜପୁରରେ ଥିଲେ ନିର୍ବାହୀଯନ୍ତ୍ରୀ ମୁକୁନ୍ଦ ମହାପାତ୍ର, ମହାନଦୀ ନର୍ଥରେ ଅଜିତ ରାୟ, ସାଉଥ୍‌ରେ ବାନାମ୍ବର ଦାସ, ଫ୍ଲଡ୍ ଇନ୍‌ଭେଷ୍ଟିଗେସନ୍‌ରେ ନରେଶ ରାଉତ । ସମସ୍ତଙ୍କ ଭିତରେ ଭଲ ବୁଝାମଣା ରହିଥିଲା ।

୧୯୬୯ ମସିହାରେ ଅନୁଗୁଳ ବ୍ଲକ୍‌ର ବେନ୍ତପୁର ଗ୍ରାମପଞ୍ଚାୟତରେ ପ୍ରଥମ ଥର ପାଇଁ ୧୦୦୦ ଏକର ଜମିରେ ଖରାଦିନେ ଟାଇଚୁଙ୍ଗ୍ ଋଷ ସମ୍ଭବ ହେଲା, ଅନୁଗୁଳ ଭଳି ଚିର ମରୁଡ଼ି ପ୍ରପିଡ଼ିତ ଅଞ୍ଚଳ, ସେଠାରେ ଖରାଦିନେ ଟାଇଚୁଙ୍ଗ ଋଷ, ଏହା ସେ ଅଞ୍ଚଳର ଋଷୀମାନଙ୍କ ମନରେ ଅପୂର୍ବ ଉନ୍ମାଦନା ସୃଷ୍ଟି କଲା । ବେନ୍ତପୁରର ସରପଞ୍ଚ ଓ ଅନୁଗୁଳ ପଞ୍ଚାୟତ ସମିତିର ଚେୟାରମ୍ୟାନ୍ ଦେବରାଜ ସାହୁଙ୍କ ଉତ୍ସାହରେ ବେନ୍ତପୁରଠାରେ ଥରେ ପଞ୍ଚାୟତ ସମିତି ବୈଠକ ବସିଲା । ଏହି ସମିତି ବୈଠକକୁ ଓଡ଼ିଶାର ଉପ ମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ବିଶେଷ ଅତିଥିଭାବେ ନିମନ୍ତ୍ରିତ ହୋଇଆସିଥାନ୍ତି । ତାଙ୍କ ବ୍ୟତୀତ ମୁଁ, ଜିଲ୍ଲା କୃଷି ଅଫିସର, କୋପରେଟିଭ୍ ଆସିଷ୍ଟାଣ୍ଟ

ରେଜିଷ୍ଟ୍ରାର ଓ ସିଭିଲ୍ ଏସ.ଡ଼ି.ଓ. ନିମନ୍ତ୍ରିତ ହୋଇ ଯାଇଥିଲେ । ସମସ୍ତେ କୃଷିକ୍ଷେତ୍ର ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । ଏପ୍ରିଲ ମାସରେ ଏକ ହଜାର ଏକର ଜମିରେ ସବୁଜ ଧାନ କ୍ଷେତ ହସି ଉଠୁଛି । ଏଗ୍ରିକଲଚର ଅଫିସର ଏକରକୁ ୩୦/୪୦ କୁଇଣ୍ଟାଲ ଧାନ ଫଳିବ ବୋଲି ମତ ପ୍ରକାଶ କଲେ । ଉପମୁଖ୍ୟମନ୍ତ୍ରୀ ମୋତେ ପଚାରିଲେ ଦେରଜାଙ୍ଗ ଡ଼େମ୍‌ରେ କେତେ ପାଣି ରହୁଛି । ମୁଁ କହିଲି ବର୍ତ୍ତମାନ ୧୫,୦୦୦ ମିଲିୟନ ଘନଫୁଟ ପାଣି ରହିବା ପାଇଁ ଯୋଜନା ହୋଇଛି । ମୋର ପ୍ରସ୍ତାବ ଅନୁସାରେ ଯଦି ୨୦ ଫୁଟ୍ ଗେଟ୍ କରି ପାଣି ରଖାଯାଏ ତେବେ ଏହାର ଜଳଧାରଣ କ୍ଷମତା ୨୨,୫୦୦ ମିଲିଅନ ଘନଫୁଟକୁ ବୃଦ୍ଧି ପାଇବ ଓ ଖରିଫ୍ ଋତୁରେ ଆୟକଟ ୨୭,୦୦୦ ଏକରକୁ ବଢ଼ିବା ସଙ୍ଗେ ସଙ୍ଗେ ରବି ଆୟକଟ ମଧ୍ୟ ୬୦୦୦ ଏକରରୁ ୮୦୦୦ ଏକରକୁ ବୃଦ୍ଧି ପାଇବ । ତାପରେ ସେ କୃଷିକ୍ଷେତ୍ରକୁ ଯାଇ ଜଣେ କୃଷକକୁ ତାର ନାମ ପଚାରିଲେ ଓ କେତେ ଜମି ଟାଇଚୁଙ୍ଗ କରିଛ ପଚାରିଲେ । ସେ କହିଲା, ଯେ ତା'ର ନାମ ଗୋବିନ୍ଦ ପ୍ରଧାନ ଓ ସେ ତାର ସମୁଦାୟ ୩ ଏକର ଜମିରେ ଟାଇଚୁଙ୍ଗ୍ ଚାଷ କରିଛି । ପବିତ୍ର ବାବୁ ସଙ୍ଗେ ସଙ୍ଗେ କହିଲେ, 'ତୁ ଚଷାଟି, ମୁଁ ବି ଜଣେ ଚଷା, ଏଠାକୁ ଯେଉଁ ବାବୁମାନେ ଆସିଛନ୍ତି, ତାଙ୍କ କଥା ଶୁଣିବୁନି, ମୋ କଥା ଶୁଣ । ମୁଁ ଚଷାପୁଅ । ଏମାନେ ତୋତେ ଗଛ ବଢ଼ାଇ ଦେବେ, ଓହ୍ଲାଇବାର ବାଟ ବତାଇବେ ନାହିଁ । କେତେବର୍ଷ ପରେ ତୋର ଜମି ପଡ଼ିଆ ହୋଇଯିବ । ତୋ ପିଲାଏ ଭୋକ ଉପାସରେ ମରିଯିବେ । ଦେଢ଼ ଏକର ଜମିରେ ଆସନ୍ତାବର୍ଷକୁ ଟାଇଚୁଙ୍ଗ୍ କରିବୁ । ବାକି ଦେଢ଼ ଏକର ପଡ଼ିଆ ରଖିବୁ । ଯେତେବେଳେ ଘନ ଘନ ଟାଇଚୁଙ୍ଗ୍ ଚାଷ କରି ତୋର ଜମି ପଡ଼ିଆ ହୋଇଯିବ ସେତେବେଳେ ଏହି ଦେଢ଼ ଏକର ଜମିରୁ ଯାହା ଫଳିବ ସେତିକିରେ ତୋ ପିଲାଙ୍କୁ ଅଧା ଖାଇବାକୁ ଦେଇ ବଞ୍ଚାଇବୁ । ତାଙ୍କର ଧାରଣା ଟାଇଚୁଙ୍ଗ୍ ଚାଷ କଲେ ୩/୪ ବର୍ଷ ପରେ ତାହା ଅକାମି ହୋଇଯିବ ଓ ସେଥିରେ ଆଉ କିଛି ଫଳିବନି । ଏହାଶୁଣି ଏତେ ଉତ୍ସାହରେ ଟାଇଚୁଙ୍ଗ୍ ଚାଷ କରାଇଥିବା ସବୁ ଅଫିସ୍‌ର, ଚେୟାରମେନ୍ ଓ ସରପଞ୍ଚଙ୍କ ମୁହଁ କଳା ପଡ଼ିଗଲା । ଏ ସଂପର୍କରେ ସୁଧୀ ପାଠକ ଓ ପାଠିକାମାନେ ସେମାନଙ୍କ ମତାମତ ଦେବାଟା ବରଂ ଭଲ ହେବ ।

ଆଠଗଡ଼ ସବ୍ ଡ଼ିଭିଜନଟିର ଅଧୀନରେ ରହିଥିଲା, ମହାନଦୀର ବାମ ପାର୍ଶ୍ୱରେ ଥିବା ନଦୀବନ୍ଧ ଓ ବ୍ରାହ୍ମଣୀ ନଦୀର ଉଭୟ ପାର୍ଶ୍ୱରେ ଥିବା ନଦୀବନ୍ଧ । ମହାନଦୀ କୂଳରେ ଅପେକ୍ଷାକୃତ ମଜଭୁତ ନଦୀବନ୍ଧ ନିର୍ମିତ ହୋଇ ସାରିଥାଏ । ଓଗାଳପୁର ଠାରେ ଥିବା ଦୁର୍ବଳ ନଦୀବନ୍ଧଟିକୁ ସୁଦୃଢ଼ କରାଯାଇ ବଡ଼ାମ୍ବାର ଏକ ବିସ୍ତୀର୍ଣ୍ଣ ଶସ୍ୟକ୍ଷେତ୍ରକୁ ରକ୍ଷା କରିବା ସମ୍ଭବପର ହୋଇଥିଲା । ତା' ବ୍ୟତୀତ ବାଙ୍ଗୁରସିଂହା ଠାରେ ନିର୍ମିତ ବୁରୁଜ ବା ସ୍ପର ନିର୍ମାଣ ଫଳରେ ଏହି ଗ୍ରାମଟିକୁ ମହାନଦୀର ବନ୍ୟା ଦାଉରୁ ରକ୍ଷା କରିବା ସମ୍ଭବ ହୋଇଥିଲା । ଏହି ବୁରୁଜ ନିର୍ମାଣ ଫଳରେ ମହାନଦୀର ଗତିପଥରେ ସାମାନ୍ୟ ପରିବର୍ତ୍ତନ ଘଟି ନଦୀର ଧାର ଗ୍ରାମଠାରୁ ଦୂରକୁ ଘୁଞ୍ଚି ଯାଇଛି । ସାପୁଆ ନଦୀର ଉଭୟ ପାର୍ଶ୍ୱରେ କେତେଗୁଡ଼ିଏ ବନ୍ଧ ନିର୍ମାଣ ହୋଇ ଜମିକୁ ବାଲିଚରରୁ ରକ୍ଷା କରୁଛି । କିନ୍ତୁ ବନ୍ଧଗୁଡ଼ିକ ନଦୀର ଧାରରେ ତିଆରି ହୋଇଥିବାରୁ ସାଧାରଣ ବନ୍ୟାରେ ସେଗୁଡ଼ିକ ଭାଙ୍ଗିଯାଏ । ନଦୀର ଏତେ ନିକଟରେ ନିର୍ମିତ ବନ୍ଧକୁ ରକ୍ଷା କରିବାକୁ ହେଲେ ତାର ଭିତରେ ପଟ ପଥର ପେକିଙ୍ଗ୍ ଦେବା ଦରକାର । ସେଥିପାଇଁ ଅର୍ଥର ଅଭାବ । ତଥାପି ସୀମିତ ସମ୍ବଳରେ ଯେତେଦୂର ସମ୍ଭବ ବନ୍ଧଗୁଡ଼ିକୁ ରକ୍ଷା କରାଯାଉଥାଏ । ବ୍ରାହ୍ମଣୀ ନଦୀର ବାମ ଓ ଦକ୍ଷିଣ ପାର୍ଶ୍ୱରେ ଜମିକୁ ବାଲିଚରରୁ ରକ୍ଷା କରିବା ପାଇଁ ପ୍ରଥମେ 'ପାରମିଏବଲ୍ ସ୍ପର' ତିଆରି ଆରମ୍ଭ ହୋଇଥିଲା । କିନ୍ତୁ ଏଗୁଡ଼ିକ ଫଳପ୍ରଦ ହେଲା ନାହିଁ । ତା'ର କାରଣ ହେଉଛି ଆମର ଲୋକ ଚରିତ୍ର । କଂକ୍ରିଟ୍ ବିମ୍‌କୁ ଭାଙ୍ଗି ରଡ଼ ନେଇଯିବାକୁ ଯେଉଁଠାରେ ଲୋକ ତତ୍ପର ସେଠାରେ ଦୁଇ ପାଖରେ କଂକ୍ରିଟ୍ ବିମ୍ ଦେଇ ମଝିରେ ବ୍ରସ୍‌ଉଡ଼ ପୁରାଇ ପାରମିଏବଲ୍ ସ୍ପର କରି ଜମିକୁ ବାଲିଚରରୁ ରକ୍ଷା କରିବା ଧୃଷ୍ଟତାର ପରିଚାୟକ । ତେଣୁ ମାଳବନ୍ଧ ନିର୍ମାଣ କରି ନାଳ ବା ଭେଳି ପାଖରେ ବନ୍ଧର ମୁଣ୍ଡକୁ ପଥର ପେକିଙ୍ଗ୍ ଦେଇଦେଲେ ଭେଲି ଷ୍ଟୋରେଜ୍‌ରେ ବ୍ୟାଘାତ ହେବନି । ଅପର ପକ୍ଷରେ ଜମି ବାଲିଦାଉରୁ ରକ୍ଷା ପାଇବ । ଏଭଳି ପ୍ରାୟ ୫୦ କି.ମି. ମାଳବନ୍ଧ ମୋର ଅନୁଗୁଳ ଡିଭିଜନରେ ରହଣିକାଳ ମଧ୍ୟରେ ନିର୍ମିତ ହୋଇଛି ।

ଢେଙ୍କାନାଳ ଡିଭିଜନ ନୂଆ । ସେଠାରେ ଷ୍ଟାଫ୍ ରହିବା ପାଇଁ ଘର ନଥିଲା କିନ୍ତୁ ଅନୁଗୁଳରେ ଷ୍ଟାଫ୍ ରହିବା ପାଇଁ ଯଥେଷ୍ଟ ଘର ଥିଲା । ଯେଉଁ କେତେଜଣଙ୍କ ପାଇଁ ଘର ନଥିଲା, ୧୦ ବଖରା ବେରକ୍ ବିଶିଷ୍ଟ ଘରକୁ କ୍ୱାଟରରେ ପରିଣତ

କରିଦେବାରୁ ଏ ସମସ୍ୟା ସମାଧାନ ହୋଇଗଲା । ଆଠଗଡ଼ ସବ୍‌ଡ଼ିଭିଜନ ପାଇଁ ଆଦୌ ଘର ନଥିଲା । ବଡ଼ମ୍ବା ଓ କାମାକ୍ଷାନଗରରେ ମଧ୍ୟ ଘର ତିଆରି ହେବା ଫଳରେ ଫିଲ୍ଡ ଅଫିସ୍‌ରମାନେ ଅପେକ୍ଷାକୃତ ସୁସ୍ଥ ବାତାବରଣ ମଧ୍ୟରେ କାମ କରିବାରେ ସୁଯୋଗ ପାଇଲେ । ଏହି ସମୟ ମଧ୍ୟରେ ଜଳସେଚନ ବିଭାଗ ମନ୍ତ୍ରୀ ଥାଆନ୍ତି ସୁରେନ୍ଦ୍ରନାଥ ପଟ୍ଟନାୟକ । ସେ ଜଣେ ଦକ୍ଷ ମନ୍ତ୍ରୀ । ଭୂରି ଭୋଜନରେ ତାଙ୍କର ପଟୁତା ସର୍ବଜନ ବିଦିତ । ତାଙ୍କ ଖାଇବା ପାଇଁ ନଦୀ ମାଛ ଓ ଚିକେନ୍ ତିଆରି ହେବା ଦରକାର । ମାଛର ଓଜନ ୩ କେଜିରୁ କମ୍ ହୋଇନଥିବ । ଏହା ପୋଖରୀ ମାଛ ନ ହୋଇ ନଦୀ ମାଛ ହେବା ଦରକାର । ନରମ ଚିକେନ୍‌ରେ ବିଭିନ୍ନ ପ୍ରକାରର ଖାଦ୍ୟ (ଭେରାଇଟି) ପ୍ରସ୍ତୁତ ହେବା ଦରକାର । ସାଙ୍ଗରେ ଆସନ୍ତି ପି.ଏ. ଲକ୍ଷ୍ମୀଧର ପଟ୍ଟନାୟକ । ସେ ପହଞ୍ଚିବା ସଙ୍ଗେ ସଙ୍ଗେ ରୋଷାଇ ଘର ପରିଦର୍ଶନ କରି ଆସନ୍ତି । ଯଦି ମାଛର ସାଇଜ୍ ବଡ଼ ହୋଇଥିବ ସେ ମନ୍ତ୍ରୀଙ୍କୁ ତାଙ୍କ ହାତ ଦେଖାଇବେ । ଯଦି ସାନ ହୋଇଥିବ ତାଙ୍କ କାନି ଆଙ୍ଗୁଳି ଦେଖାଇବେ । ଯଦି କାନି ଆଙ୍ଗୁଳି ଦେଖାଇଦେଲେ ସେଦିନ ପରିଦର୍ଶନଟି ନଷ୍ଟ ହୋଇଗଲା ।

ମନ୍ତ୍ରୀ ମିଛରେ ବିରକ୍ତ ହେବେ, ପେଟ ଖରାପର ବାହାନା କରିବେ । ମନ୍ତ୍ରୀ ସମସ୍ତଙ୍କ ସାଙ୍ଗରେ ନ ଖାଇ ଘରେ ଏକୁଟିଆ ଖାଆନ୍ତି । ଛୋଟ ପ୍ଲେଟ୍‌ରେ ମାଛ ବଢ଼ା ନ ହୋଇ ଭାତ ବାଢ଼ିବା ପ୍ଲେଟ୍‌ରେ ୪/୫ କିଲୋ ବଡ଼ ମାଛର ମୁଣ୍ଡ ବଢ଼ାଯିବ । ବଡ଼ ବଡ଼ ଚକା ୮/୧୦ ଖଣ୍ଡ ମାଛ, ପଖାଳଖିଆ ବେଳାରେ ବେଲେ ଚିକେନ, ଏଇ ହେଲା ତାଙ୍କର ମଧ୍ୟାହ୍ନଭୋଜନର ଖାଦ୍ୟ ତାଲିକା । ତାଙ୍କର ବ୍ରେକ୍‌ଫାଷ୍ଟ ଓ ଟି ମଧ୍ୟ ସେହି ଧରଣର । ୮ଟି ଲେଖାଏଁ ଅଣ୍ଡା ପୋଚ ଗୋଟିଏ ପ୍ଲେଟ୍‌ରେ ବଢ଼ାଯାଏ । ଏଭଳି ୨ ପ୍ଲେଟ୍ ଅଣ୍ଡା ପୋଚ, ଅଧକେଜି କାଜୁ, ଅଧ କେଜି କ୍ଷୀରରେ ସାମାନ୍ୟ କଫି ଗୋଳା ହେବ ଓ ୧ କେଜି ସେଓ ତାଙ୍କର ବ୍ରେକ୍‌ଫାଷ୍ଟ୍ । ଏଗୁଡ଼ିକର ବ୍ୟବସ୍ଥା ହୋଇଯାଇଥିଲେ । ମନ୍ତ୍ରୀ ମହୋଦୟ ସନ୍ତୋଷରେ ଖାଇ ପରିଦର୍ଶନ ଓ ସମୀକ୍ଷା କରିବେ, ନ ହେଲେ କଥା ସରିଲା ।

ଅନୁଗୁଳର କାମ କରିବାକୁ ମଳିଥିବା ସୁସ୍ଥ ପରିବେଶ ସହିତ ସେଠାରେ ଥିବା ବନ୍ଧୁମାନଙ୍କ ସ୍ନେହ, ଶ୍ରଦ୍ଧା ଆମ ପରିବାର ପାଇଁ ଅମୂଲ୍ୟ ସମ୍ପଦ ହୋଇ ରହିଯାଇଛି । ଅନୁଗୁଳ କଲେଜରେ ସେତେବେଳେ ପ୍ରିନ୍ସିପାଲ୍ ଥାନ୍ତି ଡ଼ାଃ. ଫନିଭୂଷଣ ଚଟାର୍ଜୀ,

ଫରେଷ୍ଟ କନଜରଭେଟର ଥାଆନ୍ତି ବିଶ୍ୱେଶ୍ୱର ଦାସ, ଡି.ଏଫ. ଓ. ଗୌର ଗୋବିନ୍ଦ ଦାସ, ଓ୍ୱର୍କିଙ୍ଗ୍ ପ୍ଲାନ୍ ଅଫିସର ଉଦୟନାଥ ଷଡ଼ଙ୍ଗୀ ଓ ପ୍ରଭାକର ପାଣି, ସିଲିକଲଚରିଷ୍ଟ ଥିଲେ ଅମ୍ବିକା ମହାନ୍ତି, ସିଭିଲ ଏସ.ଡ଼ି.ଓ. ଥିଲେ ଗୋବିନ୍ଦରାମ ଭଞ୍ଜ ଓ ସେକେଣ୍ଡ ଅଫିସର୍ ଗଦାଧର ମିଶ୍ର । ସନ୍ଧ୍ୟାବେଳେ କାହାରି ନା କାହାରି ଘରେ ତାସ ଖେଳରେ ଆଡ୍ଡା ଜମେ । ଆମେ ସବୁ ବ୍ରିଜ୍ ଖେଳରେ ବସିଯାଉଁ । ବୟୋଜ୍ୟେଷ୍ଠ ବିଶ୍ୱେଶ୍ୱର ବାବୁଙ୍କୁ ଲେଡ଼ିଜ୍‌ମାନଙ୍କୁ ବୁଲାଇବାରେ ଲଗାଇ ଦେଉଁ । ନୀରୁ ନାନୀ ଥଟ୍ଟାରେ କହନ୍ତି, ସମସ୍ତେ ତାସ ଖେଳିବ, ମୋ ବରଟି ସବୁବେଳେ ଡ୍ରାଇଭର ହେବ । ବିଶ୍ୱେଶ୍ୱର ବାବୁ ଅତି ମେଳାପି । ଯାହା ଘରକୁ ଯିବେ ଝିଅ ମାନଙ୍କୁ ଖୋଜି କହିବେ, ସୁନ୍ଦରୀମାନେ କୁଆଡ଼େ ଗଲେ ? ମିସେସ୍ ଋଟାର୍ଜୀ ସନ୍ଦେଶ ତିଆରି କରି ଖୁଆନ୍ତି । ତାଙ୍କ ସନ୍ଦେଶର ସାଇଜ୍ ବହୁତ ଛୋଟ । ବିଶ୍ୱେଶ୍ୱର ବାବୁ ତାଙ୍କୁ କହନ୍ତି ମାଡ଼ାମ୍ ଆପଣ ସନ୍ଦେଶକୁ ବଡ଼ କରନ୍ତୁ । ନଚେତ୍ ପ୍ଲେଟ୍ ସାଇଜ୍ ଛୋଟ କରି ଦିଅନ୍ତୁ । ମିସେସ୍ ଋଟାର୍ଜୀ ତାଙ୍କର ଏକମାତ୍ର ପୁଅକୁ ପ୍ରାଣଠାରୁ ଅଧିକ ଭଲ ପାଆନ୍ତି । ଥରେ ଅନୁଗୁଳ ଡିଭିଜନର କାଳୀ ପୂଜା ବେଳେ ସମସ୍ତେ ଯାତ୍ରା ଦେଖୁଥାଉ । ମିସେସ୍ ଋଟାର୍ଜୀ ତାଙ୍କ ପୁଅ ପାଖକୁ ଗୋଟିଏ ମଫଲର ମୋ ହାତକୁ ବଢ଼ାଇଦେଲେ । ମଫଲର ପିନ୍ଧିଲେ ତା ସାଙ୍ଗମାନେ ଥଟ୍ଟା କରିବେ ତେଣୁ ସେ ପିନ୍ଧୁନଥାଏ । ଶୀତ ହେଉଥାଏ, ଗୌର ଗୋବିନ୍ଦ ବାବୁ କହୁଥାନ୍ତି ମୋତେ ସେଇଟା ଦିଅ, ମୁଁ ମୁଣ୍ଡରେ ଗୋଡ଼ାଇବି । ତାଙ୍କ ପୁଅକୁ ଥଣ୍ଡା ହେଲେ ମିସେସ୍ ଋଟାର୍ଜୀଙ୍କ ଛାତି କ'ଣ ହୋଇଯିବ, ଏହା ଏକ ହାସ୍ୟରୋଳ ସୃଷ୍ଟି କଲା । ମିସେସ୍ ଋଟାର୍ଜୀ ମୋତେ ପୁଅ ଭଳି ଦେଖନ୍ତି, ଉମାକୁ ବୋହୂ ବୋଲି ସମ୍ବୋଧନ କରି କହନ୍ତି, ବୋହୂଟା କଥା ମାନୁନି, ମୋ ପୁଅ ଭଲ । ଅମ୍ବିକାବାବୁଙ୍କ ସ୍ତ୍ରୀ ଚୁପ୍‌ଚାପ୍ ହସୁଥାନ୍ତି । ତାଙ୍କ ଘରର ପକୋଡ଼ି ଓ ବରା ଉପରେ ସମସ୍ତଙ୍କର ଲୋଭ । ଗୌର ଗୋବିନ୍ଦ ବାବୁଙ୍କ ସ୍ତ୍ରୀ ନନ୍ଦିନୀ ଅପା ସବୁରେ ବ୍ୟସ୍ତ । କିନ୍ତୁ ବହୁତ ସ୍ନେହୀ । ଗୌର ଗୋବିନ୍ଦ ବାବୁଙ୍କୁତ ଆମ ପିଲେ ଛାଡ଼ନ୍ତି ନି । ମଉସା ହେଉଛନ୍ତି ସିଲାର ଜୀବନ । ତାଙ୍କ ଝିଅ ମାନି ଓ ଆମ ସାନ ଝିଅ ସିଲା ମକର ବସିଛନ୍ତି । ପି.ଟି.ସି. ପ୍ରିନ୍ସପାଲ ଥିଲେ ବିଜୟ ପାଣିଗ୍ରାହୀ ତାଙ୍କ ପରେ ଆସିଲେ ବିନୟ ମହାପାତ୍ର । ଉଭୟ ମେଳାପୀ ।

ଅନୁଗୁଳ କଲେଜର ରିଡ଼ର ପ୍ରଫୁଲ ଦାସ ବହୁତ ବ୍ରିଜ୍ ଖେଳ ପ୍ରିୟ । ତାଙ୍କ ସ୍ତ୍ରୀ ଅନୁରାଧା ମଧ ମେଳାପି । ବିଶ୍ୱେଶ୍ୱର ବାବୁଙ୍କ ବଡ଼ ଝିଅ ଗୀତାର ବିଭାଘର ସରିଯାଇଥାଏ । ସେ ସମସ୍ତଙ୍କୁ ମଉସା ଓ ମାଉସୀ ଡାକେ । ଆମେ ତା ପାଇଁ ଘାସକୁ ବଡ଼, ବେଣାକୁ ଛୋଟ ଭଳି । ଗଦାଧର ବାବୁଙ୍କ ପରିବାର ବହୁତ ମେଳାପୀ । ଆମେ କେତୋଟି ପରିବାର ଗୋଟିଏ ରଜ୍ଜୁରେ ବନ୍ଧା ହୋଇ ଯାଇଥିଲୁ । ସନ୍ଧ୍ୟା ହେଲେ ଘଲେ ଫୋନ୍, ଫୋନବାଲା ମଧ ଜାଣି ଯାଇଥିଲେ ୪୨ ମାଗିଲେ କହିବ ଏନଗେଜ୍ ଅଛି ୩୪ କି ୪୫ ଫ୍ରି ଅଛି ଦେବିକି ? ସେ ଜାଣେ ଏ ଦଳଟି ପରସ୍ପରକୁ ସନ୍ଧ୍ୟାରେ ନ ଭେଟି ରହିପାରିବେନି । ଶୀତ ଦିନରେ ୨/୩ଟି ପିକ୍‌ନିକ୍ । କାହାରି ବଦଳି ହେଲେ ୮/୧୦ ଦିନ ପାଇଁ ସମସ୍ତଙ୍କ ଘରେ ରୋଷେଇ ବନ୍ଦ । ସାଧାରଣ ଦିନରେ ମଧ ସନ୍ଧ୍ୟାବେଳେ କାହାରି ନା କାହାରି ଘରେ ବରା, ପକୋଡ଼ି, ଦହି ବରା ହୁଏ । ପିଲାମାନେ ସାନ ସାନ ହୋଇଥିଲେ, ଇଲା, ସିଲା, ନୀରୁ ନାନାଙ୍କୁ ଆଘର ମାଉସୀ, ନଳିନୀ ଅପାଙ୍କୁ ମକର ମାଉସୀ, ମିସେସ୍ ଘଟାର୍ଜୀଙ୍କୁ ସନ୍ଦେଶ ମାଉସୀ, ଅମ୍ବିକା ବାବୁଙ୍କ ସ୍ତ୍ରୀଙ୍କୁ ଦହିବରା ମାଉସୀ ଆଦି ନାମରେ ନାମିତ କରିଥାନ୍ତି । ୧୯୭୦ ମସିହା ଆରମ୍ଭରେ ପ୍ରଭାକର ପାଣିଙ୍କ ଝିଅ ବୁଢ଼ୀର ବିଭାଘର ହେଲା । ସାରା ଫରେଷ୍ଟ ଡିପାର୍ଟମେଣ୍ଟ ଉଠି ଆସିଲା । ଏତେଲୋକ ରହିବେ କେଉଁଠି ? ସର୍କିଟ୍ ହାଉସ୍, ଡାକ ବଙ୍ଗଳା ସବୁ ଭରିଗଲା । ପ୍ରତ୍ୟେକ ଅଫିସର ୨/୩ଟି ଫେମିଲିର ଦାୟିତ୍ୱ ନେଲେ । ଆଠଦିନ ଧରି ରୋଷେଇ ବନ୍ଦ । ତା ପରେ ହେଲା ଗୌର ଗୋବିନ୍ଦ ବାବୁଙ୍କ ବଡ଼ଭାଇ ଗୋପାଳ ବାବୁଙ୍କ ଝିଅ ଟୁଲିର ବାହାଘର, ପୁଣି ସେହିପରି ଆୟୋଜନ । ମଜାର କଥା ଏ ବିଭାଘର ବେଳେ ଗୌର ଗୌବିନ୍ଦ ବାବୁ ଅଷ୍ଟ୍ରେଲିଆରେ ଥିଲେ । ଗୋପାଳ ବାବୁ ଦିନେ ଆଗରୁ ଆସିଥିଲେ । କିନ୍ତୁ ବିଭାଘରେ ବିଶୃଙ୍ଖଳା ଆଦୌ ହୋଇନି । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଅଫିସରମାନେ ଆସିଥାନ୍ତି । ବିଭାଘର କାର୍ଯ୍ୟର ବିଭିନ୍ନ ଦାୟିତ୍ୱ ସମସ୍ତେ ବାଣ୍ଟିନେଲେ । ଫରେଷ୍ଟ ଡିପାର୍ଟମେଣ୍ଟର ଅଫିସରଙ୍କ ଭିତରେ ବୁଝାମଣା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା । ବାହାରୁ ଆସିଥିବା ଅଫିସରମାନେ ଅନୁଗୁଳର ଅଫିସରଙ୍କ ମଧରେ ଥିବା ସୁନ୍ଦର ବୁଝାମଣା ଓ ପରସ୍ପର ପ୍ରତି ସାହାଯ୍ୟ ସହାନୁଭୂତି ଦେଖି ବିସ୍ମିତ ହୋଇଥିଲେ । ସମସ୍ତେ ଏକ ସ୍ୱରରେ କହନ୍ତି, ଅନୁଗୁଳରେ

ଥିବା ବିଭିନ୍ନ ବିଭାଗର ଅଫିସରଙ୍କ ମଧରେ ଥିବା ବୁଝାମଣା ଅନ୍ୟ କୌଣସି ସ୍ଥାନରେ ମିଳିବନି ।

ଉମା ଢେଙ୍କାନାଳରେ ଥିବାବେଳେ ବି.ଏ ପାଶ୍ କରିସାରିଥିଲା । ଅନୁଗୁଳରେ ବି.ଇଡ଼ି କଲେଜ । ସୁବିଧା ଥିବାରୁ ସେ ବି.ଇଡ଼ି ପଢ଼ିବାକୁ ମନ କଲା । ନାମ ଲେଖା ହୋଇଗଲା । ସନ୍ଧ୍ୟାବେଳେ ସମସ୍ତେ ଗୋଟିଏ ଜାଗାରେ ବସିଛୁ ମିସେସ୍ ଚଟାର୍ଜୀ ପଚରିଲେ, ଉମା କାହିଁକି ଏତେ କଷ୍ଟ କରି ବି.ଇଡ଼ି ପଢ଼ିବ ? ମୁଁ ଉତ୍ତର ଦେଲି, ମୋ ସାଙ୍ଗରେ ବେଶୀ ଗଣ୍ଡଗୋଳ କଲେ ମୁଁ ଯେତେବେଳେ ତାକୁ ଡାଇଭର୍ସ୍ କରିଦେବି, ସେ ଚଳିବ, କିପରି ? ଡ଼ା. ଚଟାର୍ଜୀ କହିଲେ, ତାକୁ ଡାଇଭର୍ସ୍ କଲାପରେ ସେ କିପରି ଚଳିବ ଚିନ୍ତା କାହିଁକି ? ମୁଁ କହିଲି ଯେ, ଏତେ ବର୍ଷ ମୋ ସଙ୍ଗେ ଚଳିଲାଣି ତେଣୁ ତା ପ୍ରତି ଗୋଟାଏ କର୍ତ୍ତବ୍ୟ ଅଛି । ସେ କହିଲେ, ଯେ କର୍ତ୍ତବ୍ୟ କଥା ଭାବେ ସେ କ'ଣ ଡାଇଭର୍ସ୍ କରିପାରେ ? ଏହା ସେଦିନ ଏକ ହାସ୍ୟରୋଳ ସୃଷ୍ଟି କରିଥିଲା । ବୁଲୁ ଢେଙ୍କାନାଳରେ ପଢ଼ା ଆରମ୍ଭ କରି ୩ୟ ଶ୍ରେଣୀରେ ପଢୁଥିଲା । ଦୁଇ ଦୁଇଟି ସ୍କୁଲରେ ୩ୟ ଶ୍ରେଣୀ ପଢ଼ିବା ହେତୁ ତାର ପଢ଼ାରେ ବହୁତ ବ୍ୟାଘାତ ଘଟିଥିଲା । ୪ର୍ଥ ଓ ୫ମ ଶ୍ରେଣୀ ସେ ବଜାରପଢ଼ା ସ୍କୁଲରେ ପଢ଼ିଲା । ଇଲାର ପଢ଼ା ଅନୁଗୁଳରେ ଆରମ୍ଭ ହେଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଘର ପଛପଟେ ଗୋଟିଏ ସେଡ୍ ଭିତରେ କଲେଜ ପଢ଼ା ସ୍କୁଲ ଚାଲିଥାଏ । ସମସ୍ତଙ୍କର ସାହାଯ୍ୟ ଓ ସହାନୁଭୂତି ଫଳରେ ଏହା ଏକ ପୂର୍ଣ୍ଣାଙ୍ଗ ସ୍କୁଲରେ ପରିଣତ ହେଲା । ସିଲାର ପଢ଼ା ମୁଁ ଢେଙ୍କାନାଳ ଛାଡ଼ିବା ପରେ ଆରମ୍ଭ ହେଲା । ୧୯୬୯ ମେ ୨୯ ତାରିଖ ଦିନ ଆମର ସାନପୁଅ ପୁପୁଲୁ ଜନ୍ମ ଗ୍ରହଣ କଲା । ସେ ଜନ୍ମ ହେବା ପରେ ଉମା ଆଉ ବାହାରକୁ ଯିବା ଅସମ୍ଭବ ହୋଇପଡ଼ିଲା । କିନ୍ତୁ ଅନୁଗୁଳର ସାଙ୍ଗମାନେ ସବୁଦିନେ ଆମ ଘରେ ଗହଳି କରନ୍ତି । ପୁପୁଲୁ ଜନ୍ମ ବେଳେ ଉମା କଥା ଅନୁସାରେ ସେ ଟାଣି ଟାଣି ନିଶ୍ୱାସ ନେଉଥାଏ । ତାକୁ ସେ ଦଣ୍ଡେ ଛାଡ଼େନି । ଅବଶ୍ୟ ଡାକ୍ତରମାନଙ୍କ ମତରେ ତାର କିଛି ସ୍ୱାସ୍ଥ୍ୟଗତ ଅସୁବିଧା ନାହିଁ । ଉମା ମତରେ ତାର ବହୁତ ଟ୍ରବଲ । ଡାକ୍ତରଖାନାରେ ଡାକ୍ତର ଥିଲେ ଡ଼ାଃ. ନଇମ୍ ଓ ଶଚିଦାନନ୍ଦ ପ୍ରଧାନ । ଡ଼ାଃ ନାଇମଙ୍କ ପରେ କିଛିଦିନ ପାଇଁ ଡ଼ାଃ ଯୁଧିଷ୍ଠିର ମହାନ୍ତି ମଧ ଆସିଥିଲେ । ଡ଼ାଃ ଯୁଧିଷ୍ଠିର ମହାନ୍ତି

ମୋର ପୂର୍ବତନ ଶିକ୍ଷକ ଉମାକାନ୍ତ ମହାନ୍ତିଙ୍କ ସାନ ଭାଇ । ତାଙ୍କୁ ଆମେ ମଉସା ଓ ମାଉସୀ ବୋଲି ଡ଼ାକୁ । ସେମାନେ ଆମକୁ ବହୁତ ସ୍ନେହ କରନ୍ତି । ଡ଼ାଃ. ସଚିଦାନନ୍ଦ ପ୍ରଧାନଙ୍କର ବିଭାଘର ଅନୁଗୁଳରେ ହେଲା । ତାଙ୍କର ପ୍ରଥମ ସନ୍ତାନ ଗୋଟିଏ କନ୍ୟାରତ୍ନ ୧୯୭୦ରେ ଜନ୍ମ ଗ୍ରହଣ କଲା । ଆମେ ଶ୍ରଦ୍ଧାରେ ପରସ୍ପରକୁ ସମୁଦି ସମୁଦୁଣୀ ବୋଲି ଡ଼କାଡ଼କି ହେଉ ।

ଏକ ଆନନ୍ଦମୟ ପରିବେଶ ମଧ୍ୟରେ ୨ ବର୍ଷ ୯ ମାସ ବିତିଗଲା । ବହୁଦିନରୁ ଏମ.ଇ ପଢ଼ିବାକୁ ଇଚ୍ଛା ଥିଲେ ବି ପରିସ୍ଥିତି ଓ ପାରିବାରିକ ଅସୁବିଧା ଦୃଷ୍ଟିରୁ ପଢ଼ିବାକୁ ଯାଇପାରୁ ନଥିଲି । ରୁରୀକୀକୁ ପ୍ରତିବର୍ଷ ୩/୪ ଜଣ ସିଭିଲ ଇଞ୍ଜିନିୟର (ଡ଼ବ୍ଲୁ.ଆର.ଡ଼ି) ୱାଟର ରିସୋରସ୍ ଡ଼େଭେଲପ୍‌ମେଣ୍ଟ ପାଇଁ ପଠାଯାନ୍ତି । ଦରମା ସହିତ ଭତ୍ତା ପାଇ ପଢ଼ିବାର ସୁବିଧା ରହିଛି । ଆଗରୁ ଏକଜିକ୍ୟୁଟିଭ୍ ଇଞ୍ଜିନିୟରମାନଙ୍କୁ ପଠାଯାଉନଥିଲା । ୧୯୬୯ ମସିହାରେ ମନ୍ତ୍ରୀ ରାଜବଲ୍ଲଭ ମିଶ୍ରଙ୍କ ଜ୍ୱାଇଁ ଧନେଶ୍ୱର ପାତ୍ର ନିର୍ବାହୀ ଯନ୍ତ୍ରୀ ଯିବାକୁ ଋହିଁଲେ । ମନ୍ତ୍ରୀଙ୍କ ହସ୍ତକ୍ଷେପ ଫଳରେ ତାଙ୍କୁ ପଠାଗଲା । ସେ ବର୍ଷ ଏହାର ସବିଧା ନେଲେ ନିର୍ବାହୀଯନ୍ତ୍ରୀ ଜଗନ୍ନାଥ ତ୍ରିପାଠୀ ଓ ତାପର ବର୍ଷ ଏ ସୁବିଧା ନେବାକୁ ମୁଁ ଓ ଗୋପୀନାଥ ପାଢ଼ୀ ସ୍ଥିର କଲୁ । ଉମା କହିଲା, ମୁଁ ଯେପରି ହେଉ ପିଲାଙ୍କୁ ସମ୍ଭାଳି ଦେଢ଼ ବର୍ଷ ଚଳାଇଦେବି । ତୁମେ ତୁମର ଇଚ୍ଛା ପୂରଣ କରିବା ପାଇଁ ଏମ.ଇ ପଢ଼ି ଆସ । ସ୍ଥିର ହେଲା, ସେ ଅନୁଗୁଳରେ ରହିବ । ଆଗରୁ କଲୋନି ଭିତରେ ଗୋଟିଏ ଏକ ବଖରା ରେଷ୍ଟସେଡ଼୍ ତିଆରି ହୋଇଥିଲା । ଏହା ସୁବିଧାଜନକ ନ ହେବାରୁ ଅଫିସ୍ ପଛପଟେ ଥିବା ପଡ଼ିଆଟିରେ ରେଷ୍ଟସେଡ଼୍ ତିଆରି ହେଲା । ପୁରୁଣା ରେଷ୍ଟସେଡ଼୍‌ଟିକୁ ରିମଡ଼େଲିଂ କରି ସେଥିରେ ଉମା ଓ ପିଲାମାନଙ୍କୁ ରଖିଦେଇ ରୁରକୀ ଯିବାକୁ ସ୍ଥିର କଲି । ମୋ ଜାଗାରେ ଧନେଶ୍ୱର ପାତ୍ରଙ୍କର ପୋଷ୍ଟି ହୋଇଥାଏ । ସେ କାର୍ଯ୍ୟରେ ଯୋଗଦେଇ ନଥାନ୍ତି । ମୁଁ ଋହିଁଥିଲେ ସରକାରୀ ନିୟମ ଅନୁଯାୟୀ ଦେଢ଼ ବର୍ଷ ଧରି ଘର ରଖିପାରିଥାନ୍ତି । କିନ୍ତୁ କାଳେ ମୋର ଉତ୍ତରାଧିକାରୀଙ୍କର ଅସୁବିଧା ହେବ, ସେଥିପାଇଁ ଘର ଛାଡ଼ି କଲୋନୀ ଭିତରେ ଆଉ ଗୋଟିଏ ଘରେ ପିଲାମାନଙ୍କୁ ରଖିଦେଇ ଯିବାକୁ ଋହିଁଲି । ଋର୍ଜ ଦେବାର ୩ ଦିନ ଆଗରୁ ଘର ବଦଳାଇ ଦେଇ ନୂତନ ଘରକୁ ଆସିଲି । ମୁଁ

ଋର୍ଜ ଦେବା ଆଗରୁ ଘର ବଦଳାଇବାର ଦୃଶ୍ୟ ଦେଖି ଅଫିସ୍‌ର ଅଧିକାଂଶ ଷ୍ଟାଫ୍‌ଙ୍କ ଆଖି ଛଳ ଛଳ ହୋଇଗଲା । କିନ୍ତୁ ତାଙ୍କୁ ଉମା ବୁଝାଇ ଦେଲା, ଯେ ସେ ଆଉ ୩ ଦିନ ପରେ ସମସ୍ତଙ୍କ ସହ ସାଧାରଣ ନାଗରିକ ଭଳି ଚଳିବ । ୩ ଦିନ ଆଗରୁ ଘର ବଦଳାଇ ଦେଇଥିଲେ ସୁବିଧା ଅସୁବିଧା ଜଣାପଡ଼ିବ ଓ ସେଗୁଡ଼ିକର ସମାଧାନ ହୋଇଯିବ । ପିଲାମାନଙ୍କୁ ଗୋଟିଏ ଘରେ ରଖିଦେଇ ୧୯୭୦ ଜୁଲାଇ ୧୨ ତାରିଖ ଦିନ ଗୋପୀନାଥ ପାଢ଼ି ଓ ମୁଁ ରୁରକୀ ଅଭିମୁଖେ ଯାତ୍ରା କଲୁ । ପଛରେ ରହିଗଲେ ପ୍ରିୟପରିଜନ ଓ ପରିଚିତ କର୍ମକ୍ଷେତ୍ର ।



# ଚତୁର୍ଦ୍ଦଶ ପରିଚ୍ଛେଦ

## ଉଚ୍ଚ ଶିକ୍ଷା ଲାଭ

ଗୋଟିଏ ଭାବପ୍ରବଣତା ବଶତଃ ଉଚ୍ଚଶିକ୍ଷାର ଅଭିଳାଷ ନେଇ ଚାଲିଆସିଲି 'ରୁରକୀ' । ପାଠ ପଢ଼ିବା ପାଇଁ ସେଠାକାର ବାତାବରଣ ଅତ୍ୟନ୍ତ ଅନୁକୂଳ । ଏକ ବିସ୍ତୀର୍ଣ୍ଣ ଅଞ୍ଚଳ ଉପରେ ଭାରତରେ ଇଞ୍ଜିନିୟରିଂ ବିଦ୍ୟା ପ୍ରସାରଣ କ୍ଷେତ୍ରରେ ଏକ ଶତାବ୍ଦୀରୁ ଅଧିକ କାଳ ପର୍ଯ୍ୟନ୍ତ ନିଜକୁ ଉତ୍ସର୍ଗ କରି ଠିଆ ହୋଇଛି ରୁରକୀ ବିଶ୍ୱବିଦ୍ୟାଳୟ । ମେଟ୍ରିକୁଲେସନ୍ ପରୀକ୍ଷା ସମୟରେ ପରିମିତି ଓ ତ୍ରିକୋଣମିତି ବହିରେ ରୁରକୀ ବିଶ୍ୱବିଦ୍ୟାଳୟର ନାମ ପଢ଼ିଥିଲି । ଶୁଣିଥିଲି ଏହା ଇଞ୍ଜିନିୟରିଂ ଶିକ୍ଷା ପାଇଁ ସର୍ବଶ୍ରେଷ୍ଠ ଅନୁଷ୍ଠାନ । ମୋର ପ୍ରଥମ ନିର୍ବାହୀ ଯନ୍ତ୍ରୀ କାଶୀଶରଣ ମିଶ୍ରଙ୍କର ବହୁତ ଗର୍ବ ଥିଲା, ସେ ଜଣେ ରୁରକୀ ୟୁନିଭରସିଟି ଛାତ୍ର । ରୁରକୀ ଯାଇ ଦେଖିଲି ବିଶ୍ୱବିଦ୍ୟାଳୟଟିର ଦୁଇଟି ରୂପ । ଗୋଟିଏ ତାର ପୁରାତନ ରୂପ, ପୁରାତନ ଥମସନ୍ କଲେଜ ଅଫ୍ ଇଞ୍ଜିନିୟରିଂ ଭାବେ ଓ ଅନ୍ୟଟି ନୂତନ ଭାବେ ଗଢ଼ି ଉଠିଥିବା ରୁରକୀ ୟୁନିଭରସିଟି । କେତେବର୍ଷ ଆଗରୁ ଓଡ଼ିଶାର ପୂର୍ବତନ ରାଜ୍ୟପାଳ ସ୍ୱନାମଧନ୍ୟ ଇଞ୍ଜିନିୟର ଡ଼ାଃ. ଅଯୋଧ୍ୟାନାଥ ଖୋସଲା ଏହି ବିଶ୍ୱବିଦ୍ୟାଳୟର କୁଳପତି ଆସନ ଅଳଂକୃତ କରିଥିଲେ । ତାଙ୍କରି ଚେଷ୍ଟା ଫଳରେ ରୁରୁକୀ ବିଶ୍ୱବିଦ୍ୟାଳୟ ଭାରତ ସରକାରଙ୍କ ଠାରୁ ବିଭିନ୍ନ ପ୍ରକାର ଗ୍ରାଣ୍ଟ ପାଇ ନୂତନ ଅଟ୍ଟାଳିକା ଓ ରିସର୍ଚ୍ଚ ସେଣ୍ଟର ମାଧ୍ୟମରେ ନିଜର ଶୋଭାବର୍ଦ୍ଧନ କରିବାକୁ ସକ୍ଷମ ହୋଇପାରିଛି । ମୁଁ ପଢ଼ିବାକୁ ଯାଇଥିବା ୱାଟର ରିସୋର୍ସେସ୍ ଡ଼େଭେଲପମେଣ୍ଟ ଟ୍ରେନିଂ ସେଣ୍ଟର ହେଉଛି ତାଙ୍କର ଅନ୍ୟତମ ଅବଦାନ । ପ୍ରଥମେ ସେ ହୃଦୟଙ୍ଗମ କରିଥିଲେ ଯେ କଲୋମ୍ବୋ ପ୍ଲାନ୍ ଜରିଆରେ ଯେଭଳି ଭାରତୀୟ ଛାତ୍ରମାନେ ବିଦେଶରେ ଶିକ୍ଷା ଲାଭ କରୁଛନ୍ତି ଓ ବିଦେଶୀ ଜ୍ଞାନ ଓ ବିଦେଶରେ ଥିବା ନଦୀ ଓ ନାଳର ବୈଶିଷ୍ଟ୍ୟ ବିଷୟରେ ଜ୍ଞାନ ଆହରଣ କରୁଛନ୍ତି, ସେହିପରି ଆମ ଦେଶର ନଦୀ, ନାଳ ଓ ବୈଷୟିକ ଜ୍ଞାନ ଦ୍ୱାରା

ଏସିଆ ଓ ଆଫ୍ରିକାର ବିଭିନ୍ନ ଦେଶର ଛାତ୍ରମାନେ ଉପକୃତ ହୋଇପାରିବେ । ତେଣୁ ସେ ଭାରତ ସରକାର ତଥା ୟୁ.ଏନ.ଓ. ସହାୟତାରେ ଭାରତ ତଥା ଏସିଆର ଅନ୍ୟ ଦେଶ ଓ ଆଫ୍ରିକାରେ କାର୍ଯ୍ୟରତ ଇଞ୍ଜିନିୟରମାନଙ୍କ ସମୂହ କଲ୍ୟାଣର୍ଥେ ଏହି ଇନ୍‌ଷ୍ଟିଚ୍ୟୁସନ୍‌କୁ ରୁରକୀ ବିଶ୍ୱବିଦ୍ୟାଳୟର ଏକ ଅଂଶ ବିଶେଷ ଭାବେ ପ୍ରତିଷ୍ଠା କରିଯାଇଥିଲେ ହେଁ ଏହି ଇନ୍‌ଷ୍ଟିଚ୍ୟୁଟ୍‌ସନରେ ନାମଲେଖା ପାଇଁ ସର୍ବନିମ୍ନ ଯୋଗ୍ୟତା ୩ ବର୍ଷ ସରକାରୀ ବା ବେସରକାରୀ କ୍ଷେତ୍ରରେ ଅଭିଜ୍ଞତା । ଭାରତର ବିଭିନ୍ନ ପ୍ରଦେଶ ସି.ଡ଼ବ୍ଲ.ପି.ସି. ତଥା ଏସିଆ ଓ ଆଫ୍ରିକାର ବିଭିନ୍ନ ଦେଶରୁ ଛାତ୍ରମାନେ ଏହି ଅନୁଷ୍ଠାନରେ ଅଧ୍ୟୟନ କରି ଆଧୁନିକ ଇଞ୍ଜିନିୟରିଂ ବିଦ୍ୟା ସମ୍ବନ୍ଧରେ ଉଚ୍ଚତର ଶିକ୍ଷାଲାଭର ସୁବିଧା ପାଇବାକୁ ସକ୍ଷମ ହେଉଛନ୍ତି । ଆମର ପ୍ରଫେସର ଓ ହେଡ୍ ଅଫ୍ ଡ଼ିପାର୍ଟମେଣ୍ଟ ଥିଲେ ପ୍ରଫେସର କଟୋଚ୍ । ସେ ଭାକ୍ରା ନଙ୍ଗଲ ଡ଼େମରେ ଚିଫ୍ ଇଞ୍ଜିନିୟର ଭାବେ କାର୍ଯ୍ୟ କରି ଦକ୍ଷତାର ପରିଚୟ ଦେଇଥିଲେ । ତାଙ୍କ ବ୍ୟତୀତ ଭାରତ ପ୍ରସିଦ୍ଧ ସିଭିଲ ଇଞ୍ଜିନିୟରିଂ ପ୍ରଫେସର ଭରତ ସିଂ, ୟୁ.ପି. ଷ୍ଟେଟ୍ ରାମଗଙ୍ଗା ପ୍ରୋଜେକ୍ଟ ଚିଫ୍ ଇଞ୍ଜିନିୟର ପ୍ରହ୍ଲାଦ ଦାସ, ଆର.ଏସ. ଭାରସାନି, ଆନନ୍ଦ ପ୍ରକାଶ, ସିଙ୍ଗଲ, ଇଲେକ୍ଟ୍ରିକଲ ପ୍ରଫେସର କ୍ରିପାଲ ସିଂ, ବ୍ରିଜେଶ ଚନ୍ଦ୍ର ମେକାନିକେଲ ପ୍ରଫେସର ମହେଶ ବର୍ମାଙ୍କ ଭଳି ଦକ୍ଷ ଇଞ୍ଜିନିୟର ଏହି ଅନୁଷ୍ଠାନରେ ରହି ଏହାର ଗୌରବ ବୃଦ୍ଧି କରିଥିଲେ । ଏମାନଙ୍କ ବ୍ୟତୀତ ରୁରକୀ ବିଶ୍ୱବିଦ୍ୟାଳୟ ତଥା ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟ ତଥା ରିସର୍ଚ୍ଚ ସେଣ୍ଟରର ଡାଇରେକ୍ଟରମାନେ ମଝିରେ ମଝିରେ ବକ୍ତୃତା ଦେବାକୁ ଆସନ୍ତି । ମୋଟ ମପରେ ଏହି ଅନୁଷ୍ଠାନର ଶିକ୍ଷାଦାନ ଦାୟିତ୍ୱରେ ଥିବା ପ୍ରଫେସରମାନେ ଥିଲେ ଇଞ୍ଜିନିୟରିଂ ଥିଓରି ଓ ପ୍ରାକ୍ଟିକାଲ ଜ୍ଞାନର ଏକ ମଧୁର ସମନ୍ୱୟ ।

ଏଭଳି ଏକ ଅନୁଷ୍ଠାନ ଆଧୁନିକ ଇଞ୍ଜିନିୟରିଂ ଜ୍ଞାନ କୌଶଳ ଆହରଣ ପାଇଁ ଏକ ଉପଯୁକ୍ତ କ୍ଷେତ୍ର । ଅନୁଷ୍ଠାନରେ ଯୋଗଦେବା ପରେ ଦେଖିଲି ଶିକ୍ଷା ପାଇଁ ମୋର ପ୍ରଧାନ ପ୍ରତିବନ୍ଧକ ହୋଇ ଠିଆ ହୋଇଛି, ତ୍ରିଭାନ୍ଦ୍ରମର ପଢ଼ିଥିବା ଇଞ୍ଜିନିୟରିଂ ଶିକ୍ଷା ଓ ରୁରକୀରେ ଅଧ୍ୟୟନ ମଧ୍ୟରେ ଦୀର୍ଘ ୧୩ ବର୍ଷର ବ୍ୟବଧାନ । ଏହି ୧୩ ବର୍ଷ ମଧ୍ୟରେ ମୁଁ ଏକ ପ୍ରକାର ଇଞ୍ଜିନିୟରିଂ ଶିକ୍ଷାକୁ ଭୁଲି ଯାଇଥିଲି । ଏଭଳିକି

ମେଥମେଟିକ୍ସ ତଥା ଇରିଗେସନ୍ ଡିଜାଇନ୍‌ର ମୂଳ ଫର୍ମୁଲାତକ ମୋର ଆଦୌ ମନେ ନଥିଲା । ତେଣୁ ଆଉଥରେ ପୂର୍ବପାଠର ପୁନରାବୃତ୍ତି କରିବାକୁ ପଡ଼ିଲା । ତା ବ୍ୟତୀତ ଏହି ୧୩ ବର୍ଷ ମଧ୍ୟରେ ସଏଲ ମେକାନିକ୍ସର ଅଭୂତପୂର୍ବ ଉନ୍ନତି ହୋଇସାରିଛି । କେରଳରେ ଖୁବ୍ ଅଳ୍ପ ଅଞ୍ଚଳ ଜଳସେଚିତ । ତେଣୁ ଆମେ ଶିଖିଥିବା ଡିଜାଇନ୍ ବହୁତ ନିମ୍ନ ଧରଣର ଥିଲା । ରୁରକୀରେ ଦେଖିବାକୁ ପାଇଲି ସିଭିଲ ଇଞ୍ଜିନିୟରିଂରେ କେତେ ଉନ୍ନତି ହୋଇଛି ଓ ଆମେ ପଢ଼ିଥିବା ଇଞ୍ଜିନିୟରିଂ ବିଦ୍ୟା ଉପରେ କେତେ ରିସାର୍ଚ୍ଚ ହୋଇ ସାରିଲାଣି । ରୁରକୀ ବିଶ୍ୱବିଦ୍ୟାଳୟର ବିରାଟ ପୁସ୍ତକାଳୟରେ ବହି ଓ ଜର୍ଣ୍ଣାଲର ଅଭାବ ନାହିଁ । ପ୍ରଥମ ୨ ମାସ ମୁଁ ପାଠାଗାରରେ ୩/୪ ଘଣ୍ଟା ଲେଖାଏଁ ସମୟ ଅତିବାହିତ କରି ମୋର ପୂର୍ବ ଜ୍ଞାନକୁ ପରିମାର୍ଜିତ କଲି । ତା ପରେ ଆରମ୍ଭ ହେଲା ନୂତନ ଶିକ୍ଷାର ନୂତନ ଅଧ୍ୟାୟ । ବହୁତ ପରିଶ୍ରମ କରିବାକୁ ପଡ଼ିଲା । କିନ୍ତୁ ଯେତେବେଳେ ପ୍ରଥମ ସେମିଷ୍ଟାର ପରୀକ୍ଷାର ଫଳ ବାହାରିଲା, ଦେଖିଲି ଯେ ମୁଁ ପ୍ରଥମ ଶ୍ରେଣୀରେ ତୃତୀୟ ସ୍ଥାନ ଅଧିକାର କରିବାକୁ ସକ୍ଷମ ହୋଇଛି ଭାବିଲି ମୋର ଶ୍ରମ କିଛି ଅଂଶରେ ସାର୍ଥକ ହେଲା ।

ପ୍ରଥମ ସେମିଷ୍ଟାର ପରୀକ୍ଷାର ପ୍ରୋଗ୍ରାମ ବାହାରିପଡ଼ିଲା, ମେଥମେଟିକ୍ସ ଓ ସଏଲ୍ ମେକାନିକ୍ ପାଇଁ ଆଦୌ ଗ୍ୟାପ୍ ନାହିଁ, ଏଥିପାଇଁ ମୁଁ କ୍ଲାସ୍ ତରଫରୁ ଡ଼ଃ. ଭରତ ସିଂଙ୍କ ପାଖରେ ଆପତ୍ତି କଲି । ସେ ଆଶ୍ଚର୍ଯ୍ୟ ହୋଇ କହିଲେ, ଛାତ୍ରମାନେ କିଭଳି ପରୀକ୍ଷା ପ୍ରୋଗ୍ରାମରେ ହସ୍ତକ୍ଷେପ କରିବେ ? ମୁଁ କହିଲି ଯେ, ଏ ଅନୁଷ୍ଠାନରେ ଟ୍ରେନିଂ ନେଉଥିବା ଛାତ୍ରମାନେ ହେଉଛନ୍ତି ଟ୍ରେନିଂ ଅଫିସର, ସେମାନଙ୍କୁ କେବଳ ଛାତ୍ର ଭାବେ ଗଣନା କରିବା ଅନୁଚିତ । ସମସ୍ତେ ବହୁଦିନ ଧରି ମେଥିମେଟିକ୍ସ ଛାଡ଼ିଲେଣି । ସଏଲ ମେକାନିକ୍ସର ଏହି ୧୦ ବର୍ଷ ଭିତରେ ଅଭୂତପୂର୍ବ ଉନ୍ନତି ହେଇଛି, ତେଣୁ ସଏଲ ମେକାନିକ୍ ପୁରୁଣା ଟ୍ରେନିଂ ଅପିସରଙ୍କ ପାଇଁ ଏକ ନୂତନ ବିଷୟ, ତେଣୁ ଆପଣ ଲିଡ଼ର ସହିତ ପରାମର୍ଶ କରି ପ୍ରୋଗ୍ରାମ କରନ୍ତୁ । ସେଥର ଖାଲି ପରୀକ୍ଷା ପ୍ରୋଗ୍ରାମ ଲିଡ଼ରଙ୍କ ମତ ଅନୁସାରେ ପରିବର୍ତ୍ତନ ହେଲାନାହିଁ, ସେହିଦିନ ଠାରୁ ୟୁନିଭରସିଟିର ନିୟମ ବଦଳିଗଲା, ପରୀକ୍ଷା ପ୍ରୋଗ୍ରାମ ଲିଡ଼ରଙ୍କ ସହ ପରାମର୍ଶ କରି ଦିଆଯିବ । ଆଜି ପର୍ଯ୍ୟନ୍ତ ଏହି ନିୟମ ରୁରକୀ ବିଶ୍ୱବିଦ୍ୟାଳୟରେ ଚାଲିଆସିଛି ।

ପ୍ରଥମ ସେମିଷ୍ଟାର ପରୀକ୍ଷା ସରିଗଲା ନଭେମ୍ବର ମାସରେ, ତା ପରେ ଆରମ୍ଭ ହେଲା ଆମର ଦକ୍ଷିଣ ଭାରତ ଷ୍ଟଡ଼ି ଟୁର୍ । ଏହା ଭିତରେ ମୋତେ ଆମର ଇନ୍‌ଷ୍ଟିଚ୍ୟୁସନ୍‌ର ପ୍ରେସିଡ଼େଣ୍ଟ (ଲିଡ଼ର) ଭାବେ ନିର୍ବାଚନ କରିସାରିଥାନ୍ତି । ମୋ ଆଗରୁ ୩/୪ ଜଣ ଲିଡ଼ର ତାଙ୍କର କାର୍ଯ୍ୟ ଫଳରେ ଲୋକପ୍ରିୟତା ହରାଇସାରିଥାନ୍ତି । ଏହାର ପ୍ରଧାନ କାରଣ ହେଲା ଶୃଙ୍ଖଳାର ଅଭାବ । ଦକ୍ଷିଣଭାରତ ଟୁର୍ ପାଇଁ ପ୍ରତ୍ୟେକ ଟ୍ରେନିଂ ଅଫିସର ୨୫୦୦ ଟଙ୍କା ଓ ଉତ୍ତର ଭାରତ ଟୁର୍ ପାଇଁ ୧୦୦୦ ଟଙ୍କା ଲେଖାଏଁ ଜମା ଦିଅନ୍ତି । ଯାହା ବଳେ, ଟୁର୍ ଶେଷରେ ଫେରେଇ ଦେବା କଥା, କିନ୍ତୁ କେତେକ ଟ୍ରେନିଂ ଅଫିସର ଅଗ୍ରୀମ ଟଙ୍କା ଜମା କରିବାରେ ଅବହେଳା କରନ୍ତି, ତା ଫଳରେ ଯେଉଁମାନେ ତାଙ୍କର ବଳକା ଟଙ୍କା ଫେରି ପାଇବା କଥା, ସେମାନେ ସେଥିରୁ ବଞ୍ଚିତ ହୁଅନ୍ତି । ଲିଡ଼ର ନିର୍ବାଚିତ ହେବା ପରଦିନ ମୋତେ କ୍ଲାସ୍ ଦାୟିତ୍ୱରେ ଥିବା ପ୍ରଫେସର ପ୍ରହ୍ଲାଦ ଦାସ କହିଥିଲେ ଯେ ଅନ୍ତତଃ ଏ ବର୍ଷର ଲିଡ଼ର ଟୁର୍ ଟଙ୍କାକୁ ଠିକ୍ ଭାବରେ ଖର୍ଚ୍ଚ କରିବେ ଓ ଟ୍ରେନିଂ ଅଫିସରମାନଙ୍କୁ ହିସାବ ଦେବେ । ଟୁର୍ ଆରମ୍ଭର ୧୦ ଦିନ ଆଗରୁ ନୋଟିସ୍ ଦିଆଗଲା ଯେ ଅଫିସର ଅଗ୍ରିମ ଟଙ୍କା ଦାଖଲ କରିବେ, ଶୃଙ୍ଖଳାକୁ କଡ଼ା କରି ଲାଗୁ କରିବାରୁ ସେଥର ଟୁରଟି ବହୁତ ଶୃଙ୍ଖଳାର ସହିତ ପରିସମାପ୍ତ ହେଲା । ଏହି ଷ୍ଟଡ଼ିଟୁର୍‌ରେ ଆମେ ଦିଲ୍ଲୀଠାରେ ଯମୁନା ନଦୀ ଉପରେ ନିର୍ମିତ ଓକଲା ଆନିକଟ ଯାହାକି ୧୦୦ ବର୍ଷ ଧରି ଦେଶର ସେବା କରିଆସିଛି, ରାଜସ୍ଥାନର ରାଣାପ୍ରତାପ ସାଗର ଓ କୋଟା ବେରେଜ, ବରୋଦାର ତାପ୍ତି ନଦୀ ଉପରେ ନିର୍ମିତ ଓକେଇ ଡ଼େମ୍, ପୁନାର କୋୟନା ଡ଼େମ୍, ମାନ୍ଦ୍ରାଜର ବିଭିନ୍ନ ଫେକ୍ଟ୍ରି, କେରଳର ଇଡ଼ିକି ଆରଚ ଡ଼େମ୍ ଆଦି ଦେଖିବାର ସୁଯୋଗ ପାଇଲୁ । ଉକେଇ ବନ୍ଧ ଯୋଜନାରେ ବ୍ୟବହୃତ ଟାୟାର କମ୍ପେକସନ୍ ମେସିନାରି, ଭାରତର ପ୍ରଥମ ଆର୍ଚ୍ଚ ଡ଼େମ୍ ଇଡ଼ିକିର ନିର୍ମାଣ କୌଶଳ ଅତ୍ୟନ୍ତ ଶିକ୍ଷଣୀୟ ଥିଲା ।

ଦକ୍ଷିଣ ଭାରତ ଷ୍ଟଡ଼ିଟୁର୍ ପରେ ୩ ମାସ କ୍ଲାସ୍ ଚାଲିଲା । ତାପରେ ୧୫ ଦିନ ଉତ୍ତର ଭାରତ ଷ୍ଟଡ଼ିଟୁର ଓ ତାପରେ ପ୍ରୋଜେକ୍ଟ ରିପୋର୍ଟ ଲେଖିବା ପାଇଁ ୪୦ ଦିନ ସମୟ । ଉତ୍ତର ଭାରତ ଷ୍ଟଡିଟୁର୍‌ରେ ଦେଖିବାକୁ ମିଳିଲା, ଶତଦ୍ରୁ ନଦୀ ଉପରେ ନିର୍ମିତ ୭୫୦ ଫୁଟ୍ ଉଚ୍ଚତା ବିଶିଷ୍ଟ ଭାରତର ସର୍ବୋଚ୍ଚ ଡ଼େମ୍ ଭାକ୍ରାନଙ୍ଗଲ,

ବିପାସା ନଦୀ ଉପରେ ନିର୍ମିତ ବେଆସ ବନ୍ଧ ଓ ପେଙ୍ଗ ଡ଼େମ୍, ରାମଗଙ୍ଗା ଉପରେ ନିର୍ମିତ ରାମଗଙ୍ଗା ଡ଼େମ୍ । ରାମଗଙ୍ଗା ଓ ବେଆସ ଡ଼େମର ଉଚ୍ଚତା ୪୫୦ ଫୁଟ୍ । ଏ ଦୁଇଟି ଯାକ ବନ୍ଧ ହିମାଳୟର ପାଦ ଦେଶରେ ଅବସ୍ଥିତ । ସ୍ପିଲୱେ ନିର୍ମାଣ ପାଇଁ ଦୁଇଟି ଯାକ ବନ୍ଧରେ ଉପଯୁକ୍ତ ସ୍ଥାନର ଅଭାବ । ଗ୍ରେଭିଟି ଡ଼େମ୍ ନିର୍ମାଣ ପାଇଁ ଆବଶ୍ୟକ ପଥର ଚଟାଣ ବା ଦୁଇଟି ପାହାଡ଼ ମଧ୍ୟରେ ସେଡ଼େଲର ଅଭାବ । ତେଣୁ ପାହାଡ଼ର ଗୋଟିଏ ପାର୍ଶ୍ୱରେ ନିର୍ମିତ ହେଉଛି ଚୁଟ୍ ସ୍ପିଲୱେ । ବୁଢ଼ା ବୁଢ଼ୀଆଣୀ ଓ ଶାଳିଆ ଯୋଜନାର ରିପୋର୍ଟ ଲେଖାବେଳେ କିଛି ନ ମିଳିଲେ ଚୁଟ୍ ସ୍ପିଲୱେ ନିର୍ମାଣ ପାଇଁ ଜନାର୍ଦ୍ଦନ ତ୍ରିପାଠୀଙ୍କ ଉପଦେଶ ମନେ ପଡ଼ିଲା, ଯେଉଁଭଳି ଭାବରେ ପଥର ଚଟାଣ ଥିବା ସ୍ପିଲୱେ ପାଇଁ ଉପଯୁକ୍ତ ସ୍ଥାନର ଅଭାବ ଘଟିଲାଣି ଭାରତରେ ଜଳସେଚନ ଯୋଜନା ନିର୍ମାଣ ପାଇଁ ଏହି ଚୁଟ୍ ସ୍ପିଲୱେ ଗୁଡ଼ିକୁ ଏକମାତ୍ର ସହାୟକ ହେବେ । ଉତ୍ତରଭାରତ ଟୁର୍ ପରେ ଆରମ୍ଭ ହୋଇଗଲା, ପ୍ରୋଜେକ୍ଟ ରିପୋର୍ଟ କାମ । ୪/୫ ଜଣ ମିଶି ଗୋଟିଏ ଲେଖାଏଁ ଗ୍ରୁପ୍ ହେଲେ । ଆମ ଗ୍ରୁପ୍‌ରେ ରହିଲେ ମୋର ବନ୍ଧୁ ଗୋପୀନାଥ ପାଢ଼ୀ, ରଘୁରାମ ଓ ସିରିଆର ଜଣେ ଟ୍ରେନିଂ ଅଫିସର ହାଜାରେ । ଉମା ପିଲାମାନଙ୍କ ପଢ଼ା ପାଇଁ ଅନୁଗୁଳରେ ବର୍ଷେ ହେବ ଏକୁଟିଆ ରହିଲାଣି । ପରୀକ୍ଷା ସରିଗଲାଣି, ପିଲାମାନେ ବାପାଙ୍କ ଠାରୁ ବହୁତ ଦିନ ଧରି ବିଚ୍ଛିନ୍ନ ହୋଇ ରହିବା ଫଳରେ ବ୍ୟସ୍ତ ହୋଇପଡ଼ିଲେଣି । ପୁଣି ସେମାନେ ଆଗ୍ରା ଓ ଦିଲ୍ଲୀ ବାଟ ଦେଇ ତାଜମହଲ ଓ ଲାଲକିଲ୍ଲା ଦେଖି ଆସିବେ । ତେଣୁ ଅତ୍ୟଧିକ ପରିଶ୍ରମ କରି ୪୦ ଦିନର କାମକୁ ୩୦ ଦିନରେ ସାରିଦେଇ, ଆଗ୍ରାଗଲି । ଆଗ୍ରା ଓ ଦିଲ୍ଲୀରେ ୪ ଦିନ ରହି ସେମାନଙ୍କୁ ଧରି ରୁରକୀ ଆସିଲି ।

ଜୁନ୍ ମାସ ୧୫ ତାରିଖ ବେଳକୁ ଦ୍ୱିତୀୟ ସେମିଷ୍ଟର ପରୀକ୍ଷା ଆରମ୍ଭ ହୋଇଗଲା । ପରୀକ୍ଷା ପରେ ମିଳିବ ୭ ଦିନ ସମୟ । ଏହି ୭ ଦିନ ସମୟର ସଦୁପଯୋଗ କରି କାଶ୍ମୀର ପରିଭ୍ରମଣରେ ଯିବାକୁ ଚାହିଁଲେ ସବୁ ଟ୍ରେନିଂ ଅଫିସର । ୨ ବର୍ଷ ଧରି କାଶ୍ମୀର ପ୍ରୋଗ୍ରାମ ବନ୍ଦ ହୋଇଯାଇଥାଏ । ହେଡ୍ ଅଫ୍ ଡିପାର୍ଟମେଣ୍ଟ ରାଜି ହେଲେନି । ଗୋଟିଏ ଅଭିନବ ଉପାୟ ମନକୁ ଆସିଲା । ଦକ୍ଷିଣ ଭାରତ ଓ ଉତ୍ତର ଭାରତ ଟୁର୍ ପରେ ହିସାବ ଶେଷ କରି ଦେଖାଗଲା ଯେ ପ୍ରତି ଟ୍ରେନିଂ ଅଫିସର

କିଛି ଟଙ୍କା ଫେରି ପାଇବେ । ଏହି ଟଙ୍କା ଫେରାଇ ନ ଦେଇ ସବୁ ଟ୍ରେନିଂ ଅଫିସରଙ୍କ ତରଫରୁ ୟୁନିଭରସିଟିର ପ୍ରଫେସର ଓ ଭାଇସ୍ ଚ୍ଚାନସେଲରଙ୍କୁ ରିସେପସନ୍ ପାଇଁ ନିମନ୍ତ୍ରଣ କଲି । ହଷ୍ଟେଲ ଓ୍ୱାର୍ଡେନ୍ ପ୍ରଫେସର ନିଗମଙ୍କ ସହିତ ପରାମର୍ଶ କରି ଟ୍ରେନିଂ ଅଫସରଙ୍କ ସ୍ତ୍ରୀଙ୍କୁ ପି.ଏଚ.ଟି P.H.T(putting hub and through) ଡିଗ୍ରି ଦେବାକୁ ମନସ୍ଥ କଲି । ଏହାକୁ ୟୁନିଭରସିଟି ଭାଇସ୍‌ଚ୍ଚାନସ୍‌ରଙ୍କ ସ୍ତ୍ରୀ ମିସେସ୍ ଚୋପ୍ରା ପ୍ରଦାନ କଲେ । ରିସେପସନରେ ଟ୍ରେନିଂ ଅଫିସରଙ୍କ ସ୍ତ୍ରୀଙ୍କ ସହିତ ଯୋଗ ଦେଇଥିଲେ ସବୁ ପ୍ରଫେସରଙ୍କ ସ୍ତ୍ରୀ । ଏହା ଅତ୍ୟନ୍ତ ଆନନ୍ଦଦାୟକ ଉତ୍ସବରେ ପରିଣତ ହେଲା । ଉତ୍ସବ ଶେଷରେ ମୋତେ ସବୁ ପ୍ରଫେସର ଆସି ଅଭିବାଦନ ଜଣାଇଲେ । ଓ୍ୱାଟର ରିସୋର୍ସେସ ଇନ୍‌ଷ୍ଟିଚ୍ୟୁଟ୍‌ରେ ଏଭଳି ଆନନ୍ଦପୂର୍ଣ୍ଣ ଉତ୍ସବ କେବେ ହୋଇ ନଥିଲା । ନିଜେ ଭାଇସ୍‌ଚ୍ଚାନସଲର ଓ ତାଙ୍କ ସ୍ତ୍ରୀ ମୋତେ ଓ ହେଡ୍ ଅଫ୍ ଡ଼ିପାର୍ଟମେଣ୍ଟଙ୍କୁ ଅଭିବାଦନ ଜଣାଇବାକୁ ଭୁଲିଲେନି । ତାର ପରଦିନ ଯେତେବେଳେ ମୁଁ ହେଡ୍ ଅଫ୍ ଡ଼ିପାର୍ଟମେଣ୍ଟଙ୍କୁ କାଶ୍ମୀର ଟୁର୍ ପାଇଁ ଅନୁରୋଧ କଲି ସେ ମୋତେ କହିଲେ ଯେ, ଯଦି ଷ୍ଟାଫ୍ ମିଟିଂରେ ସମସ୍ତେ ରାଜି ହୁଅନ୍ତି ତେବେ ତାଙ୍କର ଆପତ୍ତି ନାହିଁ । ମୁଁ ମଧ୍ୟ ସବୁ ପ୍ରଫେସରଙ୍କୁ ଅନୁରୋଧ କଲି । ଯେତେବେଳେ ଷ୍ଟାଫ୍ ମିଟିଂ ଡକାଗଲା, ପ୍ରଫେସର ପ୍ରହ୍ଲାଦ ଦାସଙ୍କୁ ଛାଡ଼ିଦେଲେ ସମସ୍ତେ ଏକ ସ୍ୱରରେ ମୋ ପ୍ରସ୍ତାବକୁ ଯେ ସମର୍ଥନ କଲେ ସେତିକି ନୁହେଁ ଇଲେକ୍ଟ୍ରିକେଲ୍ ପ୍ରଫେସର କ୍ରିପାଲ ସିଂ ଓ ସିଭିଲ ଏସୋସିଏଟ୍ ପ୍ରଫେସର ମିଃ. ସିଙ୍ଗଲ ଷ୍ଟାଫ୍ ଇନ୍‌ଚ୍ଚାର୍ଜ ହୋଇଯିବାକୁ ସମ୍ମତି ପ୍ରଦାନ ମଧ୍ୟ କଲେ । ଟ୍ରେନ୍‌ରେ ପଠାଣକୋଟ୍ ପର୍ଯ୍ୟନ୍ତ ଯାଇ ସେଠାରୁ ଟୁରିଷ୍ଟ ବସ୍‌ରେ ଗଲୁ ଶ୍ରୀନଗର । ପାଞ୍ଚ ଦିନ ଧରି ପ୍ରୋଜେକ୍ଟ ଦେଖା ସହିତ କାଶ୍ମୀରର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖିବାର ସୁଯୋଗ ପାଇଲେ ଟ୍ରେନିଂ ଅଫିସରମାନେ । କନ୍ୟାକୁମାରୀ ଠାରୁ କାଶ୍ମୀର ପର୍ଯ୍ୟନ୍ତ ଭାରତର ବିଭିନ୍ନ ରାଜ୍ୟର ଇଞ୍ଜିନିୟର ନିଜ ପରିବାର ସହ ଏସିଆର ଅନ୍ୟ ଦେଶରୁ ଆସିଥିବା ଅଫିସରଙ୍କ ଗହଣରେ କାଶ୍ମୀର ଭ୍ରମଣ ଅତି ମନମୁଗ୍ଧକର । କାଶ୍ମୀରଠାରୁ କନ୍ୟା କୁମାରୀ ପର୍ଯ୍ୟନ୍ତ ଭାରତ ଏକ, ଏହାର ଲୋକମାନେ ବିଭିନ୍ନ ଭାଷା କହନ୍ତି, ଭିନ୍ନ ପୋଷାକ ପିନ୍ଧନ୍ତି, କିଏ ମାଂସ ଖାଏ ଓ କିଏ ମାଛ ପ୍ରିୟ ଓ ଅନ୍ୟ କେତେ ସମ୍ପୂର୍ଣ୍ଣ ନିରାମିଷାସୀ । କିନ୍ତୁ ସମସ୍ତେ ଯେ ଏକ ମହାଭାରତୀୟ ସଭ୍ୟତା ଓ ଏକ ଓ ଅଭିନ୍ନ, ସଂସ୍କୃତି ଓ ପରଂପରାର ଅଚ୍ଛେଦ୍ୟ ବନ୍ଧନରେ ବନ୍ଧା, ତାହା ମୋ ସହିତ ସମସ୍ତ ଟ୍ରେନିଂ ଅଫିସର ଅନୁଭବ କରିପାରିଲେ ।

କାଶ୍ମୀର ଟୁର୍ ପରେ ଆରମ୍ଭ ହୋଇଗଲା ତୃତୀୟ ସେମିଷ୍ଟାର ପାଇଁ ପଢ଼ା । ଏଣେ ଉମା ଓ ପିଲାମାନେ ଥାଆନ୍ତି, ବଡ଼ପୁଅ ବୁଲୁର ସପ୍ତମ ଶ୍ରେଣୀ ସ୍କଲାରସିପ୍ ପରୀକ୍ଷା, ବଡ଼ ଝିଅ ଇଲାର ପଞ୍ଚମ ଶ୍ରେଣୀ ସ୍କଲାରସିପ୍ ପରୀକ୍ଷା, ସାନ ଝିଅ ସିଲାର ତୃତୀୟ ଶ୍ରେଣୀ ସ୍କଲାରସିପ୍ ପରୀକ୍ଷା । କ୍ଲାସ୍ ଆରମ୍ଭ ହୋଇଗଲାଣି । ଅନୁଗୁଳକୁ ଆସିବାକୁ ମନ ବଳୁନି । ରୁରକୀରେ ଓଡ଼ିଆ ମିଡ଼ିୟମରେ ପଢୁଥିବା ପିଲାଙ୍କ ପାଇଁ ଟିଉସନ୍ ମାଷ୍ଟର ବା ମିଳିବେ କାହୁଁ । ଏମ.ଇ. ପଢ଼ା ସହିତ ପିଲାଙ୍କୁ ମଧ୍ୟ ପଢ଼ାଇ ଦେଖିଲି ମୁଁ ନିଜେ କିଛି ପଢ଼ିପାରୁନି । ତିନି ଜଣ ପିଲାଙ୍କୁ ପଢ଼ାଇ ଏମ.ଇ ପାଠ ଭଳି ପାଠରେ ମନୋନିବେଶ କରିବା ଏକାବେଳକେ ଅସମ୍ଭବ । ମାସେ ପରେ ଦେଖିଲି ପିଲାମାନଙ୍କୁ ଓଡ଼ିଶା ନ ପଠାଇଲେ ମୁଁ ପରୀକ୍ଷାରେ କିଛି ଲେଖି ପାରିବିନି, ଉମା ମଧ୍ୟ ମୋ ସହିତ ଏକମତ ହୋଇ ପିଲାଙ୍କୁ ଧରି ଓଡ଼ିଶା ଫେରିଆସିବା ପାଇଁ ରାଜି ହେଲା । ଦେଖିଲି ମେଥମେଟିକ୍ସ ଭଳି ମୋର ସବୁଠାରୁ ଫେଭୋରିଟ୍ ବିଷୟ ମଧ୍ୟ ମୋତେ କିଛି ଆସୁନି । ଭାରତର ସ୍ୱନାମଧନ୍ୟ ମେଥାମେଟିସିଆନ୍ ଗୋରଖ ପ୍ରସାଦଙ୍କ ପୁଅ ଡ଼ାଃ ଚନ୍ଦ୍ରିକା ପ୍ରସାଦଙ୍କ ମେଥମେଟିକ୍ସ ମଧ୍ୟ ମୁଁ ଆଦୌ ବୁଝି ପାରୁ ନଥାଏ, ଭାବିଲି ମେଥମେଟିକ୍ସରେ ଫେଲ୍ ହୋଇଯିବି । ଉମା ଓ ପିଲାମାନେ କିନ୍ତୁ ଅନୁଗୁଳ ଫେରିବାକୁ ନାରାଜ । ସେମାନେ ବର୍ଷେ କାଳ ଅନୁଗୁଳରେ ହଇରାଣ ହେଲେଣି । ଟ୍ରେନିଂରେ କୌଣସି ଅଫିସର ଗଲେ ସରକାରୀ ଘରକୁ ଛାଡ଼ିବାକୁ ବାଧ୍ୟ ନୁହଁନ୍ତି । ମୁଁ ଇଚ୍ଛା କରିଥିଲେ ଅନୁଗୁଳ ଜଳସେଚନ ଡିଭିଜନର ନିର୍ବାହୀ ଯନ୍ତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ କ୍ୱାଟରଟି ରଖିପାରିଥାନ୍ତି । କେଉଁ ବିଚାରରେ ମୁଁ ସେପରି କଲି ନାହିଁ, ତାହା ପୂର୍ବେ ଉଲ୍ଲେଖ କରିଛି । ସକ୍‌ସେସରଙ୍କ (ଉତ୍ତରାଧିକାରୀ) ସହିତ ସଦ୍‌ଭାବ ରଖିବା ଅଭିପ୍ରାୟ ରଖି ଘର ଛାଡ଼ି ଦେଲି କିନ୍ତୁ ମୋର ସକ୍‌ସେସର ଧନେଶ୍ୱର ପାତ୍ର ଓ ତାଙ୍କ ସ୍ତ୍ରୀ ମୋ ପରିବାର ସହ ସେ ସଦ୍‌ଭାବ ରଖିଲେ ନାହିଁ । ପ୍ରଥମେ ଆସି ଆମ ଘରକୁ ଆସିଥିବା ପାଣି କନେକସନ୍ କାଟିଦେଲେ । ଜଣେ ଚୌକିଦାର ଘର ଜଗୁଥିଲା । ସାନପୁଅ ପୁପୁଲୁ ମାତ୍ର ବର୍ଷକର ହୋଇଥାଏ । କାଳେ ମୋତେ ଖୋଜିବ ଭାବି ଜଣେ ବୟସ୍କ ଖଲାସି ଯାହାକୁ ସେ ବହୁତ ଆଦରି ଥିଲା ତାକୁ ଘର ଜଗିବା ପାଇଁ ରଖି ଆସିଥିଲି । ବାକି ସବୁ ପିଅନ ଖଲାସିଙ୍କୁ ତାଙ୍କ ଘରେ ଛାଡ଼ି ଆସିଥିଲି ।

କିନ୍ତୁ ତାଙ୍କ ସ୍ତ୍ରୀ ଘରକୁ ପାଣି ସଂଯୋଗ କାଟିବା ସଙ୍ଗେ ସଙ୍ଗେ ସେହି ଲୋକଟିକୁ ମାସେ ଭିତରେ ନେଇଗଲେ । ଖାଲି ସେତିକି ନୁହେଁ, ସବୁ ଷ୍ଟାଫ୍‌କୁ ଉମା ସହ ଅସହଯୋଗ କରିବାକୁ ପ୍ରବର୍ତ୍ତାଇଲେ । ସେଥିପାଇଁ ଉମା ଓ ପିଲାମାନେ ଅନୁଗୁଳ ଫେରିବାକୁ ନାରାଜ । କିନ୍ତୁ ମୋ ପଢ଼ା ପାଇଁ ସେମାନଙ୍କୁ ସେତିକି ତ୍ୟାଗ କରିବାକୁ ପଡ଼ିଲା । ମୋର ସକସେସ୍‌ର ଧନେଶ୍ୱର ପାତ୍ର ଆମର ପରିବାରକୁ ଏତେ ଅସୁବିଧାରେ ପକାଇଥିଲେ ମଧ୍ୟ ପିଲାମାନେ ସେ ଅସୁବିଧାକୁ ଅତିକ୍ରମ କରିଗଲେ, ଦୁଇ ଜଣଙ୍କ ସହାୟତାରୁ ଅନୁଗୁଳ ସବ୍-ଡ଼ିଭିଜନର ଆସିଷ୍ଟାଣ୍ଟ ଇଞ୍ଜିନିୟର ପ୍ରଦୀପ ମହାନ୍ତି ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ନିର୍ବାହୀଯନ୍ତ୍ରୀଙ୍କ ବାରଣ ସତ୍ତ୍ୱେ ସେ ଅଧିକାଂଶ ସମୟରେ ପିଲାମାନଙ୍କ କଥା ବୁଝି ଯାଆନ୍ତି । ସବୁଠାରୁ ବେଶୀ ଦାୟିତ୍ୱ ନେଇଥିଲେ, ସବ୍ ଆସିଷ୍ଟାଣ୍ଟ ଇଞ୍ଜିନିୟର ପ୍ରଭାକର ଶତପଥୀ । ସେ ବହୁଦିନୁ ଆମ ପରିବାର ସହିତ ସ୍ନେହ ବନ୍ଧନରେ ବନ୍ଧା । ତେଣୁ ସେ କୌଣସି କଥାକୁ ଭ୍ରୂକ୍ଷେପ ନ କରି ପିଲାମାନଙ୍କ ପୂରା ଦାୟିତ୍ୱ ନେଇଥାନ୍ତି । ପିଲାମାନେ ଫେରିବା ପରେ ମୋର ସାଙ୍ଗ ରମାକାନ୍ତ ପରାଶର (ଯେକି ଆଲିଗଡ଼ ବିଶ୍ୱବିଦ୍ୟାଳୟର ଗୋଲ୍ଡ ମେଡ଼ାଲିଷ୍ଟ)ଙ୍କ ଖାତା ଆଣି ପ୍ରଥମେ କପି କରି ପକାଇଲି । ତାପରେ ତାକୁ ବୁଝି ନିଜେ ପ୍ରଶ୍ନଗୁଡ଼ିକର ଉତ୍ତର କରିବାକୁ ଚେଷ୍ଟା କଲି । ୨/୩ ଥର ଚେଷ୍ଟା ପରେ ନିଜେ ନିଜେ ପ୍ରୋବ୍ଲେମ୍ ସମାଧାନ କରିପାରିଲି । ଏହି ଭଳି ୨ ମାସ ଅକ୍ଳାନ୍ତ ପରିଶ୍ରମ ପରେ ଯେତେବେଳେ ପରୀକ୍ଷା ଦେଲି ଦେଖିଲି ମୁଁ ମେଥମେଟିକ୍‌ସ୍ ପେପରରେ ୧୦୦ରୁ ୧୦୦ ଉତ୍ତର କରିବାକୁ ସକ୍ଷମ ।

୧୯୭୧ ସେପ୍ଟେମ୍ବର ୩୦ ତାରିଖ ସୁଦ୍ଧା ୩ୟ ସେମିଷ୍ଟାର ସରିଗଲା । ତା ସଙ୍ଗେ ସଙ୍ଗେ ୧୫ ମାସର ଟ୍ରେନିଂ ମଧ୍ୟ ସରିଗଲା । ୪ର୍ଥ ସେମିଷ୍ଟାର ହେଉଛି ଥେସିସ୍ ଲେଖା । ସେତେବେଳେ ସାଧାରଣ ଏମ.ଇ. ପାଇଁ ଦୁଇବର୍ଷ ସମୟ, ତିନିଟି ସେମିଷ୍ଟାର ପାଇଁ ୧୮ ମାସ ଓ ଥେସିସ୍ ପାଇଁ ୬ ମାସ । ୱାଟର ରିସୋରସ୍‌ରେ ଏମ.ଇ. କରୁଥିବା ଟ୍ରେନିଂ ଅଫିସରଙ୍କର ନନ୍ ଭୋକେସନାଲ୍ ଟ୍ରେନିଂ ହେଉଥିବାରୁ ୧୮ ମାସର ଥିଓରି ୧୫ ମାସରେ ସରିଗଲା । କିନ୍ତୁ ଥେସିସ୍ ପାଇଁ ସମୟ ୯ ମାସ । ସେଥିପାଇଁ ସରକାରଙ୍କ ତରଫରୁ କିଛି ସୁବିଧା ନାହିଁ । ନିଜେ ଛୁଟି ନେବାକୁ

ହେବ । ମୁଁ ମୋର ଗାଇଡ଼୍ ରାମଶଙ୍କର ଭାସାନିଙ୍କ ସହ ପରାମର୍ଶ କରି ଜୁନ୍ ମାସରେ ବିଷୟ ବାଛି ଦେଇ ସାରିଥିଲି । ଜୁଲାଇ ଠାରୁ ସେପ୍ଟେମ୍ବର ମଧ୍ୟରେ ମୁଁ ପ୍ରତିଦିନ ୨/୩ ଘଣ୍ଟା ପାଠାଗାରରେ କଟାଏ । ମୋ ଥେସିସ୍ 'ଓପନ ଚାନେଲ' ଫ୍ଲୋ' ବିଷୟରେ ବାହାରିଥିବା ଆର୍ଟିକଲ୍ ଗୁଡ଼ିକ ପଢ଼ି ଗୋଟିଏ ଖାତାରେ ରେଫେରେନସ୍ ଟିପି ସାରିଥାଏ । ଅକ୍ଟୋବର ପହିଲାରେ ଆରମ୍ଭ ହୋଇଗଲା ମୋର ଥେସିସ୍ କାମ । ୯ ମାସର କାମକୁ ମାସେ ଭିତରେ ସାରିଦେବା ଦେଖି ସବୁ ଟ୍ରେନିଂ ଅଫିସର ଓ ମୋର ଗାଇଡ଼୍ ମୋତେ ବିଜୁଳି ଟ୍ରେନିଂ ଅଫିସର ବୋଲି ଡାକିବା ଆରମ୍ଭ କରିଦେଇଥିଲେ । ଅକ୍ଟୋବର ୩୧ ତାରିଖ ଦିନ ଥେସିସ୍ ଗାଇଡ଼୍‌ଙ୍କ ଜିମା ଦେଇ ଚାଲିଲି, ଓଡ଼ିଶା ଅଭିମୁଖେ ।

ରୁରକୀକୁ ବିଭିନ୍ନ ରାଜ୍ୟରୁ ଟ୍ରେନିଂ ଅଫିସର ମାନେ ଆସିଥିଲେ । ସି.ଡ଼ବ୍ଲୁ. ପି. ସି. ରୁ ଆସିଥିବା ରମାକାନ୍ତ ପରାଶର ଓ ଚନ୍ଦପୁରୀ, ବିହାରରୁ ଆସିଥିବା ପାଣ୍ଡେ, ଗୋପାଳ ସିହ୍ନା, ଆ.କେ. ପ୍ରସାଦ, ୟୁପିର ସତ୍ୟବୀର ସିଂ ଓ ଗର୍ଗ, ମହିଶୂରର ଚନ୍ଦ୍ରା ରେଡ୍ଡି, ମଧୁକର, ରଘୁନାମ ଗୁରୁରାଜ ରାଓ, ପୁଟସ୍ୱାମୀ ଓ ରଙ୍ଗାନାଥନ୍ କେରଳର କୁମାର ଓ ଚନ୍ଦପୁରୀ, ମହାରାଷ୍ଟ୍ରର ସହସ୍ର ବୁଦ୍ଧେ ଓ କୁଲକର୍ଣ୍ଣି, ଗୁଜୁରାଟର ପାରମାର ଓ ଚୌହାନ୍ ରାଜସ୍ଥାନର ଗୁପ୍ତା, ସୁଖାନୀ, ଖେତ୍ ସିଂହ, ଆନ୍ଧ୍ରର ବଲ୍ଲଭ ରାମ ଓ ସିରିଆରୁ ଆସିଥିବା ହାଜାରେ ମୋର ଅନ୍ତରଙ୍ଗ ବନ୍ଧୁ ଥିଲେ । ରଘୁରାମ ଓ ମୁଁ ଦୀର୍ଘ ଦିନ ଧରି ଗୋଟିଏ ରୁମ୍‌ରେ ଅବସ୍ଥାନ କରିଥିଲୁ । ପରବର୍ତ୍ତି ସମୟରେ ତାଙ୍କର ପରିବାର ଆସିବା ପରେ ଆମର ବନ୍ଧୁତା ବହୁତ ବେଶି ବଢ଼ି ଯାଇଥିଲା । ଚନ୍ଦ୍ରା ରେଡ୍ଡିଙ୍କ ସ୍ତ୍ରୀ ଅତ୍ୟନ୍ତ ସ୍ନେହୀ । ମୁଁ ଉପମା ଓ ଇଟିଲି ଖାଇବାକୁ ଭଲପାଏ ବୋଲି ଅଧିକାଂଶ ଦିନରେ ମୋତେ ବ୍ରେକ୍ ଫାଷ୍ଟ ଖାଇବାକୁ ଡାକନ୍ତି । ଭଗବାନ ନିର୍ଦ୍ଦୟ, ଏତେ ସ୍ନେହୀ ସ୍ତ୍ରୀଟିକୁ ଅକାଳରେ ନେଇଗଲେ । ରୁରକୀ ଛାଡ଼ିବାର ମାତ୍ର ବର୍ଷକ ପରେ ଶୁଣିଲି ଟେଲିରିନ ଶାଢ଼ୀରେ ଷ୍ଟୋଭ୍ ନିଆଁ ଲାଗିଯିବା ଫଳରେ ମିସେସ୍ ରେଡ୍ଡିଙ୍କର ଅକାଳ ବିୟୋଗ ଘଟିଛି । ପରାଶର ଥିଲେ ଅନ୍ୟ ଏକ ଅନ୍ତରଙ୍ଗ ବନ୍ଧୁ । ତାଙ୍କ ଝିଅ ମେଧା ଥିଲା ସବୁ ଟ୍ରେନିଂ ଅଫିସରଙ୍କର ଆଦରଣୀୟା । ଥରେ ସେ ହଷ୍ଟେଲ୍ ସିଡ଼ିରେ ତିନିତାଲା ଛାତ ଉପରକୁ ସମସ୍ତଙ୍କ ଅଗୋଚରରେ ଉଠିଯାଇ ଛାତ ଉପରୁ ଟା ଟା କରୁଥିବାର ଦେଖାଗଲା । ଛାତ ଉପରେ ପାରାପେଟ୍ ନାହିଁ । ମାତ୍ର

ଦୁଇ ବର୍ଷର ଶିଶୁ । ଆମେ ସମସ୍ତେ ତଳେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆ ହୋଇ ଥାଉ । ଅନେକ ଭାବିଲେ ସେ ଶେଷଥର ପାଇଁ ସମସ୍ତଙ୍କୁ ଟା ଟା ଛଳରେ ଚିର ବିଦାୟ ମାଗୁଛି । ଏହି ସମୟରେ ମିସେସ୍ ସହସ୍ର ବୁଦ୍ଧେ ଦୌଡ଼ି ଦୌଡ଼ି ଛାତ ଉପରକୁ ଚଢ଼ିଗଲେ । ଉପରକୁ ପ୍ରାୟ ୬୦ ପାହାଚ ଅତିକ୍ରମ କରି ଆଖି ପିଛୁଳାକେ ପହଞ୍ଚିଯାଇ ମେଧାକୁ ଉଦ୍ଧାର କରି ଆଣିଲେ । ମିସେସ୍ କୁମାର ଭଲ ଗୀତ ଗାଇ ପାରନ୍ତି । ମିସେସ୍ ଛନ୍ଦପୁରୀ, ମିସେସ୍ ପରାଶର, ମିସେସ୍ ସତ୍ୟବୀର ସିଂ ଅତ୍ୟନ୍ତ ସୋସିଏଲ୍ । ସମସ୍ତଙ୍କ ପ୍ରଚେଷ୍ଟାରେ ହଷ୍ଟେଲ୍‌ର ଲେଡ଼ିସ୍ ମାନଙ୍କର ସପ୍ତାହରେ ଦୁଇଥର ବାନ୍ଧବୀ ମିଳନର ଯୋଗାଡ଼ ହୁଏ । ଜଣେ ଜଣେ ଭଦ୍ରମହିଳାଙ୍କ ଘରେ ସମସ୍ତେ ସପ୍ତାହରେ ୨ ଥର ମିଳିତ ହୁଅନ୍ତି । ଭାରତର ବିଭିନ୍ନ ପ୍ରାନ୍ତରୁ ଆସିଥିବା ମହିଳାମାନଙ୍କର ଏକତ୍ର ମିଳନ ଓ ବିଭିନ୍ନ ଭାଷା କହୁଥିବା, ବିଭିନ୍ନ ଖାଦ୍ୟ ଖାଇବାର ଅଭ୍ୟସ୍ତ ମହିଳାମାନଙ୍କର ଏଭଳି ଅପୂର୍ବ ସମାବେଶ ଆମ ବେଚ୍‌ର ଟ୍ରେନିଂ ଅଫିସର ତଥା ସମଗ୍ର ୟୁନିଭରସିଟିରେ ଏକ ଚହଳ ସୃଷ୍ଟି କରିଥିଲା । ଏହିଭଳି ହସ ଖୁସିରେ ୧୬ଟି ମାସ କଟାଇ ଫେରିଲି ଓଡ଼ିଶା । ରୁରକୀର ଏହି ଅନୁଭୂତି ଗୁଡ଼ିକ ଏକ ଅଲିଭାଗାର ହୋଇ ରହିଯାଇଛି ।

## ମୋ ଶ୍ୱଶୁରଙ୍କ ଦେହାନ୍ତ

ଉଚ୍ଚଶିକ୍ଷା ପାଇଁ ମୁଁ ରୁର୍‌କୀରେ ଏବଂ ଛୋଟ ଛୋଟ ପିଲାଙ୍କୁ ଧରି ତାଙ୍କ ବାପାଙ୍କ ଅନୁପସ୍ଥିତିରେ ଉମା ଅନୁଗୋଳରେ ଏକପ୍ରକାର ସ୍ୱାଛନ୍ଦ୍ୟ ରହିତ ଜୀବନ କଟାଇବା ବେଳେ ଅକ୍ଟୋବର ୧୨ ତାରିଖରେ ଆସିଲା ଶ୍ୱଶୁରଙ୍କର ବିୟୋଗ । ଏହା ଆମ ପାଇଁ ଏକ ନିଦାରୁଣ ଘଟଣା ଥିଲା । ହିନ୍ଦୁ ଧର୍ମରେ ପଞ୍ଚପିତାଙ୍କ ମଧ୍ୟରେ ଜନ୍ମଦାତାଙ୍କ ତଳକୁ ସ୍ଥାନ ହେଉଛି କନ୍ୟାଦାତାଙ୍କର । ତେଣୁ ପିତା ପ୍ରତି କନ୍ୟାର କର୍ତ୍ତବ୍ୟ ଯେପରି ଜୁଆଁଇର କର୍ତ୍ତବ୍ୟ ତହିଁରୁ କିଛି ଊଣା ନୁହେଁ । କିନ୍ତୁ ଆମର ଦୁର୍ଭାଗ୍ୟ ଆମେ ଉଭୟ ଶେଷ ଅବସ୍ଥାରେ ତାଙ୍କର ଟିକିଏ ସେବା କରି ପାରିଲୁନି । ଅନ୍ତିମ କାଳରେ ତାଙ୍କର ଶେଷ ଦର୍ଶନରୁ ମଧ୍ୟ ବଞ୍ଚିତ ହେଲୁ । ଏହି ଦୁଃଖ ମୋର ସହଧର୍ମିଣୀ ଉମାର ଅନ୍ତରତମ ପ୍ରଦେଶରେ ଗଭୀର କ୍ଷତ ଓ ବେଦନା ଆଣିଦେବା ସ୍ୱାଭାବିକ । ହୁଏତ ଏହା ତାର ସାରା ଜୀବନ ପାଇଁ ଏକ ଗଭୀର ଦୁଃଖଦ ଅନୁଭୂତି ଓ ସ୍ମୃତି ରୂପେ ରହିଯିବ । ପ୍ରତିକୂଳ ପରିସ୍ଥିତିରେ ଏବଂ ଅନିଚ୍ଛାକୃତ ଭାବେ ହେଲେ ବି ମୁଁ ମୋର କର୍ତ୍ତବ୍ୟ କରି ନ ପାରିବାର ଗ୍ଲାନିରୁ ମଧ୍ୟ ମୁକ୍ତ ହୋଇପାରି ନାହିଁ । କିନ୍ତୁ

ଏହା ହିଁ ଥିଲା ଆମ ପାଇଁ ବିଧି ନିର୍ଦ୍ଦେଶ । ଏଣୁ ଏ ଦୁଃଖକୁ ସହିଯିବା ଓ ଅତିକ୍ରମ କରାଯିବା ବ୍ୟତୀତ ବିକଳ୍ପ ପନ୍ଥା ଆମ ପାଇଁ ନଥିଲା ।

ଶ୍ୱଶୁର ଥିଲେ ଅତ୍ୟନ୍ତ କର୍ମଠ । ସେ ଶିକ୍ଷକତା ସହିତ ଟ୍ୟୁସନ୍ କରି ପୁଅ ଓ ୩ କନ୍ୟାଙ୍କୁ ଉଚ୍ଚ ଶିକ୍ଷା ଦେଇ ସୁପାତ୍ରରେ ଦାନ କରିଛନ୍ତି । ବଡ଼ ପୁଅ ବଂଶୀଧର ଖୁଣ୍ଟିଆ ଜଣେ ଫାଇନାନ୍ସ ଅଫିସର । ବଡ଼ ଜ୍ୱାଇଁ ଉପେନ୍ଦ୍ର ପଟ୍ଟନାୟକ ଡେପୁଟି ଡାଇରେକ୍ଟର ଏଗ୍ରିକଲଚର । ମଝିଆ ଜ୍ୱାଇଁ ମୁଁ ନିଜେ ଓ ସାନ ଜ୍ୱାଇଁ ରୁଦ୍ରପ୍ରସନ୍ନ ଜେନା ଡାଇରେକ୍ଟର ଟ୍ରେଜେରୀ ଭାବେ ଅବସର ଗ୍ରହଣ କରିଛନ୍ତି । ସେ ଥିଲେ କଠିନ ପରିଶ୍ରମୀ । ୧୯୬୮ରେ ଅବସର ଗ୍ରହଣକୁ ସେ ସହଜରେ ଗ୍ରହଣ କରି ପାରିଲେ ନାହିଁ । କର୍ମଠ ଜୀବନର ହଠାତ୍ ପରିସମାପ୍ତି ତାଙ୍କର ଆୟୁକୁ ମଧ କମାଇ ଦେଲା । ସେ ରୋଗାକ୍ରାନ୍ତ ହୋଇ ଅକାଳରେ ଇହଲୀଳା ସମ୍ବରଣ କଲେ ।

୧୯୭୧ ନଭେମ୍ବର ମାସରେ ରୁରକୀ ରୁ ଫେରି ଦେଖିଲି ମୋର ପୋଷ୍ଟିଂ ଜୟପୁର ଡିଭିଜନକୁ ହୋଇସାରିଛି । ତା ସଙ୍ଗେ ସଙ୍ଗେ ଭଦ୍ରକ ଇରିଗେସନ୍ ଡ଼ିଭିଜନରେ ପୋଷ୍ଟିଂ ପାଇଁ ଜନାର୍ଦ୍ଦନ ତ୍ରିପାଠୀ ସାହେବ ମୋର ନାମ ମଧ ସୁପାରିଶ କରି ପଠାଇଥାନ୍ତି । ନିଜ ଅଞ୍ଚଳର କେତେକ ଉନ୍ନତିମୂଳକ କାର୍ଯ୍ୟ ପାଇଁ ମନ ସବୁବେଳେ ବ୍ୟଗ୍ର ଥାଏ । ବିଶେଷତଃ କାଂଶବାଂଶ ନଦୀର ବନ୍ୟାର ପ୍ରତିକାର ପାଇଁ କିଛି କରିପାରୁ ନଥିବାରୁ ବ୍ୟସ୍ତ ଲାଗୁଥାଏ । ମୋର ଅଗୋଚରରେ ଯେତେବେଳେ ଭଦ୍ରକ ପୋଷ୍ଟିଂ ପାଇଁ ମୋର ନାମ ସୁପାରିଶ ହୋଇଥିବା କଥା ଶୁଣିଲି ମୁଁ ଅତ୍ୟନ୍ତ ଉଲ୍ଲସିତ ହୋଇପଡ଼ିଲି । ବାସୁଦେବପୁର, ସୋରୋ ଓ ଭଦ୍ରକରେ ଏକ ଆନନ୍ଦ ଉଲ୍ଲାସ ଖେଳିଗଲା । ଭଦ୍ରକର ଜଣେ କୃତୀ ଇଞ୍ଜିନିୟର ଏ ଅଞ୍ଚଳକୁ ଆସୁଛନ୍ତି । କିନ୍ତୁ ବିଧିରବିଧାନ ଭିନ୍ନ ପ୍ରକାର । ଭଦ୍ରକର କେତେକ ରାଜନୈତିକ ନେତା ଚାହିଁଲେ ସ୍ଥାନୀୟ ଇଞ୍ଜିନିୟରଙ୍କର ଭଦ୍ରକରେ ପୋଷ୍ଟିଂ ନ ହୋଇ ବାହାରର କୌଣସି ଇଞ୍ଜିନିୟରଙ୍କ ପୋଷ୍ଟିଂ ହେଉ । ଏହା ଶୁଣି ମୋତେ ଦୁଃଖ ଲାଗିଲା । ମୁଁ ଜାନୁୟାରୀ ମାସର ପ୍ରଥମ ସପ୍ତାହରେ ଜୟପୁର ଇରିଗେସନ୍ ଡିଭିଜନରେ ଯୋଗଦେଲି ।



## ପଞ୍ଚଦଶ ପରିଚ୍ଛେଦ

# ନୂତନଜ୍ଞାନର ପରିପ୍ରକାଶ ପାଇଁ ଏକ ପ୍ରଶସ୍ତ କ୍ଷେତ୍ର

ଜୟପୁର ଇରିଗେସନ୍ ଡିଭିଜନ ଅଧୀନରେ ମାତ୍ର ୩ଟି ସବ୍ ଡ଼ିଭିଜନ । ୨ଟି ଅପର କୋଲାବ ଯୋଜନାର ସର୍ଭେ କାର୍ଯ୍ୟ ପାଇଁ ଉର୍ଦ୍ଦିଷ୍ଟ ଓ ଅନ୍ୟଟି ସବ୍ ଡ଼ିଭିଜନ ବଂଶଧାରା ଓ ନାଗାବଳୀ ନଦୀର ବନ୍ୟା ନିୟନ୍ତ୍ରଣ ତଥା ବଡ଼ଯୋରା ଯୋଜନାର ସର୍ଭେ କାର୍ଯ୍ୟ ପାଇଁ । ମାଷ୍ଟର ଅଫ୍ ଇଞ୍ଜିନିୟରିଂ ପାଠ ସରିବା ସଙ୍ଗେ ସଙ୍ଗେ ଜୟପୁର ଇରିଗେସନ୍ ଭଳି ଇନ୍‌ଭେଷ୍ଟିଗେସନ୍ ଡିଭିଜନରେ ପୋଷ୍ଟିଂ ସହିତ ଯେଉଁ ଭଳି ନାଟକୀୟ ପରିସ୍ଥିତିରେ ମୋର ଭଦ୍ରକ ଇରିଗେସନ୍ ଡିଭିଜନରେ ପୋଷ୍ଟିଂରେ ବ୍ୟାଘାତ ସୃଷ୍ଟି ହେଲା ତାହା ମନକୁ ପ୍ରଥମେ ଏକ ଧକ୍କା ଦେଇଥିଲା । ଭାବିଲି ନୂତନ ଭାବେ ଆହରଣ କରିଥିବା ଜ୍ଞାନର ବିକାଶ ପାଇଁ ବୋଧହୁଏ ଏହି ପୋଷ୍ଟିଂ ଏକ ବିଧି ନିର୍ଦ୍ଦେଶ । ନୂତନ ଡିଭିଜନ, ରହିବା ପାଇଁ ଘର ନାହିଁ, ଅଫିସ୍ ଗୃହ ମଧ୍ୟ ତିଆରି ହୋଇନି । ପ୍ରଥମେ ତିଆରି ଆରମ୍ଭ ହୋଇଥିବା ଦୁଇଟି ଇ-ଟାଇପ୍ ଘରକୁ ଯୋଡ଼ି କ୍ୱାର୍ଟର କରାଗଲା । ତାପରେ ଚାଲିଲା ଡିଭିଜନଟିକୁ ସଜାଡ଼ିବାର ପ୍ରଚେଷ୍ଟା । ମାତ୍ର ୫ ମାସ ମଧ୍ୟରେ ପ୍ରାୟ ସବୁ ଷ୍ଟାଫ୍‌ଙ୍କ ପାଇଁ କ୍ୱାର୍ଟର ତିଆରି ହୋଇଗଲା । ଅଫିସ୍ ଘର ମଧ୍ୟ ତିଆରି ଆରମ୍ଭ ହୋଇଗଲା ।

ଅପରକୋଲାବ୍‌ର ସର୍ଭେ ଏବଂ ଇନ୍‌ଭେଷ୍ଟିଗେସନ୍ କାମ ପ୍ରାୟ ସରିଯାଇଥାଏ । ପ୍ରୋଜେକ୍ଟର ପ୍ଲାନିଂ ଓ ରିପୋର୍ଟ ଲେଖା ଦାୟିତ୍ୱ ଜୟପୁର ଡିଭିଜନ ଉପରେ ନ୍ୟସ୍ତ ଥାଏ । ଅବଶ୍ୟ ଭୁବନେଶ୍ୱରରେ ଅବସ୍ଥାପିତ ଡାଇରେକ୍ଟର ଅଫ୍ ଡିଜାଇନ୍‌ଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହି କାର୍ଯ୍ୟ ଆରମ୍ଭ ହୋଇଥାଏ । ଦୁଇଜଣ ଆସିଷ୍ଟାଣ୍ଟ ଇଞ୍ଜିନିୟର ମଧ୍ୟରୁ ବି.ବି. ସିଂ ସାମନ୍ତଙ୍କୁ ଭୁବନେଶ୍ୱରରେ ଅବସ୍ଥାପିତ କରାଗଲା । ଅନ୍ୟ ଜଣେ ଆସିଷ୍ଟାଣ୍ଟ ଇଞ୍ଜିନିୟର ବିଦ୍ୟାଧର ସାହୁଙ୍କୁ ସାଇଟ୍ ଡାଟା ସଂଗ୍ରହ ଦାୟିତ୍ୱ ଦିଆଗଲା ।

କୋଲାବ ଓ ମାଛକୁଣ୍ଡ ନଦୀ ଦ୍ୱୟ ଓଡ଼ିଶାର ଆଧୁନିକ ପ୍ରଦୀପ ସଦୃଶ । ମାଛକୁଣ୍ଡ ନଦୀ ଜିଲ୍ଲାର ସର୍ବୋଚ୍ଚ ଶିଖରରୁ ବାହାରି ଓଡ଼ିଶା ଓ ଆନ୍ଧ୍ରର ସୀମାରେ

ପ୍ରବାହିତ ହୋଇଛି, ଅନ୍ୟ ପକ୍ଷରେ କୋଲାବ ନଦୀ ଅନ୍ୟ ଏକ ଶିଖରରୁ ବାହାରି ଓଡ଼ିଶା ଓ ମଧ୍ୟପ୍ରଦେଶର ସୀମାରେ ପ୍ରବାହିତ ହୋଇ ୩ଟି ରାଜ୍ୟର ମିଳନ ସ୍ଥଳ ଓ ଓଡ଼ିଶାର ଦକ୍ଷିଣସୀମା ମୋଟୁ ଠାରେ ପରସ୍ପର ସହିତ ମିଳିତ ହୋଇ ଚିନା ଗୋଦାବରୀ ନାମ ଧାରଣ କରି ଆନ୍ଧ୍ର ମଧ୍ୟରେ ପ୍ରବାହିତ ହୋଇ ଶେଷରେ ଗୋଦାବରୀ ସହିତ ମିଳିତ ହୋଇଛନ୍ତି । କୋରାପୁଟ ଜିଲ୍ଲାର ସର୍ବୋଚ୍ଚ ଶିଖରରୁ ନଦୀ ଦ୍ୱୟର ଆବିର୍ଭାବ ହୋଇଥିବାରୁ ଓ କୋରାପୁଟର ପତନ ସମୁଦ୍ରଠାରୁ ୩୦୦୦ ଫୁଟ୍ ଉଚ୍ଚରେ ଥିବାରୁ ଏହି ନଦୀ ଦ୍ୱୟ ନିଜର ଅବବାହିକାରେ ଅସଂଖ୍ୟ ଜଳପ୍ରପାତ ସୃଷ୍ଟି କରିଛନ୍ତି । ମାଛକୁଣ୍ଡ ନଦୀର ଏହିଭଳି ଏକ ବିରାଟ ଜଳପ୍ରପାତ 'ଡୁଡୁମା'କୁ ଉପଯୋଗ କରି ନିର୍ମିତ ହୋଇଛି ମାଛକୁଣ୍ଡ ଯୋଜନା । ଅନ୍ୟ ଏକ ଜଳପ୍ରପାତ (ନଦୀର ତୀଖ ଗଡ଼ାଣିଆ ଗତିପଥ)କୁ ଅବରୋଧ କରି ନିର୍ମିତ ହୋଇଛି ବାଲିମେଳା ଯୋଜନା । କୋଲାବ ନଦୀର ଜଳପ୍ରପାତର ପ୍ରଥମ ସଦୁପଯୋଗ ପାଇଁ ଉଦ୍ଦିଷ୍ଟ ଅପର କୋଲାବ ଯୋଜନା ସମୁଦ୍ର ପତନଠାରୁ ୩୦୦୦ ଫୁଟ୍ ଉଚ୍ଚରେ ଅବସ୍ଥିତ । କୋରାପୁଟ ନିକଟରେ ପ୍ରବାହିତ କୋଲାବ ନଦୀ ଜୟପୁରର ସମତଳ ଭୂମିକୁ ଅତିକ୍ରମ କରିବା ବେଳକୁ ପ୍ରାୟ ୧୦୦୦ ଫୁଟର ଜଳପ୍ରପାତ ସୃଷ୍ଟି କରିସାରିଛି । ତାର ଗତିପଥର ଏହି ଉଚ୍ଚତାର ତାରତମ୍ୟକୁ ବ୍ୟବହାର କରି ୩୨୦ ମେଗାୱାଟ୍ ବିଦ୍ୟୁତ୍ ଉତ୍ପାଦନ ସହିତ ୧ ଲକ୍ଷ ୧୨ ହଜାର ଏକର ଜମିରେ ଜଳସେଚନ ଅପର କୋଲାବ ଯୋଜନାର ଲକ୍ଷ୍ୟ । ଓଡ଼ିଶା, ମଧ୍ୟପ୍ରଦେଶ, ମହାରାଷ୍ଟ୍ର ଓ ଆନ୍ଧ୍ର ମଧ୍ୟରେ ଗୋଦାବରୀ ଜଳବଣ୍ଟନ ଚୁକ୍ତି ଅନୁଯାୟୀ ଅପରକୋଲାବ ଯୋଜନାର ଜଳକୁ ବ୍ୟବହାର କରିବା ପାଇଁ ଓଡ଼ିଶାର ପୂର୍ଣ୍ଣ ଅଧିକାର ରହିଛି । ମୋର ଜୟପୁରରେ ଯୋଗଦେବାର ଅଳ୍ପଦିନ ପୂର୍ବରୁ ଏହି ଜଳ ବଣ୍ଟନ ଚୁକ୍ତି ସ୍ୱାକ୍ଷରିତ ହୋଇଥାଏ । ତେଣୁ ଯୋଜନାଟିକୁ ପ୍ଲାନିଂ କରି ରିପୋର୍ଟ ଲେଖିବା ପାଇଁ ଥିବା ପ୍ରଥମ ପ୍ରତିବନ୍ଧକ ଦୂର ହୋଇସାରିଥାଏ ।

କୋରାପୁଟର ମାଳ ଅଞ୍ଚଳ ଦେଇ ପ୍ରବାହିତ ହୋଇଛି କୋଲାବ ନଦୀ । ଶିଳା ବନ୍ଧୁର ପଥରେ କଳ କଳ ନାଦ କରି ଛୁଟିଛି ତଟିନୀ କୋଲାବ । ନିଜର ବକ୍ଷ ଅତି ତୀଖ । ଯେଉଁଠାରେ ଗତିପଥ ସାମାନ୍ୟ ଗଡ଼ାଣିଆ ସେଠାରେ ସେ କଳ କଳ ନାଦରେ ଆଦିବାସୀ ରମଣୀଙ୍କର ମଧୁର ସ୍ୱର ସହିତ ତାଳ ଦେଇ ସୁମଧୁର ସଙ୍ଗୀତ ଗାଇ ଚାଲିଛି ଯୁଗ ଯୁଗ ଧରି । ଅନ୍ୟ ଯେଉଁଠି ଉଚ୍ଚ ଶିଖରରୁ ପ୍ରବଳ ବେଗରେ ଲମ୍ଫ

ପଦାନ କରିଛି ସେଠାରେ ସେ ସ୍ୱର ମିଳାଇଛି ନିଜ ତଟରେ ବାସ କରୁଥିବା ସିଂହ ଶାର୍ଦ୍ଦୁଳଙ୍କ ସ୍ୱର ସହିତ । ଆଉ କେଉଁଠାରେ କଳ କଳ ନାଦରେ ବୋହିଯାଇ ଗଣ୍ଡ ସହ ମିଳିତ ହୋଇ ନିଜର ସତ୍ତା ହରାଇ ବସିଛି । ଆଦିବାସୀ ଲଳନା ମହୁଲି ପିଇ ନିଜର ପ୍ରେମିକର କୋଳରେ ନିଜକୁ ହଜାଇ ଦେଇ କିଛି କ୍ଷଣ ନୀରବ ରହିବା ପରେ ନିଜର ସଙ୍ଗମାନଙ୍କ ହାସ୍ୟରୋଳରେ ନିଜ ସଂଜ୍ଞା ଫେରି ପାଇବା ପରି ଗଣ୍ଡରୁ ନିଜକୁ ଉଦ୍ଧାର କରି ପୁଣି ବନ୍ୟ କାକଳୀ ସହିତ ସ୍ୱର ମିଳାଇ ଚାଲିଛି ପାର୍ବତ୍ୟ ଝରଣା ରୂପେ । । ଏହି ପାର୍ବତ୍ୟ ଶଯ୍ୟାରେ ବାଲି ଓ ମାଟିର ଲେଶ ମାତ୍ର ନାହିଁ । ଦୁଇ ପାର୍ଶ୍ୱରେ ଧାଡ଼ି ଧାଡ଼ି ଶାଳ, ପିଆଶାଳ, ଶାଗୁଆନ୍ ଓ ମହୁଲ ବୃକ୍ଷ । କେଉଁ ବୃକ୍ଷ ଫୁଲ ଫଳରେ ଭରା ତ କେଉଁ ବୃକ୍ଷରେ ମଧୁ ମକ୍ଷିକାଙ୍କ ଫେଣାରେ ଭରି ରହିଛି ବର୍ଷର ସଞ୍ଚିତ ମହୁ । ମହୁଲରୁ ୩/୪ଟି ହାଣ୍ଡି ଡିକକସନ୍ ଉପାୟରେ ମଦ ତିଆରି କରିବା ଉପାୟ କେଉଁ ଯୁଗରୁ ଶିଖିଛନ୍ତି ଆଦିବାସୀମାନେ । ନଦୀର ତୀର ଦେଶରେ ଦେଶୀ ମଦ ତିଆରି ପାଇଁ ଗଢ଼ି ଉଠିଛି ଶହ ଶହ ଛୋଟ ଛୋଟ ମଦଭାଟି । ସେମାନେ ଡରନ୍ତିନି ପୋଲିସ୍‌କୁ କି ସରକାରଙ୍କୁ । ତାଙ୍କ ମତରେ ରାଜ୍ୟ ତାଙ୍କର, ନଦୀ ତାଙ୍କର, ଜଳ ତାଙ୍କର, ଗଛ ଓ ଫୁଲ ଫଳ ସବୁ ତାଙ୍କର । ସରକାରୀ ଜମିରେ ଲଗାଯାଇଥିବା ଗଛ ସରକାରଙ୍କର ମଦ ତିଆରି କରିବାର ଅଧିକାର କେବଳ ସରକାରଙ୍କର ଅଛି, ଏହା ସେମାନେ ତିଆରି କରିବା ବେଆଇନ, ଏକଥା ମାନିବାକୁ ସେମାନେ ପ୍ରସ୍ତୁତ ନୁହଁନ୍ତି ।

ତ୍ରିଭାନ୍ଦ୍ରମରେ ଅଧ୍ୟୟନ ସମୟରେ ଦିନେ ଆମର ପ୍ରଫେସର ରାଜାରାମ୍‌ନ କହି ପକାଇଥିଲେ ତାଙ୍କର କୋରାପୁଟର ଆସିଷ୍ଟାଣ୍ଟ ଇଞ୍ଜିନିୟର ଭାବେ ପୋଷ୍ଟିଂ ବିଷୟରେ ସେ ଅବିଭାଜିତ ମାନ୍ଦ୍ରାଜ ପ୍ରଦେଶର ଅଧିବାସୀ ହୋଇଥିବାରୁ ଓ ସେତେବେଳେ ଗଞ୍ଜାମ ଓ କୋରାପୁଟ ଜିଲା ଦୁଇଟି ମାନ୍ଦ୍ରାଜ ପ୍ରଦେଶ ଅଧୀନରେ ଥିବାରୁ ତାଙ୍କୁ କୋରାପୁଟରେ ପୋଷ୍ଟିଂ ହୋଇଥିଲା । ସେ କହୁଥିଲେ ଜାନୁୟାରୀ ଫେବୃୟାରୀରେ କୋରାପୁଟର ବିସ୍ତୀର୍ଣ୍ଣ ପାର୍ବତ୍ୟ ଉପତ୍ୟକାରେ ପୀତବର୍ଣ୍ଣ ସୋରିଷ ଅଡ଼ସୀ କ୍ଷେତ୍ରର ଦୃଶ୍ୟ ଅତ୍ୟନ୍ତ ମନୋରମ । ଢ଼େଉ ଢେଉକା ନୀଳବର୍ଣ୍ଣ ଶୈଳ ଶିଖରରେ ଅଳ୍ପ ପରିଶ୍ରମରେ ବନବାସୀ ମାନେ ସୋରିଷ ଚାଷ କରି ପୀତବର୍ଣ୍ଣ ଫୁଲର

ଯେଉଁ ପୁଷ୍ପ ଉଦ୍ୟାନ ସୃଷ୍ଟି କରନ୍ତି ତାହା ନ ଦେଖିଲେ କେହି ବିଶ୍ୱାସ କରିପାରିବେନି, କିନ୍ତୁ ଜାନୁୟାରୀ ମାସରେ କୋରାପୁଟ ଆସି ଦେଖିଲି, ପୋଡୁଚାଷ ଦ୍ୱାରା ପ୍ରକୃତିର ସେହି ଅପରୂପ ସୌନ୍ଦର୍ଯ୍ୟ କାଳର ଅତଳ ଗର୍ଭରେ ଲୀନ ହୋଇଯାଉଛି । ତା ସ୍ଥାନ ଅଧିକାର କରିଛି ଲଣ୍ଡା ପାହାଡ଼ । ଓଡ଼ିଶା ଓ ଆନ୍ଧ୍ରରୁ କୁମୁଟି ବ୍ୟବସାୟୀ କାଳକ୍ରମେ ଏହି ଜାଗା ଦଖଲ କରିନେଇଛନ୍ତି । ଆଦିବାସୀଙ୍କ ଜମି କେବଳ ଆଦିବାସୀଙ୍କୁ ହସ୍ତାନ୍ତର ସମ୍ଭବ । ସେମାନେ ଆମର ଆଦିବାସୀ ରମଣୀମାନଙ୍କୁ ଲୋଭ ଦେଖାଇ ବିବାହ ହୋଇ ତାଙ୍କୁ ଓ ତାଙ୍କ ପିଲାମାନଙ୍କୁ ଚାକରାଣୀ ଓ ଦିନ ମଜୁରିଆ ଭାବେ ବ୍ୟବହାର କରୁଛନ୍ତି । ତାଙ୍କ ନାମରେ ଜମି କିଣା ଚାଲିଛି । ଜମିର କବଲା ବାକ୍ସରେ ଚାବିପଡ଼ି ରହୁଛି । ସରଳ ଆଦିବାସୀମାନେ ଏହାର ପତ୍ତା ମଧ ପାଉ ନାହାନ୍ତି । କୁମୁଟି ମହାଜନର ପିଲାମାନେ ସମତଳରେ ରହି ଉଚ୍ଚଶିକ୍ଷା ପାଇ ବିଦେଶ ଯାଉଛନ୍ତି । ସରଳ ଆଦିବାସୀ ଚିରଦିନ ପାଇଁ ଅର୍ଦ୍ଧପରିହିତ ଅନୁନ୍ନତ ହୋଇ ରହିଯାଉଛି । ସରଳ ଆଦିବାସୀ ତାର ଅଭାବ ସମୟରେ କୁମୁଟି ମହାଜନଠୁ ଧାର ନେବ । ଧାର ସୁଝିବା ସମୟରେ ତାକୁ କୁହାଯିବ ଧାର ନେଲୁ ପାଞ୍ଚ, ଦେଲୁ ପାଞ୍ଚ, ସୁଧ ପାଞ୍ଚ । ଏଭଳି ବର୍ଷରେ ଶତକଡ଼ା ସୁଧ ୧୦୦ । ଅମଳ ସମୟରେ ସବୁତକ ଫସଲ ଧାର ସୁଝି ସେ ଯେଉଁ ଗରିବକୁ ସେହି ଗରିବ ।

ଏଭଳି ଏକ ମନୋରମ ନଦୀ, ମନୋରମ ପରିବେଶ ଓ ସରଳ ଶାନ୍ତିପ୍ରିୟ ଆଦିବାସୀ ସମ୍ପ୍ରଦାୟ ଅଧ୍ୟୁଷିତ ଅଞ୍ଚଳକୁ ଅପରକୋଲାବ ଯୋଜନା ଦ୍ୱାରା ଜଳମଗ୍ନ କରିବାକୁ ମନ ଆଦୌ ବଳୁ ନଥାଏ । କିନ୍ତୁ କର୍ତ୍ତବ୍ୟର ଆହ୍ୱାନ ପାଖରେ ଏସବୁ ଭାବ ପ୍ରବଣତାର ସ୍ଥାନ ନାହିଁ । ମୁଁ ଭାବୁକ ନୁହେଁ କି କବି ନୁହେଁ । ମୁଁ ଜଣେ ବାସ୍ତବବାଦୀ ଇଞ୍ଜିନିୟର । ମୋ କର୍ତ୍ତବ୍ୟ ଇକୋନୋମିକାଲ ଡ଼ିଜାଇନ୍ କରି ଜଳସେଚନ ଓ ଜଳ ବିଦ୍ୟୁତ କେନ୍ଦ୍ର ପ୍ରତିଷ୍ଠା କରିଦେଶକୁ ଆଗକୁ ବଢ଼ାଇବି । ମୁଁ ଭାବ ପ୍ରବଣ ହୋଇଗଲେ କର୍ତ୍ତବ୍ୟ ପ୍ରତି ଅବହେଳା କରିବାର ସମ୍ଭାବନା ରହିଛି । ତେଣୁ ମନକୁ ଦୃଢ଼ କରିନେଲି । ମନେ ପଡ଼ିଲା । ବିଭାଘର ବେଳେ ସାଙ୍ଗମାନେ ଲେଖିଥିବା କବିତାରୁ କେତେ ଧାଡ଼ି ।

"ଗିରି ଗର୍ବ ଅଭିମାନ ଭାଙ୍ଗିଚୁରି ଧୂଳିରେ ମିଶାଇ,
ସାଗର ମିଳନ ଛନ୍ଦ ତଟିନୀର ଅଚିରେ ତୁଟାଇ
ନିର୍ବିକାରେ ଜନପଦ ଜଳାର୍ଣ୍ଣବେ କରି ପରିଣତ,
ସ୍ଥପତି ସାଜିଛ ତୁମେ ହେ ଭାସ୍କର ମହା ଅବିନୀତ ।"

ବଂଧୁମାନେ କିଛି ବାସ୍ତବ ଓ କିଛି କଳ୍ପନାର ପୁଟ ଦେଇ ସେତେବେଳେ ଏ କବିତା ଲେଖିଥିଲେ । ଏବେ କଠୋର କର୍ତ୍ତବ୍ୟର ଆହ୍ୱାନ । ଓଡ଼ିଶାରେ ବିଦ୍ୟୁତ ଶକ୍ତିର ଅଭାବ । ରାମାୟଣ, ମହାଭାରତ ଯୁଗରେ ଯେଉଁ ରାଜ୍ୟର ଗୋ-ସମ୍ପଦରେ ଯେତେ ଅଧିକ, ସେ ରାଜ୍ୟ ସେତେ ସମୃଦ୍ଧ ଥିଲା । କିନ୍ତୁ ଆଧୁନିକ ଯନ୍ତ୍ର ଯୁଗରେ ଯେଉଁ ଦେଶରେ ବିଦ୍ୟୁତ ଶକ୍ତିର ବ୍ୟବହାର ଅଧିକ, ସେ ଦେଶ ସେତେ ସମୃଦ୍ଧଶାଳୀ । ତା ସାଙ୍ଗକୁ କୋରାପୁଟର ଆଦିବାସୀଙ୍କୁ ପ୍ରଦେଶର ଅନ୍ୟମାନଙ୍କ ସ୍ତରକୁ ଆଣିବାକୁ ପଡ଼ିବ । ତାଙ୍କର ପୋଡୁ ଚାଷକୁ ବନ୍ଦ କରି ତା ବଦଳରେ ଜଳ ଯୋଗାଣ ମାଧ୍ୟମରେ ଆଦିବାସୀ ସମ୍ପ୍ରଦାୟଙ୍କୁ ଉନ୍ନତ ଧରଣର ଚାଷ ପ୍ରଣାଳୀ ଶିକ୍ଷା ଦେବାକୁ ପଡ଼ିବ । ବାଲିମେଳା ଜଳ ବିଦ୍ୟୁତ ଯୋଜନାର ଉଦ୍‌ବୃତ ଜଳ ଓ ଅପରକୋଲାବ ଯୋଜନାର ଜଳର ଉପଯୋଗ ଦ୍ୱାରା କୋରାପୁଟର ଚାଷୀଙ୍କର ଜୀବନର ମାନଦଣ୍ଡର ଉନ୍ନତି ହୋଇପାରିବ, ଏଥିରେ ସନ୍ଦେହ ନାହିଁ । ଭାବପ୍ରବଣ ହୋଇ କର୍ତ୍ତବ୍ୟରେ ଅବହେଳା ଇଞ୍ଜିନିୟରିଂ ବିଦ୍ୟା ପ୍ରତି ଏକ ଅବମାନନା । ପୁଣି ଜୟପୁର ଆସିବା ପୂର୍ବରୁ ଚିଫ୍ ଇଞ୍ଜିନିୟର ତ୍ରିପାଠୀ ସାହେବଙ୍କ ସହିତ ସାକ୍ଷାତ୍ ସମୟରେ ତାଙ୍କର ଉକ୍ତି, "ଅପର କୋଲାବର ରିପୋର୍ଟ ସି.ଡ଼ବ୍ଲୁ.ପି.ସି.କୁ ଯିବାରେ ବହୁତ ବିଳମ୍ବ ହୋଇଗଲାଣି । ତୁମେ ଏହି ଛଅ ମାସ ଭିତରେ ରିପୋର୍ଟଟି ସମ୍ପୂର୍ଣ୍ଣ କରିଦିଅ ।" ସବୁ ଷ୍ଟାଫ୍‌କୁ ଦ୍ୱିଗୁଣ ଉତ୍ସାହରେ କାର୍ଯ୍ୟ କରିବାକୁ ଉପଦେଶ ଦେଲି । ମୋର ଜୟପୁରରେ ଯୋଗ ଦେବାର ମାସେ ଭିତରେ ବାସଗୃହ ନିର୍ମାଣ କ୍ଷେତ୍ରରେ ଅଭୂତପୂର୍ବ ଉନ୍ନତି ଦେଖି ସବୁ ଷ୍ଟାଫ୍ ଦ୍ୱିଗୁଣ ଉତ୍ସାହରେ କାମ କରିବାକୁ ଲାଗିଲେ । ଫେବୃୟାରୀ ସୁଦ୍ଧା ଭୁବନେଶ୍ୱରରେ ଡାଇରେକ୍ଟର ଅଫ୍ ଡିଜାଇନ୍‌ରେ କୋଲାବ ରିପୋର୍ଟ ଲେଖାରେ ନିଯୁକ୍ତ ଆସିଷ୍ଟାଣ୍ଟ ଇଞ୍ଜିନିୟର ଓ ଜୁନିଅର ଇଞ୍ଜିନିୟରମାନଙ୍କୁ ଘର ଯୋଗାଇ ଦେବା ଫଳରେ ସେମାନଙ୍କ ଉତ୍ସାହ ବହୁ ଗୁଣରେ ବଢ଼ିଗଲା ।

ଅପରକୋଲାବ ଯୋଜନାର ରିପୋର୍ଟ ଲେଖା ପାଇଁ ମୁଁ ରୁରକି ବିଦ୍ୟାଳୟରୁ ଆହରଣ କରିଥିବା ଜ୍ଞାନ ଓ ଭାରତ ଦର୍ଶନ ସମୟରେ ବିଭିନ୍ନ ବହୁମୁଖୀ ଯୋଜନା ପରିଦର୍ଶନରୁ ଆହାରଣ କରିଥିବା ଜ୍ଞାନ ବିଶେଷ ଭାବେ ସହାୟକ ହେଲା । ଓଡ଼ିଶାର ଅନ୍ୟ ନଦୀ ମାନଙ୍କ ଭଳି କୋଲାବ ନଦୀର ଜଳସ୍ରୋତ ଶୀତ ଓ ଗ୍ରୀଷ୍ମ ଋତୁରେ ଶୁଷ୍କ ହୁଏ ନାହିଁ । କୋରାପୁଟରେ ପ୍ରବାହିତ କୋଲାବ, ମାଛକୁଣ୍ଡ ଓ ଇନ୍ଦ୍ରାବତୀ ନଦୀ ତ୍ରୟ ଖାଲି ଖରସ୍ରୋତା ନୁହନ୍ତି, ଚିରସ୍ରୋତା ମଧ୍ୟ । ଗ୍ରୀଷ୍ମଋତୁରେ ଏହି ନଦୀର ଧାରକୁ ନିୟନ୍ତ୍ରଣ (ରିଭର ଡାଇଭରସନ୍) ଏକ କଷ୍ଟସାଧ୍ୟ ବ୍ୟାପାର । ଉତ୍ତର ପ୍ରଦେଶର ରାମଗଙ୍ଗା, ହରିଆନାର ବେଆଜ ନଦୀର ଗ୍ରୀଷ୍ମ ଋତୁରେ ପ୍ରବାହିତ ଜଳକୁ ଡାଇଭରସନ୍ ଟନେଲ୍ ସାହାଯ୍ୟରେ କଣ୍ଟ୍ରୋଲ କରାଯାଉଛି । କିନ୍ତୁ ଅପର କୋଲାବର ପ୍ରଧାନ ବନ୍ଧ ପଥରରେ ତିଆରି ହେବାକୁ ଥିବାରୁ ଏହି ଯୋଜନା ପାଇଁ ସ୍ଲୁଇସ୍ ଡାଇଭରସନ୍ ସର୍ବୋତ୍କୃଷ୍ଟ ଓ ଇକୋନୋମିକାଲ ବୋଲି ସାବ୍ୟସ୍ତ କରାଗଲା । ଏହା ବହୁତ ଗୁଡ଼ିଏ ଝଡ଼ି ପରେ ବାହାରିଲା । କିନ୍ତୁ ପରବର୍ତ୍ତୀ କାଳରେ ସ୍ଲୁଇସ୍ ଡ଼ାଇଭରସନ ନ କରି ଟନେଲ ଡାଇଭରସନ୍‌ର ସାହାଯ୍ୟ ନେବା ଫଳରେ କାର୍ଯ୍ୟରେ ଯେଉଁ ବିଶୃଙ୍ଖଳା ସୃଷ୍ଟି ହେଲା ତାହା ଅଜ୍ଞ ବହୁତ ସମସ୍ତଙ୍କୁ ଜଣା । ତା ପର ସମସ୍ୟା ହେଲା ଡେମର ଏକ୍ସିସ ନିରୁପଣ । ବାଘ୍ରାଫଲ୍ ପାଖରେ ଟନେଲ୍‌ର ଆବଶ୍ୟକତା ନାହିଁ । କିନ୍ତୁ ଏଠାରେ ଡ଼େମ୍ ବହୁତ ଉଚ୍ଚ ହୋଇଯିବ ଓ ଡ଼େମ୍ ଖର୍ଚ୍ଚ ବହୁତ ବଢ଼ିଯିବ । ଶେଷରେ ବର୍ତ୍ତମାନ ନିର୍ମିତ ସ୍ଥାନଟି ଉପଯୁକ୍ତ ମନେହେଲା । ଏଥିପାଇଁ ୩ କି.ମି. ଲମ୍ବ ଟନେଲ ଆବଶ୍ୟକ । ଜୟପୁରର ବାରିଣୀପୁଟ ନିକଟରେ ସତୀଗୁଡ଼ା ନାଳ ପାଖରେ ପାୱାର ହାଉସ୍‌ର ସ୍ଥାନ ନିରୁପଣ ହେଲା । ଡ଼େମର ଚଟାଣଟି ମୁଗୁନି ପଥର ଉପରେ ଅବସ୍ଥିତ । ଟନେଲ୍ ନିର୍ମାଣ ପାଇଁ ଡ୍ରିଲିଂରୁ ଜଣାପଡ଼ିଲା ଯେ ପୂରା ମୁଗୁନି ପଥରର ପାହାଡ଼ଟିଏ ରହିଛି । ସ୍ପିଲ୍‌ୱେ ପାଇଁ ପଥର ଚଟାଣର ଅଭାବ ନାହିଁ । ଡ଼େମ ଓ ପାୱାର ହାଉସ୍ ତିଆରି ପାଇଁ କଳା ମୁଗୁନି ପଥରର ଅଭାବ ନାହିଁ । ଡେମ୍ ସାଇଟ୍ ଉଭୟ କୋରାପୁଟ ଓ ଜୟପୁର ସହରଠାରୁ ମାତ୍ର ୧୦ କିଲୋମିଟର ଦୂର । ଜଳସେଚନ ପାଇଁ କୋଲାବ ନଦୀ ଓ ଇନ୍ଦ୍ରାବତୀ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳରେ ଅଛି ପ୍ରଶସ୍ତ ସମତଳ ଭୂମି । କେବଳ କେନାଲ ନିର୍ମାଣ ପାଇଁ ଯେଉଁ କ୍ରସ ଡ୍ରେନେଜ୍ କାମ ହେବ ସେଥିପାଇଁ କେତେକ ପ୍ରତିକୂଳ ପରିସ୍ଥିତି ସୃଷ୍ଟି ହେବ । କିନ୍ତୁ କୋରାପୁଟ

ଜିଲ୍ଲାର ସବୁ ନଦୀର ଅବବାହିକା ଏକାଭଳି । ଉଭୟ ପାର୍ଶ୍ୱର କୂଳଠାରୁ ନଦୀର ପତନ ୨୦ ଫୁଟରୁ ୫୦ ଫୁଟ ପର୍ଯ୍ୟନ୍ତ । ତେଣୁ କେନାଲ ନିର୍ମାଣ ପାଇଁ ଗୁଡ଼ାଏ ସୁଉଚ୍ଚ ଏକୁଇଡ଼କ୍ଟର ଆବଶ୍ୟକତା ରହିଛି । କିନ୍ତୁ ଅଧିକାଂଶ ନଦୀର ନିମ୍ନ ଦେଶରେ ପଥର ଚଟାଣ ରହିଥିବାରୁ ଅଧିକାଂଶ ଏକୁଇଡ଼କ୍ଟ ପଥର ଉପରେ ନିର୍ମିତ ହେବ । ପ୍ରୋଜେକ୍ଟ ରିପୋର୍ଟରେ ସମସ୍ତ ପ୍ରକାର ବ୍ୟବସ୍ଥା ରଖି ଏଷ୍ଟିମେଟ୍ କରାଗଲା ଏବଂ ୧୯୭୨ ମସିହା ମେ ମାସର ଶେଷ ଭାଗରେ ପ୍ରୋଜେକ୍ଟର ଡ୍ରାଫ୍ଟ ତିଆରି ହୋଇଗଲା । କେବଳ ରହିଲା ଡ୍ରଇଂ ତିଆରି ଓ ଟାଇପ୍ କରି ରିପୋର୍ଟ ବନ୍ଧାଇ କରି ସି.ଡ଼ବ୍ଲୁ.ପି.ସି.କୁ ପଠାଇବା ଦାୟିତ୍ୱ ।

ଦୈବାତ୍ ମେ ମାସର ଶେଷ ଭାଗରେ ଚିଫ୍ ଇଞ୍ଜିନିୟର ଜନାର୍ଦ୍ଦନ ତ୍ରିପାଠୀ ସାହେବଙ୍କ ଜୟପୁର ଟୁର୍ ପଡ଼ିଲା । ତାଙ୍କୁ ବଙ୍ଗଳାରେ ଦେଖା କରି ମୁଁ କହିଲି, "ଆପଣ ଯେଉଁ କାର୍ଯ୍ୟ ପାଇଁ ମୋତେ ଜୟପୁର ପଠାଇଥିଲେ ସେ କାର୍ଯ୍ୟ ସରିଗଲା । କୋଲାବର ରିପୋର୍ଟ ହୋଇଗଲା । ମୋତେ ଅନ୍ୟ ସ୍ଥାନକୁ ବଦଳି କରି ଦିଅନ୍ତୁ, ନଚେତ ବାଲିମେଳା ପଠାଇ ଦିଅନ୍ତୁ । ମୋ ଠାରୁ ବହୁତ ଜୁନିୟର ଅଫିସର ଅଧିକ ଦରମା ପାଇ କନଷ୍ଟ୍ରକସନ୍ କରୁଛନ୍ତି, କିନ୍ତୁ ମୁଁ ସିନିୟର ଏକଜିକ୍ୟୁଟିଭ୍ ଇଞ୍ଜିନିୟର, ଏମ.ଇ. କରିଛି, ସେମାନଙ୍କ ଠାରୁ କମ୍ ଦରମା ପାଇ ସର୍ଭେ କରୁଛି । ଯଦି ମୋତେ ବାଲିମେଳା ପଠାଇ ନ ପାରିବେ ତେବେ ଦଣ୍ଡକାରଣ୍ୟ ପଠାଇ ଦିଅନ୍ତୁ । ସେଠାରେ ଥିବା ଏସ.ଇ. ଏମ.ଏଲ. ଦାସ ମୋତେ ଡାକୁଛନ୍ତି । ସେଠି ମଧ ମୁଁ ଶତକଡ଼ା ୫୦ ଅଧିକ ଦରମା ପାଇବି । ଜୟପୁର, ବାଲିମେଳା ଓ ମାଲକାନଗିରି ମଧ୍ୟରେ ପାର୍ଥକ୍ୟ କେତେ ? ଏହା ତାଙ୍କ ମନକୁ ପାଇଲା । କହିଲେ, ସତେତ, ଜୟପୁରରେ ଥିବା ଇଞ୍ଜିନିୟରମାନେ କିଛି ପାଉନାହାଁନ୍ତି । ବଣ ଜଙ୍ଗଲ ବୁଲି ସର୍ଭେ କରୁଛନ୍ତି, ଅଥଚ ୮୦କି.ମି. ଦୂରରେ ବାଲିମେଳା ଓ ଦଣ୍ଡକାରଣ୍ୟରେ କାମ କରୁଥିବା ଅଫିସରମାନେ ଘରଭଡ଼ା, କନଷ୍ଟ୍ରକସନ୍ ଓ ଅସ୍ୱାସ୍ଥ୍ୟକର ଭତ୍ତା ପାଉଛନ୍ତି । ଏଥିରେ ଜୟପୁରରେ ଥିବା ଇଞ୍ଜିନିୟର ମାନଙ୍କର ହାର୍ଟବର୍ଣ୍ଣ ହେବା ସ୍ୱାଭାବିକ । ସେ ପଚାରିଲେ ତୁମେ ଯିବ କୁଆଡ଼େ ? ମୁଁ ତୁମକୁ ୧୨ ବର୍ଷ ହେଲା ଜାଣିଛି । ଡ଼େଲ୍ଟା, ଇଷ୍ଟର୍ଣ୍ଣ ସର୍କଲ ତ ତୁମକୁ ପୋଷାଇବ ନାହିଁ । ତୁମପରି ମନୋବୃତ୍ତିର ଲୋକ ପାଇଁ ମିଡ଼ିଅମ ବା ମେଜର ଇରିଗେସନ୍ ସର୍ବୋତ୍କୃଷ୍ଟ କ୍ଷେତ୍ର । ସୁବିଧା ଦେଖି ବ୍ୟବସ୍ଥା କରିବି । ଅପର କୋଲାବ ରିପୋର୍ଟର ବାକି ଥିବା କାମତକ ସାରିଦିଅ ।

ଜୟପୁର ଡିଭିଜନ ଅଧୀନରେ ଗୁଣୁପୁରରେ ବଂଶଧାରା ଓ ନାଗାବଳୀ ବେସିନ ପାଇଁ ଗୋଟିଏ ସବ୍‌ଡ଼ିଭିଜନ ଥାଏ । ସେଠାରେ ମହେଶ୍ୱର ଆର୍ଯ୍ୟ ଏସ.ଡ଼ି.ଓ ଥାଆନ୍ତି । ଏହି ସବ୍‌ଡ଼ିଭିଜନ ଅଧୀନରେ ବଂଶଧାରା ଓ ନାଗାବଳୀ ନଦୀ ଦ୍ୱୟର ବନ୍ୟା ନିୟନ୍ତ୍ରଣ କାର୍ଯ୍ୟ ଓ ବଡ଼ ନାଳ ମଧ୍ୟମ ଜଳସେଚନ ଯୋଜନାର ସର୍ଭେ କାର୍ଯ୍ୟ ହେଉଥାଏ । ବଂଶଧାରା ନଦୀ ଦ୍ୱାରା ଗୁଣୁପୁର ସହର ବିଶେଷ ଭାବେ କ୍ଷତିଗ୍ରସ୍ତ ହେଉଥାଏ । ସହରକୁ ରକ୍ଷା କରିବା ପାଇଁ ସେତେବେଳକୁ ଯେଉଁ ନଦୀବନ୍ଧ ନିର୍ମାଣ ହୋଇଥାଏ ତାହା ନାମମାତ୍ର ନଦୀବନ୍ଧ କହିଲେ ଅତ୍ୟୁକ୍ତି ହେବନାହିଁ । ସବ୍‌ଡ଼ିଭିଜନଟି ବନ୍ୟା, ବାତ୍ୟା ବା ମରୁଡ଼ି ଟଙ୍କାର ସାମୟିକ ଉପଯୋଗ କରିବା ସଂଗେ ସଂଗେ ନାମମାତ୍ର କେତୋଟି ନଦୀବନ୍ଧ ଯାହାର ଅନ୍ୟନାମ ରେଭିନ୍ୟୁ ଏମ୍ବାଙ୍କମେଣ୍ଟର ରକ୍ଷଣାବେକ୍ଷଣା କରୁଥାଏ, ସେ ପର୍ଯ୍ୟନ୍ତ ଗୋଟିଏ ମାଷ୍ଟରପ୍ଲାନ୍ କରି ଗୁଣୁପୁର ସହରକୁ ବଂଶଧାରାର ବନ୍ୟାରୁ ରକ୍ଷା କରିବା ସଂଗେ ସଂଗେ ଋଷ ଜମିକୁ କିପରି ବନ୍ୟା ଦାଉରୁ ରକ୍ଷା କରାଯିବ ସେଥିପାଇଁ ବିଧିମତ ସର୍ଭେ ହୋଇନଥାଏ । ସବ୍‌ଡ଼ିଭିଜନର ସବୁ ସବ୍ ଆସିଷ୍ଟାଣ୍ଟ ଇଞ୍ଜିନିୟରଙ୍କୁ ଏହି କାର୍ଯ୍ୟରେ ନିଯୁକ୍ତ କରାଗଲା । ଆଶ୍ଚର୍ଯ୍ୟର କଥା, ଯେଉଁ ଏସ.ଡ଼ି.ଓ ଅତି ମାନ୍ଦା, କିଛି କରନ୍ତି ନାହିଁ ବୋଲି ସମସ୍ତେ ତାଙ୍କୁ ନିନ୍ଦା କରୁଥିଲେ ମାତ୍ର ୩/୪ ମାସ ଭିତରେ ସମ୍ପୂର୍ଣ୍ଣ ସର୍ଭେ କରି ଗୋଟିଏ ମାଷ୍ଟରପ୍ଲାନ୍ କରିବା ସଙ୍ଗେ ସଙ୍ଗେ ଗୁଣୁପୁର ସହରକୁ ବନ୍ୟା ଦାଉରୁ ରକ୍ଷା କରିବା ପାଇଁ ଗୋଟିଏ ପୂର୍ଣ୍ଣାଙ୍ଗ ଏଷ୍ଟିମେଟ୍ କରି ମୋ ପାଖରେ ପହଞ୍ଚାଇ ଦେଲେ । ଏ କାର୍ଯ୍ୟରେ ମୋତେ ମୋର ସୁପରିନ୍‌ଟେଣ୍ଡିଙ୍ଗ୍ ଇଞ୍ଜିନିୟର ଗିରିଜା ବଲ୍ଲଭ ପାଣିଗ୍ରାହୀ ପୂର୍ଣ୍ଣ ପ୍ରାଣରେ ସହଯୋଗ କଲେ । କହିବା ବାହୁଲ୍ୟ ଯେ ପରବର୍ତ୍ତୀ କାଳରେ ଏହି ମାଷ୍ଟର ପ୍ଲାନ୍ କାର୍ଯ୍ୟକାରୀ ହୋଇ ସବୁଦିନ ପାଇଁ ଗୁଣୁପର ସହରକୁ ବନ୍ୟାଦାଉରୁ ରକ୍ଷା କଲା ।

ଜୟପୁର ଭୁବନେଶ୍ୱରଠାରୁ ପ୍ରାୟ ୫୫୦ କି.ମି. ଦୂର । ଯିବାକୁ ପ୍ରାୟ ୧୨ ଘଣ୍ଟା ସମୟ ଲାଗେ । ନିଜ ଘରଠାରୁ ଆହୁରି ୧୫୦ କି.ମି. ଅଧିକ । ସାଙ୍ଗସାଥୀ ବନ୍ଧୁବନ୍ଧାବଙ୍କ ଠାରୁ ବହୁତ ଦୂରରେ ରହିଥିବାରୁ ବେଳେବେଳେ ମନ ଖରାପ ହୁଏ । କିନ୍ତୁ ଏ ନିର୍ଜନତା ଦୂର କରିବା ପାଇଁ ମୋର ଦୁଇଜଣ ବନ୍ଧୁ ଥିଲେ । ଲଳିତ ପାତ୍ର ସେତେବେଳେ କୋରାପୁଟ ଆର.ଏଣ୍ଡ.ବି.ର ନିର୍ବାହୀଯନ୍ତ୍ରୀ ଓ ସଚ୍ଚିଦାନନ୍ଦ ପାଣିଗ୍ରାହୀ ମାଛକୁଣ୍ଡର ଜଲାପୁଟ ଠାରେ ନିର୍ବାହୀଯନ୍ତ୍ରୀ ଭାବେ କାମ କରୁଥାନ୍ତି । ୧୯୬୪-୬୫ ମସିହାରେ ଆମେ ସାଙ୍ଗ ହୋଇ ଭୁବନେଶ୍ୱରରେ ଥିଲୁ । ତେଣୁ ନିର୍ଜନତା

ଅନୁଭବ କଲେ ଆମେ ପରସ୍ପର ସହିତ ମିଳିତ ହୋଇ ଭାବର ଆଦାନପ୍ରଦାନ କରୁ । ତା ବ୍ୟତୀତ ବାଲିମେଳାରେ ଥିବା ମୋର ବନ୍ଧୁ ମେକାନିକେଲ ନିର୍ବାହୀଯନ୍ତ୍ରୀ, ଆଦିକନ୍ଦ ବିଶ୍ୱାଳ ଓ ଓ ଦାମୋଦର ମହାପାତ୍ର ଅତ୍ୟନ୍ତ ମେଳାପୀ ।

ଏହିଭଳି ଭାବେ ପାଞ୍ଚଟି କର୍ମମୁଖର ଓ ଘଟଣାବହୁଳ ମାସ ଜୟପୁରରେ କଟିଗଲା । କୋରାପୁଟ ଜିଲା ଓଡ଼ିଶାର ଅଂଶବିଶେଷ ହୋଇଥିଲେ ମଧ୍ୟ ସେ ଜିଲ୍ଲାରେ କାମ ନ କଲେ, ଏହାର ବିଶେଷତ୍ୱ ଉପଲବ୍ଧି କରିହେବନି । ଘରିଆଡ଼େ ପର୍ବତମାଳା, ବର୍ଷାଦିନ ଆରମ୍ଭରୁ ପ୍ରବଳ ବୃଷ୍ଟିପାତ, ଅର୍ଦ୍ଧପରିହିତ ଆଦିମ ଆଦିବାସୀ, ଚିରସ୍ରୋତା ଝରଣା, ଆଦିବାସୀ ମାନଙ୍କର ସରଳ ଜୀବନଯାତ୍ରା ସ୍ୱଚକ୍ଷୁରେ ନ ଦେଖିଲେ ହୃଦୟଙ୍ଗମ କରି ହେବନି । କାର୍ଯ୍ୟରେ ଯୋଗଦେବା ସମୟକୁ ପୌଷ ପର୍ବ ଚାଲିଥାଏ, ମାର୍ଚ୍ଚ ମାସରେ ପଡ଼ିଲା ଚୈତ୍ର ପର୍ବ । ଘରେ କାମ କରୁଥିବା ଦେଶିଆ ଲୋକମାନେ ମଝିରେ ମଝିରେ ଛୁଟି ନେଇ ଯାଆନ୍ତି ଶିକାର କରିବାକୁ । ଏ ଦୁଇଟି ମାସ ସେମାନଙ୍କର ପ୍ରିୟ ଶିକାର ସମୟ । ଶିକାର କରି ଯଦି କୌଣସି ଜନ୍ତୁ ମାରି ଆଣିଥିବେ ତେବେ ଗୃହିଣୀ ଫୁଲ, ଦୀପ ଓ ଧୂପ ଦେଇ ତାଙ୍କର ଅଭ୍ୟର୍ଥନା କରିବେ, ଖାଲି ହାତରେ ଫେରିଲେ ଗୋବରପାଣି ଛାଟ ଖାଇବାକୁ ପଡ଼ିବ । ବାଟସାରା ଆଦିବାସୀ ରମଣୀମାନେ ହାଣ୍ଡିଆ ପିଇ ନାଚି ନାଚି ଚାନ୍ଦା ଆଦାୟ କରୁଥାନ୍ତି । ଯାହାଦେଲେ ଖୁସି, ହାଟ ଗୁଡ଼ିକରେ ପରିବାପତ୍ର ଖୁବ୍ କମ ବିକ୍ରି ହୁଏ । ଅଧିକାଂଶ ହାଟରେ କୁକୁଡ଼ା ଲଢ଼େଇ ପ୍ରଧାନ ଆକର୍ଷଣ । ଜୟପୁର ସହରକୁ ଛାଡ଼ିଦେଲେ ଅନ୍ୟ ସ୍ଥାନରେ ମାଛ ସ୍ୱପ୍ନ ପ୍ରାୟ । ମାଂସ କହିଲେ ବୋଦା ମାଂସ । ଜୟପୁର ପହଞ୍ଚିବା ଦିନ ଏକ କୌତୂହଳପୂର୍ଣ୍ଣ ଘଟଣା ଘଟିଥିଲା । ଆମ ପାଇଁ ରୋଷାଇ ହୋଇସାରିଥାଏ । ଯେତେବେଳେ ଖଣ୍ଡେ ମାଂସ ପାଟିରେ ପୁରାଇଲି ଦେଖିଲି କେରଳର ଖାଉଥିବା ମାଂସର ଗନ୍ଧ ।

ଦୀର୍ଘ କୋଡ଼ିଏ ବର୍ଷ ପୂର୍ବେ କେରଳରେ ଅଧ୍ୟୟନ କରୁଥିଲି । ସେଠାରେ ଭେଜିଟେରିଆନ୍ ମେସ୍ ଓ ନନଭେଜିଟେରିଆନ୍ ମେସ୍ ଅଲଗା । ଓଡ଼ିଶାର ପିଲାଏ ସମସ୍ତେ ନନ୍‌ଭେଜିଟେରିଆନ୍ ମେସ୍‌ରେ ଖାଆନ୍ତି । ମାଂସ ବହୁତ ଗନ୍ଧ କଲା, ସାଙ୍ଗମାନଙ୍କୁ ପଚାରିଲି, ଏହା କି ମାଂସ । ସେମାନେ କହିଲେ This is Goat's meat ପୁଣି ସନ୍ଦେହ ହେବାରୁ ପଚାରିଲି Is it male Goats meat? ସେମାନେ କହିଲେ Yes, this is pure male Goat meat. There is no doubt about it.

ଭାବିଲି କେରଳର ଖାସି ମାଂସରୁ ଏଭଳି ଏକ ଦୁର୍ଗନ୍ଧ ବାହାରେ। ସେଥିପାଇଁ ମୁଁ କେରଳରେ ମାଂସ ଖାଇବା ଛାଡ଼ି ଦେଇ ଭେଜିଟେରିଆନ୍ ମେସ୍‌ରେ ଯୋଗଦେଲି। ପୁଣି ଥରେ ରୁରକୀରୁ ଦକ୍ଷିଣ ଭାରତଗସ୍ତରେ ଯାଇଥିବା ସମୟରେ ଇଡ଼ିକି ଡ଼ାକବଙ୍ଗଳାରେ ମାଂସର ସେହିଭଳି ଏକ ସ୍ୱାଦ ଅନୁଭବ କରିଥିଲି। ପୁଣି କୋରାପୁଟରେ ମାଂସର ସେହି ସ୍ୱାଦ। କେରଳର ଛେଳି ଜାତି କ'ଣ, କୋରାପୁଟ ପର୍ଯ୍ୟନ୍ତ ବ୍ୟାପି ରହିଛନ୍ତି? ଏସ.ଡ଼ି.ଓ.ଙ୍କୁ ମାଂସରୁ ବାହାରୁଥିବା ଗନ୍ଧର କାରଣ ପଚାରିବାରୁ ସେ କହିଲେ ଏହା ବୋଦା ମାଂସ। ଗଞ୍ଜାମ ଠାରୁ କେରଳ ପର୍ଯ୍ୟନ୍ତ ଅଣ୍ଡିରା ଛେଳିକୁ ଖାସି କରାଯାଏ ନାହିଁ। ଭାଷାଗତ ଅସୁବିଧା ଯୋଗୁଁ ମନରେ ଜାଗିଥିବା ସନ୍ଦେହ ମୋଚନ ପାଇଁ ଲାଗିଲା କୋଡ଼ିଏ ବର୍ଷ। ଜୟପୁରରେ ୫ ମାସ ରହଣି କାଳ ପିଲାମାନଙ୍କ ପାଇଁ ଅତ୍ୟନ୍ତ ଆନନ୍ଦଦାୟକ ସମୟ ଥିଲା। ଘରର ଆଗପଟେ ଗୋଟାଏ ପିକ୍‌ନିକ ସ୍ପଟ୍ ତ ବାଡ଼ିଆଡ଼େ ଆଉ ଗୋଟାଏ। ପାଖରେ କୋଲାବ ନଦୀ ଓ ବାଘ୍ରାଫଳ। କିଛି ଦୂର ଗଲେ ଇନ୍ଦ୍ରାବତୀ ନଦୀ ଓ ତାର ଜଳପ୍ରପାତ। ଦେଢ଼ବର୍ଷ ଧରି ବାହାରେ ରହିବା ଫଳରେ ପିଲାମାନଙ୍କ ପଢ଼ାରେ ସାମାନ୍ୟ ବ୍ୟାଘାତ ସୃଷ୍ଟି ହୋଇଥିଲା। ବଡ଼ ପୁଅ ଶୁଭେନ୍ଦୁ ସପ୍ତମ ଶ୍ରେଣୀ। ବଡ଼ ଝିଅ ଇପ୍ସିତାର ପଞ୍ଚମ ଶ୍ରେଣୀ। କାମ ବେଶୀ ନଥିବାରୁ ଦୁଇଜଣଙ୍କୁ ପାଠ ପଢ଼ାଇବା ସୁବିଧାଜନକ ହେଲା। ଉଭୟ ବୃତ୍ତି ମଧ୍ୟ ପାଇଲେ। ଭବିଷ୍ୟତ ଜୀବନ ଗଢ଼ିବାରେ ଏହା ସେମାନଙ୍କୁ କମ ପ୍ରେରଣା ଯୋଗାଇ ନାହିଁ।

୧୯୭୨ ମସିହା ମେ ମାସରେ ବରହମପୁର ଚିକିଟି ଡିଭିଜନର ନିର୍ବାହୀ ଯନ୍ତ୍ରୀ ବୈକୁଣ୍ଠନାଥ ନାୟକଙ୍କର ସସପେନ୍‌ସନ୍ ହୋଇଯିବା ଫଳରେ ତାଙ୍କ ସ୍ଥାନରେ ମୋର ବରହମପୁରରେ ପୋଷ୍ଟିଂ ହୋଇଗଲା। ଜୁନ୍ ପାଞ୍ଚ ତାରିଖରେ ଆସିଷ୍ଟାଣ୍ଟ ଇଞ୍ଜିନିୟର ବିନୋଦ ବିହାରୀ ସିଂ ସାମନ୍ତଙ୍କୁ ଦାୟିତ୍ୱ ହସ୍ତାନ୍ତର କରି ବରହମପୁର ମୁଖେ ଯାତ୍ରା ଆରମ୍ଭ କଲି।



## ଷୋଡ଼ଶ ପରିଚ୍ଛେଦ

# ଘୋଡ଼ାହାଡ଼ ଜଳସେଚନ ଯୋଜନା

୧୯୭୨ ମସିହା ଜୁନ ୭ତାରିଖ ଦିନ ଚିକିଟି ଡ଼ିଭିଜନରେ ଯୋଗଦାନ କଲି । ସେତେବେଳେକୁ ଚିକିଟି ଇରିଗେସନ୍ ଡିଭିଜନର ନିର୍ବାହୀଯନ୍ତ୍ରୀ ବୈକୁଣ୍ଠନାଥ ନାୟକ ବରହମପୁର ଇରିଗେସନ୍ ଡିଭିଜନର ନିର୍ବାହୀଯନ୍ତ୍ରୀ ନରସିଂହ ପଟ୍ଟନାୟକଙ୍କୁ ଦାୟିତ୍ୱ ହସ୍ତାନ୍ତର କରିସାରିଥାନ୍ତି । ଆଡ଼ିସିନାଲ ଦାୟିତ୍ୱରେ ଥିବା ନିର୍ବାହୀଯନ୍ତ୍ରୀ ସଙ୍ଗେ ସଙ୍ଗେ ଦାୟିତ୍ୱ ହସ୍ତାନ୍ତର କରିଦେବା କଥା, କିନ୍ତୁ ସେ ଦୁଇ ଦିନ ସମୟ ନେଲେ । ୮ତାରିଖ ଦିନ ଦାୟିତ୍ୱ ହସ୍ତାନ୍ତର ପାଇଁ ଅନୁରୋଧ କରିବାରୁ, ଗୋଟିଏ ପୋଲର କଙ୍କ୍ରିଟ ପକାଇ ଦେଇ ଘଣ୍ଟାଏ ଭିତରେ ଆସୁଛି ବୋଲି ବାହାନା କରି ବରହମପୁର ଛାଡ଼ି ଚାଲିଗଲେ । ସକାଳୁଆ ଅଫିସ୍ ଚାଲୁଥାଏ । ଗୋଟାଏ ପର୍ଯ୍ୟନ୍ତ ନ ଆସିବାରୁ ଚିକିଟି ଡିଭିଜନର ଦୁଇଜଣ ଆସିଷ୍ଟାଣ୍ଟ ଇଞ୍ଜିନିୟରଙ୍କ ସହ କୁକୁଡ଼ାଖଣ୍ଡି ଯାଇ ଦେଖିଲୁ ଯେ କଙ୍କ୍ରିଟ ପଡ଼ିବାର ନାମଗନ୍ଧ ନାହିଁ, ପଟନାୟକ ସାହେବ କୁକୁଡ଼ାଖଣ୍ଡି ଡାକବଙ୍ଗଳାରେ ବସି ସିଗାରେଟ୍ ଟାଣୁଛନ୍ତି, ତାଙ୍କୁ ଅନୁରୋଧ କରିବାରୁ କହିଲେ ଘଣ୍ଟାଏ ପରେ ଯିବେ । ଅବଶ୍ୟ ସେ ଘଣ୍ଟାଏ ପରେ ଫେରିଲେ, କିନ୍ତୁ ଘରେ ଥାଇ ନାହାଁନ୍ତି ବୋଲି କହିଦେବାକୁ ପିଅନକୁ କହିଦେଲେ । ଅନ୍ୟ ଉପାୟ ନ ଦେଖି ଚିଫ୍ ଇଞ୍ଜିନୟର ଜନାର୍ଦ୍ଦନ ତ୍ରିପାଠୀଙ୍କୁ ଫୋନ୍ କରିବାରୁ ସେ ସୁପରିନଟେଣ୍ଡିଂ ଇଞ୍ଜିନିୟର ଅମରେନ୍ଦ୍ର ମହାପାତ୍ରଙ୍କୁ କହିଲେ, ପଟ୍ଟନାୟକଙ୍କୁ କହିଦିଅ, ସେ ଚାର୍ଜ ଦେଇଦେଉ । ତା ପରେ ସୁପରିନଟେଣ୍ଡିଂ ଇଞ୍ଜିନିୟର ଓ ମୁଁ ଯେତେ ଫୋନ୍ କଲେ ବି ପଟ୍ଟନାୟକବାବୁଙ୍କର ପତ୍ତା ପାଇଲୁନି । ୫ଟା ବେଳେ ଘରେ ଯାଇ ଶୁଣିଲୁ ଯେ ସେ ଟାଙ୍ଗଣା ପଲ୍ଲୀ ଯାଇଛନ୍ତି, ଟାଙ୍ଗଣା ପଲ୍ଲୀରେ ଶୁଣିଲୁ ସେ ଗୋପାଳପୁର ଯାଇଛନ୍ତି । ସେ ଆସି ପୁଣି କୁକୁଡ଼ା ଖଣ୍ଡି ଫେରିଯାଇଛନ୍ତି । ଏହିପରି ଚାରିଆଡ଼େ ତାଙ୍କୁ ଖୋଜି ଖୋଜି ରାତି ୭ଟା ବେଳକୁ ଦେଖିଲୁ ଯେ ସେ ଫେରି ଅଫିସରେ ବସିଛନ୍ତି ଓ ସଙ୍ଗେ ସଙ୍ଗେ ଚାର୍ଜ ଦେଇ ଦେଲେ । ଜୀବନରେ ପ୍ରଥମ ଥର ଦାୟିତ୍ୱ ହସ୍ତାନ୍ତର ବେଳେ

ବହୁତ ଅସୁବିଧାର ସମ୍ମୁଖୀନ ହେଲି । ଘରେ ନ ପଶୁଣୁ ମୁଣ୍ଡରେ ଚାଳ ବାଜିବା ଭଳି କଥା ହେଲା । ତେଣୁ ମୁଁ ଜୁନ ୮ତାରିଖରେ ଜାଣିପାରିଥିଲି ଯେ ଯେତେଦିନ ପର୍ଯ୍ୟନ୍ତ ବରହମପୁରରେ ରହିବି ସଂଘର୍ଷ ମଧରେ ଜୀବନ ଅତିବାହିତ ହେବ । ୮ତାରିଖ ଦିନ ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ପାର୍ଟିର ମିଳିତ ସରକାର ଭାଙ୍ଗିଗଲା । ସରକାର ଭାଙ୍ଗିବା ପୂର୍ବରୁ ବୈକୁଣ୍ଠବାବୁଙ୍କର ସସ୍‌ପେନସନ ଅର୍ଡ଼ର ଉଠିଗଲା । ତାଙ୍କର ଅନ୍ୟଠାରେ ପୋଷ୍ଟିଂ ହୋଇଥିଲେ ମଧ ସେ ପିଲାମାନଙ୍କ ପରୀକ୍ଷା ପାଇଁ ଆଉ କିଛିଦିନ କ୍ୱାର୍ଟର ଛାଡ଼ିଲେ ନାହିଁ । ତେଣୁ ମୋତେ ଜୁନ ମାସରେ କୁକୁଡ଼ାଖଣ୍ଡି ଡାକବଙ୍ଗଳାରେ, ଜୁଲାଇ ଓ ଅଗଷ୍ଟ ମାସ ବେରେଜ ପାଖରେ ଗୋଟିଏ 2Rକ୍ୱାର୍ଟରରେ ରହିବାକୁ ପଡ଼ିଲା ଓ ସେପ୍ଟେମ୍ବର ଶେଷ ସପ୍ତାହରେ କ୍ୱାର୍ଟରକୁ ଯାଇ ସ୍ଥିର ଚିତ୍ତରେ କାମ କରିବା ସମ୍ଭବ ହେଲା ।

୧୯୭୨ ମସିହାରେ ଓଡ଼ିଶାର ଅଧିକାଂଶ ଜିଲ୍ଲା ବିଶେଷ କରି ଗଞ୍ଜାମ ଜିଲ୍ଲାରେ ଅନାବୃଷ୍ଟି ଦେଖାଗଲା । ଜୁଲାଇ ମାସରେ ଓଡ଼ିଶାର ନୂତନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥି ଗଞ୍ଜାମ ଜିଲ୍ଲାକୁ ଗସ୍ତରେ ଆସିଥିଲେ । ଲୋକମାନେ ତାଙ୍କ ପାଖରେ ଆପତ୍ତି କଲେ ଯେ, ଘୋଡ଼ାହାଡ଼ ଡ୍ରେମ ତିଆରି ପାଇଁ ହୋଇଥିବା କଫର ଡ୍ରେମ କଟା ନଯାଉ । ଏହାର ଉପର ପତନ କେନାଲ ସିଲ ଠାରୁ ଉଚ୍ଚରେ ଅଛି । ତେଣୁ ବର୍ଷାରେ ଯେଉଁ ପାଣି ଆସିବ ତାହା କେନାଲରେ ଗଲେ କିଛି ଜମି ମରୁଡ଼ି ଦାଉରୁ ରକ୍ଷା ପାଇ ପାରିବ । ଗଞ୍ଜାମର ଦୁଇଜଣ କମ୍ୟୁନିଷ୍ଟ ଏମ.ଏଲ.ଏ ହରିହର ଦାଶ ଓ ସଦାନନ୍ଦ ମହାନ୍ତିଙ୍କର ନନ୍ଦିନୀ ଶତପଥିଙ୍କ ଉପରେ ଥିବା ପ୍ରଭାବ ସର୍ବଜନ ବିଦିତ । ପୁଣି ଘୋଡ଼ାହାଡ଼ର ଆୟକଟକୁ ଲାଗି ସଦାନନ୍ଦ ମହାନ୍ତିଙ୍କର କବିସୂର୍ଯ୍ୟନଗର ନିର୍ବାଚନମଣ୍ଡଳି । ତେଣୁ ମୁଖ୍ୟମନ୍ତ୍ରୀଙ୍କ ଆଦେଶ ହେଲା କଫର ଡ୍ରେମ କଟାଯାଇ ପାରିବନି, ଯାହା ସମ୍ଭବ ହେବ କଫର ଡ୍ରେମ ଦ୍ୱାରା ଜଳସେଚନ କରି ମରୁଡ଼ି ଦାଉରୁ କିଛି ଜମିକୁ ରକ୍ଷାକର । ଦୁର୍ଭାଗ୍ୟକୁ ସେପ୍ଟେମ୍ବର ୧୦ତାରିଖ ପର୍ଯ୍ୟନ୍ତ ଗଞ୍ଜାମରେ ଆଦୌ ବର୍ଷା ହେଲାନାହିଁ । ସେପ୍ଟେମ୍ବର ୧୦ରେ ହେଲା ଏକ ପ୍ରବଳ ଘୂର୍ଣ୍ଣିବାତ୍ୟା ଓ ତା ସାଙ୍ଗକୁ ପ୍ରବଳ ବୃଷ୍ଟିପାତ । ସଙ୍ଗେ ସଙ୍ଗେ କଫର ଡ୍ରେମର ଜଳଧାରଣ କ୍ଷମତା ଅତିକ୍ରମ କରିଗଲା, ଅବଶ୍ୟ ସଙ୍ଗେ ସଙ୍ଗେ କେନାଲରେ ଚାଲିଲା ପାଣି । କିନ୍ତୁ ସନ୍ଧ୍ୟା

ବେଳକୁ କଫର ଡ଼େମଟି ଭାଙ୍ଗିଯାଇ ନଦୀର ଦୁଇକୂଳ ପ୍ଲାବିତ ହେଲା ପ୍ରବଳ ଜଳସ୍ରୋତ । ସେପ୍ଟେମ୍ବର ମାସ ୧୦ତାରିଖ ପର୍ଯ୍ୟନ୍ତ ଭୂମି ଶୁଖି ଫାଟି ଯାଇଥିଲା । ପ୍ରବଳ ଜଳସ୍ରୋତ ଦେଖିବାର ଆଗ୍ରହ ସମସ୍ତଙ୍କର, ତେଣୁ ଡ଼େମ ପାଖରେ ଥିବା କଲୋନିର ସବୁଲୋକ ନଦୀ ପାଖରେ ଠିଆହୋଇ ଦେଖୁଥିଲେ, ଏ ରମଣୀୟ ଦୃଶ୍ୟ । ସେ ବର୍ଷ ଜଙ୍ଗଲ ବିଭାଗ ଜଳଭଣ୍ଡାରରୁ ଗଛ କାଟି ନେଇ ଯାଇଥିଲେ । ଅନାବଶ୍ୟକ ଗଛ ବହୁତ ଲମ୍ବା ହେଲେ ମଧ୍ୟ କାଟି କରି ଛାଡ଼ି ଦେଇଥିଲେ । ବାଉଁଶବୁଦା ଗୁଡ଼ିକ କାଟି ନିଆଁ ଲଗାଇ ଦେଇଥିଲେ । କେତେକ ବାଉଁଶ ବୁଦା ପୋଡ଼ି ନଯାଇ ପଡ଼ି ରହିଥିଲା । ବଡ଼ ବଡ଼ ଗଛ ଓ ବାଉଁଶ ବୁଦା ପ୍ରବଳ ଜଳ ସ୍ରୋତରେ ଭାସିଯିବା ସମୟରେ ଡ଼େମର ମାତ୍ର ଏକ କିଲୋମିଟର ତଳେ ଥିବା ଏକୁଇଡ଼କ୍ଟ ପାଖରେ ଲାଗିଲେ । ଗୋଟିଏ ବଡ଼ କାଠ ଏକୁଇଡ଼କ୍ଟର ଦୁଇ ତିନିଟି ପିଲରକୁ ଆବଦ୍ଧ କରି ରହିଗଲା । ତା କଡ଼ରେ ବାଉଁଶ ବୁଦା ଗୁଡ଼ିକ ଲାଗିଯିବା ଫଳରେ ଏକୁଇଡ଼କ୍ଟରେ ଏକ ଅସ୍ଥାୟୀ ପ୍ରତିବନ୍ଧକ ସୃଷ୍ଟି ହୋଇ ଜଳ ନିଷ୍କାସନ ପଥକୁ ଅବରୋଧ କରିଦେଲା । ଏହା ଫଳରେ ଡ଼େମ ପାଖରେ ଥିବା ସମୁଦାୟ କଲୋନୀ ଜଳପ୍ଲାବିତ ହୋଇଗଲା ଏବଂ ପ୍ରତି ଘରେ ପ୍ରାୟ ୧ମିଟରର ଜଳସ୍ରୋତ ପ୍ରବାହିତ ହେଲା । ଲୋକମାନେ ପ୍ରାଣ ବିକଳରେ ଡ଼େମ ଉପରେ ଆଶ୍ରୟ ନେବାକୁ ଦଉଡ଼ିଲେ । ଅବଶ୍ୟ ଜଳସ୍ରୋତ ଘରେ ପଶିବା ମାତ୍ରେ ଲୋକମାନେ ନିରାପଦ ସ୍ଥାନକୁ ଯିବାକୁ ଆରମ୍ଭ କରିଦେଇଥିଲେ, କିନ୍ତୁ ଗୋଟିଏ ପରିବାରର ଲୋକେ ନିଜକୁ ରକ୍ଷା କରି ପାରିଲେନି । ସେ ହେଉଛି ଜଣେ ପମ୍ପ ହେଲପରର ପରିବାର । ସେ ଦିନ ସେ ଘରେ ନଥିଲା । ତାର ସ୍ତ୍ରୀ ମୂକ ଓ ବଧିର ୪ଟି ପିଲା ଓ ଶାଶୁ ବୁଢ଼ୀ ସହ ସେ ଘରେ ଜିନିଷ ଧରି ଜଗି ରହିଲା । ଯେତେ ଡାକିଲେ ଗଲାନି । ଶେଷରେ ସମୁଦାୟ ପରିବାର ଭାସିଗଲେ । କେବଳ ତାର ବଡ଼ ପୁଅକୁ ଜଣେ ସାହାସୀ ବ୍ୟକ୍ତି ସ୍ରୋତମୁଖରୁ ଉଦ୍ଧାର କରି ଆଣିଲେ । ଏହା ମୋତେ ଏକ ବଡ଼ ଧକ୍କା ଦେଲା, ମୁଁ କାହିଁକି ଜନ ମତକୁ ଉପେକ୍ଷା ନକଲି,କାହିଁକି ରାଜନୈତିକ ଚାପ ପାଖରେ ମୁଣ୍ଡ ନୁଆଇଲି ବୋଲି ବହୁତ ଥର ଅନୁତାପ କରିଛି । କିନ୍ତୁ ମୁଁତ ଏକୁଟିଆ ଇଚ୍ଛା କଲେ କିଛି କରିପାରିନଥାନ୍ତି । ପ୍ରତିବାଦ ମଧ୍ୟ କରିଛି । କିନ୍ତୁ ଯେତେବେଳେ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ଓ ଚିଫ୍‌ଂ

ଇଞ୍ଜିନିୟର,ମୁଖ୍ୟମନ୍ତ୍ରୀଙ୍କ ଆଦେଶ ଓ ଲୋକ ମାନଙ୍କର ଦାବିକୁ ମାନି ଯାଇ କଫର ଡ଼େମକୁ ନ କାଟିବା ପାଇଁ ପରାମର୍ଶ ଦେଲେ, ମୁଁ ଏହାର କେତେଟା ପ୍ରତିରୋଧ କରିପାରିଥାନ୍ତି ? ଘୋଡ଼ାହାଡ଼ ଜଳ ସେଚନ ଯୋଜନା ଭଳି ସମସ୍ୟା ବହୁଳ ଯୋଜନା ନିର୍ମାଣରେ ଯେଉଁ ମାନଙ୍କର କିଛି ତ୍ୟାଗ ଓ ଅବଦାନ ରହିଛି,ସେମାନଙ୍କ ମଧ୍ୟରେ ଉପରୋକ୍ତ ପରିବାରର ୫ଟି ମୂଲ୍ୟବାନ ଜୀବନ ର ବଳିଦାନ ହିଁ ସର୍ବଶ୍ରେଷ୍ଠ । ବିପଦ ଯେତେବେଳେ ଆସେ ସେ ଏକୁଟିଆ ଆସେନି । ସେ ତାର ସାଙ୍ଗ ସାଥି ବନ୍ଧୁ ବାନ୍ଧବ ସମସ୍ତଙ୍କୁ ସାଙ୍ଗରେ ନେଇ ଆସେ ।

ସେପ୍ଟେମ୍ବର ୨୨ ତାରିଖ ହେଲା ଆଉ ଗୋଟିଏ ବାତ୍ୟା ଓ ବନ୍ୟା ବଙ୍ଗୋପସାଗରରେ ଲଘୁଚାପ ସୃଷ୍ଟି ହେବା ଫଳରେ ଆସିଲା ଘୋଡ଼ାହାଡ଼ ନଦୀରେ ପ୍ରବଳ ବନ୍ୟା । ଏଥର ଆଉ ଜଳର ପଥରୋଧ କରିବାକୁ ନାହିଁ କଫର ଡ଼େମ । କିନ୍ତୁ ଏଥରର ଜଳ ପତନ ଗତ ଥର ଠାରୁ ଏକ ମିଟର ଅଧିକ ହୋଇଗଲା । ସମୁଦାୟ କଲୋନିଟି ଜଳମଗ୍ନ ହେବାରୁ ସମସ୍ତେ ସର୍ବସ୍ୱାନ୍ତ ହୋଇଗଲେ । ଏହା ଦେଲା ମୋତେ ଦ୍ୱିତୀୟ ଧକ୍କା । ଯେଉଁ ମାନଙ୍କୁ ନେଇ ଏ ସମସ୍ୟା ବହୁଳ ଯୋଜନା ନିର୍ମାଣ କରିବି,ସେମାନେ ମାତ୍ର ୧୫ଦିନ ବ୍ୟବଧାନରେ ଦୁଇ ଦୁଇଟି ବନ୍ୟାର ପ୍ରକୋପରେ ଦାଣ୍ଡର ଭିକାରୀ ତୁଲ୍ୟ ହୋଇଗଲେ । ଅନେକଙ୍କର ପିନ୍ଧିବା ଲୁଗାଟି ବ୍ୟତୀତ ଆଉ କିଛି ନଥିଲା କିନ୍ତୁ କିଶୋରୀ ବାବୁଙ୍କ ଅଭୟବାଣୀ, ବିପଦରେ ଭାଙ୍ଗି ପଡ଼ିବୁନି, ଯେ ବିପଦ ଆଣିଦେଇଛି ସେ ତାର ପ୍ରତିକାର କରିବ, ମୋ ମନରେ ଦମ୍ଭ ସଂଚାର କଲା, ସତକୁ ସତ କଲୋନୀର ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଲେ ଅନେକ ଅନୁଷ୍ଠାନ । ରେଡ଼କ୍ରସ ତରଫରୁ ଦୁଇଦିନ ଧରି ମାଗଣା ରୋଷାଇ ଓ ପ୍ରତ୍ୟେକଙ୍କୁ ଖଣ୍ଡିଏ ଲେଖାଏଁ ଲୁଗା, ବରହମପୁରର ବିଭିନ୍ନ ଅନୁଷ୍ଠାନ ଚାଉଳ ଓ ଲୁଗା ଯୋଗାଇ ଦେଲେ । ଗଞ୍ଜାମର କଲେକ୍ଟର ଏଫ.ଏ ମୋଜେସ ସାହେବ ଓ ବରହମପୁରର ଏସ.ଡ଼ି.ଓ ମିଃ ଗୁପ୍ତା ୭ଦିନ ପାଇଁ ରିଲିଫ ଚାଉଳ ଯୋଗାଇ ଦେଲେ । ଡ଼େମ ଓ କେନାଲରେ କାମ କରିଥିବା କଣ୍ଟ୍ରାକ୍ଟରମାନେ ଲୋକ ମାନଙ୍କର ଚଳିବା ପାଇଁ ସାହାଯ୍ୟ ଯୋଗାଇ ଦେଲେ । ସରକାରୀ କଟକଣାକୁ ଭ୍ରୁକ୍ଷେପ ନକରି ଗୋଟିଏ ମାସର ଦରମା,ମୁଁ ଅଗ୍ରିମ ସେଙ୍କସନ କରିଦେଲି, କି ଆଶ୍ଚର୍ଯ୍ୟ କଥା,

ଲୋକମାନେ ତାଙ୍କର ଦୁଃଖ ଭୁଲି ମୋ ପଛରେ ଏକତ୍ରିତ ହୋଇଗଲେ । ଆମ ଏକଜିକ୍ୟୁଟିଭ ଇଞ୍ଜିନିୟର ସାହେବ, ତାଙ୍କର ଆପ୍ରାଣ ଚେଷ୍ଟା କରି ଆମ ମୁହଁରେ ହସ ଫୁଟାଇ ପାରିଛନ୍ତି । ତାଙ୍କ ପାଇଁ ଆମେ ପ୍ରାଣ ଦେଇ ଶ୍ରମ କରିବୁ । ଏ ବର୍ଷ ଘୋଡ଼ାହାଡ଼ ଗେପ୍ ବନ୍ଦ କରିବା ପାଇଁ ସେ ଯେଭଳି ନିର୍ଦ୍ଦେଶ ଦେବେ, ଆମେ କରିବୁ । (ଏଠାରେ ଏହା ଉଲ୍ଲେଖ ଯୋଗ୍ୟ ଯେ ଗଂଜାମ, କୋରାପୁଟ ଓ କଳାହାଣ୍ଡି ପ୍ରଭୃତି ଜିଲ୍ଲାମାନଙ୍କରେ କୌଣସି ବିଭାଗର ମୁଖ୍ୟ ଅଧିକାରୀଙ୍କୁ 'ସାହେବ ସଂମ୍ବୋଧନ କରିବାରେ ଜନସାଧାରଣ ଓ ଅଧସ୍ତନ କର୍ମଚାରୀମାନେ ଅଭ୍ୟସ୍ତ) ଅକ୍ଟୋବର ମାସରେ ସୁପରିନଟେଣ୍ଡିଂ ଇଞ୍ଜିନିୟର ଅମରେନ୍ଦ୍ର ମହାପାତ୍ରଙ୍କର ବଦଳି ହୋଇଗଲା । ତାଙ୍କ ସ୍ଥାନରେ ଯୋଗଦେଲେ ସଚ୍ଚିଦା ନନ୍ଦ ସିହ୍ନା । ସେ ଜଣେ ଅତିକର୍ମଠ,ଜ୍ଞାନୀ,ନିଷ୍ଠାପର ଓ ସାହାସୀ ଇଞ୍ଜିନିୟର । ଯେତେବେଳେ ସେ ଯୋଗଦେଲେ ,ଘୋଡ଼ାହାଡ଼ର ଡ଼େମ ଶେଷ କରିବା ପାଇଁ ମୋର ସାହସ ବହୁତ ବଢିଗଲା । ତାଙ୍କ ସହିତ ବସି ଘୋଡ଼ାହାଡ଼ ବନ୍ଧର ସମସ୍ୟା ବିଷୟରେ ବହୁତ ଆଲୋଚନା କଲି । ଦେଖିଲି ଏହା ଏକ ସମସ୍ୟା ବହୁଳ ଯୋଜନା । ଯୋଜନାର ଅବବାହିକା ୫୫ବର୍ଗମାଇଲି ଓ ଆୟକଟ ୧୫୦୦୦ ଏକର । ଡ୍ୟାମ୍‌ର ଲମ୍ବ ୫୨୦୦ଫୁଟ, ୧୯୭୨ ଜୁନମାସ ବେଳକୁ ଦୁଇପାର୍ଶ୍ୱରେ ୪୨୦୦ଫୁଟ ଲମ୍ବର ଡ଼େମ କାର୍ଯ୍ୟ ସରିଯାଇଥାଏ । ବାକୀଥାଏ ୧୦୦୦ ଫୁଟ ଲମ୍ବର ନଦୀର ପଥରୋଧ କରିବା ଅଂଶ ବା ଗେପ୍ କ୍ଳୋସିଙ୍ଗ । ଏହା ସମ୍ପୂର୍ଣ୍ଣ କରିବା ପାଇଁ ଦୁଇଟି ବଡ଼ ସମସ୍ୟା ଦେଖା ଦେଲା ।

ପ୍ରଥମ ସମସ୍ୟାଟି ହେଲା ଡ୍ୟାମ୍‌ର ଫାଉଣ୍ଡେସନ ସମସ୍ୟା, ଡ୍ୟାମ ପାଖରେ ନଦୀଟି ଗୋଟିଏ 'S' ଅକ୍ଷରର ଆକୃତି ଧାରଣ କରିଛି । ପ୍ରାକ୍ ଐତିହାସିକ ଯୁଗରେ ନଦୀଟିର ଗତିପଥ ସିଧା ଥିଲା । କାଳକ୍ରମେ ଏହା 'S' ଆକାର ଧାରଣ କରିଛି । ସମୟର ଗତିରେ ନଦୀଟି ତାର ଗତିପଥ ପରିବର୍ତ୍ତନ କରିଥିବାରୁ ତାର ନିମ୍ନଦେଶରେ ଥିବା ବାଲୁକା ଶଯ୍ୟାଟି ପୋତି ହୋଇପଡ଼ିଛି । ଗେପ କ୍ଳୋଜିଂ ପାଇଁ ଯେତେବେଳେ କଟ୍‌ଅଫ ଟ୍ରେଞ୍ଚ ଖୋଳାଗଲା ଦେଖାଗଲା ଯେ ନଦୀ ପତ୍ତନରୁ ୩୦ଫୁଟ୍ ତଳେ ବାଲୁକା ଶଯ୍ୟା ରହିଛି । ନଦୀର ବାମପାର୍ଶ୍ୱରେ କଟ୍‌ଅଫ୍ ଟ୍ରେଞ୍ଚ ଖୋଳିଲା ବେଳେ ନଦୀ ପତ୍ତନରୁ ୩୦ଫୁଟ୍ ପର୍ଯ୍ୟନ୍ତ ଥିବା ବାଲୁକା ଶଯ୍ୟାଟି ନିର୍ମାଣ ହୋଇସାରିଥିବା

ଡେମର ନିମ୍ନ ଦେଶରେ ଅଛି ବୋଲି ଜଣାପଡ଼ିଲା । ଏହା ସମସ୍ତଙ୍କ ମନରେ ଏକ ଭୟ ସଞ୍ଚାର କଲା । ଯେତେବେଳେ ମୁଁ ଚିକିଟି ଡିଭିଜନର ଦାୟିତ୍ୱ ଗ୍ରହଣ କଲି, ଡ଼େମ ପ୍ରତି ଥିବା ଏହି ବିପଦ ପ୍ରତି ଏସ.ଡ଼ି.ଓ ମାନେ ପ୍ରଥମେ ମୋର ଦୃଷ୍ଟି ଆକର୍ଷଣ କରିଥିଲେ । ଅଗର ସାହାଯ୍ୟରେ ୬୦/୭୦ଫୁଟ୍ ତଳୁ ସେମ୍ପଲ ଆଣି ପରୀକ୍ଷା କଲୁ। ଦେଖିଲୁ ଆମର ଅନୁମାନ ସତ୍ୟ । ଗୋଟିଏ ପତ୍ତନରେ ବାଲିମିଶା ମାଟିର ୫ଫୁଟ ଉଚ୍ଚତା ବିଶିଷ୍ଟ ଏକ ସ୍ତର ରହିଛି । ଏହା ନଦୀଠାରୁ ୨୦୦୦ ଫୁଟ ପର୍ଯ୍ୟନ୍ତ ବିସ୍ତୃତ । ସେମ୍ପଲ ଗୁଡ଼ିକ ହୀରାକୁଦ ଲେବୋରେଟରୀକୁ ଟେଷ୍ଟିଂ ପାଇଁ ପଠାଗଲା । ସୌଭାଗ୍ୟକୁ ପାରମିଏବିଲିଟି କୋଏଫିସିଏଣ୍ଟ ଇମ୍ପାରଭିୟସ (Permeability co-efficient Impervious) ମାଟିର ସୀମାରେଖା ପାଖରେ ରହିଥିଲା । ଏହି ବାଲି ମିଶା ମାଟି ଉପରେ ଯେଉଁ ୨୦ରୁ ୪୦ଫୁଟ୍ ଉଚ୍ଚର ସ୍ତର ରହିଛି ତାହା ଅପେକ୍ଷାକୃତ ଇମ୍ପାରଭିଅସ ଏବଂ ପୁରାତନ ନଦୀର ଗତିପଥ ପ୍ରାୟ ୨୦୦୦ ଫୁଟ ପର୍ଯ୍ୟନ୍ତ ପରିବର୍ତ୍ତିତ ହୋଇସାରିଛି । ଏହାର ପ୍ରତିକାରର ଦୁଇଟି ଉପାୟ । ଗୋଟିଏ ହେଉଛି ତିଆରି ହୋଇଥିବା ଡ଼େମର ଅପଷ୍ଟ୍ରିମ ଟୋ ପାଖରେ ୪୦/୫୦ଫୁଟ ଗଭୀର ର କଟଅଫ ଟ୍ରେଞ୍ଚ ତିଆରି କରି ବର୍ମଦେଇ ଗୋଟିଏ ଅଧାଡ଼େମ ନିର୍ମାଣ । ଅନ୍ୟ ଉପାୟଟି ହେଉଛି 'S' ଆକାର ଧାରଣ କରିଥିବା ନଦୀର ବାଲୁକା ଶଯ୍ୟାକୁ ପୋତିଦେଇ ଡ଼େମର ତଳପଟେ ନଦୀ ଶଯ୍ୟାରେ ଫିଲ୍‌ଟର ଓ ବୋଲଡ଼ର ଦ୍ୱାରା ଲୋଡ଼ିଂ କରିଦେବା । ପ୍ରଥମଟି ହେଉଛି ସବୁଠାରୁ ନିରାପଦ ଓ ଉତ୍କୃଷ୍ଟ । କିନ୍ତୁ ଏଥିପାଇଁ ସେ ସମୟରେ ୨କୋଟି ଟଙ୍କା ଅଧିକ ଅର୍ଥ ଆବଶ୍ୟକ ଓ ପ୍ରୋଜେକ୍ଟ କାମ ଆଉ ଦୁଇବର୍ଷ ପଛେଇଯିବ, ଦ୍ୱିତୀୟଟିରେ ମାତ୍ର ୨/୩ଲକ୍ଷ ଟଙ୍କା ଖର୍ଚ୍ଚ ହେବ ଓ ଡ଼େମ ତଳେ ପାଇପିଂ ହେବାର ସମ୍ଭାବନାକୁ ସମ୍ପୂର୍ଣ୍ଣ ରୂପେ ଏଡ଼ାଇ ଦିଆଯାଇ ନ ପାରେ । ଅକ୍ଟୋବର ମାସରେ ଜଳସେଚନ ବିଭାଗର ଜଣେ ଜ୍ଞାନୀ ଓ ସମ୍ମାନିତ ଅବସର ପ୍ରାପ୍ତ ଇଞ୍ଜିନିୟର ମାଧବ ପାଣି କୌଣସି ଘରୋଇ କାମରେ ବରହମପୁରକୁ ଆସିଥିଲେ । ସେ ମୋତେ ଓ ସିହ୍ନା ସାହେବଙ୍କୁ ଡାକବଙ୍ଗଳାକୁ ଡକାଇ ଘୋଡ଼ାହାଡ଼ ବିଷୟରେ ଆଲୋଚନ କରିବା ପ୍ରସଙ୍ଗରେ କହିଲେ ତୁମେ ଦୁଇଜଣ କାହିଁକି ଏଭଳି ଏକ ଦୁଃସାହାସିକ ପଦକ୍ଷେପ ନେଉଛ ? ସରକାରୀ ଚାକିରୀରେ ଅତ୍ୟଧିକ

ଦୁଃସାହାସିକତା ଅନୁଚିତ୍, ତୁମେ ଦୁଇଜଣ ଯେଉଁ ପଦକ୍ଷେପ ଗ୍ରହଣ କରୁଛ ତା ଫଳରେ ସରକାରଙ୍କର ଅବଶ୍ୟ ୨କୋଟି ଟଙ୍କା ବଞ୍ଚିଯିବ, କିନ୍ତୁ ଯଦି ଡେମରେ ପାଇପିଂ ହୁଏ ଓ ଡ଼େମ ଭାଙ୍ଗିଯାଏ ତେବେ କେହି ତୁମର ଏ ଦୁଃସାହାସିକତାକୁ ତାରିଫ କରିବେ ନାହିଁ । ତୁମ ଦୁଇଜଣଙ୍କର ଚାକିରି ଯିବ ଓ ଏହା ଇଞ୍ଜିନିଅରିଂ ଡିପାଟମେଣ୍ଟର ଏକ କଳଙ୍କ ହୋଇ ରହିଯିବ । କିନ୍ତୁ ମୋ ମନକୁ ତାଙ୍କର ଏ ଯୁକ୍ତି ଆଦୌ ପାଇଲାନି । ମୁଁ କହିଲି, ଆମେ ଯଦି ଡ୍ୟାମ୍ ତିଆରି ପାଇଁ କୌଣସି ରିସ୍କ୍ ନେବାନି, ସବୁବେଳେ ନିରାପଦ ବାଟରେ ଯିବା, ତେବେ ଇଞ୍ଜିନିୟରିଂ ବିଦ୍ୟାର ମହତ୍ୱ ରହିଲା କେଉଁଠି ? ତା ହେଲେ ତ ଆଉ ଅଳ୍ପ ଦିନ ମଧ୍ୟରେ ଓଡ଼ିଶା କାହିଁକି ସାରା ଭାରତରେ ଡ଼େମ ତିଆରି ବନ୍ଦ ହୋଇଯିବ । ନିକଟରେ ରୁରକିରେ ପଢିଥିବା ଡ଼େମ ଓ ଭାରତର ବିଭିନ୍ନ ସ୍ଥାନରେ ଦେଖିଥିବା ପ୍ରୋଜେକ୍ଟର ଉଦାହାରଣ ଦେଇ ମୁଁ କହିଲି, ଆମେ ଗ୍ରାନାଇଟ ଚଟାଣ ପଥର ନ ଦେଖିଲେ ଟନେଲ କରିବାକୁ ପଛାଉଛୁ,କିନ୍ତୁ ହିମାଳୟର ପାଦଦେଶରେ ୟୁପି ଓ ପଞ୍ଜାବର ଇଞ୍ଜିନିୟର ମାନେ ମାଟି ଓ ଚୁନପଥର ମଧ୍ୟରେ ୪୦ଫୁଟିଆ ଟନେଲ କଲେଣି । ଆମେରିକାରେ ସମ୍ପୂର୍ଣ୍ଣ ବାଲୁକା ଶଯ୍ୟା ଉପରେ ପାରମିଏଲ କଟ୍ଅଫ୍‌ରେ୨୦୦/୩୦୦ଫୁଟ ଉଚ୍ଚ ଡେମ ତିଆରି ହେଲାଣି । ମାତ୍ର ୮୦ଫୁଟ ଉଚ୍ଚର ଡ଼େମ ତଳେ, ବାଲିମିଶା ମାଟି ରହିଯାଇଛି । ରହୁ ଡ଼େମ ଆଗରେ ତ ୨୦ଫୁଟ ଉଚ୍ଚର ୨୦/୩୦ ଫୁଟ ଲମ୍ବର ଲମ୍ବାରଭିଅସ ମାଟିର ସ୍ତର ରହିଛି । ଏହା ବ୍ଲାଙ୍କେଟ୍ କାମ ଦେବ । ନଦୀକୁ ପୋତି ଦେଲେ ବ୍ଲାଙ୍କେଟ୍ ଚଉଡ଼ା ମଧ୍ୟ ବଢ଼ିଯିବ । ଆମେ ଏତିକି ରିସର୍ଚ୍ଚ ନନେଇ ସରକାରଙ୍କୁ ଅଧିକ ୨କୋଟି ଟଙ୍କା ଖର୍ଚ୍ଚ ପାଇଁ ସୁପାରିଶ କଲେ ଟଙ୍କା ସେଙ୍କସନ୍ ହେବନି,ବରଂ ପ୍ରୋଜେକ୍ଟଟି ବନ୍ଦ ହୋଇଯିବ । ଗରିବ ଓଡ଼ିଶାର ଅଧିବାସୀ ଓ ଚିର ମରୁଡ଼ି ପ୍ରପିଡ଼ିତ ବଡ଼ଖେମୁଣ୍ଡି ଓ ସାନଖେମୁଣ୍ଡି ପଞ୍ଚାୟତ ସମିତି ଦୁଇଟି ପାଇଁ ଆମେ ଏତିକି ରିସ୍କ୍ ନେଇପାରିବାନି । ଏ ବର୍ଷ ଏ କାର୍ଯ୍ୟ ହୋଇନପାରିଲେ ଅଞ୍ଚଳର ଅଧିବାସୀ ମାନେ ଇଞ୍ଜିନିୟର ମାନଙ୍କୁ କେବେ କ୍ଷମା ଦେବେନି । ସିହ୍ନା ସାହେବ ମୋ ସହିତ ଏକମତ ହେଲେ । ତାଙ୍କଠାରୁ ପ୍ରେରଣା ପାଇଁ କାମଟିକୁ କରିବା ପାଇଁ ମୋର ଉତ୍ସାହ ଦୁଇଗୁଣ ବଢିଗଲା ।

ଦ୍ୱିତୀୟ ସମସ୍ୟାଟି ହେଲା ମାଟିକାମ କରିବା ପାଇଁ ସାଲନ୍ଦୀ ଡ଼େମ ସମ୍ପୂର୍ଣ୍ଣ ହେବା ପରେ ତାର ସବୁ ମେସିନାରି ଓ ଅପରେଟରଙ୍କୁ ୧୯୬୬ ମସିହାରୁ

ଘୋଡ଼ାହାଡ଼କୁ ସ୍ଥାନାନ୍ତରିତ କରି କଣ୍ଟ୍ରାକ୍ଟର ନିଯୁକ୍ତି ନ କରି ମାଟିଖୋଳା ଯନ୍ତ୍ର ଓ ଡ଼ମ୍ପର ସାହାଯ୍ୟରେ ବନ୍ଧର ମାଟି କାମ କରାଯାଉଥାଏ । କାମ କରିବା ପାଇଁ ଥାଏ ଅଢ଼େଇ କ୍ୟୁବିକୟାଡ଼ର ୨ଟି P.H ସୋଭେଲ ୭/୮ଟି ଡ଼ମ୍ପର,ଗୋଟିଏ ଦେଢ଼ କ୍ୟୁବିକ ମିଟର ବା ୨ କ୍ୟୁବିକ ୟାଡ଼ର ରସିଆନ ସୋଭେଲ ଓ ସାଳନ୍ଦୀ ଡ଼େମର ପୁରୁଣା କମାଟସୁ ଓ ହୀରାକୁଦର କେଟର ପିଲର ଡ଼୍ରୋଜର, ୧୯୬୭ରୁ ୧୯୭୨ ମଧ୍ୟରେ ୫ବର୍ଷ ଧରି କାମ କରି ଡ଼େମ ୨କୋଟି ଅର୍ଥାତ୍ ହାରାହାରି ବର୍ଷକୁ ୪୦ଲକ୍ଷ ମାଟି କାମ ହୋଇଥାଏ । ଗ୍ୟାପ୍ କ୍ଲୋଜିଙ୍ଗ ପାଇଁ ଦରକାର ୧କୋଟି ୨୦ଲକ୍ଷ ମାଟିକାମ । ଅପେକ୍ଷାକୃତ ପୁରାତନ ମେସିନାରି ସାହାଯ୍ୟରେ କିଭଳି ୧କୋଟି ୨୦ଲକ୍ଷ ମାଟିକାମ ସମ୍ଭବ ହେବ ? ସ୍ପିଲୱେଟି ଦୁଇଟି ପାହାଡ଼ ମଧ୍ୟରେ ଅବସ୍ଥିତ । ପାହାଡ଼ କାଟି ୨୦୦ଫୁଟ ଚଉଡ଼ାର ଏକ ସ୍ପିଲୱେ ନିର୍ମାଣ ଆବଶ୍ୟକ । ନିମ୍ନଅଂଶଟି ସମ୍ପୂର୍ଣ୍ଣ କରି ସଂକୁଚିତ ଡ଼େମ ତିଆରି କଲେବି ୧କୋଟି ମାଟିକାମ ଆବଶ୍ୟକ । ଗତ ୫ବର୍ଷ ଧରି ହାରାହାରି ୪୦ଲକ୍ଷ ମାଟି କାମ କରୁଥିବା ମେସିନାରି ସାହାଯ୍ୟରେ ୧କୋଟି ମାଟିକାମ କରି ଗେପ କ୍ଲୋଜିଙ୍ଗ କରିବା ଏକ ଦୁଃସାହାସିକ ପଦକ୍ଷେପ । କିନ୍ତୁ ଜଣେ ଇଞ୍ଜିନିୟର ଯଦି ଦୁଃସାହାସିକତା ମଧ୍ୟରେ ଗତିନକରି ସାଧାରଣ ଭାବରେ ଗତାନୁଗତିକ ପନ୍ଥାରେ ଗତିକରି କାର୍ଯ୍ୟ କରେ ତାର ବିଦ୍ୟାର ସାର୍ଥକତା କେଉଁଠି ? ତାକୁ ଦୁଃସାହାସିକ ପଦକ୍ଷେପ ଗ୍ରହଣ କରିବାକୁ ପଡ଼ିବ । ଜଟିଳ ଇଞ୍ଜିନିୟରିଂ ସମସ୍ୟାକୁ ସମାଧାନ କରିବାକୁ ପଡ଼ିବ । ଡ଼ିଜାଇନରେ ହେଉ ପ୍ଲାନିଂରେ ହେଉ, କି ନିର୍ମାଣ କାର୍ଯ୍ୟରେ ହେଉ, ତାକୁ ସାହାସିକ ପଦକ୍ଷେପ ଗ୍ରହଣ କରିବାକୁ ପଡ଼ିବ । ସେଥିରେ ସମସ୍ୟାର ସମାଧାନରେ ତାର ପରମତୃପ୍ତି । ଏ ସମସ୍ୟାର ସମାଧାନ ପାଇଁ ଖଲାସୀଠାରୁ ଆସିଷ୍ଟାଣ୍ଟ ଇଞ୍ଜିନିୟର ପର୍ଯ୍ୟନ୍ତ ସମସ୍ତଙ୍କୁ ଡ଼କାଇ ଗୋଟିଏ ମିଟିଂ କଲି ଡ଼େମ ସାଇଟରେ । ସମସ୍ତଙ୍କ ଆଗରେ ମୁଁ ମୋର ସମସ୍ୟା ଉପସ୍ଥାପନ କଲି । ଡ଼େମର ଗେପ କ୍ଲୋଜିଙ୍ଗ ଏବର୍ଷ ହେବ । କୋଟିଏ ମାଟିକାମ କରିବାକୁ ହେବ । ଏହା କିଭଳି ହେବ ତାର ବାଟ ମୋତେ ବତାଅ । ମେକାନିକେଲ୍ ଆସିଷ୍ଟାଣ୍ଟ ଇଞ୍ଜିନୟର ଗୋରାଦାସ ଓ ମେନ ଡେମ ଆସିଷ୍ଟାଣ୍ଟ ଇଞ୍ଜିନିୟର ଭରତ ପ୍ରଧାନ କହିଲେ, ଯଦି ୩ଟି ସିଫଟ୍‌ରେ କାମ ହୁଏ ତେବେ ଏ କାର୍ଯ୍ୟ ସମ୍ଭବ ହେବ । ପ୍ରତି ଅପରେଟର, ମେକାନିକ, ଫୋରମେନ୍‌ଙ୍କୁ ତାଙ୍କର ମତ ପଚାରିଲି । ଅଳ୍ପଦିନ ଆଗରୁ ବନ୍ୟାରେ

ସର୍ବସ୍ୱାନ୍ତ ହୋଇଥିବା କର୍ମଚାରୀମାନଙ୍କୁ ବିପଦ ବେଳେ ସାହାଯ୍ୟ କରିବା ପାଇଁ ମୁଁ ଯେ ଭଳି ପଦକ୍ଷେପ ନେଇଥିଲି ତା ଫଳରେ ସେମାନଙ୍କର ପୂର୍ଣ୍ଣ ବିଶ୍ୱାସ ଜନ୍ମିଯାଇଥାଏ ଯେ ମୁଁ ସେମାନଙ୍କ ସମସ୍ୟା ସମାଧାନ ପାଇଁ ଆପ୍ରାଣ ଚେଷ୍ଟା କରିବି ।

କେତେଜଣ ଅପରେଟର କହିଲେ ସେମାନଙ୍କୁ ଧନେଇ ଓ ସାଳନ୍ଦିରୁ ଛଟେଇ କରି ଏକା ଗ୍ରେଡ୍‌ରେ ଘୋଡ଼ାହାଡ଼ରେ ନିଯୁକ୍ତ କରିବା ଫଳରେ ସେମାନେ ୨/୩ଟି ଇନକ୍ରିମେଣ୍ଟ କ୍ଷତି ସହିଛନ୍ତି । କେତେଜଣ ଜୁନିଅର ଇଞ୍ଜିନିୟର ମତଦେଲେ ଯେ ୩ଟି ସିଫଟ୍‌ରେ କାମ କରିବା ପାଇଁ ଅପରେଟ୍‌ରଙ୍କର ଅଭାବ ଘଟିବ । ମେକାନିକେଲ୍ ଏସ.ଡ଼ିଓ.ଙ୍କ ମତରେ କାମର ଗୁରୁତ୍ୱ ଦୃଷ୍ଟିରୁ ରବିବାର ମଧ୍ୟ କାମ କରାଯାଉ ଓ ସବୁ ୱାର୍କରଙ୍କୁ ସପ୍ତାହଙ୍କୁ ଗୋଟିଏ ଦିନର ଅଧିକ ଦରମା ଦିଆଯାଉ ।

ସିହ୍ନା ସାହେବ ଓ ମୁଁ ସବୁତକ ସମସ୍ୟା ଧରି ଚିଫ୍ ଇଞ୍ଜିନିୟର ରାମଚନ୍ଦ୍ର ପାତ୍ରଙ୍କ ପାଖରେ ପହଞ୍ଚିଲୁ । ତାଙ୍କର ଦେଢ଼ବର୍ଷ ଶାସନ କାଳ ଓଡ଼ିଶାର ଜଳସେଚନ ବିଭାଗରେ ରାମ ରାଜ୍ୟ ସୃଷ୍ଟି କରିଥାଏ । ତାଙ୍କୁ ଡ଼େମର ତଳେ ଥିବା ବାଲିମିଶା ମାଟି ସମସ୍ୟା ଓ ଆମେ କିଭଳି ଏ ସମସ୍ୟା ସମାଧାନ କରିବାକୁ ସ୍ଥିର କରିଛୁ ତାହା ବିଷଦ ଭାବେ ବୁଝାଇଲୁ, ସେ ଆମସହ ରାଜି ହୋଇ ଅପଷ୍ଟ୍ରିମ ବ୍ଲାଙ୍କେଟ ଓ ଡ଼ାଉନଷ୍ଟ୍ରିମ ଫିଲଟର ଦେଇ ଗେପ କ୍ଲୋଜିଙ୍ଗ୍ ପାଇଁ ଅର୍ଡ଼ର ଦେଲେ । ୱାର୍କ ଚାର୍ଜ କର୍ମଚାରୀ ମାନଙ୍କର ସମସ୍ୟା ସମାଧାନ ପାଇଁ ସମସ୍ତଙ୍କୁ ୨ଟି ଲେଖାଏଁ ଏଡ଼ଭାନସ ଇନକ୍ରିମେଣ୍ଟ,ରବିବାର ପାଇଁ ଦିନକର ଦରମା ଓ ତିନୋଟି ସିଫଟ୍ ପାଇଁ ଆବଶ୍ୟକ ଅପରେଟର,ହେଲପରରୁ ପ୍ରମୋସନ ଦ୍ୱାରା ହେବାକୁ ଆଦେଶ ଦେଇଦେଲେ । ଅଫିସ୍ ଯେତେ ଆପତ୍ତି ଉଠାଇଲେ ମଧ୍ୟ ସେ ତାଙ୍କ ସିଦ୍ଧାନ୍ତରେ ଦୃଢ଼ ରହିଲେ । ଚିଫଇଞ୍ଜିନିୟରଙ୍କ ଅଭୟବାଣୀ ଓ ସୁପରିନଟେଣ୍ଡିଂ ଇଞ୍ଜିନିୟରଙ୍କ ପ୍ରେରଣା ପାଇ କାମ କରିବା ପାଇଁ ମୋର ଉତ୍ସାହ ଦ୍ୱିଗୁଣିତ ହୋଇଗଲା ।

ନଭେମ୍ବର ମାସରେ କଫର ଡ଼େମ ତିଆରି ହେଲା । ପୂର୍ବବର୍ଷ ନଦୀ ଗର୍ଭରେ କଟ୍‌ଅଫ୍ କାମ ସରିଯାଇଥାଏ । ରକ ଟୋ, ଫିଲଟର୍ କାମ କରିଦେଇ ମାଟିକାମ ଆଗେଇ ନେବା କଥା । ୱାର୍କ ଚାର୍ଜ କର୍ମଚାରୀ ମାନଙ୍କୁ ୨ଟିକରି ଇନକ୍ରିମେଣ୍ଟ, ପ୍ରମୋଶନ ଓ ରବିବାର ବାବଦ ମାସକୁ ଅଧିକ ୪ଦିନ ଦରମା ମିଳିବା ଫଳରେ

ମାଟି ବନ୍ଧର ଅଗ୍ରଗତି କ୍ଷେତ୍ରରେ ଅଭୂତପୂର୍ବ ପରିବର୍ତ୍ତନ ଦେଖାଗଲା । ୭ମାସରେ କୋଟିଏ ମାଟି କାମ ହେବ । ମାସକର ଟାରଗେଟ୍ ରହିଲା ୨୦ଲକ୍ଷ ଓ ଦୈନିକ ଟାରଜେଟ୍ ୭୦ହଜାର ଘନଫୁଟ । ତା ହେଲେ ହାରାହାରି ମାସକୁ ୧୫ଲକ୍ଷ ଘନଫୁଟ ମାଟି ହୋଇପାରିବ । ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଲେ ୱାର୍କଚାର୍ଜ କର୍ମଚାରୀ ବୃନ୍ଦ । ସେମାନେ ଦୈନିକ ୭୦/୮୦ ଏଭଳିକି ୧୦୦ ହଜାର ଘନ ଫୁଟ କାମ କରିବାରେ ଲାଗିଲେ । ସବୁ କର୍ମଚାରୀଙ୍କ ମଧ୍ୟରେ କି ଉତ୍ସାହ ଉନ୍ମାଦନା । ଏବର୍ଷ ଯେପରି ହେଉ ଡ଼େମ ସାରିବୁ । ନିର୍ବାହୀଯନ୍ତ୍ରୀଙ୍କ ସମ୍ମାନ ରକ୍ଷା କରିବୁ । ସେ ବର୍ଷର କାମ ଦେଖି ଥରେ ଆମର ସୁପରିନଟେଣ୍ଡିଂ ଇଞ୍ଜିନିୟର ଓ ଚିଫ୍ ଇଞ୍ଜିନିୟର ମତ ପ୍ରକାଶ କଲେ "ଭାସ୍କର ବାବୁ ସେନାପତି ହୋଇ ଠିଆ ହୋଇଛନ୍ତି । ତାଙ୍କ ପଛରେ ଛିଡ଼ା ହୋଇଛନ୍ତି ୱାର୍କ ଚାର୍ଜ କର୍ମଚାରୀ ବୃନ୍ଦ ସୈନ୍ୟ ଭାବରେ । ସୈନ୍ୟମାନେ ଯେଭଳି ସେନାପତିଙ୍କ ପାଇଁ ପ୍ରାଣବଳି ଦେବାକୁ ପ୍ରସ୍ତୁତ । ସେହିଭଳି ୱାର୍କଚାର୍ଜ କର୍ମଚାରୀମାନେ ଭାସ୍କର ବାବୁଙ୍କ ପାଇଁ ନିଜର ଜୀବନ ଦେବାକୁ ତିଆରି । ଭାସ୍କର ବାବୁ ପ୍ରକୃତରେ ଘୋଡ଼ାହାଡ଼ ଡ଼େମକୁ ଏକ ଯୁଦ୍ଧ କ୍ଷେତ୍ରରେ ପରିଣତ କରି ସମସ୍ତଙ୍କ ମନରେ ଏକ ଯୁଦ୍ଧଂ ଦେହି ଡାକରା ସୃଷ୍ଟି କରିଦେଇଛନ୍ତି । ୨୪ଘଣ୍ଟା ମଧ୍ୟରେ ଯେତେବେଳେ ଯାଇଛି ଦେଖିଛି ସମସ୍ତେ କର୍ମ ତତ୍ପର । ଘରେ ପିଲାମାନେ ବହୁତ ବ୍ୟସ୍ତ ହୋଇ ପଡ଼ିଲେ । ଉମା ଅନେକ ଥର କହିଛି, ସରକାରୀ କାମ ତା ବାଟରେ ହେବ, ଏତେ ବ୍ୟସ୍ତ ହେଉଛ, ରାତିରେ ଶୋଇପାରୁନ, ସାଭେଲ, ଡ଼ମ୍ପର, ଡ଼ିଜେଲ ଇତ୍ୟାଦି କହି ରାତିସାରା ବାଉଳି ହେଉଛ । ମୁଁ କହେଁ ଗୋଟିଏ ଚାଲେଞ୍ଜର ସମ୍ମୁଖୀନ ହୋଇଛି । ଏଥିରୁ ପଛେଇ ଯିବି ? ୫ବର୍ଷ ଧରି ବର୍ଷକୁ ୪୦ଲକ୍ଷ ମାଟିକାମ ହେଉଥିଲା । ସେହି ମେସିନର ବ୍ୟବହାର କରି ଏକ କୋଟି ମାଟି କାମ କରିବାକୁ ଆଗେଇ ଆସିଛନ୍ତି ମୋର ସୈନ୍ୟ ବାହିନୀ । ମୁଁ ସେନାପତି ହୋଇ କାର୍ଯ୍ୟରେ ଟିକିଏ ଅବହେଳା କଲେ ସେନାମାନଙ୍କର ମନବଳ ଭାଙ୍ଗି ପଡ଼ିବ ।

କାମ ଚାଲିଲା ଅବିରାମ ଗତିରେ । ଫେବୃୟାରୀ ମାସ ସୁଦ୍ଧା ହୋଇଗଲା । ୫୫ଲକ୍ଷ ଘନଫୁଟ ମାଟି । ଆହୁରି ତିନି ମାସ ରହିଛି । ବାକୀ ୩ମାସ ପାଇଁ ରହିଲା ୪୫ଲକ୍ଷ । ମୋର ପୂର୍ଣ୍ଣ ବିଶ୍ୱାସ ହୋଇଗଲା, ଯେ ଡ଼େମର ଗେପ କ୍ଲୋଜିଂ କାମ

ମେ ୩୧ ତାରିଖ ପୂର୍ବରୁ ସରିଯିବ । କିନ୍ତୁ ବିଧିର ବିଧାନ ଅନ୍ୟ ପ୍ରକାର । ସେ ମୋତେ ଆହୁରି ପରୀକ୍ଷା କରିବାକୁ ଚାହୁଁଛନ୍ତି । ହଠାତ୍ ଗୋଟିଏ ଟାଟା ସୋଭେଲର ଟର୍କକନଭେଟର ଭାଙ୍ଗିଗଲା । ଦାମ ପ୍ରାୟ ୫୦ହଜାର ଟଙ୍କା । ଚାରିଆଡ଼େ ଖୋଜି ଖୋଜି ନାୟାନ୍ତ ହୋଇଗଲୁ । କମ୍ପାନୀକୁ ଅର୍ଡ଼ର ଦେଲେ ତିଆରି କରିବାକୁ ଲାଗିବ ୩ମାସ ସମୟ । ୩ଟି ସିଫଟ କାମ ପାଇଁ ଅଛି ୩ଟି ସୋଭେଲ । ୨ଟି ସୋଭେଲ ଗୋଟିଏ ସିଫଟରେ ଲାଗେ । ଅନ୍ୟଟିର ମେଣ୍ଟେନେନ୍ସ ହୁଏ । ଗୋଟିଏ ଖରାପ ହୋଇଯିବାରୁ ପୁରା ଗୋଟାଏ ସିଫଟ କାମ ବନ୍ଦ ହୋଇଗଲା । ଡମ୍ଫର ଅଛି,ଡ଼ୋଜର ଅଛି, ଅପରେଟର୍ ଅଛନ୍ତି, କିନ୍ତୁ ଗୋଟାଏ ମେସିନ୍ ଅଭାବରୁ ଏକ-ତୃତୀୟାଂଶ କାମ କମିଗଲା । ଅନ୍ୟ ପ୍ରୋଜେକ୍ଟରୁ ସୋଭେଲ ଆଣିବାକୁ ମାସେ ସମୟ ଲାଗିବ । ସୋଭେଲ ଡିସ୍‌ମେଣ୍ଟଲ୍ ହୋଇ ଟ୍ରେଲର୍ ସାହାଯ୍ୟରେ ଆସି ପୁଣି ଏଠାରେ ଏସିମ୍ଲି ହେବାକୁ ଲାଗିବ ଏକ ମାସ ସମୟ । ହାତରେ ଆଉ ସମୟ ନାହିଁ । ଚାହୁଁ ଚାହୁଁ ୮/ ୧୦ ଦିନ ସମୟ ଗଡ଼ିଗଲା । ଅନ୍ୟ ଉପାୟ ନ ପାଇ ସେକ୍ରେଟେରୀଙ୍କୁ ଦେଖାକଲି । ସେକ୍ରେଟେରୀ ଥାଆନ୍ତି ନିହାରରଞ୍ଜନ ହୋତା । ତାଙ୍କ ହାତରେ ବାଲିମେଲା ଚିଫ ଇଞ୍ଜିନିୟରଙ୍କୁ ଓୟାରଲେସ୍ ପଠାଇ ସଙ୍ଗେ ସଙ୍ଗେ ଗୋଟିଏ ଟ୍ରେଲର ସହ ମେକାନିକାଲ୍ ଆସିଷ୍ଟାଣ୍ଟ ଇଞ୍ଜିନିୟରଙ୍କୁ ପଠାଇଲି । ସେ ବାଲିମେଲାର ମେକାନିକେଲ ସୁପରିନିଟେଣ୍ଡିଂ ଇଞ୍ଜିନିୟର ଗଣେଶ୍ୱର ମିଶ୍ରଙ୍କ ସହାୟତାରେ କାମ ନ କରି ଆଇଡ଼ଲ ଥିବା ଗୋଟିଏ ଟାଟା ସୋଭେଲର ଟର୍କ କନଭରଟର ଖୋଲି ନେଇ ଆସିଲେ । ସଙ୍ଗେ ସଙ୍ଗେ ଆମ ମେସିନରେ ଫିଟ କରି କାମ ଆରମ୍ଭ ହୋଇଗଲା । ଗୋଟିଏ ସୋଭେଲ ଅଧିକ ହୋଇଯିବାରୁ ୱାର୍କ ଚର୍ଜ ଷ୍ଟାପ୍ ପୂର୍ବ ଭଳି ୩ ସିଫ୍ କାମରେ ଲାଗି ପଡ଼ିଲେ । ୧୯୭୩ ମେ ୧୫ତାରିଖ ବେଳକୁ ଡ଼େମ ନିରାପଦ ଅବସ୍ଥାକୁ ଆସିଗଲା ।

କଫର ଡେମର ଉପରେ ଜମିଥିବା ଜଳକୁ କେନାଲବାଟେ ନିଷ୍କାସନ କରି ନଦୀର ଗର୍ଭକୁ କଫର ଡ଼େମର ମାଟି ସାହାଯ୍ୟରେ ପୋତି ବ୍ଲାଙ୍କେଟ କରିବାର ଯୋଜନା ଚାଲିଥାଏ । ଏହି ଅବସରରେ କେନାଲଟିକୁ ପରୀକ୍ଷା କରିବା ପାଇଁ କିଛି ପାଣି କେନାଲରେ ଛାଡ଼ି ଦିଆଗଲା । ଏହା ଆଗରୁ କେନାଲର ବେଡ଼ ଓ ବେଙ୍କ

ଲେଭେଲ ନେଇ କେନାଲ୍ ନିରାପଦ ବୋଲି ମୋତେ ଦିଗପହଣ୍ଡିର କେନାଲ ଏସ.ଡ଼ି.ଓ ସାର୍ଟିଫିକେଟ ଦେଇସାରିଥାନ୍ତି । କିନ୍ତୁ ଯେତେବେଳେ ପାଣି ଛଡ଼ାଗଲା ଦେଖାଗଲା ଯେ ତାଙ୍କର ଏହି ସାର୍ଟିଫିକେଟ୍ ଭୁଲ । ଡାହାଣପଟ କେନାଲ ଘୋଡ଼ାହାଡ଼ ନଦୀକୁ ଏକୁଇଡ଼କ୍ଟ ସାହାଯ୍ୟରେ ଅତିକ୍ରମ କରିଛି । ଏହା ୫ବର୍ଷ ଆଗରୁ ସମାପନ ହୋଇସାରିଥିଲା । କେନାଲ ବନ୍ଧ ତାର ନିଜ ଓଜନରେ ଦବିଯାଇଥିଲା । ଲେଭେଲ ନେବାରୁ ଦେଖାଗଲା ଯେ ବନ୍ଧ ଉପରେ ୫ଫୁଟ ମାଟି ଆବଶ୍ୟକ । ସେଥିପାଇଁ ଅନ୍ତତଃ୧୦/୧୫ଲକ୍ଷ ମାଟିର ଆବଶ୍ୟକତା ରହିଛି । ସୌଭାଗ୍ୟକୁ ଡ଼େମ କାମ ସରିଯାଇ ସୋଭେଲ ଓ ଡମ୍ପର ଫ୍ରି ହୋଇଗଲାଣି । ସମୁଦାୟ ମେସିନକୁ କେନାଲ କାମରେ ନିୟୋଜିତ କରାଯାଇ ପୁଣି ଚାଲିଲା ଯୁଦ୍ଧ ଭିତ୍ତିରେ କାମ । ମାତ୍ର ୧୫ଦିନରେ ହୋଇଗଲା କେନାଲର ମରାମତି କାମ । ଏ ଡ଼କୁଇଡ଼କ୍ଟର ଦୁଇପାର୍ଶ୍ୱ କେନାଲ ବନ୍ଧ କାମରେ ଯାହା କିଛି ଦୋଷ ଦୁର୍ବଳତା ଥିଲା,ତା ଉପରେ ଡ଼ମ୍ପର ଓ ଡ୍ରୋଜର ଚାଲିବା ଫଳରେ ତାହା ସବୁଦିନ ପାଇଁ ମଜ୍ଜୁଭୁତ ମାଟି ବନ୍ଧରେ ପରିଣତ ହୋଇଗଲା ।

ଜୁନ ମାସରେ ବାକିତକ ବଳକା କାମ ସରିଗଲା । ଡେମର ଉପର ପଥର ପେକିଂ, ସ୍ପିଲୱେର ବେଡ଼ କଙ୍କ୍ରିଟ, କେନାଲ ଓ ଡିଷ୍ଟ୍ରିବ୍ୟୁଟେରୀରେ ବାକୀ ଥିବା କାମ ମଧ୍ୟ ସରିଗଲା । ଦୀର୍ଘ ୧୨ବର୍ଷ ଧରି ଘୋଡ଼ାହାଡ଼ ଯୋଜନାର କାମ ଆରମ୍ଭ ହୋଇଥିଲେ ମଧ୍ୟ ଡ଼େମ ପାଖକୁ ଭଲ ରାସ୍ତାଟିଏ ନଥିଲା । କେନାଲ ତଳେ ଥିବା ରାସ୍ତାଟିରେ ବଡ଼ ବଡ଼ ପଥର ପକାଇ ସୋଲିଂ ହୋଇଥିବାରୁ ପ୍ରତି ବର୍ଷ ମରାମତିରେ ବହୁତ ଟଙ୍କା ଖର୍ଚ୍ଚ ହେଉଥିଲା । ୧୯୭୨ ମସିହାରେ ବାତ୍ୟା ଓ ବନ୍ୟା ବାବଦ ଆସିଥିବା ଟଙ୍କାର ସଦୁପଯୋଗ କରି କେନାଲର ଗୋଟିଏ ପାଖ ବନ୍ଧକୁ ଚଉଡ଼ା କରି,ସାଇଫନ ଗୁଡ଼ିକର ସ୍ଲାବକୁ ଚଉଡ଼ା କରି ଡ଼େମ ପାଖକୁ କେନାଲ ବନ୍ଧ ଉପରେ ଗୋଟିଏ ୧୨ଫୁଟିଆ ମୁରମ ରାସ୍ତା କରାଗଲା । ଏହା ଫଳରେ କେନାଲର ଇନସପେକସନ ବହୁତ ସୁବିଧାରେ ହୋଇ ପାରିଲା । ଏହା ଫଳରେ ଦିଗପହଣ୍ଡି ଠାରୁ ଘୋଡ଼ାହାଡ଼ ଡ଼େମ ପାଖକୁ ଯିବାର ସମୟ ୧ଘଣ୍ଟାରୁ ୨୫ମିନଟକୁ କମିଗଲା । ଖାଲି ସେତିକିନୁହେଁ ଲୋକେ ଘୋଡ଼ାହାଡ଼ ପାଖକୁ ଜିପ ପରିବର୍ତ୍ତେ କାର ସାହାଯ୍ୟରେ

ଯାଇପାରିଲେ । ବରହମପୁର ସହରଠାରୁ ମାତ୍ର ୫୦କିମି ଦୂରରେ ତପ୍ତ ପାଣି ଉଷ୍ଣ ପ୍ରସବଣ । ଏହା ଓଡ଼ିଶାର ସର୍ବ ବୃହତ ଉଷ୍ଣ ପ୍ରସବଣ । ଚତୁର୍ଦ୍ଦିଗ ସବୁଜ ପାହାଡ଼ଘେରା । ଏହି ଉଷ୍ଣପ୍ରସବଣର ଦୃଶ୍ୟ ଅତ୍ୟନ୍ତ ମନୋରମ । ଏହାର ତପ୍ତ ବାରିଧାରାକୁ ପାଇପ ସାହାଯ୍ୟରେ ଡାକବଙ୍ଗଳାରୁ ଆଣି ଗୋଟିଏ ସୁଇମିଂ ପୁଲ୍ ତିଆରି କରାଯାଇଛି । ପର୍ଯ୍ୟଟକମାନେ ନିଜ ପରିବାର ସହିତ ଏହି ସୁଇମିଂ ପୁଲ୍‌ରେ ସ୍ନାନ କରି ଅତ୍ୟନ୍ତ ଆନନ୍ଦ ଅନୁଭବ କରନ୍ତି ।

ଘୋଡ଼ାହାଡ଼ ଜଳଭଣ୍ଡାର ଓ ପାର୍ଶ୍ୱ ପାହାଡ଼ ଉପରେ ଥିବା ବିଶ୍ରାମାଗାର ତପ୍ତପାଣି ସାଙ୍ଗକୁ ଅନ୍ୟ ଏକ ଆକର୍ଷଣୀୟ ପର୍ଯ୍ୟଟନ କେନ୍ଦ୍ରରେ ପରିଣତ ହୋଇଗଲା । ତିବ୍ବତୀୟମାନେ ଚନ୍ଦ୍ରଗିରିରେ ତିବ୍ବତୀୟ ମାନଙ୍କ ପାଇଁ ଏକ ଶରଣାର୍ଥୀ ଶିବିର ପ୍ରତିଷ୍ଠା ହୋଇଛି । ତିବ୍ବତୀୟମାନେ ଅତ୍ୟନ୍ତ ପରିଶ୍ରମୀ କିନ୍ତୁ ସ୍ଥାନୀୟ ଆଦିବାସୀମାନେ ଅତ୍ୟନ୍ତ ଅଳସୁଆ । ଉଭୟ ସମ୍ପ୍ରଦାୟର ମିଶ୍ରଣରେ ଏକ ମିଶ୍ରିତ ସଭ୍ୟତା ଚନ୍ଦ୍ରଗିରିରେ ଗଢ଼ି ଉଠିଛି । ଦୀର୍ଘ ନଅ ମାସର ଅକ୍ଲାନ୍ତ ପରିଶ୍ରମ ପରେ ଜୁନ ମାସର ଶେଷ ସପ୍ତାହରେ ଟିକିଏ ଶାନ୍ତିର ନିଶ୍ୱାସ ମାରିଲି । ଗଞ୍ଜାମ ଜିଲାରେ ବର୍ଷା ଟିକିଏ ଡେ଼ରିରେ ହୁଏ । ତେଣୁ କେନାଲରେ ଜୁଲାଇ ୨୦/୨୫ ଆଡ଼କୁ ପାଣି ଛାଡ଼ିବାର ଯୋଜନା କରିଦେଇ ପିଲାମାନଙ୍କୁ ନେଇ ତପ୍ତପାଣି, ଚନ୍ଦ୍ରଗିରି, ଆଉ ଉଦୟଗିରି ଆଡ଼େ ବୁଲିଗଲି । ଜୁନ ୨୭/୨୮ ତାରିଖ ଦିନ ଦୁଇ ଦିନ ତପ୍ତପାଣିରେ ରହିଲୁ । ଦିନେ ଚନ୍ଦ୍ରଗିରି ଓ ଦିନେ ପାରଳାଖେମୁଣ୍ଡିରେ ଅବସ୍ଥାନ କରି ବରହମପୁର ଫେରିଲୁ । ପିଲାମାନେ ଦୀର୍ଘ ୯ମାସ ଧରି ମୋ ପାଖରୁ ଏକ ପ୍ରକାର ବିଚ୍ଛିନ୍ନ ହୋଇପଡ଼ିଥିଲେ । ବ୍ୟସ୍ତବହୁଳ ସରକାରୀ କାମ ଭିତରେ ମାଳ ଅଞ୍ଚଳରେ ଭ୍ରମଣ, ତପ୍ତପାଣି ଉଷ୍ଣ ପ୍ରସବଣରେ ସ୍ନାନ, ଚନ୍ଦ୍ରଗିରିରେ ତିବ୍ବତୀୟ ପରିବାରଙ୍କ ଚାଲିଚଳନ ଓ ତାଙ୍କ ନିର୍ମିତ ଗାଲିଚା କାରଖାନା ଦେଖି ପିଲାମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ଜୁଲାଇ ପହିଲାରେ ସ୍କୁଲ ଖୋଲିଲା । ବଡ଼ପୁଅ ଶୁଭେନ୍ଦୁ ଜୟପୁର ମଧ ଇଂରାଜୀ ବିଦ୍ୟାଳୟରୁ ବୃତ୍ତି ପାଇ କୋର୍ଟପେଟା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ୮ମ ଶ୍ରେଣୀରେ ପଢୁଥାଏ । କାହିଁକି କେଜାଣି ସେ ଏ ସ୍କୁଲର ବାତାବରଣ ସହିତ ନିଜକୁ ଖାପଖୁଆଇ ପାରିଲାନି । ସ୍କୁଲରେ ଚେୟାର ଟେବୁଲର ଅଭାବ । ପିଲାମାନଙ୍କର ଗୁଣ୍ଡାମି ତାକୁ

ଭଲ ଲାଗିଲାନି । ସେ ଅନୁଗୁଳ ଓ ଜୟପୁରରେ ଶୃଙ୍ଖଳିତ ସ୍କୁଲରେ ଅଧ୍ୟୟନ କରି ଆସିଛି । ବିଶୃଙ୍ଖଳା ପୂର୍ଣ୍ଣ କୋର୍ଟପେଟା ମ୍ୟୁନସିପାଲଟି ସ୍କୁଲ ତାକୁ ଆଦୌ ଭଲ ଲାଗିଲାନି । ଜୁଲାଇ ମାସ ପହିଲାରେ ସେଣ୍ଟ୍ରାଲ ସ୍କୁଲରେ ହେଉଥିବା ପ୍ରବେଶିକା ପରୀକ୍ଷା ଦେଇ ସେ ସିଲେକ୍ଟ ହୋଇଗଲା । ଜୁଲାଇ ୮ତାରିଖରେ ୮ମ ଶ୍ରେଣୀରେ ତାର ନାମ ମଧ୍ୟ ଲେଖା ହୋଇଗଲା ।

୧୯୭୩ ମସିହା ଜୁଲାଇ ମାସ ୧୦ତାରିଖ ସୋମବାର ଦିନ ହଠାତ୍ ମୋତେ ଜ୍ୱର ହେଲା । ୧୧ ତାରିଖ ଦିନ ବଡ଼ପୁଅ ବୁଲୁକୁ ଆସିଲା ଜ୍ୱର, ୧୨ତାରିଖ ଦିନ ବଡ଼ଝିଅ ଇଲା ଓ ସାନପୁଅ ପୁପୁଲ ଜ୍ୱରରେ ପଡ଼ିଲେ । ସମସ୍ତଙ୍କର ଗୋଟିଏ ଲକ୍ଷଣ । ଜ୍ୱର ହେବାର ୨୪ଘଣ୍ଟା ପରେ ୧୨ଘଣ୍ଟା ପାଇଁ ପୂରା ରେମିଶନ ପରେ ଜ୍ୱର ଆଉ କମିବାକୁ ନାହିଁ । ଦିନରାତି ୨୪ଘଣ୍ଟା ଜ୍ୱରରେ ପ୍ରକୋପ ୧୦୩ ରୁ ୧୦୫ ଭିତରେ । ପ୍ରଫେସର ଦାମୋଦର ମିଶ୍ର ଦେଖି କହିଲେ ଏହା ଭାଇରେଲ ଇନଫେକସନରୁ ହୋଇଛି । କ୍ରୋସିନ୍ ବା ଆଲକା ପାଇରନ ଦେଇ ଏହାର ପ୍ରକୋପ କମ କରି ରଖ । ସେହିଭଳି ଚାଲିଲା ଚିକିତ୍ସା ଶୁକ୍ରବାର ପର୍ଯ୍ୟନ୍ତ । ଶୁକ୍ରବାର ଦିନ ସେ ହଠାତ୍ କଟକ ଚାଲିଗଲେ । ଏସୋସିଏଟ ପ୍ରଫେସର ପ୍ରଫୁଲ୍ଲ ସାହୁଙ୍କୁ ଡ଼କାଇ ଅଣାଗଲା ଶନିବାର ଦିନ । ବହୁତ ଥର ରକ୍ତ ପରୀକ୍ଷା ହେଲାଣି, କିନ୍ତୁ ଜ୍ୱରର କାରଣ ଜଣାପଡୁନଥାଏ । ୧୫ତାରିଖ ଶନିବାର ଦିନ ମୋର ରକ୍ତ ପରୀକ୍ଷାରୁ ଜଣା ପଡ଼ିଲା ମେଲେରିଆ ପାରାସାଇଟ ଅଛନ୍ତି । ତେଣୁ କାଳ ବିଳମ୍ବ ନକରି ସମସ୍ତଙ୍କୁ ଏକା ଥରକେ ୪ଶିଶି କୁଇନାଇନ ଇଞ୍ଜେକସନ୍ ଓ ୪ଟି କରି କ୍ଲୋରୋକୁଇନ ବଟିକା ଖାଇବାକୁ ଦେଲେ । ଏହି ଔଷଧ ଦିଆଯାଇଛି କି ନାହିଁ ବୁଲୁ ବାଥରୁମ ଯିବା ବାଟରେ କହିଲା ମୋ ମୁଣ୍ଡ ବୁଲାଇ ଦେଉଛି, ମୁଁ ପଡ଼ିଯିବି । ଦେଖାଗଲା ଯେ ତାର ଟେମ୍ପରେଚର ୧୦୬.୫ଫାରେନାଇଟ୍, ତାର ୧୫ମିନିଟ୍ ପରେ ଇଲା କହିଲା ବାପା ପଙ୍ଖା ସହିତ ଛାତ କାହିଁକି ଘୁରୁଛି ? ଦେଖିଲି ତାର ଜ୍ୱର ୧୦୬.୫ଫା, ତାର ୧୫ମିନଟ ପରେ ମୋତେ ବହୁତ ଖରାପ ଲାଗିଲା । ମୁଁ ପଚାରିଲି ମୋର ଟେମ୍ପେରେଚର କେତେ ? ଡାକ୍ତର ବାବୁ କହିଲେ ୧୦୫ ଅଛି । କିନ୍ତୁ ବହୁତ ପରେ ଜାଣିଲି ମୋର ଟେମ୍ପେରଚର ଥିଲା ୧୦୬.୭ ଫାରେନହିଟ । ଅବଶ୍ୟ ସାନପୁଅ

ପୁପୁଲର ଟେମ୍ପେରେଚର ୧୦୫.୫୦ ଫାରେନହିଟରୁ ଅଧିକ ହୋଇନି । ଦୀର୍ଘ ୫ଦିନ ଧରି ଘରକୁ ବସ୍ତାଏ ଲେଖାଏଁ ବରଫ ଆସୁଥାଏ । ସମସ୍ତଙ୍କ ଦେହ ଉପରେ ଗୋଟିଏ ଚଦର ଘୋଡ଼ାଯାଇ ବରଫ ଲଦାଯାଇଥାଏ । ୪ଜଣ ଯାକ ଜ୍ୱରରେ ପଡ଼ିଛୁ । କେବଳ ଭଲ ଅଛନ୍ତି ଉମା ଓ ସିଲା । ସିଲାକୁ ମାତ୍ର ୯ବର୍ଷ । ସେ କିଛି ବୁଝିପାରୁନଥାଏ । ପୁପୁଲୁକୁ ମାତ୍ର ୪ବର୍ଷ । ସେ ସେହି ଜ୍ୱରରେ ମୋର ହାତ ଉପରେ ଶୋଇ ରହୁଥାଏ । ଟିକିଏ ଅନ୍ୟ ପିଲାଙ୍କ ପାଖକୁ ଗଲେ କାନ୍ଦେ । ଶନିବାର ଦିନ ସିହ୍ନା ସାହେବ ଭୁବନେଶ୍ୱର ଯାଇଥିଲେ । ସେ ଫୋନ୍‌ରେ ଆମ ଜ୍ୱରର ପ୍ରକୋପ ଶୁଣି ବହୁତ ବ୍ୟସ୍ତ ହୋଇପଡ଼ିଲେ । ଡାକ୍ତରଙ୍କୁ ପଚାରିଲେ ଏହା ତାଙ୍କ ଆୟତ୍ତରେ ନା ଡ଼ାଃ ରଘୁନାଥ ସାହୁଙ୍କୁ କଟକରୁ ନେଇଯିବେ ।

ଡ଼ାଃ. ପ୍ରଫୁଲ୍ଲ ସାହୁ ଆଉ ଗୋଟାଏ ଦିନ ସମୟ ନେଲେ । କହିଲେ ଯଦି ରବିବାର ସୁଦ୍ଧା ଜ୍ୱର ଆୟତ୍ତକୁ ନ ଆସେ ଡ଼ାଃ ରଘୁନାଥ ସାହୁଙ୍କୁ ଡକାଇବା । ସେ ଶନିବାର ସାରା ରାତି ଆମ ଘରେ ରହିଲେ । ସୌଭାଗ୍ୟକୁ ରବିବାର ସକାଳେ ପ୍ରଥମ ଥର ପାଇଁ ସମସ୍ତଙ୍କର ଜ୍ୱର ୧୦୧ରୁ ୧୦୨ ଭିତରେ ରହିଲା । ଆଉ ଜ୍ୱର କମିଲା ନାହିଁକି ବଢିଲାନାହିଁ । ନିଜେ ଡ଼ାକ୍ତର ଆଶ୍ଚର୍ଯ୍ୟ ହୋଇଗଲେ । କୁଇନାଇନ ଦିଆଚାଲିଥାଏ । ମଙ୍ଗଳବାର ପର୍ଯ୍ୟନ୍ତ ଜ୍ୱର ୧୦୦ରୁ୧୦୧ ପର୍ଯ୍ୟନ୍ତ ରହିଲା । ଆମ ଘରର ରୋଗ ବିଷୟ ନେଇ ବରହମପୁର ମେଡ଼ିକେଲରେ ଗୋଟିଏ ସେମିନାର ବସିଲା । ଏଣେ ରକ୍ତ ପରୀକ୍ଷା ଦ୍ୱାରା ଅନ୍ୟ କୌଣସି ରୋଗର ସନ୍ଧାନ ମିଳୁନି । ଶେଷରେ ସେକେଣ୍ଡାରୀ ଇନ୍‌ଫେକସନ୍ ସନ୍ଦେହ କରି ଟାଇଫଏଡ଼୍ ଚିକିତ୍ସା ଆରମ୍ଭ କରାଗଲା । କ୍ଲୋରେମାଇସିନ୍ ଖାଇବା ପରେ ବୁଧବାର ଜୁଲାଇ ୧୯ ତାରିଖ ସୁଦ୍ଧା ସମସ୍ତଙ୍କର ଜ୍ୱର ନରମାଲ ସ୍ତରକୁ ଆସିଗଲା । ଏହା ଭିତରେ ଉମାର ବଡ଼ ଭାଇ ଆସିଯାଇଥିଲେ । ସେ ଆସିଯିବାରୁ ଉମାକୁ ଟିକିଏ ସାହସ ହେଲା । ଗୁରୁବାର ଦିନ ଉମା ଟିକିଏ ଶାନ୍ତିରେ ଖାଇ ଶୋଇ ପାରିଲା । ୩ଟି ପିଲା ଓ ମୋର ଏପରି ସଂଘାତିକ ଅବସ୍ଥା ମଧ୍ୟରେ ବିଚଳିତ ନହୋଇ ଯେଉଁ ଜନନୀ ଓ ଜାୟା ଧୈର୍ଯ୍ୟର ସହ ସ୍ୱକର୍ତ୍ତବ୍ୟ ସଂପାଦନ କରିଗଲା, ସେ ଯେ ନିଶ୍ଚିତ ଭାବେ ପ୍ରଶଂସନୀୟା, ଏଥିରେ ତିଳେ ହେଲେ ସନ୍ଦେହ ନାହିଁ । ଏହା ଭିତରେ ବର୍ଷା ହୋଇ ଘୋଡ଼ାହାଡ଼ ଜଳଭଣ୍ଡାର ଆଂଶିକ

ଭର୍ତ୍ତି ହୋଇଯାଇଥାଏ । ସହଜେ ଦିଗପହଣ୍ଡି ଅଞ୍ଚଳ ଚିର ମରୁଡ଼ି ପ୍ରପୀଡ଼ିତ । ପୁଣି ଜଳଭଣ୍ଡାରରେ ପାଣି ଭର୍ତ୍ତିହେଲାଣି । ଲୋକମାନେ କେନାଲରେ ପାଣି ଛାଡ଼ିବାକୁ ଜିଦ୍ ଧରିଲେ । କେନାଲ ଏସ.ଡ଼ିଓ ଥିଲେ ସୁଶୀଲ କୁମାର ସୁବୁଦ୍ଧି । ସେ ମୋତେ ପଚାରିବାରୁ ଜୁଲାଇ ୨୦ତାରିଖ ଶୁକ୍ରବାର ଦିନ ପାଣି ଛାଡ଼ିବାକୁ କହିଦେଲି । ସନ୍ଧ୍ୟାବେଳେ ଖବର ଆସି ପହଞ୍ଚିଲା ଯେ କେନାଲରେ ବିଭିନ୍ନ ସ୍ଥାନରେ ଦୁର୍ବଳ ଥିବା ବନ୍ଧକୁ ମଜଭୁତ କରାଯିବା ଫଳରେ କୌଣସି ସ୍ଥାନରେ ପାଣି କେନାଲ ବନ୍ଧକୁ ଟପିବାର ଭୟ ନାହିଁ, କିନ୍ତୁ ବହୁଦିନ ଧରି କେନାଲ ତିଆରି ହୋଇ ରହିଯିବା ଫଳରେ ମୂଷା ଗାତ,ଉଇ ହୁଙ୍କା ଆଦି ସୃଷ୍ଟି ହୋଇ ବହୁତ ସ୍ଥାନରେ ଘଳିଆ ପଡୁଛି । ମାତ୍ର ଦିନେ ଆଗରୁ ଜ୍ୱରରୁ ଉଠିଛି । ନିୟମିତ ଖାଦ୍ୟ ଖାଇନାହିଁ । ଦେହ ବହୁତ ଦୁର୍ବଳ, ଜିପରେ ବସି ଯିବାକୁ ଡାକ୍ତର ମନା କରିଛନ୍ତି । କିନ୍ତୁ କ'ଣ କରିବି ? କର୍ତ୍ତବ୍ୟର ଆହ୍ୱାନ । କେନାଲ ଏସ୍‌ଡ଼ିଓ ସୁବୁଦ୍ଧିବାବୁ ଖବର ପଠାଇଛନ୍ତି, ସାର ନ ଆସିଲେ ସେ କେନାଲ ବନ୍ଧକୁ ରକ୍ଷା କରିବାକୁ ସକ୍ଷମ ହୋଇ ପାରିବେନି । ବାଧ୍ୟ ହୋଇ କେନାଲ ଗେଟ୍ ବନ୍ଦ କରିଦେଇଛନ୍ତି । ଚମ ବାଇଦ କୋଶେ, ତୁଣ୍ଡ ବାଇଦ ସହସ୍ର କୋଶ । ଚାରିଆଡ଼େ ହୁରି ପଡ଼ିଗଲାଣି, ଘୋଡ଼ାହାଡ଼ ଭାଙ୍ଗିଗଲା, ସରକାରଙ୍କର ୫କୋଟି ଟଙ୍କା ପାଣିରେ ପଡ଼ିଗଲା । ଇଞ୍ଜିନିୟରମାନଙ୍କର ଅପରିଣାମଦର୍ଶିତା ଓ ନିମ୍ନଧରଣର କାର୍ଯ୍ୟ ଫଳରେ ଦିଗପହଣ୍ଡି ଓ ସାନଖେମୁଣ୍ଡି ପଞ୍ଚାୟତ ସମିତିର ଶହ ଶହ ଗ୍ରାମ ଆଜି ଜଳସେଚନ ସୁବିଧାରୁ ବଞ୍ଚିତ ହେବେ । ଅନ୍ୟ ଉପାୟ ନ ଦେଖି ବଜାରରୁ କିଛି ଫଳ ଓ ଔଷଧ ଧରି କାରରେ ବାହାରିଲି ଘୋଡ଼ାହାଡ଼ । ଉମା ଆଶ୍ଚର୍ଯ୍ୟ ହୋଇ ଗାଡ଼ି ଆଗରେ ଠିଆ ହୋଇଗଲା । ଏ କଣ କରିବାକୁ ଯାଉଛ ? ମୁଁ ତୁମକୁ ଏ ଅବସ୍ଥାରେ କେବେ ଛାଡ଼ିଦେବିନି । ମୁଁ ବରଂ ସାଙ୍ଗରେ ଯିବି । ତାକୁ ବୁଝାଇଦେଲି ପିଲା ୩ଜଣ ଏବେ ମାରାତ୍ମକ ରୋଗରୁ ଉଠିଛନ୍ତି । ସେମାନେ ନିଜ ଦାୟିତ୍ୱ ନେବା ଶିଖିନାହାଁନ୍ତି । ମୋ ଅପେକ୍ଷା ତାଙ୍କ ପାଇଁ ତୁମର ଆବଶ୍ୟକତା ବହୁତ ବେଶୀ । ସବୁକାମ ଠିକ୍ କରିଦେଇ ଆଜି ଫେରିଆସିବି କହି ଜୁଲାଇ ୨୧ତାରିଖ ଶନିବାର ସକାଳେ କାରରେ ବସି ଡ୍ରାଇଭରକୁ ୧୫/୨୦ କି.ମି ବେଗରେ ଗାଡ଼ି ଚଳାଇବାକୁ କହିଲି । ଯାଇ ଦେଖିଲି ଯେ କେନାଲରେ ବହୁତ ଯାଗାରେ ଘଳିଆ ପଡ଼ିଛି । ଫିଲିଂ

ସେକସନ୍ ଗୁଡ଼ିକତ ଆଉ ଡ଼େମ ଭଳି ଡ଼ିଜାଇନ ହୋଇନି, ସେଗୁଡ଼ିକ କମ୍ପେକସନ୍ ନ ହୋଇ ତିଆରି ହୋଇଛି । ଯେଉଁ ସ୍ଥାନରେ ହାଇଡ୍ରୋଲିକ ଗ୍ରେଡ଼ିଏଣ୍ଟ ବନ୍ଧର ସ୍ଲୋପ୍‌କୁ ଅତିକ୍ରମ କରିଯାଉଛି ସେଠାରେ ଘଳିଆ ପଡ଼ି ବନ୍ଧ ଭାଙ୍ଗିଯିବାର ଭୟ ଦେଖାଯାଉଛି । ଦୀର୍ଘ ପାଞ୍ଚ ଛଅବର୍ଷ ଆଗରୁ କେନାଲ ତିଆରି ହୋଇ ରହିବା ଫଳରେ ସେଥିରେ ଅସଂଖ୍ୟ ମୂଷାଗାତ, ବିଲୁଆ ଗାତ ଓ ଉଇ ହୁଙ୍କା ସୃଷ୍ଟି ହୋଇସାରିଛି । କେନାଲ୍‌ରେ ପାଣି ଛାଡ଼ିବା ମାତ୍ରେ ଏହି ଗାତ ଗୁଡ଼ିକ ବିପଦର କାରଣ ହୋଇ ଛିଡ଼ା ହୋଇଛନ୍ତି । ଡ଼େମ୍ ସାଇଟ ରେଷ୍ଟ୍‌ସେଡ଼୍‌କୁ ନଯାଇ କେନାଲ ଉପରେ ଗୋଟିଏ ଟେଣ୍ଟ ପକାଇଦେବାକୁ କହିଲି । ହଜାରେ ଲୋକ ଡ଼ିପାର୍ଟମେଣ୍ଟାଲି ଲଗାଇ ଦେବାକୁ ଅର୍ଡ଼ର ଦେଇଦେଲି । ମୋର ଉତ୍ସାହ ଦେଖି ମୋର ସବୁ ସହକର୍ମୀ ଆଗେଇ ଆସିଲେ । ମେକାନିକେଲ୍ ଏସ.ଡ଼ି.ଓ ଗୋରାଦାସ ସୋଭେଲ, ଡ଼ମ୍ପର ଓ ଡ଼ୋଜର ଧରି ପ୍ରସ୍ତୁତ, ଡ଼େମ ଏସ.ଡ଼ିଓ ତାଙ୍କର ଓ୍ୱାର୍କଚାର୍ଜ କର୍ମଚାରୀଙ୍କୁ ଧରି ଉପସ୍ଥିତ, କେନାଲ ଏସ.ଡ଼ି.ଓ ତାଙ୍କ ସବ୍‌ଆସିଷ୍ଟାଣ୍ଟ ଇଞ୍ଜିନିୟର ମାନେ ୩/୪ଘଣ୍ଟା ମଧ୍ୟରେ ୭୦୦/୮୦୦ କୁଲି ଯୋଗାଡ଼ କରି କାମ ପାଇଁ ପ୍ରସ୍ତୁତ । ସବୁ ଓ୍ୱାର୍କଚାର୍ଜ କର୍ମଚାରୀ ଡେମ୍ ତିଆରି ବେଳେ ମୋତେ ଯେ ଭଳି ପୂର୍ଣ୍ଣପ୍ରାଣରେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥିଲେ । ସେହି ଉତ୍ସାହ ଦେଖାଇ ମୋ ଆଦେଶ ଅପେକ୍ଷାରେ । ସମସ୍ତଙ୍କର ଏ ସ୍ନେହ, ଶ୍ରଦ୍ଧା, ଉତ୍ସାହ ଓ ଉଦ୍ଦୀପନା ଦେଖି ମୋ ଚକ୍ଷୁ ଲୋତକାଦ୍ର ହୋଇପଡ଼ିଲା । ମୁଁ ଭୁଲିଗଲି ନିଜକୁ । ଭୁଲିଗଲି ୧୦ଦିନ ଧରି ଏକ ମାରାତ୍ମକ ରୋଗ ଭୋଗ ଭୋଗିବା ପରେ, ମାତ୍ର ଦିନେ ଆଗରୁ ମୁଁ ବିଛଣାରୁ ଉଠିଛି । ଡ଼େମରେ କାମ କରୁଥିବା ୧୦୦ କର୍ମଚାରୀ ପ୍ରତ୍ୟେକ ୮/୧୦କୁଲିଙ୍କର ଦାୟିତ୍ୱ ନେଇ ଘଳିଆ ବନ୍ଦ କରିବା ସଙ୍ଗେ ସଙ୍ଗେ ଦୁର୍ବଳ ବନ୍ଧରେ ଗୋଟିଏ ଲେଖାଏଁ ବର୍ମ ସୃଷ୍ଟି କରି ତାକୁ ମଜଭୁତ କରିବାରେ ଲାଗିପଡ଼ିଲେ । ସିହ୍ନା ସାହେବଙ୍କ ପରାମର୍ଶ ଅନୁସାରେ ଭବିଷ୍ୟତ ବିପଦ ପାଇଁ ଡ଼େମ ପାଖରେ କିଛି ବାଲି ମେଟାଲ୍ ଓ ବୋଲଡ଼ର ଏଡ଼ଭାନସ୍ କଲେକସନ୍ ହୋଇ ରହିଥିଲା । ମେକାନିକେଲ୍ ଏସ.ଡ଼ି.ଓ ତାଙ୍କର ଡମ୍ପର୍ ଓ ଟ୍ରକ୍ ବ୍ୟବହାର କରି ସେଗୁଡ଼ିକ ବୁହାଇ ବଡ଼ ଫିଲିଂ ସେକସନ୍ ଯେଉଁଠାରେ ସିପେଜ୍‌କୁ ପୁରା ବନ୍ଦ କରିହେଲାନି ସେଠାରେ ଜମା କରି ରକଟୋ ତିଆରି କରାଇଦେଲେ । ଡୋଜର୍

ସାହାଯ୍ୟରେ ହାଲକା ମାଟି ଥିବା ବନ୍ଧକୁ ଦବାଇ ଦେଲେ । କେନାଲ ସ୍ଲୋପ୍‌ରେ ମାଟିକୁ ଡୋଜର୍ ସାହାଯ୍ୟରେ ଦବାଇବା ପାଇଁ ଅପରେଟର୍‌ମାନଙ୍କୁ କମ ରିସ୍‌କିନେବାକୁ ପଡ଼େନି । କିନ୍ତୁ ଘୋଡ଼ାହାଡ଼ର କର୍ମଚାରୀମାନେ ମୋ ପାଇଁ ନିଜ ଜୀବନକୁ ବିପଦାପନ୍ନ କରି ସବୁ କିଛି କରିବାକୁ ପ୍ରସ୍ତୁତ ଥିଲେ । ଚାଲିଲା କାମ ଦିନରାତି ଯୁଦ୍ଧ ଭିତ୍ତିରେ । ଶନିବାର ରବିବାର ଦୁଇଦିନ ପ୍ରୋଜେକ୍ଟର କର୍ମଚାରୀ ମାନେ ଶୋଇ ନାହାଁନ୍ତି । ସମସ୍ତଙ୍କ ମୁହଁରେ ଗୋଟିଏ ଭାଷା, ଆମର ଏକଜିକ୍ୟୁଟିଭ ଇଞ୍ଜିନିୟର ତାଙ୍କର ଜୀବନକୁ ବିପଦାପନ୍ନ କରି କେନାଲ ବନ୍ଧ ଉପରେ ରାତି କଟାଉଛନ୍ତି । ଆମେ ତାଙ୍କ ସମ୍ମାନ ରକ୍ଷା କରିବା । ସତକୁ ସତ ୩ଦିନ ଭିତରେ କେନାଲ ବନ୍ଧରେ ଥିବା ସବୁ ଦୁର୍ବଳ ସ୍ଥାନକୁ ମଜଭୁତ କରାଗଲା । ଧିରେ ଧିରେ ପାଣି ଛାଡ଼ି ସୋମବାର ରାତି ସୁଦ୍ଧା ପାଣି ୧୮ କି.ମି. ପଥ ଅତିକ୍ରମ କରି ଆସି ପହଞ୍ଚିଲା ଦିଗପହଣ୍ଡି ପାଖରେ । କେନାଲ ପାଣିରୁ ଆଞ୍ଜୁଳାଏ ଆଣି ମୁଣ୍ଡରେ ମାରି ସମସ୍ତଙ୍କୁ ଧନ୍ୟବାଦ ଦେଇ ଫେରିଲି ବରହମପୁର । ଗଞ୍ଜାମରେ ମୋର ବନ୍ଧୁଙ୍କର ଅଭାବ ନାହିଁ । ଅଧିକାଂଶ ଏମ.ଏଲ.ଏ,ପୂର୍ବତନ ଏମ.ଏଲ.ଏ, ଚେୟାରମେନ, ଓକିଲ, ବୁଦ୍ଧିଜୀବୀ ମୋର ବନ୍ଧୁ । ମୋର ରୋଗ ବିଷୟ ଚାରିଆଡ଼େ ପ୍ରଚାର ହୋଇ ଯାଇଥାଏ । ଦେଖିବାକୁ ବରହମପୁରକୁ ଆସି ମୋତେ ଘରେ ନପାଇ ଅନେକ ଆସିଲେ ଘୋଡ଼ାହାଡ଼ ପ୍ରୋଜେକ୍ଟକୁ । ତାଙ୍କ ଭିତରେ ଚିକିଟିର ପୂର୍ବତନ ଏମ.ଏଲ.ଏ ଦିବାକର ପଟ୍ଟନାୟକ, ରାଜା ସାହେବ ଓ ଏମ୍‌ଏଲଏ ଶଚିଦାନନ୍ଦ ଦେଓ, ସାନଖେମୁଣ୍ଡି ରାଜା ସାହେବ ଉଦୟ ନାରାୟଣ ଦେଓ, ଦିଗପହଣ୍ଡିର ଚେୟାରମେନ୍ ଚନ୍ଦ୍ରଶେଖର ମେକାପ, ଛତ୍ରପୁରର ଏମ.ଏଲ.ଏ ଦୈତାରୀ ବେହେରା କବିସୂର୍ଯ୍ୟନଗରର ଚେୟାରମେନ୍ ଅଭିମନ୍ୟୁ ସାହୁ, ପାତ୍ରପୁରର ଚେୟାରମେନ୍ ଚିନ୍ତାମଣି ଦ୍ୟାନସାମନ୍ତରାୟ, ଶେରଗଡ଼ର ଚେୟାରମେନ ଶରତ ତ୍ରିପାଠୀଙ୍କ ନାମ ଉଲ୍ଲେଖଯୋଗ୍ୟ । ଦିବାକର ବାବୁ ଓ ଚିକିଟି ରାଜା ସାହେବ ମୋତେ ଯେଉଁ ଅବସ୍ଥାରେ କେନାଲବନ୍ଧ ଉପରେ କାମ କରୁଥିବାର ଦେଖିଗଲେ ତାହା ସେମାନେ କେବେ ଭୁଲି ନାହାନ୍ତି । ସେଇକଥା ସେମାନେ ବହୁ ଜାଗାରେ କହି ମୋର କାମ ପାଇଁ ଥିବା ପ୍ରବଳ ଆଗ୍ରହର ଭୁରି ଭୁରି ପ୍ରଶଂସା କରିଛନ୍ତି । ଜନସାଧାରଣ ତଥା

ସେମାନଙ୍କ ପ୍ରିୟ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଏହି ଶ୍ରଦ୍ଧା, ପ୍ରଶଂସା ମୋର ଯାତ୍ରାପଥରେ ଅମୂଲ୍ୟ ପାଥେୟ ରୂପେ କାର୍ଯ୍ୟ କରିଛି ଓ ମୋ ପାଇଁ ପ୍ରେରଣାର ଉତ୍ସ ସ୍ୱରୂପ ହୋଇ ଆସିଛି ।

## ସପରିବାରେ ଦକ୍ଷିଣଭାରତ ପରିଭ୍ରମଣ

ସେପ୍ଟେମ୍ବର ମାସରେ ହେଲା ଦୁର୍ଗା ପୂଜା ଛୁଟି । ଛୁଟିରେ ପିଲାମାନେ ବାହାରକୁ ଯିବାକୁ ଆଗ୍ରହ ପ୍ରକାଶ କଲେ । ବନ୍ଧୁ ଜଗନ୍ନାଥ ତ୍ରିପାଠୀ ସେତେବେଳେ ଥିଲେ ଫୁଲବାଣୀ ଜିଲ୍ଲାରେ, ଗ୍ରାମ୍ୟ ଇଞ୍ଜିନିୟରିଂର ନିର୍ବାହୀଯନ୍ତ୍ରୀ । ତାଙ୍କର ଚାରିଜଣ ପିଲାଙ୍କ ସହ ସେ ଗୋଟିଏ ଫିଆଟ କାର ଧରି ବାହାରିଲେ । ଆମର ୪ଜଣ ପିଲାଙ୍କ ସହ ଆମର ଏମ୍ବାସେଡ଼ର କାର ଧରି ଆମେ ବାହାରିଲୁ, ସାଙ୍ଗରେ ଦୁଇଜଣ ଡ୍ରାଇଭର । ଉଭୟ ପରିବାର ୧୯୭୩ ମସିହା ସେପ୍ଟେମ୍ବର ମାସରେ ମାଡ୍ରାଜ ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ଆମର ଯାତ୍ରାର ପ୍ରଥମ ଦିନରୁ ହିଁ ବିପଦର ସମ୍ମୁଖୀନ ହେଲୁ । ଗାଡ଼ି ଦୁଇଟି ଆଗ ପଛ ହୋଇଚାଲିଥାଏ । ଟୁଣି ଠାରୁ ୧୫କିମି ଗଲାପରେ ଏକ ନିର୍ଜନ ସ୍ଥାନ ପଡ଼ିଲା । ସମୟ ପ୍ରାୟ ରାତି ୭ଘ.୩୦ମି, ଦୁଇ ପାଖରେ ପାହାଡ । ପାହାଡ଼ ଉପରୁ ଡକାୟତ ଦଳ ମୋର ଦ୍ରୁତଗାମୀ ଗାଡ଼ି ଉପରକୁ ପଥର ଫିଙ୍ଗିଲେ । କିନ୍ତୁ ତାହା ମୋ ଗାଡ଼ିରେ ବାଜିଲା ନାହିଁ । କିନ୍ତୁ ପଛରେ ଆସୁଥିବା ଜଗନ୍ନାଥ ତ୍ରିପାଠୀଙ୍କ ଗାଡ଼ିର ବନେଟ ଉପରେ ଏକ ପଥର ପଡ଼ି ସାମନାକାଚକୁ ଭାଙ୍ଗିଦେଲା । କାଚ ଖଣ୍ଡ ଖଣ୍ଡ ହୋଇଯିବାରୁ କିଛି ଦେଖାଗଲାନି । କିନ୍ତୁ ଡ୍ରାଇଭର ସାହସର ସହିତ ଗାଡ଼ି ଚଲାଇ ଆସିଲା, ଆମ ଗାଡ଼ି ଆଗରେ ଥିଲା । ପିଲାମାନେ ଅଧା ଅଧା ହୋଇବସିଥିଲେ । ତାଙ୍କ ଗାଡ଼ିର ବିଳମ୍ବ ଦେଖି ମୁଁ ଗାଡ଼ି ଅଟକାଇଲି । ସଙ୍ଗେ ସଙ୍ଗେ ସେ ପହଞ୍ଚିଗଲେ । ଆମେ କାଳ ବିଳମ୍ବ ନକରି ରାଜମହେନ୍ଦ୍ରୀକୁ ଚାଲିଆସିଲୁ । ସେଠାରେ ରାତ୍ରିଯାପନ କରି, ତା ପରଦିନ ଗୋଟିଏ କାଚ ବଦଳାଇଲୁ ଓ ଉପର ଓଳି ବାହାରିଲୁ ବେଜଓ୍ୱାଡ଼ା ଅଭିମୁଖେ । ମନରେ ଭୟ ପଶିଯାଇଥାଏ । ସନ୍ଧ୍ୟା ହୋଇଯିବାରୁ ରାତିଟି ସେଠାରେ ଅତିବାହିତ କରି ତାପରଦିନ ଚାଲିଲୁ ତିରୁପତି । ପହଞ୍ଚିବା ବେଳକୁ ସନ୍ଧ୍ୟା । ତାପରଦିନ ଥିଲା ଦୁର୍ଗାଷ୍ଟମୀ । ସର୍ବସାଧାରଣ ଦର୍ଶନ ଦିନ । ସ୍ପେସାଲ ଦର୍ଶନ ବନ୍ଦ । ବାଧ ହୋଇ ଧାଡ଼ିରେ ଛିଡ଼ା ହୋଇ ୪ଘଣ୍ଟା ପରେ ଦର୍ଶନ

ପାଇଲୁ, ତା ପୁଣି ଗୋଟିଏ ମିନିଟ ପାଇଁ । ତହିଁ ଆରଦିନ ବାଙ୍ଗାଲୋର ମହୀଶୂର ଅଭିମୁଖେ ଯାତ୍ରା । ସେ ଦିନ ଏକ ନାଟକୀୟ ପରିସ୍ଥିତି ଉପୁଜିଲା । ଆମ ଗାଡ଼ି ବାଟମଝିରେ ଟାଉନ୍ ଦେଇଗଲା । କିନ୍ତୁ ତ୍ରିପାଠୀ ବାବୁଙ୍କ ଗାଡ଼ି ବାଇପାଶରେ ଚାଲିଗଲା । ମୁଁ ପ୍ରତି ୨/୩ କି.ମିରେ ତାଙ୍କ ଗାଡ଼ି ସହ ମିଳାଇ ଋଲେ । ତାଙ୍କ ଗାଡ଼ିକୁ ନଦେଖି ମୁଁ ଗାଡ଼ିର ଗତି କମାଇଦେଲି । ସେ ମୋତେ ନ ପାଇ ଗାଡ଼ିର ଗତି ବଢାଇ ଦେଲେ । ପ୍ରାୟ ୨୦କି.ମି ଯିବା ପରେ ପଛକୁ ଫେରି ଯେଉଁଠାରେ ତାଙ୍କୁ ଛାଡ଼ିଥିଲି ସେଠାରେ ଖୋଜିବାକୁ ଫେରିଲି । ସେଠାରେ ତାଙ୍କୁ ନପାଇ ଦ୍ରୁତ ଗତିରେ ଗାଡ଼ିନେଇ ବୃନ୍ଦାବନ ଗାର୍ଡ଼ନ ଅଭିମୁଖେ ଯାତ୍ରା କଲୁ । ଶ୍ରୀରଙ୍ଗପଟ୍ଟନମ ଠାରୁ ବୃନ୍ଦାବନ ଗାର୍ଡ଼େନକୁ ସିଧା ରାସ୍ତା ରହିଛି । ଆମେ ସେହି ରାସ୍ତାରେ ଯାଇ ବୃନ୍ଦାବନ ଗାର୍ଡ଼ନରେ ତାଙ୍କୁ ନପାଇ ନିରାଶ ହୋଇ ପଡ଼ିଲୁ । ଉମା ଓ ସାନପୁଅ ପୁପୁଲୁ ସେ ଗାଡ଼ିରେ ବସିଥାନ୍ତି । ଆମ ଗାଡ଼ିରେ ତାଙ୍କର ୩ଜଣ ପିଲା । ଏକ ସଂକଟମୟ ପରିସ୍ଥିତି । ବୃନ୍ଦାବନ ଗାର୍ଡ଼ନ୍ ଦେଖିସାରିବା ପରେ ଫେରିବାକୁ ବସିଛୁ ହଠାତ୍ ସମସ୍ତଙ୍କୁ ଦେଖିଲୁ । ତା ପରଦିନ ମହିଶୂରର ଚାମୁଣ୍ଡି ଠାକୁରାଣୀ, ନନ୍ଦିପର୍ବତ, ବୃନ୍ଦାବନ ଗାର୍ଡ଼ନ ଓ ପେଲେସ୍ ଦେଖି କୃଷ୍ଣରାଜ ସାଗରରେ ରାତ୍ରିଯାପନ କରି ଫେରିଲୁ ବାଙ୍ଗାଲୋର । ବାଙ୍ଗାଲୋରର ରହଣି ମଧ୍ୟରେ ଗୋଟିଏ ଦିନ ପୁଟପର୍ତ୍ତୀରେ ସାଇ ବାବାଙ୍କୁ ଦର୍ଶନ କଲୁ । ତା ପରଦିନ ଲାଲବାଗ ଓ ଅନ୍ୟାନ୍ୟ ଦର୍ଶନୀୟସ୍ଥାନ ସହ ନଗର ଭ୍ରମଣର ଆନନ୍ଦ ପିଲାମାନେ ଅନୁଭବ କଲେ । ତହିଁ ଆରଦିନ ପଣ୍ଡିଚେରୀରେ ଅରବିନ୍ଦ ଆଶ୍ରମ ଦର୍ଶନ କରି ମାନ୍ଦ୍ରାଜ ଫେରିଲୁ । ମାନ୍ଦ୍ରାଜରେ ଗୋଟିଏ ଦିନ ରହଣି ପରେ ପ୍ରତ୍ୟାବର୍ତ୍ତନ । ସନ୍ଧ୍ୟା ଆଗତ ପ୍ରାୟ । ମାନ୍ଦ୍ରାଜ ସହର ଛାଡ଼ିବା ସମୟରେ ଗୋଟିଏ ଲେଭଲ କ୍ରସିଂ ପାଖରେ ଗୋଟିଏ ରିକ୍ସା ବାଲାକୁ ନେଲୋର ରାସ୍ତା କୁଆଡ଼େ ବୋଲି ପଚାରିଲୁ । ଭାଗ୍ୟକୁ ସେ ଆଗରୁ ଭୁବନେଶ୍ୱରରେ ରିକ୍ସା ଚଳାଉଥିଲା । ଆମ ଗାଡ଼ିର ଓଡ଼ିଶା ନମ୍ବର ତା ଆଖିରେ ପଡ଼ିଛି । ପଛରେ ଆସୁଥିବା ତ୍ରିପାଠୀ ସାହେବଙ୍କ ଗାଡ଼ିକୁ ଅଟକାଇ ସେ କହିଲା ୭୦/୮୦ କି.ମି ପର୍ଯ୍ୟନ୍ତ ରାସ୍ତା ବିପଦଶଙ୍କୁଳ । ଗାଡ଼ି କେଉଁଠାରେ ହେଲେ ନ ଅଟକାଇ ୮୦କି.ମି ପାଖରେ ନେଲୋରରେ ରାତ୍ରି ଭୋଜନ କରିବେ । ପ୍ରାୟ ୧୦କି.ମି ଯିବା ପରେ ଗୋଟିଏ ବୁଲେଟ ମଟର

ସାଇକେଲ ଆମର ପିଛା କଲା ଭଳି ଲାଗିଲା । ଡ୍ରାଇଭରକୁ କହିଲି ଗାଡ଼ିର ଗତି ବଢ଼ାଅ । ଚାଲିଲା ଗାଡ଼ି ୮୦କି.ମି ବେଗରେ । ତଥାପି ସେ ସାଇଡ଼ ମାଗିଲା । ଗତି ବଢ଼ିଲା ୯୦କି.ମି ସ୍ପିଡ଼ରେ । ତଥାପି ସେ ସାଇଡ଼ ମାଗିଲା । ଗାଡ଼ିର ଗତି ହେଲା ୧୦୦,୧୧୦.୧୨୦,କି.ମି । ତଥାପି ସେ ସାଇଡ଼୍ ମାଗିଲା । ତାକୁ ଆଗକୁ ଛାଡ଼ିଦେଇ ତା ସହିତ ତାଳ ମିଳାଇ ଆମେ ଗାଡ଼ି ଚଳାଉଥାଉ ହଠାତ୍ ଗୋଟିଏ ଉଚ୍ଚା ପୋଲ ପରେ ଶଗଡ଼ର ସହ ପିଟି ହୋଇ ଦୁଇ ଜଣ ଯାନ ଆରୋହୀ ରାସ୍ତା ଉପରେ ରକ୍ତ ନଦୀରେ ସନ୍ତରଣ କରୁଥିବାର ଦୃଶ୍ୟ ଆମେ ଦେଖିଲୁ । ମୁଁ ଗାଡ଼ି ଅଟକାଉଥିଲି । ତ୍ରିପାଠୀବାବୁ ବାରଣ କରି ଶୀଘ୍ର ଚାଲିଯିବାକୁ କହିଲେ । ନେଲୋର ରାତ୍ରିଭୋଜନ ଅବସରରେ ମିସେସ୍ ତ୍ରିପାଠୀ କହିଲେ ୧୦ଦିନ ପରେ ପ୍ରଥମ ଥର ପାଇଁ ଆପଣଙ୍କ ଗାଡ଼ିକୁ ଗୋଟିଏ ମଟର ସାଇକେଲ୍ ଓଭର୍‌ଟେକ୍ କଲା । ସେ ରିକ୍ସାବାଲା ଆମକୁ ସତର୍କ କରିଦେଇଥିଲା । ଖୁବ ସମ୍ଭବ ସେ ଦୁଇଜଣ ଡକାୟତ । ଭଗବାନ ତାଙ୍କୁ ଦଣ୍ଡଦେଇଛନ୍ତି । ସେ ଦିନ ନେଲୋର ରେ ରାତ୍ରିଯାପନ ପରେ ତହିଁ ଆର ଦିନ ବେଜୱାଡ଼ାରେ ଅବସ୍ଥାନ ଓ ତୀର୍ଥ ଦର୍ଶନ ପରେ ଫେରିଲୁ ଭାଇଜାଗ । ବାଟରେ ଅନ୍ନାଭରମଠାରେ ଠାକୁର ଦର୍ଶନ କରି ଫେରିଲୁ ଭାଇଜାଗ ଓ ସିମାଞ୍ଚଳମ । ତହିଁ ଆରଦିନ ପ୍ରତ୍ୟାବର୍ତ୍ତନ ବରହମପୁରକୁ । ମାନ୍ଦ୍ରାଜରୁ ବୁଲୁକୁ ଜ୍ୱର ଆସିଲାଣି । ଏହି ଦୀର୍ଘ ଯାତ୍ରା ଫଳରେ ତାର ଜ୍ୱର ପୁଣି ବଢ଼ିଗଲା । କୁଇନାଇନରେ କିଛି ଉପସମ ନହେବାରୁ କ୍ଲୋରୋମାଇସେଟିନ ଦ୍ୱାରା ତାର ଜ୍ୱର ଭଲ ହେଲା । ପୁଣି ମାସେ ପରେ ତାର ଜ୍ୱର ରିଲାପସ କଲା । ପୁଣି ଥରେ କ୍ଲୋରୋମାଇସେଟିନ ଦ୍ୱାରା ଭଲ ହେଲା । ସେ ସମୁଦାୟ ୯୦ଟି କ୍ଲୋରୋମାଇସେଟିନ ବଟିକା ଖାଇବା ଫଳରେ ତା'ର ବାଳ କୁଞ୍ଚୁ କୁଞ୍ଚିଆ ହୋଇଗଲା । ଦେହ ରକ୍ତଶୂନ୍ୟ ହୋଇପଡ଼ିଲା । ଦୀର୍ଘ ୬ମାସ ପାଠ ପଢ଼ା ବନ୍ଦ ହେବା ପରେ ଜାନୁୟାରୀ ପହିଲାରେ ସେ ପୁଣି ଥରେ ସ୍କୁଲରେ ଯୋଗ ଦେଲା । କିନ୍ତୁ ତାର ପୂର୍ବ ଇଣ୍ଟେଲିଜେନ୍ସ ବଳରେ ସେ ଶତକଡ଼ା ୭୫ ନମ୍ବର ମେଥମେଟିକସ୍ ଓ ସାଇନସ୍‌ରେ ରଖି ସାଇନ୍ସ ଗ୍ରୁପ୍ ପାଇ ପାରିଲା । ଏହା ଥିଲା ଈଶ୍ୱରଙ୍କର ଅନନ୍ତ କରୁଣା ।

ଘୋଡ଼ାହାଡ଼ ଯୋଜନାର କାମ ସହିତ ବାହୁଦା ଯୋଜନାର କାମ ମଧ୍ୟ ଚାଲିଥାଏ । ବାହୁଦା ଯୋଜନାର କାର୍ଯ୍ୟ ୫ ଭାଗରେ ବିଭକ୍ତ:- (୧) କଳିଙ୍ଗ ଦୋବା

ଆନିକଟ ଓ ତାର କେନାଲ କାର୍ଯ୍ୟ (୨) ବଗି ଆନିକଟ ଓ କେନାଲ (୩) ପୋଇ ଚଣ୍ଡିଆ ଆନିକଟ ଓ ତାର କେନାଲ (୪) ବାଘଲଟି ଡ୍ରେମ (୫) ବାଘଲଟି ଡ୍ରେମ ତଳେ ବାହୁଦା ନଦୀ ଉପରେ ଆନିକଟ ଓ କେନାଲ କାର୍ଯ୍ୟ । ମୁଁ ବରହମପୁରରେ ଯୋଗଦେବା ପୂର୍ବରୁ କଳିଙ୍ଗ ଦୋଳା, ବଗି ଓ ପୋଇ ଚଣ୍ଡିଆ ଆନିକଟ ଓ କିଛି ମେନ କେନାଲ ତିଆରି ହୋଇଥିଲା । କେନାଲରେ ଇନସ୍ପେକସନ ରାସ୍ତା ନଥିଲା । ଡ୍ରିଷ୍ଟ୍ରିବୁଟେରୀ ଓ ମାଇନର ତିଆରି ହୋଇନଥିବାରୁ ଜଳର ସଦୁପଯୋଗ ହୋଇପାରୁନଥିଲା । ୧୯୭୨ ମସିହାରେ ବାତ୍ୟା ଓ ମଗୁଡ଼ି ଟଙ୍କାର ବ୍ୟବହାର କରି କଳିଙ୍ଗ ଦୋଳାରୁ ବାହାରିଥିବା ଦୁଇଟିଯାକ କେନାଲ ବନ୍ଧ ଓ ସାଇଫନକୁ ଚଉଡ଼ା କରି ରାସ୍ତା ତିଆରି କରି କେନାଲ ଇନସ୍ପେକସନର ସୁବିଧା କରାଗଲା । ଡିଷ୍ଟ୍ରିବୁଟେରୀ ଓ ମାଇନର କାମ ତ୍ୱରାନ୍ୱିତ କରି ୧୫ହଜାର ଏକର ଜମିକୁ ପାଣି ଯୋଗାଇ ଦିଆଗଲା । ବାଘଲଟି ଡ୍ରେମ ପାଇଁ ପ୍ରୋଜେକ୍ଟ ରିପୋର୍ଟ ପ୍ରସ୍ତୁତ କରି C.W.P.C ର ଅନୁମୋଦନ ପାଇଁ ପଠାଗଲା । ବାହୁଦା ନଦୀ ଉପରେ ସୁନାମୁହିଁ ଠାରେ ଆନିକଟ ନିର୍ମାଣ ଓ କେନାଲ କାର୍ଯ୍ୟ ଯାହାକି ପ୍ରଥମ ପର୍ଯ୍ୟାୟର ଅନ୍ତର୍ଗତ, ଏଷ୍ଟିମେଣ୍ଟ ସେଙ୍କସନ୍ କରି ଟେଣ୍ଡର ଏପ୍ରୁଭ୍ କରି ଡ଼ିସେମ୍ବର ମାସରେ କାର୍ଯ୍ୟ ଆରମ୍ଭ କରିବା ପାଇଁ ସବୁପ୍ରକାରର ପ୍ରସ୍ତୁତି ସରିଗଲା । ଘୋଡ଼ାହାଡ଼ରେ ୧୯୭୨-୭୩ରେ ମସିହାରେ ଯେଉଁ ରେକର୍ଡ଼ କାମ ହେଲା ତାହା ସାରା ଓଡ଼ିଶାରେ ଚହଳ ପକାଇ ଦେଇଥିଲା । ସୁପରିଟେଣ୍ଡି ଇଞ୍ଜିନିୟର ଓ ଚିଫ୍ ଇଞ୍ଜିନିୟରଙ୍କ ମହଲରେ ମୁଁ ଖୁବ୍ ଲୋକପ୍ରିୟ ହୋଇପଡ଼ିଥିବାରୁ ନିର୍ବାହୀଯନ୍ତ୍ରୀଙ୍କ ମହଲରେ ମୁଁ ଏକ ଈର୍ଷାର ପାତ୍ର ହୋଇପଡିଥିଲି । ୧୯୭୨ ଅକ୍ଟୋବର ମାସରେ ମୁଁ ଯେତେବେଳେ ଚିଫ୍ ଇଞ୍ଜିନିୟର ରାମଚନ୍ଦ୍ର ପାତ୍ରଙ୍କୁ କହିଲି ଯେ ଘୋଡ଼ାହାଡ଼ ବନ୍ଧରେ ଥିବା ବାକିତକ କାମ ତ ମାସେ ଦୁଇ ମାସ ଭିତରେ ସରିଯିବ । ମେସିନ୍ ଓ ୱାର୍କଚାର୍ଜ କର୍ମଚାରୀମାନଙ୍କୁ କିପରି କାର୍ଯ୍ୟରେ ଲଗାଯିବ । ସେ ସଙ୍ଗେ ସଙ୍ଗେ ସରକାରଙ୍କୁ ଚିଠି ଲେଖି ମୋତେ ଅର୍ଡ଼ର ଦେଇଦେଲେ ଯେ ଫେବୃୟାରୀ ମାସ ସୁଦ୍ଧା ଘୋଡ଼ାହାଡ଼ର ସବୁ କାମ ସାରିଦେଇ ୧୯୭୪ ମାର୍ଚ୍ଚ ମାସ ପହିଲାରୁ ସବୁ ମେସିନ୍ ଓ ୱାର୍କ ଚାର୍ଜ କର୍ମଚାରୀମାନଙ୍କୁ ବାଘଲଟିକୁ ନେଇ ସେଠାରେ ଡିପାର୍ଟମେଣ୍ଟାଲ କାମ ଆରମ୍ଭ କରିଦିଅ । ମୁଁ ଯେତେବେଳେ କହିଲି ଯେ

ବାଘଲଟି ପ୍ରୋଜେକ୍ଟ C.W.P.C ଦ୍ୱାରା ଅନୁମୋଦିତ ହୋଇନାହିଁ ଓ ଏଥିପାଇଁ ଏଡମିନିଷ୍ଟ୍ରେଟିଭ୍ ଏପ୍ରୁଭାଲ ମିଳିନି, ସେ କହିଲେ ଯେ ଲୋକଙ୍କୁ ବସାଇ ଦରମା ଦେବା ଓ କୋଟି କୋଟି ଟଙ୍କାର ମେସିନ୍‌କୁ ଆଉଡ଼ିଲ ରଖିବା ଠାରୁ ଏହି ସାମାନ୍ୟ ଇରେଗୁଲାରିଟି କରି ଆମେ ସରକାରଙ୍କର ବହୁ ଅର୍ଥ ସଞ୍ଚୟ କରିପାରିବା । ସରକାରୀ ଅନୁମୋଦନ କଥା ମୁଁ ବୁଝିବି, ତୁମେ ମାର୍ଚ୍ଚ ପହିଲାରୁ ବାଘଲଟି ଆରମ୍ଭ କର ।

ଇଂରାଜୀରେ Proverb ଅଛି Man proposes, God disposes । ରାମଚନ୍ଦ୍ର ପାତ୍ର ୧୯୭୩ ମସିହା ଡ଼ିସେମ୍ବର ୩୧ ତାରିଖରେ ଅବସର କାଳିନ ଛୁଟି ନେଇଗଲେ । ତାଙ୍କ ସ୍ଥାନରେ ଯୋଗ ଦେଲେ ସୁରେଶ ଚନ୍ଦ୍ର ତ୍ରିପାଠୀ । ସେ କାର୍ଯ୍ୟରେ ଯୋଗ ଦେବାର ୨ୟ ଦିନ ଚିକିଟି ଡିଭିଜନ କାମ ପରିଦର୍ଶନରେ ଆସିଲେ । ମୁଁ, ମାଧବ ପାଣି, ଜନାର୍ଦ୍ଦନ ତ୍ରିପାଠୀ ରାମଚନ୍ଦ୍ର ପାତ୍ରଙ୍କ ଭଳି ଦକ୍ଷ ଓ ସ୍ନେହୀ ଚିଫ୍‌ଇଞ୍ଜିନିୟରମାନଙ୍କ ଅଧୀନରେ ଦୀର୍ଘଦିନ କାମ କରି ସେମାନଙ୍କ ଭଳି ସରଳବିଶ୍ୱାସୀ ହୋଇପଡ଼ିଥିଲି । ମୁଁ କାହିଁକି ଭାବିଲି ସୁରେଶବାବୁ ଏକ ଉଦ୍ଦେଶ୍ୟ ପ୍ରଣୋଦିତ ହୋଇ ମୋ ଡିଭିଜନକୁ ତାଙ୍କର ପ୍ରଥମ ଇନସ୍‌ପେକସନ ପକାଇଛନ୍ତି । ୨ତାରିଖ ଦିନ ସେ ବରହମପୁରରେ ଅବସ୍ଥାନ କରି ୩ତାରିଖ ସକାଳେ ଟିକିଟି ଦେଇ ବାଘଲଟି ଗଲେ । କେନାଲ ବେଙ୍କରେ ଗାଡ଼ିରେ ଯିବାବେଳେ କହିଲେ ଯେ ଏହା ଓଡ଼ିଶାର ସବୁଠାରୁ ଭଲ ମେଣ୍ଟେନ ହୋଇଥିବା କେନାଲ । କଳିଙ୍ଗ ଦୋଳା ଆନିକଟ, ବଗି ଆନିକଟ ଓ ପୋଇ ଚଣ୍ଡିଆ ଆନିକଟ ତଳେ କଙ୍କ୍ରିଟ ବ୍ଲକ ଏପ୍ରନ ଉପରେ ଖୁବ ଅଳ୍ପ ଖର୍ଚ୍ଚରେ ହୋଇଥିବା ରାସ୍ତା ଓ ବାଘଲଟିର ରିପୋର୍ଟ ଦେଖି ବହୁତ ଖୁସି ହେଲେ । କଥା ପ୍ରସଙ୍ଗରେ ମୁଁ ଯେତେବେଳେ ପାତ୍ର ସାହେବ ଦେଇଥିବା ଅର୍ଡ଼ର ଓ ବାଘଲଟି ପ୍ରୋଜେକ୍ଟକୁ ମାର୍ଚ୍ଚ ପହିଲାରୁ ଡିପାର୍ଟମେଣ୍ଟାଲି କରିବାର ପ୍ରସ୍ତାବ ଦେଲି ସେ ସିଧା ମନା କରିଦେଲେ । ଖାଲି ସେତିକି ନୁହେଁ ସୁନାମୁହିଁ ଠାରେ ଆରମ୍ଭ ହୋଇଥିବା ଆନିକଟକୁ ବନ୍ଦ ରଖିବାକୁ ମଧ୍ୟ ଅର୍ଡ଼ର ଦେଇ ଆସିଲେ । ତାଙ୍କର ଅର୍ଡ଼ର ଦେବାର ଭଙ୍ଗୀ ଓ ମତାମତ ଦେଖି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଲି । ସେଦିନ ମୁଁ ପ୍ରଥମ ଥର ଜାଣି ପାରିଲିଯେ ମୋର ସରଳ କର୍ମଠ ଜୀବନରେ ପ୍ରଥମ ଧକ୍କା ଆସିଛି । ସେ ଘୋଡ଼ାହାଡ଼ ଆସି କେନାଲ ବନ୍ଧ ଉପରେ ପ୍ରସ୍ତାବିତ ମେକାଡ଼େମ୍ ରାସ୍ତାଙ୍କୁ

ମଧ୍ୟ ବନ୍ଦ କରିଦେଲେ । ଘୋଡ଼ାହାଡ଼ ବନ୍ଧର କାମ ପ୍ରାୟ ଶେଷ ଅବସ୍ଥାରେ ପହଞ୍ଚିଯାଏ । ଜୀବନକୁ ବିପଦାପନ୍ନ କରି, ଚାକିରୀ ପ୍ରତି ଚରମ ବିପଦ ସୃଷ୍ଟି କରି ଅକ୍ଲାନ୍ତ ପରିଶ୍ରମ କରି ଯେଉଁ କାର୍ଯ୍ୟ କରିବାକୁ ସକ୍ଷମ ହୋଇଥିଲି, ତାର ଗୁରୁତ୍ୱ ଓ ମହତ୍ୱ ସେ ଉପଲବ୍ଧି କଲା ଭଳି ମୋର ମନେହେଲାନି ।

୧୯୭୪ ମସିହା ମାର୍ଚ୍ଚ ମାସ । ଦିଗପହଣ୍ଡି ସବଡ଼ିଭିଜନର ମଉଳା ଭଣଜା କେନାଲରେ ହୋଇଥିବା ବ୍ଲାଷ୍ଟିଂ ମେଜରପେଣ୍ଟ ନେଇ ଏସ.ଡ଼ି.ଓ ସୁଶିଲ କୁମାର ସୁବୁଦ୍ଧି ଓ କଣ୍ଟ୍ରାକ୍ଟର ବାଞ୍ଛାନିଧି ପାତ୍ର ମଧ୍ୟରେ ମନାନ୍ତର ହେଲା । ବାଞ୍ଛାନିଧି ପାତ୍ର ଜଣେ କମ୍ୟୁନିଷ୍ଟ କର୍ମୀ, ଉଦୟ ପାତ୍ରଙ୍କ ଭାଇ । କବି ସୂର୍ଯ୍ୟନଗରର କମ୍ୟୁନିଷ୍ଟ ଏମ.ଏଲ.ଏ ସଦାନନ୍ଦ ମହାନ୍ତି ମୋତେ ଅନୁରୋଧ କଲେ ଯେ ଏସ.ଡ଼ିଓ ବାଞ୍ଛା ପାତ୍ରଙ୍କର ମେଜରମେଣ୍ଟ କାଟି ଦେଇଛନ୍ତି । ତାହା ଆଉଥରେ ଚେକ୍ କରି ତାର ପଇସା ପାଇବାର ବ୍ୟବସ୍ଥା କରନ୍ତୁ । ମୁଁ ନିଜେ ଯାଇ ଦେଖିଲି ଯେ,ସୁବୁଦ୍ଧି ବାବୁ ଯେଉଁ ମେଜରମେଣ୍ଟ କରିଛନ୍ତି ତାହା ନିର୍ଭୁଲ । ତେଣୁ ବାଞ୍ଛାନିଧି ପାତ୍ରଙ୍କୁ କହିଲି ଯେ ତାଙ୍କର ଏ କାର୍ଯ୍ୟରେ ଆଉ ଅଧିକ ପ୍ରାପ୍ୟ ନାହିଁ । ଏହା ସଦାନନ୍ଦ ମହାନ୍ତିଙ୍କୁ ଆଦୌ ଭଲ ଲାଗିଲାନି । ସେତେବେଳକୁ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ ୭ଜଣ କମ୍ୟୁନିଷ୍ଟ ଏମ.ଏଲ.ଏ ଙ୍କ ସହାୟତାରେ ଓଡ଼ିଶାରେ କଂଗ୍ରେସ ସରକାର ମନ୍ତ୍ରୀମଣ୍ଡଳ ଗଢିଥାନ୍ତି । ସଦାନନ୍ଦ ମହାନ୍ତିଙ୍କ ଆତ୍ମାଭିମାନକୁ ଏହା ବହୁତ ବାଧିଲା । ସେ ଦେଖିଲେ ଜଣେ ନିର୍ବାହୀଯନ୍ତ୍ରୀ ତାଙ୍କ କର୍ମୀଙ୍କ ଭାଇଙ୍କୁ ସାହାଯ୍ୟ କଲେ ନାହିଁ, ଏହା ସେ ସହନ୍ତେ କିପରି ? ପୁଣି ସୁରେଶ ତ୍ରିପାଠୀଙ୍କର ସେ ହେଉଛନ୍ତି ଅନ୍ତରଙ୍ଗ ବନ୍ଧୁ । ପୁନର୍ବାର ଏପ୍ରିଲ ମାସରେ ଘଟିଲା ଦ୍ୱିତୀୟ ଘଟଣା । ଘୋଡ଼ାହାଡ଼ର ବୋମକେଇ କେନାଲର ଟେଣ୍ଡରକୁ ମୁଁ ବାଞ୍ଛା ପାତ୍ରଙ୍କର ନାମରେ ସୁପାରିଶ ନ କରି ଅନ୍ୟ ଜଣଙ୍କର ନାମରେ କଲି । ସୁରେଶ ବାବୁ ଏହାକୁ ବାଞ୍ଛା ପାତ୍ରଙ୍କ ନାମରେ ଏପ୍ରୁଭ କଲେ କିନ୍ତୁ ଉପମନ୍ତ୍ରୀ କୁଆଁରିଆ ମାଝି ଫାଇଲ ମଗାଇନେଇ ମୁଁ ସୁପାରିଶ କରିଥିବା କୃଷ୍ଣ ପ୍ରଧାନଙ୍କ ନାମରେ ଟେଣ୍ଡରଟି ଏପ୍ରୁଭ୍ କଲେ । ସୁରେଶବାବୁ ଏଥିରେ କ୍ଷୁବ୍ଧ ହୋଇ କାମଟିକୁ ବନ୍ଦ କରିଦେଲେ । କହିବା ବାହୁଲ୍ୟ ଯେ ବୋମକେଇ କେନାଲ ସୁରେଶ ତ୍ରିପାଠୀଙ୍କ ମୃତ୍ୟୁ ପରେ ଆରମ୍ଭ ହୋଇ ୧୯୮୩ରେ ସମାପ୍ତ ହେଲା । ବାଘଲଟି ଡ଼େମ ଓ

କେନାଲ କାମ ମଧ୍ୟ ତାଙ୍କ ମୃତ୍ୟୁ ପରେ ଆରମ୍ଭ ହେଲା । ମେଁ ମାସରେ ଶୁଣାଗଲା ସଦାନନ୍ଦ ମହାନ୍ତି ତାଙ୍କର ସମସ୍ତ ଶକ୍ତି ଖଟାଇ ମୋତେ ଚିକିଟି ଡ଼ିଭିଜନରୁ ବଦଳି କରିଦେବେ । ମୋର ଘୋଡ଼ାହାଡ଼ ଡ଼େମ କାମରେ ତତ୍ପରତା ଓ ଅଧ୍ୟବସାୟ ଫଳରେ ମୁଁ ସାରା ଗଞ୍ଜାମ ଜିଲ୍ଲାରେ ଅତିପ୍ରିୟ ହୋଇ ପଡ଼ିଥିଲି । ମୋତେ ଚିକିଟି ଏମ.ଏଲ.ଏ ରାଜା ସାହେବ ଆସି ପଚାରିଲେ, ମୁଁ କହିଲି ଯେ ସୁରେଶ ବାବୁ ଜଣେ ନ୍ୟାୟବାନ ଲୋକ ବୋଲି ଶୁଣିଛି ସେ କେବେ ଜଣେ ରାଜନୈତିକ ବ୍ୟକ୍ତିର କଥାରେ ପଡ଼ି ମୋତେ ବଦଳି କରିବାକୁ ଚାହିଁବେନି । କିନ୍ତୁ ହାୟଃ, ମାଧବ ପାଣି, ଜନାର୍ଦ୍ଦନ ତ୍ରିପାଠୀ ଓ ରାମଚନ୍ଦ୍ର ପାତ୍ରଙ୍କ ଭଳି ସ୍ନେହୀ ସହାନଭୂତିଶୀଳ ଇଞ୍ଜିନିୟରଙ୍କ ପାଖରେ ଦୀର୍ଘବର୍ଷ କାମ କରିବା ପରେ ଦୁନିଆରେ ସୁରେଶ ବାବୁଙ୍କ ଭଳି ବିଷକୁମ୍ଭଂ ପୟୋମୁଖଂ ଚିଫ୍ ଇଞ୍ଜିନିୟରି ଅଛନ୍ତି ବୋଲି ମୁଁ କିଭଳି ଜାଣନ୍ତି ? ଦୁଇଥର ଯାଇ ତାଙ୍କୁ ଘରେ ଅନୁରୋଧ କଲି । ସାର, ମୋର ସ୍ତ୍ରୀ ଏମ.ଏ.ରେ ଆଡ଼ମିସନ୍ ନେଇଛି । ଏହା ତାର ଫାଇନାଲ୍ ଇୟର । ପୁଅ ସେଣ୍ଟ୍ରାଲ ସ୍କୁଲରେ ପଢୁଛି । ମୋତେ ଆଉ ୫ଟି ମାସ ଚିକିଟି ଡ଼ିଭିଜନରେ ରଖିଦେଇ ଡିସେମ୍ବର ପରେ ଯଦି ଚାହିଁବେ ଭୁବନେଶ୍ୱରର ଯେକୌଣସି ଅଫିସକୁ ବଦଳି କରି ଦିଅନ୍ତୁ । ସେ ହସି ହସି କହିଲେ ଭାସ୍କର ତୁମେ ତ ଘୋଡ଼ାହାଡ଼ ଓ ବାହୁଦାରେ ବହୁତ ଭଲ କାମ କରିଛ, ତୁମର ତ ୩ବର୍ଷ ପୁରିନି । ତୁମ୍ଭର ବଦଳି ହେବାର ପ୍ରଶ୍ନ ଉଠୁଛି କେଉଁଠୁ ? ପୁଣି ମୁଁ ତ କେବେ ପଲଟିକାଲ୍ ଲୋକଙ୍କ କଥାରେ କୌଣସି ଅଫିସରଙ୍କ ବଳଦି ପାଇଁ ସୁପାରିଶ କରେ ନି । ମୋ ଭଳି ସରଳ ବିଶ୍ୱାସୀ କିପରି ଜାଣନ୍ତା ଯେ ତାଙ୍କ ପେଟ ଭିତରେ ଅନ୍ୟ କଥା ରଖି ପାଟିରେ ମୋତେ ଏଭଳି ଅଭୟବାଣୀ ଦେଉଛନ୍ତି । ଉମା କିନ୍ତୁ ବିଶ୍ୱାସ କରୁନଥାଏ । ସେ ସବୁକଥା ଗଭୀର ଭାବେ ଆଲୋଚନା ପର୍ଯ୍ୟାଲୋଚନା କରେ । ସତକୁ ସତ ତାର କଥା ସତ୍ୟ ହେଲା । ଜୁନ ମାସ ୮ତାରିଖ ଦିନ ଆସିଲା ମୋର ବଦଳି ଅର୍ଡ଼ର । ତା ପୁଣି ବାଲିମେଳାକୁ, ପ୍ରୋଜେକ୍ଟ ସରିବା ପରେ । ଅର୍ଡ଼ର ପାଇ ମନ୍ତ୍ରୀ, ଚିଫ୍ଇଞ୍ଜିନିୟରଙ୍କୁ ବହୁତ ଅନୁରୋଧ କଲି । କିଛି ଫଳ ହେଲାନି । କିନ୍ତୁ ଯେତେବେଳେ ଶୁଣିଲି ଗଞ୍ଜାମର ୩ଜଣ ଯାକ ମନ୍ତ୍ରୀ ବିନାୟକ ଆଚାର୍ଯ୍ୟ, ମୋହନ ନାୟକ, ସୋମନାଥ ରଥ, ଚିକିଟି ଏମ.ଏଲ,ଏ ସଚ୍ଚିଦାନନ୍ଦ ଦେଓ, ସୋରଡ଼ା

ଏମ.ଏଲ.ଏ ଶରତ ଚନ୍ଦ୍ର ପଣ୍ଡା, ପାରଳାଖେମୁଣ୍ଡି ଏମ.ଏଲ.ଏ କୁରମ ଯଇକୁଲ ଦୋରା, କୋଦଳା ଏମ.ଏଲ.ଏ କାହ୍ନୁ ନାୟକ, ଖଲିକୋଟ ଏମ.ଏଲ.ଏ ତ୍ରିନାଥ ସାମନ୍ତରାୟ ଏକ ସ୍ୱରରେ ମୋର ଏ ବଦଳିର ପ୍ରତିବାଦ କଲେ ମୁଁ ନିଜେ ନିଜକୁ ବିଶ୍ୱାସ କରିପାରିଲିନି । ଚିକିଟି ଡିଭିଜନର କାମ କେବଳ ୩ଟି ବ୍ଲକରେ ଆବଦ୍ଧ । କିନ୍ତୁ ଅଜାଣତରେ ମୋର କାର୍ଯ୍ୟ ଦ୍ୱାରା ମୁଁ ସାରା ଗଞ୍ଜାମ ଜିଲ୍ଲାରେ ଲୋକପ୍ରିୟ ହୋଇପଡ଼ିଛି । ସେମାନେ ମୁଖ୍ୟମନ୍ତ୍ରୀଙ୍କୁ ବୁଝାଇଦେଲେ ଯେ ଯଦି ଭାସ୍କର ଚନ୍ଦ୍ର ନାୟକଙ୍କର ବଦଳି ସ୍ଥଗିତ ରଖାନଯାଏ, ଆମ ଜିଲ୍ଲାର ଅଫିସର ମାନଙ୍କର ମନୋବଳ ଭାଙ୍ଗି ପଡ଼ିବ । ଯେଉଁ ଇଞ୍ଜିନିୟର ନିଜର ଜୀବନକୁ ବିପଦାପନ୍ନ କରି ୧୨ବର୍ଷ ଧରି ଧିମେଇ ଚାଲିଥିବା ଯୋଜନା ଦୁଇଟି ସମ୍ପୂର୍ଣ୍ଣ କରି ଗଞ୍ଜାମର ଚାଷୀଙ୍କ ମୁହଁରେ ହସ ଫୁଟାଇ ପାରିଲେ, ମାତ୍ର ଜଣେ କଣ୍ଟ୍ରାକ୍ଟରଙ୍କ ପ୍ରରୋଚନାରେ ଯଦି ଜଣେ ଏମ.ଏଲ.ଏ. ତାଙ୍କୁ ବଦଳି କରିଦିଅନ୍ତି ତେବେ ଆମେ ଅଫିସରଙ୍କ ଆଗରେ ମୁହଁ ଦେଖାଇ ପାରିବୁନାହିଁ । ମୁଖ୍ୟମନ୍ତ୍ରୀ ସମସ୍ତଙ୍କ ଠାରୁ ଶୁଣି ଜଳସେଚନ ମନ୍ତ୍ରୀଙ୍କୁ ଏ ବଦଳି ଆଦେଶ ସ୍ଥଗିତ ରଖିବାକୁ ଆଦେଶ ଦେଲେ । ସେହି ଅନୁସାରେ ଅର୍ଡ଼ର୍ ଇସ୍ୟୁ ହେଲା ଜୁଲାଇ ପହିଲାରେ । ମୋର ଅର୍ଡ଼ର ସ୍ଥଗିତ ହେବା କଥା ଜାଣିପାରି ସଦାନନ୍ଦ ମହାନ୍ତି, ସୁରେଶ ତ୍ରିପାଠୀଙ୍କ ଜରିଆରେ ଖବର ପଠାଇ ମୋର ରିଲିଭର କିଶୋର ଚନ୍ଦ୍ର ପଣ୍ଡାଙ୍କୁ ଡକାଇ ଆଣିଲେ । କିନ୍ତୁ ସେ ଆସିବାପୂର୍ବରୁ ବଦଳି ଅର୍ଡ଼ର ସ୍ଥଗିତ ରଖିବାକୁ ଆଦେଶ ହୋଇସାରିଥିଲା । କିନ୍ତୁ ଯେଉଁମାନେ ମୋର ବଦଳି ପାଇଁ ଲାଗିଥିଲେ ସେମାନେ ଛୋଟ ଜନ୍ତୁ ନୁହଁନ୍ତି । ସୁରେଶ ତ୍ରିପାଠୀ, ସଦାନନ୍ଦ ମହାନ୍ତିଙ୍କୁ ଡକାଇ କହିଲେ ତମେ କଣ ଚୁଡ଼ି ପିନ୍ଧିଛ ? ଜଣେ ନିର୍ବାହୀଯନ୍ତ୍ରୀ କେତେଜଣ ଏମ.ଏଲ.ଏ ଙ୍କୁ ଏକତ୍ର କରି ଅର୍ଡ଼ରକୁ ସ୍ଥଗିତ କରିଦେଲା, ତୁମେ ସବୁ ବସି ରହିଛ କାହିଁକି ? ସଦାନନ୍ଦ ମହାନ୍ତି କମ୍ୟୁନିଷ୍ଟ ପାର୍ଟିର ୭ଜଣ ବିଧାୟକଙ୍କୁ ଏକତ୍ର କରି ମୁଖ୍ୟମନ୍ତ୍ରୀଙ୍କୁ ଧମକାଇ କହିଲେ ଯେ ଯଦି ଭାସ୍କର ଚନ୍ଦ୍ର ନାୟକଙ୍କର ବଦଳି ନ ହୁଏ ତେବେ ସେମାନେ ମନ୍ତ୍ରୀମଣ୍ଡଳଠାରୁ ନିଜର ସମର୍ଥନ ପ୍ରତ୍ୟାହାର କରିନେବେ, ସେତେବେଳେ ୧୪୭ଜଣ ସଭ୍ୟ ବିଶିଷ୍ଟ ବିଧାନସଭାରେ କଂଗ୍ରେସ ବିଧାୟକଙ୍କ ସଂଖ୍ୟା ମୋଟ ୭୦ । କମ୍ୟୁନିଷ୍ଟମାନେ ତାଙ୍କର ସମର୍ଥନ ପ୍ରତ୍ୟାହାର କରିନେଲେ

ମନ୍ତ୍ରୀମଣ୍ଡଳ ଭାଙ୍ଗିଯିବ । ମୁଖ୍ୟମନ୍ତ୍ରୀ ବାଧ୍ୟ ହୋଇ ସ୍ଥଗିତ ଆଦେଶ ମାତ୍ର ମାସେ ପରେ ପ୍ରତ୍ୟାହାର କରିନେଲେ ।

ଅନ୍ୟ ଉପାୟ ନଦେଖି ମୁଁ ଛୁଟିରେ ରହିଲି । ନାନା ଦୁଃଶ୍ଚିନ୍ତା ଭିତରେ ବୁଡ଼ିରହି ଘରେ ବସିଥାଏଁ । ଚିନ୍ତାର ବିଷୟ ଥାଏ ବାଲିମେଳାରେ ତ ସେଣ୍ଟ୍ରାଲ ସ୍କୁଲ ନାହିଁ ବୁଲୁ କିପରି ପାଠ ପଢିବ ? ଉମା କିପରି ପରୀକ୍ଷା ଦେବ ? ହଠାତ୍ ଦିନେ ଆମର ଅବସରପ୍ରାପ୍ତ ଚିଫ୍‌ଇଞ୍ଜିନିୟର ରାମଚନ୍ଦ୍ର ପାତ୍ର ବସାରେ ଆସି ପହଞ୍ଚିଲେ । ସେ କହିଲେ ଶୁଣିଲି ବାଲିମେଳାକୁ ବଦଳି ହୋଇଯାଇଛି ? ମିସେସ୍ ନାୟକ ପରା ଏମ୍.ଏ. ପଢୁଥିଲେ ସେ ପରୀକ୍ଷା ଦେବେ କିପରି ? ଏତେ କଷ୍ଟ କରି ନିଜ ଜୀବନକୁ ବିପନ୍ନ କରି ତୁମେ ଯାହା କାମ କଲ ଏହା କ'ଣ ତାର ପ୍ରତିଦାନ ? ମୁଁ କହିଲି ଯାହା ଭାଗ୍ୟରେ ଥିବ ହେବ । ମୁଁ ଆଉ କ'ଣ କରିପାରିବି ? ସେ କହିଲେ ଯେ ତଥାପି ଚେଷ୍ଟା କରିବାକୁ ହେବ । ତାଙ୍କ ଦ୍ୱାରା ଯଦି କିଛି ହୋଇପାରିବ ସେ କରିବାକୁ ପ୍ରସ୍ତୁତ ଅଛନ୍ତି । ମୁଁ କହିଲି ଯେ ବରହମପୁର ଆର.ଇ.ଓ ଅଧୀନରେ ଗୋଟିଏ ପୋଷ୍ଟ ଖାଲିଅଛି । ଆପଣ ଆର.ଇ.ଓ ଚିଫ୍‌ଇଞ୍ଜିନିୟରଙ୍କୁ ମୋର ନାମ ସୁପାରିଶ କରିବାକୁ କହିଲେ, ମୁଁ ବହୁତ ଉପକୃତ ହେବି । ମୋରି ବସା ଫୋନ୍‌ରେ ସେ ଆର.ଇ.ଓ ଚିଫ୍‌ଇଞ୍ଜିନିୟର ବଟୁରାମ ସ୍ୱାମୀଙ୍କୁ ଫୋନ୍ କଲେ । ଖାଲି ସେତିକି ନୁହେଁ ତହିଁଆର ଦିନ ସେ ନିଜେ ସ୍ୱାମୀ ସାହେବଙ୍କ ଅଫିସ୍‌କୁ ଯାଇ ମୋର ନାମ ସୁପାରିଶ କରି ପଠାଇଦେଲେ । ଏହା ଉପରେ ରୁରାଲ ଡେଭେଲପମେଣ୍ଟ ଡିପାର୍ଟମେଣ୍ଟ ଜଳସେଚନ ବିଭାଗର ମତ ଚାହିଁବାରୁ, ଜଳସେଚନ ବିଭାଗ ଚିଫ୍‌ଇଞ୍ଜିନିୟରଙ୍କୁ ତାଙ୍କ ମତ ପଚାରିଲେ । ଏ ଚିଠି ପାଇ ସୁରେଶ ବାବୁ ଲେଖିଲେ ଯେ ଭାସ୍କର ଚନ୍ଦ୍ର ନାୟକ ତାଙ୍କ ଜୀବନ ସାରା କୋଷ୍ଟାଲ୍ ଜିଲ୍ଲାରେ ଚାକିରି କରିଛନ୍ତି । ସେ ୫ମାସ ଭିତରେ କୋରାପୁଟରୁ ବଦଳି ହୋଇ ଆସିଛନ୍ତି । ତାଙ୍କର ବଦଳି ବାଲିମେଳା ବ୍ୟତୀତ ଆଉ କେଉଁଠାକୁ କରାନଯାଉ । କିନ୍ତୁ ଏହା ଭିତରେ ଏପରିକି ସୁରେଶବାବୁଙ୍କ ବଡ଼ଭାଇଙ୍କ ଜ୍ୱାଇଁ, ସେକ୍ରେଟେରୀ ନିହାର ରଞ୍ଜନ ହୋତା ମୋ ପ୍ରତି ହୋଇଥିବା ଅନ୍ୟାୟ ଅନୁଭବ କଲେଣି । ସେକ୍ରେଟେରୀଏଟ୍‌ରେ ଡ଼ିଲିଂ ଆସିଷ୍ଟାଣ୍ଟ ଠାରୁ ଆରମ୍ଭ କରି, ହେଡ୍‌ଆସିଷ୍ଟାଣ୍ଟ, ଅଣ୍ଡରସେକ୍ରେଟେରୀ, ଡ଼େପୁଟି ସେକ୍ରେଟେରୀ ଓ ନିଜେ

ସେକ୍ରେଟେରୀ ଆର.ଇ.ଓ କୁ ବଦଳି ପାଇଁ ମୋର ନାମ ସୁପାରିଶ କଲେ । ମୁଁ ଏଥିପାଇଁ ଜଲାଲୁଦିନ ଖାଁ, ରାଜୁବାବୁ, ନରୋତ୍ତମ ବାବୁ ଓ ନିହାର ବାବୁଙ୍କ ପାଖରେ ଚିରକୃତଜ୍ଞ । ସୁରେଶ ବାବୁଙ୍କର ମୋ ବିରୁଦ୍ଧରେ ବିଷୋଦଗାର ସତ୍ତ୍ୱେ ସେମାନେ ଯେଭଳି ଭାବେ ବିପଦବେଳେ ମୋତେ ସାହାଯ୍ୟ କରିବାକୁ ସାହସିକ ପଦକ୍ଷେପ ଗ୍ରହଣ କଲେ ତାହା ଜୀବନ ଥିବା ପର୍ଯ୍ୟନ୍ତ କେବେ ମନରୁ ପାଶୋରି ଯିବନି । ଏହା ଭିତରେ ଗଞ୍ଜାମର ଯୁବ କଂଗ୍ରେସ ସଭାପତି ରବି ମହାପାତ୍ରଙ୍କୁ କମ୍ୟୁନିଷ୍ଟମାନେ ବିଚ ରାସ୍ତା ଉପରେ ନିର୍ମମ ଭାବେ ହତ୍ୟା କରିବା ସଙ୍ଗେ ସଙ୍ଗେ ସଦାନନ୍ଦ ମହାନ୍ତିଙ୍କ ପୁଅକୁ ଛତ୍ରପୁର ଏସ.ପି ଏରେଷ୍ଟ କରି ରାସ୍ତାରେ ଚଲାଇ ନେବା କାରଣରୁ ସଦାନନ୍ଦ ମହାନ୍ତି ଜିଲ୍ଲା ଏସ.ପି.ଙ୍କୁ ୨୪ଘଣ୍ଟା ମଧ୍ୟରେ ବଦଳି କରିସାରିଥାନ୍ତି । ଏଥିରେ ଗଞ୍ଜାମର ସବୁ ଏମ:ଏଲ: ଅତ୍ୟନ୍ତ ମର୍ମାହତ ହୋଇ ଆର:ଇ:ଓ ଦାୟିତ୍ୱରେ ଥିବା ମନ୍ତ୍ରୀ ବାଙ୍କ ବିହାରି ଦାସଙ୍କ ପାଖରେ ପହଞ୍ଚିଲେ । ସେମାନଙ୍କର ନେତୃତ୍ୱ ନେଲେ ଚିକିଟିର ରାଜା ସାହେବ ସଚିଦାନନ୍ଦ ଦେଓ । ସେମାନେ ତାଙ୍କୁ କହିଲେ ଯେ ମୁଖ୍ୟମନ୍ତ୍ରୀ ସେମାନଙ୍କ ସମ୍ମାନ ରଖିଲେ ନାହିଁ । ଅନ୍ତତଃ ସେ ତାଙ୍କର ସମ୍ମାନ ରକ୍ଷାକରିବେ । ବାଙ୍କ ବାବୁ ଜଳସେଚନ ମନ୍ତ୍ରୀ ଦିବ୍ୟଲୋଚନ ଶେଖର ଦେବଙ୍କ ସହ କଥାବାର୍ତ୍ତା କରି ଏମ.ଏଲ.ଏ.ମାନଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଲେ । ଏହି ଅବସରରେ ଆମ ନିର୍ବାଚନମଣ୍ଡଳିର ଏମ.ଏଲ.ଏ ଜଗବନ୍ଧୁ ଦାସଙ୍କ ଅବଦାନ ଅବିସ୍ମରଣୀୟ । ସେ ମୁଖ୍ୟମନ୍ତ୍ରୀ, ବାଙ୍କବାବୁ ଓ ଦିବ୍ୟଲୋଚନ ବାବୁ ଓ ଗଞ୍ଜାମର ଏମ:ଏଲ:ଏ ଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରି କିଭଳି ମୁଁ ଏହି ବିପଦରୁ ଉଦ୍ଧାର ପାଇବି, ସେଥିପାଇଁ ଯେଉଁ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି, ମୁଁ ତାଙ୍କ ପାଖରେ ଚିରଦିନ ଋଣୀ ହୋଇରହିବି । ତାଙ୍କରି ଚେଷ୍ଟାଫଳରେ ମାତ୍ର ୨ଦିନ ଭିତରେ ଜଳସେଚନ ଓ ରୁରାଲ ଡେଭେଲପମେଣ୍ଟ ଡିପାର୍ଟମେଣ୍ଟରୁ ମୋର ବଦଳି ନୋଟିଫିକେସନ୍ ବାହାରି ପଡ଼ିଲା । ଏଭଳିକି ସେ କମ୍ୟୁନିଷ୍ଟ ଏମ.ଏଲ.ଏ ମାନଙ୍କୁ ଧମକ ଦେଇସାରିଥିଲେ ଯେ ସେମାନେ ଯଦି ଭାସ୍କର ବାବୁଙ୍କୁ ହଇରାଣ କରନ୍ତି, ସେ ବାଲେଶ୍ୱରର ଅନ୍ୟ ଏମ.ଏଲ.ଏ ମାନଙ୍କୁ ମେଳାଇ ବାଲେଶ୍ୱରରେ ଅନ୍ୟ ଜିଲ୍ଲାରୁ ଆସି କାମ କରୁଥିବା ଅଫିସରଙ୍କ ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଦେବେ । ଶେଷରେ ଅଗଷ୍ଟ ୨୫ ତାରିଖରେ ଗଞ୍ଜାମ ରୁରାଲ ଇଞ୍ଜିନିୟରିଂ ଡ଼ିଭିଜନରେ ପୋଷ୍ଟିଂ ହେଲା, ଏହିଭଳି ଭାବେ ଶେଷ ହେଲା ଚିକିଟି ଡ଼ିଭିଜନରେ ମୋର ଦୁଇବର୍ଷର ଜୀବନ ।

ଯେଉଁଦିନ ଚିକିଟି ଡ଼ିଭିଜନର ଦାୟିତ୍ୱ ହସ୍ତାନ୍ତର କାଗଜ ଦସ୍ତଖତ କଲି, ମୋର ଆଖିରୁ ଧାର ଧାର ଲୁହ ଗଡ଼ି ଆସିଲା । ଜୀବନରେ ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇଛି । ବିପଦ ବେଳେ ଭାଙ୍ଗିପଡ଼ିନାହିଁ । ବରଂ ବିପଦ ମୋତେ ତାର ସମ୍ମୁଖୀନ ହେବା ପାଇଁ ଦ୍ୱିଗୁଣ ଉତ୍ସାହ ଦେଇଛି । ଥରେ କାନ୍ଦିଥିଲି ୧୯୬୪ ଅକ୍ଟୋବର ୧୭ରେ ଯେଉଁ ଦିନ ହରାଇଥିଲି ମୋର ଜନ୍ମଦାତ୍ରୀ ମାଙ୍କୁ, ଦ୍ୱିତୀୟ ଥର କାନ୍ଦିଥିଲି ୧୯୬୫ ଅଗଷ୍ଟ ୨୯ ତାରିଖରେ ଯେଉଁଦିନ ମୋର ଅଲିଅଳି ଝିଅକୁ ଶ୍ମଶାନରେ ଶୁଆଇ ଦେଇ ଆସିଥିଲି । ଆଉ ତୃତୀୟ ଥର କାନ୍ଦିଲି ୧୯୭୪ ଜୁଲାଇ ୨୭ ତାରିଖରେ ଯେଉଁ ଦିନ ଚିକିଟି ଡିଭିଜନର ଦାୟିତ୍ୱ ହସ୍ତାନ୍ତର କଲି । ସବୁଠାରୁ ବେଶି ଦୁଃଖ ଲାଗିଲା ଯେତେବେଳେ ସୁପରିନଟେଣ୍ଡିଂ ଇଞ୍ଜିନିୟର ରମାନାଥ ଦାଶ କହିଲେ ଯେ ସୁରେଶବାବୁ ତାଙ୍କୁ ଫୋନ୍ କରି କହିଛନ୍ତି ଯେ ସ୍ଥଗିତ ଆଦେଶ କେନ୍‌ସଲ ହେବା ପରଦିନ ମୁଁ ଯଦି ଡିଭିଜନର ଦାୟିତ୍ୱ ହସ୍ତାନ୍ତର ନ କଲେ ସେ ସେହିଦିନ ମୋର ସସ୍‌ପେଣ୍ଡ ଆଦେଶ ବାହାର କରିଦେବେ । ଦୀର୍ଘ ଦୁଇବର୍ଷ ଧରି ନିଜର ଜୀବନକୁ ବିପଦାପନ୍ନ କରି ନିଜ ଚାକିରି ପ୍ରତି ଥିବା ବିପଦକୁ ଭ୍ରୁକ୍ଷେପ ନକରି ଯେଉଁ ଅକ୍ଳାନ୍ତ ପରିଶ୍ରମ କରିଥିଲି ତାର ଫଳ କଣ ଏଇଆ ? ମନେ ପଡ଼ିଲା ପାଣି ସାହେବ ସିହ୍ନା ସାହେବ ଓ ମୋତେ ୧୯୭୨ ମସିହାରେ ଦେଇଥିବା ଉପଦେଶ ବାଣୀ । ଲୋକଙ୍କର ସ୍ମରଣ ଶକ୍ତିର ସମୟ ବହୁତ କ୍ଷଣସ୍ଥାୟୀ । ତୁମ ଦୁଇଜଣଙ୍କର ଏହି କର୍ତ୍ତବ୍ୟନିଷ୍ଠା ଓ ତ୍ୟାଗକୁ ଲୋକେ ଖୁବ୍ ଶୀଘ୍ର ଭୁଲିଯିବେ । ତୁମେ ମୁଣ୍ଡ ଉପରକୁ ବିପଦ ନେଇ ଘୋଡ଼ାହାଡ଼ ଡ୍ୟାମଟି ଯଦି କରିଦିଅ ଓ ତୁମର କଳ୍ପନା ଅନୁସାରେ ଯଦି ଡେମ ନ ଭାଙ୍ଗି ରହିଯାଏ କେହି ତୁମକୁ ବାହାବା ଦେବେନି । ତୁମର ତ୍ୟାଗକୁ ଲୋକେ ଖୁବ୍ ଶୀଘ୍ର ଭୁଲିଯିବେ । ଅନ୍ୟ ପକ୍ଷରେ ଯଦି ଡ଼େମ୍‌ଟି ଭାଙ୍ଗିଯାଏ କେହି ତୁମ ଦୁଇଜଣଙ୍କର ପିଠିରେ ପଡ଼ିବେ ନାହିଁ । ତାଙ୍କ କଥା ସେଦିନ ଅନ୍ତରର ସହ ହୃଦୟଙ୍ଗମ କରିଥିଲି । ଯାହାଙ୍କ ହାତରେ କ୍ଷମତା ରହିଛି, ସେ ସବୁ କରିପାରିବେ । ମୋ ହାତରେ ତ କ୍ଷମତା ନାହିଁ । କିନ୍ତୁ ଅଛି ସତ୍ୟ ନ୍ୟାୟ ଧର୍ମ ଓ ମୋର ତ୍ୟାଗ, କର୍ତ୍ତବ୍ୟନିଷ୍ଠା ଓ ଅଞ୍ଚଳର ଉନ୍ନତିମୂଳକ କାର୍ଯ୍ୟ ପାଇଁ ଆନ୍ତରିକତା । ଅଫିସ ଷ୍ଟାଫ ଯେତେବେଳେ ବିଦାୟ ସମ୍ବର୍ଦ୍ଧନା ଦେବାପାଇଁ ମୋତେ ନିମନ୍ତ୍ରଣ କରିବାକୁ ଆସିଲେ ତାଙ୍କୁ କାନ୍ଦି କାନ୍ଦି କହିଲି ମୁଁ ଚିକିଟି ଡ଼ିଭିଜନରୁ ବିଦାୟ ନେଇପାରିବିନି । ଏ

ଡ଼ିଭିଜନର କାର୍ଯ୍ୟ ମୋର ରକ୍ତ ମାଂସ ସହିତ ମିଶି ଯାଇଛି । ମୁଁ ନିଜ ଚାକିରି ଓ ଜୀବନକୁ ବିପଦାପନ୍ନ କରି ଏ ଡିଭିଜନର ଦୁଇଟି ପ୍ରୋଜେକ୍ଟ ତିଆରି କରିଛି । ଶେଷରେ ମୋତେ ଏହି ପ୍ରତିଦାନ ମିଳିଲା । କିନ୍ତୁ ମନୁଷ୍ୟ ନିଜେ ନିଜକୁ ବଡ଼ ମନେ କରୁଥିଲେ ମଧ ସେ ଭୁଲିଯାଏ ଯେ ଅନ୍ୟ ଜଣେ ସବୁ ଦେଖୁଛନ୍ତି । ସେ ଦିନେ ନିଶ୍ଚୟ ଏହାର ବିଚାର କରିବେ । ସମସ୍ତେ ଜାଣନ୍ତି ଏହି ନାଟର ଗୋବର୍ଦ୍ଧନ ସଦାନନ୍ଦ ମହାନ୍ତିଙ୍କ କିଭଳି ଧିରେ ଧିରେ ଅଧୋଗତି ଘଟି ଶେଷରେ ପଲଟିକେଲ ମୃତ୍ୟୁ ଘଟିଛି ଓ ଆଉଥରେ ସେ ଏମ.ଏଲ.ଏ ହୋଇପାରି ନାହାନ୍ତି । କିଭଳି ତାଙ୍କର ପ୍ରଧାନ ସହଚର ସୁରେଶ ବାବୁ ନରକ ଯନ୍ତଣାରେ ହାହାକାର ମଧରେ ଶେଷ ନିଶ୍ୱାସ ତ୍ୟାଗ କଲେ । ଚିକିଟି ଡ଼ିଭିଜନ ଛାଡ଼ିବା ପରେ ସେ ବହୁତ ବାର ମୋର କ୍ଷତି କରିବାକୁ ଚେଷ୍ଟା କରିଛନ୍ତି । କିନ୍ତୁ କିଛି କରିପାରି ନାହାନ୍ତି । ଯେତେବେଳେ ଶୁଣିଲି କେନସର ରୋଗରେ ପଡ଼ି ତାଙ୍କର ଗୋଟିଏ ଗୋଡ଼ କଟାଯାଇଛି ଓ ସମସ୍ତେ ତାଙ୍କୁ ଦେଖା କରିବାକୁ ଯାଉଛନ୍ତି ଭାବିଲି ତାଙ୍କ ଶେଷ ଜୀବନରେ ଥରେ ଦେଖା କରିବିକି ? ସେତେବେଳକୁ ମୁଁ ଥାଏ ସମ୍ବଲପୁରର ମାଇନର ଇରିଗେସନ ସୁପରିନଟେଣ୍ଡିଂ ଇଞ୍ଜିନିୟରି । ଏକ ଅନ୍ତର୍ନିହତ ତାଡ଼ନାରେ ବଶବର୍ତ୍ତୀ ହୋଇ ଡାକ୍ତରଖାନାରେ ପହଞ୍ଚିଲି । ଦେଖିଲି ପ୍ରବଳ ପ୍ରତାପୀ ମାନୀ ଦୁର୍ଯ୍ୟୋଧନ ଅସ୍ଥିକଙ୍କାଳ ସାର ଅବସ୍ଥାରେ ଶଯ୍ୟାଶାୟୀ । ଗୋଟିଏ ଗୋଡ଼ କଟାସରିଛି । ପାଖରେ ନାହାଁନ୍ତି ଚାଟୁକାର ଦଳ । ନାହିଁ କ୍ଷମତାର ଦଣ୍ଡ କି ସେହି କୁଟିଳ ହସ କି ଅହଂକାର ର ଭ୍ରୁକୁଟୀ ମୋତେ ଦେଖିବା ମାତ୍ରେ ହାତଟିକୁ ଧରି ପକାଇଲେ । ଆଖିରୁ ତାଙ୍କ ବୋହିଯାଉଥାଏ ଅବିରାମ ବାରିଧାରା । ତାଙ୍କୁ ଔଷଧ ଦ୍ୱାରା ମୂକ କରିଦିଆଯାଇଥାଏ । କିଛି କହିପାରୁନଥାନ୍ତି । କିନ୍ତୁ ମୋର ହାତଟିକୁ ଜୋରରେ ଜାବୁଡ଼ି ଧରିଥାନ୍ତି ଓ କାନ୍ଦୁଥାନ୍ତି । ତାଙ୍କ ଆଖିର ଲୁହ ମୋ ପ୍ରତି ଯେଉଁ ଅବିଚାର କି ଆଉ କିଛି ଥିଲା, ମୁଁ ଜାଣେନି, କିନ୍ତୁ ସେ କାନ୍ଦ ଦେଖି ମୋର ମାନୀ ଦୁର୍ଯ୍ୟୋଧନର କଥା ତୁହାଇ ତୁହାଇ ମନେ ପଡୁଥିଲା । ମନେ ପଡୁଥିଲା କୁରୁକ୍ଷେତ୍ର ଯୁଦ୍ଧରେ ସମସ୍ତ ଭାଇବନ୍ଧୁ ସ୍ୱଜନଙ୍କୁ ହରାଇ ଶେଷରେ ଭୀମର ଗଦା ଦ୍ୱାରା ତାଙ୍କ ଜାନୁଭଙ୍ଗର ଦୃଶ୍ୟ । ମନେ ପଡ଼ିଲା, ସେହି ମହାନ

ଶ୍ଲୋକର ଅଂଶ:-

ନଳିନୀ ଦଳଗତ ଜଳବତ୍ ତରଳଂ
ତଦବତ୍ ଜୀବନଃ ଅତିଶୟ ଚପଳଂ ।

ପୁଣି ମନକୁ ଆସିଲା ଭକ୍ତକବିଙ୍କର ଅମର କବିତାର ସେଇ ପଂକ୍ତି -

ରେ ଆତ୍ମନ ! ନିଦ୍ରା ପରିହରି ଫେଡ଼ି, ତୁମ ଚିନ୍ତାର ଲୋଚନ
କର କର ନିରୀକ୍ଷଣ ନିଃଶବ୍ଦେ ଜୀବନ ସ୍ରୋତ
ଧାଉଁଛି କିପରି ଭେଟିବାକୁ ମୃତ୍ୟୁ ସିନ୍ଧୁ କରାଳ ଲହରୀ ।

ସେଠାରୁ ଫେରି ଠାକୁରଙ୍କୁ ପ୍ରାର୍ଥନା କଲି, 'ପ୍ରଭୋ ହେ, ତ୍ରିପାଠୀ ସାହେବଙ୍କୁ ଯନ୍ତ୍ରଣା ମୁକ୍ତ କର । ଆଉ ମୋ ଅନ୍ତରରୁ ସକଳ ଗର୍ବ, ଦମ୍ଭ ଓ ଅଭିମାନ (ଯଦିଥାଏ) ଦୂରକରି ମୋତେ କ୍ଷମତା ଓ ଶାସନର ସଦୁପଯୋଗ କରିବାକୁ ଶକ୍ତି ଦିଅ ଏବଂ ପୂର୍ବପରି ମୋତେ ମୋର ସହକର୍ମୀ ପ୍ରତି ସର୍ବଦା ବିଚାରବନ୍ତ କରି ମୋ ଯାତ୍ରା ପଥକୁ ନିର୍ମଳ ଓ ନିଷ୍ପାପ କର ।



## ସପ୍ତଦଶ ପରିଚ୍ଛେଦ

# ଗଞ୍ଜାମର କ୍ଷୁଦ୍ରଚାଷୀଙ୍କ ଗହଣରେ ଦୁଇଟି ବର୍ଷ

ଏକ ନାଟକୀୟ ପରିସ୍ଥିତିରେ ରୁରାଲ ଇଞ୍ଜିନିୟରିଂ ଡ଼ିଭିଜନକୁ ପୋଷ୍ଟିଂ ଅର୍ଡ଼ର ପାଇ ଯେତେବେଳେ କାର୍ଯ୍ୟରେ ଯୋଗଦାନ କଲି ଦେଖିଲି, ଷ୍ଟାଫ୍, ଜନସାଧାରଣଙ୍କ ମଧ୍ୟରେ ଏକ ଆଲୋଡ଼ନ । ମୋ ଅଜାଣତରେ ମୁଁ ଗୋଟିଏ ଅନୁଷ୍ଠାନରେ ପରିଣତ ହୋଇଯାଇଛି । ୧୯୭୨ ଜୁନ ମାସ ୭ ତାରିଖ ଦିନ ଚିକିଟି ଡ଼ିଭିଜନରେ ଯୋଗଦେବା ଦିନ ଅଫିସରେ ଯେଉଁ ବାତାବରଣ ଲକ୍ଷ୍ୟ କରିଥିଲି ୧୯୭୪, ଅଗଷ୍ଟ ୨୮ ତାରିଖ ଦିନ ରୁରାଲ ଇଞ୍ଜିନିୟରିଂ ଡିଭିଜନରେ ଯୋଗଦେବା ଦିନ ଦେଖିଲି ତାର ଠିକ ଓଲଟା ବାତାବରଣ । ସେତେବେଳକୁ ମୋର ପୂର୍ବବର୍ତ୍ତୀ କାର୍ଯ୍ୟନିର୍ବାହୀଯନ୍ତ୍ରୀ ଅପୂର୍ବ କୃଷ୍ଣ କମିଳା ଚାର୍ଜ ଦେଇ ଚାଲିଯାଇ ସାରିଥିଲେ । ଇନଭେଷ୍ଟିଗେସନର ନିର୍ବାହୀଯନ୍ତ୍ରୀ ଏଡ଼ିସିନାଲ ଦାୟିତ୍ୱରେ ଥାଆନ୍ତି । ସେ ସଙ୍ଗେ ସଙ୍ଗେ ଦାୟିତ୍ୱ ହସ୍ତାନ୍ତର କରିଦେଲେ ।

ସେଦିନ ସଧାବେଳେ ମୋର ଘର ଲୋକାରଣ୍ୟ । ଗଞ୍ଜାମର ଅଧିକାଂଶ ଏମ.ଏଲ.ଏ ପଞ୍ଚାୟତ ସମିତି ଚେୟାରମେନ, ରୁରାଲ ଇଞ୍ଜିନିୟରିଂ ଅଫିସର କର୍ମଚାରୀ ମାନେ, ମୋତେ ଅଭିନନ୍ଦନ କରିବାକୁ ଆସିଥିଲେ । ସମସ୍ତଙ୍କ ମୁହଁରେ ଗୋଟିଏ ଭାଷା,ଭଗବାନ ନିଶ୍ଚୟ ଅଛନ୍ତି । ଆପଣଙ୍କ ପ୍ରତି ହୋଇଥିବା ଅନ୍ୟାୟର ସୁବିଚାର କରି ଗଞ୍ଜାମର ଉନ୍ନତି ପାଇଁ ଆପଣଙ୍କୁ ଅଧିକ ପ୍ରଶସ୍ତ କ୍ଷେତ୍ର ଯୋଗାଇଛନ୍ତି । ଭଗବାନ ଆପଣଙ୍କର ଉତ୍ତରୋତ୍ତର ଉନ୍ନତି କରନ୍ତୁ ଓ ଏ ଅଞ୍ଚଳର ଉନ୍ନତିମୂଳକ କାମ ପାଇଁ ଅଧିକ ଉତ୍ସାହ ଦିଅନ୍ତୁ ।

ଚିକିଟି ଡ଼ିଭିଜନରେ କାମରେ ମଜ୍ଜି ରହି ନିଜର ପିଲାମାନଙ୍କ ପଢା ପ୍ରତି ନଜର ଦେଇପାରିନଥିଲି । ତା ଫଳରେ ସେମାନଙ୍କର ପଢାରେ ବହୁତ ବିଶୃଙ୍ଖଳା ସୃଷ୍ଟି ହୋଇଥିଲା । ବଡ଼ ଝିଅ ଇଲା ଜୟପୁରରେ ପଞ୍ଚମ ଶ୍ରେଣୀରେ ବୃତ୍ତି ପାଇଥିଲା । ଷଷ୍ଠ ଶ୍ରେଣୀରେ ସେ ପ୍ରଥମ ତିନିଜଣଙ୍କ ଭିତରେ ଥିଲା । ଜନୈକା ଶିକ୍ଷୟିତ୍ରୀଙ୍କ ସହ ଉମାର ଥରେ ଗଣ୍ଡଗୋଳ ହେବାରୁ ସେମାନେ ଜାଣିଶୁଣି ତାର କେତୋଟି ଖାତାର ଉତ୍ତର କାଗଜକୁ ଏପଟ ସେପଟ କରିଦେଇ ଟେଷ୍ଟ ପରୀକ୍ଷାରେ ନାମ ତଳକୁ

କରିଦେଇ ସ୍କଲାରସିପ୍ ପାଇଁ ପଠାଇଲେ ନାହିଁ । ଏଥିରେ ମର୍ମାହତ ହୋଇ ମୁଁ ତାର ସାର୍ଟିଫିକେଟ ନେଇ ଆମ ଗ୍ରାମ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଲି ଓ ସେ ମାଇନର ବୃତ୍ତି ମଧ୍ୟ ପାଇଲା । ସେଥିପାଇଁ ତାକୁ ୩/୪ ମାସ ଗାଁରେ ରହିବାକୁ ପଡ଼ିଲା । ବଡ଼ପୁଅ ବୁଲୁର ଦେହ ଖରାପ ହେବାରୁ ୧୯୭୩-୭୪ ଶିକ୍ଷା ବର୍ଷରୁ ଅଧା ସମୟ ସ୍କୁଲ ଯାଇପାରିଲାନି । ସହଜେ ସେଣ୍ଟ୍ରାଲ ସ୍କୁଲରେ ହିନ୍ଦି ମିଡ଼ିୟମରେ ପାଠ ପଢା, ୭ମ ଶ୍ରେଣୀ ପର୍ଯ୍ୟନ୍ତ ଓଡ଼ିଆ ମାଧ୍ୟମରେ ପଢିଥିବାରୁ ତାର ହିନ୍ଦିରେ ଦକ୍ଷତା ଖୁବ୍ କମ୍ । ପୁଣି ଅଷ୍ଟମ ଓ ନବମରେ ଆଇ:ଏସ:ସି ଷ୍ଟାଣ୍ଡାର୍ଡ଼ ପାଠ ପଢା । ତେଣୁ ୧୯୭୩ମସିହା ଜୁଲାଇରୁ ଡିସେମ୍ବର ପର୍ଯ୍ୟନ୍ତ ଭୋଗିଥିବା ରୋଗ ଓ ପାଠପଢାର ଭାଷାଗତ ମାଧ୍ୟମ ପରିବର୍ତ୍ତନ ତାର ପାଠରେ ବହୁତ ବ୍ୟାଘାତ ସୃଷ୍ଟି କଲା । ୧୯୭୩ ମସିହାରେ ୬ମାସ ଧରି ପରିବାରରେ ସାଂଘାତିକ ବେମାର ଓ ୧୯୭୪ ମେଁ ଠାରୁ ଅଗଷ୍ଟ ପର୍ଯ୍ୟନ୍ତ ଚାକିରୀ କ୍ଷେତ୍ରରେ ଅନିଶ୍ଚିତତା ଫଳରେ ଉମାର ପାଠ ପଢାରେ ମଧ୍ୟ ବହୁତ ବ୍ୟାଘାତ ସୃଷ୍ଟି ହୋଇଥିଲା । ସେପ୍ଟେମ୍ବର ଶେଷ ସପ୍ତାହରେ ପରୀକ୍ଷା । ଯେତେବେଳେ ଅଗଷ୍ଟ ଶେଷ ସପ୍ତାହରେ ଆର.ଇ.ଓ ରେ ଯୋଗ ଦେଲି, ଦେଖିଲି, ଉମା ପରୀକ୍ଷା ପାଇଁ ଆଦୌ ପ୍ରସ୍ତୁତି କରିନି । ଯାହା ପଢା ପାଇଁ ଏତେ ଧନ୍ଦା, ସେ ଯଦି ପରୀକ୍ଷା ନ ଦିଏ, ତେବେ ମୋର ସମ୍ମାନ ରହିବ କେଉଁଠି ? ସତ୍ୟ ନାରାୟଣ ଆଚାର୍ଯ୍ୟ ନାମକ ଜନୈକ ରିସାର୍ଚ୍ଚ ସ୍କଲାରଙ୍କ ସାହାଯ୍ୟରେ ନୋଟ ତିଆରି ଚାଲିଲା । ଉମା, ଆଚାର୍ଯ୍ୟ ବାବୁ ଓ ମୁଁ ଗୋଟିଏ ଲେଖଏଁ ବିଷୟ ଧରିଲୁ । ଦିନ ସାରା ତାର ସାରାଂଶ ଓ କ୍ରିଟିକେଲ ଏପ୍ରିସିଏସନ ଲେଖା ତିଆରି ହୁଏ । ରାତିକୁ ତାକୁ ସେତକ ପଢିବାକୁ ଦିଆଯାଏ । ଏହିଭଳି ଭାବରେ ଅକ୍ଳାନ୍ତ ପରିଶ୍ରମ କରି ମାତ୍ର ୨ମାସ ଭିତରେ ଉମା ପଢି ପରୀକ୍ଷା ଦେଲା ଓ କୃତିତ୍ୱ ର ସହିତ ୨ୟ ଶ୍ରେଣୀରେ ୫୬% ରଖି ପାସ୍ କଲା । ଏଣେ ଉମା ପ୍ରତି ସବୁ ନଜର ରଖିବା ଫଳରେ ବଡ଼ପୁଅ ବୁଲୁର ପଢାରେ ମଧ୍ୟ ବହୁତ ବିଶୃଙ୍ଖଳା ସୃଷ୍ଟି ହେଲା । ୧୯୭୪ ଡ଼ିସେମ୍ବର ମାସ ଷଡ଼ମାସିକ ପରୀକ୍ଷାରେ ତାର ବହୁତ କମ ନମ୍ବର ରହିଲା । ସେଣ୍ଟ୍ରାଲ ସ୍କୁଲରେ ଟିଉସନ ମାଷ୍ଟରଙ୍କର ଅଭାବ । ତେଣୁ ନିଜେ ପଢି ତାକୁ ପଢାଇ ଧିରେ ଧିରେ ତାର ପୂର୍ବ ସ୍ତରକୁ ଆଣିବାକୁ ଚେଷ୍ଟା କଲି । ୧୦ମ ଶ୍ରେଣୀ ବେଳକୁ ତାର ଉଲ୍ଲେଖ ଯୋଗ୍ୟ ଉନ୍ନତି ଘଟିବା ସମ୍ଭବ ହେଲା ।

ଗଞ୍ଜାମ ଜିଲ୍ଲାରେ ଆର:ଇ:ଓ ସଂସ୍ଥାପାଇଁ ୨ଟି ଡ଼ିଭିଜନ ରହିଛି । ମାଇନର ଉରିଗେସନ ଅଧିନରେ ବରହମପୁର,ଛତ୍ରପୁର ଓ ଭଞ୍ଜନଗରର କ୍ଷୁଦ୍ର ଜଳସେଚନ ଅନ୍ତର୍ଗତ । ଆର:ଇ:ଡ଼ିଭିଜନ ଅଧିନରେ ସମୁଦାୟ ଜିଲ୍ଲାର କୋଠାବାଡ଼ି ଆର:ଇ ଓ ରାସ୍ତା ଓ ପାରଳାଖେମୁଣ୍ଡିର କ୍ଷୁଦ୍ର ଜଳସେଚନ ଅନ୍ତର୍ଗତ । ୧୯୭୪ ମସିହା କ୍ଷୁଦ୍ର ଜଳସେଚନ ପାଇଁ ଏକ ବୈପ୍ଲବିକ ବର୍ଷ । ୧୧୨ ଟି କ୍ଷୁଦ୍ରଜଳସେଚନ ଯୋଜନାକୁ ସମ୍ପୂର୍ଣ୍ଣ କରିବାକୁ ତତକାଳୀନ ଆର:ଇ:ଓ ମନ୍ତ୍ରୀ ବାଙ୍କବିହାରୀ ଦାସ ଏକ ସାହସିକ ପଦକ୍ଷେପ ନେଲେ । ଯୁଦ୍ଧକାଳୀନ ଭିତ୍ତିରେ ୧୧୨ଟିର କାର୍ଯ୍ୟ ସମ୍ପୂର୍ଣ୍ଣ କରିବାକୁ ସେ ଆଦେଶ ଦେଲେ । ଏଥିପାଇଁ ଅର୍ଥର ବ୍ୟବସ୍ଥା ସହିତ ଭୂ-ଅର୍ଜନ, ସିମେଣ୍ଟ ଛଡ଼ର ଅଗ୍ରାଧିକାର ବ୍ୟବସ୍ଥାମଧ କରାଗଲା ।

ମାଇନର ଇରିଗେସନ୍ ଡିଭିଜନ ଅଧିନରେ ୨୮ଟି ଓ ଆର:ଇ ଡ଼ିଭିଜନ ଅଧିନରେ ଗୋଟିଏ ଯୋଜନା ସମ୍ପୂର୍ଣ୍ଣ ହେବା ପାଇଁ ରହିଲା । ପାରଳା ଖେମୁଣ୍ଡିର ଏକମାତ୍ର ଯୋଜନା କୃଷ୍ଣସାଗରକୁ ସାରିବା ପାଇଁ ବିଶେଷ ଅସୁବିଧା ହେଲାନି । ଏହାର ଆୟାକଟ ୨୦୦୦ ଏକର, ତା ମଧ୍ୟରୁ ୧୫୦୦ ଏକର ଓଡ଼ିଶାରେ ଓ ୫୦୦ ଏକର ଆନ୍ଧ୍ରରେ ।

ଗଞ୍ଜାମ ଜିଲ୍ଲାରେ ଆର:ଇ:ଓ ରାସ୍ତା ନିର୍ମାଣରେ ୧୯୭୫ ରେ ମଧ ଏକ ବୈପ୍ଲବିକ ପଦକ୍ଷେପ ନିଆଯାଇଥିଲା । ଓଡ଼ିଶାର ୭୦୦୦କି.ମି ରାସ୍ତା ମଧ୍ୟରୁ ଗଞ୍ଜାମର ଭାଗ ୧୦୦୦କି.ମି କାର୍ଯ୍ୟ ହାତକୁ ନିଆଯାଉଥିଲା । ଗଞ୍ଜାମରେ ରାସ୍ତା ନିର୍ମାଣ ପାଇଁ ଭଗବାନଙ୍କ ଦାନ ଅତୁଳନୀୟ । ୫କି.ମି ଭିତରେ ମୁରମ, ବାଲି ଓ ପଥର ଖଣି ରହିଛି । ପ୍ରଚୁର କର୍ମଠ ଶ୍ରମିକଙ୍କ ଅଭାବ ନାହିଁ । ଏହି ସୁବିଧାର ଉପଯୋଗ କରି ନିମ୍ନଲିଖିତ ରାସ୍ତାଗୁଡ଼ିକର ଉନ୍ନତି କରିବା ସମ୍ଭବ ହେଲା ।

**ପାରଳାଖେମୁଣ୍ଡି -**

୧) ଗାରାବନ୍ଧ କିଞ୍ଜଲିଙ୍ଗ, ୮ କି.ମି., କିଞ୍ଜଲିରଂ କଇଁପୁର. ୮ କି.ମି. କାଶୀପୁର -ଖାଣ୍ଡବା ୧୫କି.ମି, ଗୁମା ଗାଇବା ୧୫ କିମି. ଖୁରାଣ୍ଡି ମାଛମରା-୬ କି.ମି, ଉପଲଡ଼ା ବାଟି ସିରିପୁର ୫ କି.ମି. ଆର ଉଦୟଗିରି-ସୟଲପୁର-୩୦)

**ଛତ୍ରପୁର -**

ବାଘରା ନୂଆଗାଁ ୨୩ କି.ମି. ପାରଲୁରମ୍ଭା ୪ କି.ମି) ମମ୍ପାଖଣ୍ଡି ଆର୍ଜିପାଲି ୩ କି.ମି. ଓ ଗୋପାଳପୁର ଆର୍ଜିପାଲି -୮ କି.ମି,

**ଭଞ୍ଜନଗର -**

୧) କେନ୍ଦୁପ୍ରଦର ପାୟଲ ପଡ଼ା-୧୪ କି.ମି. ୨)ବରଗଡ଼ ମେରିକୋଟ ୧୪ କି.ମି. ୩) ବରଗଡ଼ ଗଉଡ଼ଗୋର ୧୦ କି.ମି. ୪) ଜାନିଭିଲ ଓ ଲମ୍ବ ୧୯କି.ମି.

**ବରହମପୁର-**

ପିତଳକାଞ୍ଜିଆ ଠାରୁ ହାଇଓ୍ୱେ -୭ରୁ ପଦ୍ମନାଭପୁର ବଡ଼ଖଣ୍ଡି ଢ଼େଙ୍ଗା ପଦର ପଲ୍ଲି ପଦ୍ମନାଭପୁର -ବଡ଼ ଖଣ୍ଡି -୧୫ କି.ମି. ।

ଉପରୋକ୍ତ ରାସ୍ତା ଗୁଡ଼ିକ ଦ୍ୱାରା ଗଞ୍ଜାମର ଅଭ୍ୟନ୍ତରକୁ ପ୍ରବେଶ ସୁଗମ ହୋଇପାରିଲା । ବଡ଼ ବଡ଼ ନାଳ ଗୁଡ଼ିକର ପୋଲ ନିର୍ମାଣ ବ୍ୟୟସାପେକ୍ଷ ହୋଇଥିବାରୁ ନାଳ ଉପରେ ବଡ଼ ପୋଲ ନିର୍ମାଣ ନ କରି ହ୍ୟୁମ୍ ପାଇପ୍ ସାହାଯ୍ୟରେ ସବମାରସିବ୍ଲ କଜଓ୍ୱେ ନିର୍ମାଣ ଦ୍ୱାର ଖର୍ଚ୍ଚ ଏକ ତୃତିୟାକୁ ସବୁ କମିଗଲା । ନିକଟରେ ଥିବା ପଥର ଓ ସୁଗମ ଖଣିର ସାହାଯ୍ୟ ନେଇ ଖର୍ଚ୍ଚକୁ ବହୁତ ପରିମାଣର କମାଇ ଦିଆଗଲା । ଏହି ରାସ୍ତା ଗୁଡ଼ିକର ଉନ୍ନତି ଫଳରେ ବହୁ ଅଭ୍ୟନ୍ତର ଅଞ୍ଚଳକୁ ବସ୍ ଯାତାୟାତରେ ସୁବିଧା ହେଲା । ଲୋକ ସ୍ୱଇଚ୍ଛାରେ ରାସ୍ତା ପାଇଁ ଆବଶ୍ୟକୀୟ ଜମି ଛାଡ଼ି ଦେଲେ । ଏ କାର୍ଯ୍ୟରେ ମୋତେ ସାହାଯ୍ୟ କରିଥିବା ବ୍ୟକ୍ତିଙ୍କ ମଧ୍ୟରେ ଭୀଷ୍ମଗିରିର ସରପଞ୍ଚ ଲମ୍ବୋଦର ପାଣିଗ୍ରାହୀ, ମର୍କଣ୍ଡେଶ୍ୱର ମନ୍ଦିର ବାବାଜୀ, ସୋରଡ଼ା ଏମ.ଏଲ.ଏ ଶରତଚନ୍ଦ୍ର ପଣ୍ଡା, ଆସ୍କା ଏମ.ଏଲ.ଏ ହରିହର ଦାଶ, ଛତ୍ରପୁର ଏମ.ଏଲ.ଏ ଦୈତାରୀ ବେହେରା, ପାରଳାଖେମୁଣ୍ଡିର ଏମ:ଏଲ:ଏ କୁରମୁ ନାଇବୁଲ ଦୋରା, ସାନ ଖେମୁଣ୍ଡିର ଏମ.ଏଲ.ଏ ଉଦୟନାରାୟଣ ଦେଓ, କୋଦଳାର ଏମ.ଏଲ.ଏ କାହ୍ନୁ ନାୟକ ଓ ଚେୟାରମେନ ଅଭିମନ୍ୟୁ ସାହୁଙ୍କ ନାମ ଉଲ୍ଲେଖଯୋଗ୍ୟ ।

ପାରଳାଖେମୁଣ୍ଡିର ଗଜପତିଙ୍କ ରାଜତ୍ୱ କାଳରେ ବହୁତ କ୍ଷୁଦ୍ର ଜଳସେଚନ ଯୋଜନା ନିର୍ମିତ ହୋଇଛି । ସେ ସମୟରେ ଟେକନିକାଲ୍ ଜ୍ଞାନକୌଶଳର ଅଭାବରୁ ନାଳ ଗୁଡ଼ିକରେ ଆନିକଟ ତିଆରି କରାଯାଇଛି । ପୁଣି କେନାଲ ଗୁଡ଼ିକର ଆନିକଟ

ନିର୍ମାଣ କରି ଜମିକୁ ଜଳସେଚିତ କରାଯାଉଛି । କେନାଲ ପାଣିକୁ ଆବଶ୍ୟକ ସ୍ଥଳେ କଟା ବା କ୍ଷୁଦ୍ର ଜଳଭଣ୍ଡାରରେ ଭର୍ତ୍ତି କରାଯାଇଛି । ପାରଳାଖେମୁଣ୍ଡିର କେତୋଟି ମୁଖ୍ୟ ଜଳସେଚନ ଯୋଜନାର ଆୟକଟ ହେଲା-

୧) ମହେନ୍ଦ୍ର ତନୟା ଆନିକଟ, ୫୦୦୦ଏକର ।

୨) ଗଜପତି ସାଗର, ୧୨୦୦ ଏକର ।

୩) ରାମସାଗର, ୧୦୦୦ଏକର ।

୪) ରାଧାସାଗର , ୮୦୦ ଏକର ।

୫) କୃଷ୍ଣସାଗର, ୨୦୦୦ ଏକର ।

୬) ଜୀବନ ଦାସଗୁଡ଼ା, ୫୦୦ ଏକର ।

୭) ନୀଳ ଗେଡ଼ା, ୨୦୦୦ ଏକର ।

୮) ବୈଜାଳ ଗେଡ଼ା, ୧୦୦୦ଏକର ।

କେନାଲରେ କ୍ରସ ଡ୍ରେଜେନ ନାହିଁ । ମଝିରେ ମଝିରେ ଆନିକଟ । ପ୍ରତି ଆନିକଟ ପାଖରେ ପାଣିବାଣ୍ଟ ପାଇଁ ସମୟ ନିର୍ଦ୍ଧାରିତ । ଚାଷୀମାନଙ୍କ ମଧ୍ୟରେ ଅପୂର୍ବ ସହଯୋଗ । କିନ୍ତୁ ୨୦୦ ବର୍ଷ ତଳେ ନିର୍ମିତ ଜଳଭଣ୍ଡାର ପୋତି ହୋଇ ପଡ଼ିଲାଣି । ଆନିକଟ ଗୁଡ଼ିକ ଜରାଜୀର୍ଣ୍ଣ ଅବସ୍ଥାରେ । ଏହାର ପୁନଃଉଦ୍ଧାର ପାଇଁ ଯେଉଁ ଆକଳନ (ଏଷ୍ଟିମେଟ୍) ହୋଇଥିଲା ତାହା ପରବର୍ତ୍ତୀ କାଳରେ ପାରଳାଖେମୁଣ୍ଡି ଅଞ୍ଚଳର ଉନ୍ନତି ପାଇଁ ସହାୟକ ହେଉଥିଲା । ଓଡ଼ିଶାର ପାଣିର କିଛି ଅଂଶ ଆନ୍ଧ୍ର ଋଷିଙ୍କ ଉପକାରରେ ଆସୁଛି । ସେଥିପାଇଁ ଶ୍ରୀକାକୁଲମର କଲେକ୍ଟରଙ୍କ ସହ ପରାମର୍ଶ କରି ଏକର ପିଛା ୨ଟଙ୍କା ହିସାବରେ ୧୯୬୦ ଠାରୁ ଜଳକର ବାବଦ ୬ଲକ୍ଷ ଟଙ୍କା ଆନ୍ଧ୍ର ସରକାର ଙ୍କଠାରୁ ଆଦାୟ ହୋଇ ଜଳସେଚିତ ଯୋଜନାରେ ପୁନରୁଦ୍ଧାରରେ ଖର୍ଚ୍ଚ କରାଗଲା ।

ଆର:ଇ ଓ ଡ଼ିଭିଜନରେ ଯେଉଁମାନେ ମୋତେ କାମରେ ସହଯୋଗ କରିଥିଲେ ତାଙ୍କ ମଧ୍ୟରେ ମହମ୍ମଦ ଓ୍ୟାସିନ୍, ଜେକେ ଚୌଧୁରୀ, ହରିହର ଦାଶ, କେ ରାଜାରାଓ ଓ ଜୁନିୟର ଇଞ୍ଜିନିୟର ଶଙ୍କର ନାରାୟଣ ସୁବୁଦ୍ଧିଙ୍କ ନାମ ଉଲେଖଯୋଗ୍ୟ ।

ପଡ଼ୋଶୀ ମାଇନର ଇରିଗେସନ ଡ଼ିଭିଜନର ସେ ସମୟରେ କ୍ଷୁଦ୍ର ଜଳସେଚନର କାର୍ଯ୍ୟ ମଧ୍ୟ ଦ୍ରୁତଗତିରେ ଚାଲିଥାଏ । ଓଡ଼ିଶାରେ ସମ୍ପୂର୍ଣ୍ଣ ହେବାକୁ

ଥିବା ୧୧୨ଟି ଯୋଜନା ମଧ୍ୟରୁ ଏ ଡିଭିଜନରେ ଥିଲା ୨୮ଟି ଯୋଜନା। ସେଥିପାଇଁ ଅଟକଳ ଥିଲା ଏକ କୋଟି ଟଙ୍କା, ତାର ଦାୟିତ୍ୱରେ ଥିଲେ ସୋଲୋମନ ରାଉତ । ସେ ଜଣେ କର୍ମଠ ଇଞ୍ଜିନିୟର, କିନ୍ତୁ ଯୋଜନା ଖର୍ଚ୍ଚ ଅଟକଳ ଠିକ୍ ଭାବରେ କରିପାରିଲେନି । ତେଣୁ ଅର୍ଥର ଅଭାବ ହେଲା, ସେ ଅଟକଳ ଥିବା ଟଙ୍କାକୁ କେବଳ କଣ୍ଟ୍ରାକ୍ଟର ମାନଙ୍କ ପାଇଁ ଖର୍ଚ୍ଚ କଲେ । ଭୂ-ଅର୍ଜନ ପାଇଁ ଉଦ୍ଦିଷ୍ଟ ଟଙ୍କାକୁ କଲେକ୍ଟରଙ୍କୁ ଜମା ନ ଦେଇ, ପ୍ରୋରାଟା ଟଙ୍କା ବିଲ୍‌ରୁ ନ କାଟି ସବୁ ଟଙ୍କା କଣ୍ଟ୍ରାକ୍ଟର ମାନଙ୍କୁ ଦେଇ ଦେବା ଫଳରେ ପ୍ରବଳ ଜନ ଅସନ୍ତୋଷ ସୃଷ୍ଟି ହେଲା । ତା ସାଙ୍ଗକୁ ଅଡ଼ିଟ୍ ଅବଜେକ୍ସନ, ସରକାରୀ ସ୍ତରରେ ଏକ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କଲା । ସରକାର ସ୍ଥିର କଲେ ରିଭାଇଜ ଏଷ୍ଟିମେଟ କରି ବାକି କାମ ସାରିବା ପାଇଁ ଭୂଅର୍ଜନ ତଥା ପ୍ରୋରାଟା ଖର୍ଚ୍ଚର ସଠିକ୍ ନିରୂପଣ ନ ହେଲେ ଆଦୌ ଟଙ୍କା ଅଟକଳ ହେବନି ଫଳରେ ମାଇନର ଇରିଗେସନ ଡ଼ିଭିଜନର କାର୍ଯ୍ୟ ଏକପ୍ରକାର ସ୍ଥାଣୁ ଅବସ୍ଥାକୁ ଆସିଗଲା । ଏଭଳି ଏକ ଅପ୍ରତିକର ପରିସ୍ଥିତିରେ ସୋଲାମନ ରାଉତଙ୍କର ବଦଳି ହେଲା ଓ ମୋତେ ମାଇନର ଇରିଗେସନ ଡିଭିଜନରେ ପୋଷ୍ଟିଂ କରାଯାଇ ଅଳିଆ ସଫା କରିବା ଦାୟିତ୍ୱ ମୋ ମୁଣ୍ଡ ଉପରେ ଲଦି ଦିଆଗଲା । ମୁଁ ଆପତ୍ତି କରିବାରୁ ସେକ୍ରେଟେରୀ ଓ ଚିଫ ଇଞ୍ଜିନିୟର କହିଲେ ମାଇନର ଇରିଗେସନ୍ ଡ଼ିଭିଜନ ଗଞ୍ଜାମରେ ବହୁତ ବିଶୃଙ୍ଖଳା ସୃଷ୍ଟି ହୋଇଛି । ତୁମ ଭଳି ସିନିୟର ଇଞ୍ଜିନିୟର ଯଦି ଏ ଦାୟିତ୍ୱ ବହନ ନ କରିବ ଡ଼ିପାର୍ଟମେଣ୍ଟର ସମ୍ମାନ ରହିବ କିପରି ?

ମୁଁ ଦାୟିତ୍ୱ ଗ୍ରହଣ କରିବା ପରେ ମାଇନର ଇରିଗେସନ ଡ଼ିଭିଜନରେ ଏକ ପ୍ରକାର କ୍ଲାସ ଖୋଲାଗଲା । ଏ ଡ଼ିଭିଜନରେ ଥାଆନ୍ତି ସମୁଦାୟ ୯ଜଣ ଆସିଷ୍ଟାଣ୍ଟ ଇଞ୍ଜିନିୟର ଓ ୨୬ଜଣ ଜୁନିୟର ଇଞ୍ଜିନିୟର । ବର୍ଷା ତିନିମାସ ସମସ୍ତଙ୍କୁ ରିଭାଇଜ ଏଷ୍ଟିମେଣ୍ଟ କାମରେ ବିନିଯୋଗ କରାଗଲା । ୨୮ଟି ଯୋଜନାର ରିଭାଇଜ୍ ଏଷ୍ଟିମେଟ ସହଜ କଥା ନୁହେଁ । କାହାର କେନାଲ ସରିଛି, ଏଲ.ସେକସନ ମଞ୍ଜୁର ପାଇନାହିଁ ତ କାହାର ସି:ଡ଼ି: ଡ୍ରଇଁ ନହୋଇ କାମ ହୋଇଯାଇଛି । କେଉଁ ପ୍ରୋଜେକ୍ଟର ଭୂ-ଅର୍ଜନ କାମ ଅଧା ହୋଇଛି ତ ଅନ୍ୟ କାହାର ଭୂ-ଅର୍ଜନ ସୁଧ ବାବଦକୁ ଟଙ୍କା ଦେବା ଆବଶ୍ୟକ । ଏଣେ ଡ଼େମ କାମରେ ଦୁନିଆ ଯାକର ବ୍ୟତିକ୍ରମ ଘଟିଥାଏ ।

କିନ୍ତୁ ଗୋଟିଏ ବଡ଼କଥା ହୋଇଛି ଡ଼ିଜାଇନ ଆୟକଟ ଅପେକ୍ଷା ଅଧିକ ଜମି ଜଳସେଚିତ ହୋଇଛି । ଗଣିଆ ନାଳର କେଚପେଣ୍ଟ ୫ବର୍ଗ ମାଇଲ, କିନ୍ତୁ ଆୟକଟ ୨୫୦୦ ଏକର,ରଘୁନାଥ ସାଗରର କେଚମେଣ୍ଟ ୮ବର୍ଗ ମାଇଲ କିନ୍ତୁ ଆୟକଟ ୨୦୦୦ଏକର, ଜଗତା ଘାଇର କେଚ୍‌ମେଣ୍ଟ ୧୩ବର୍ଗ ମାଇଲ କିନ୍ତୁ ଆୟକଟ ୫୦୦୦ ଏକର,କହ୍ନେଇ ନାଳର କେଚ୍‌ପେଣ୍ଟ ୫ବର୍ଗମାଇଲ କିନ୍ତୁ ଆୟକଟ ୨୦୦୦ଏକର, ଛାମୁଣ୍ଡାର କେଚମେଣ୍ଟ ୫ବର୍ଗ ମାଇଲ, କିନ୍ତୁ ଆୟକଟ ୧୫୦୦ ଏକର, ସେହିପରି ଆଲିକୁଆର କେଚମେଣ୍ଟ ୮ବର୍ଗ ମାଇଲ କିନ୍ତୁ ଆୟକଟ ୨୦୦୦ଏକର,ଝରନଇ ୪୧/୨ ବର୍ଗ ମାଇଲକୁ ଆୟକଟ ୧୫୦୦ ଏକର । କଲେକ୍ଟର୍ ଥାଆନ୍ତି ଏସ:କେ: ବନ୍ଦୋପାଧ୍ୟାୟ, ତାଙ୍କର ଭୂ-ଅର୍ଜନ ଅଧିକାରୀ ସୁରେନ୍ଦ୍ର ପାଢୀ ଜଣେ ଦକ୍ଷ ଅଫିସର୍ । ତାଙ୍କ ସହ ସହଯୋଗ କରି ଭୂ-ଅର୍ଜନ କାମକୁ ତ୍ୱରାନ୍ୱିତ କରାଗଲା । ୬ମାସ ଭିତରେ ପରିବର୍ତ୍ତିତ ଅଟକଳ ଗୁଡ଼ିକ ସରକାରଙ୍କୁ ପଠାଯିବା ସଙ୍ଗେ ସଙ୍ଗେ ଭୂ-ଅର୍ଜନ କାର୍ଯ୍ୟ ମଧ୍ୟ ସରିଗଲା । ଖାଲି ବାକି ରହିଲା ସରକାରଙ୍କ ଠାରୁ ବାକି ଟଙ୍କା ଆଣି ଜମିମାଲିକ ମାନଙ୍କୁ ଟଙ୍କା ଦେବା ଓ ବାକି କାମ ସମ୍ପୂର୍ଣ୍ଣ କରିବା ଓ କଣ୍ଟ୍ରାକ୍ଟରମାନଙ୍କର ବକେୟା ପାଉଣା ପରିଶୋଧ କରିବା ।

ଏ ତ ଗଲା ଗତବର୍ଷ ଅଗ୍ରାଧିକାର ଭିତ୍ତିରେ ହୋଇଥିବା ଜଳସେଚନ ଯୋଜନାର କାମ, ୧୯୭୫-୭୬ ମସିହାରେ ପ୍ଲାନ ସ୍କିମ ଅନ୍ତର୍ଗତ ଯୋଜନା ଗୁଡ଼ିକ ମଧ୍ୟ ଗୁରୁତ୍ୱ ପୂର୍ଣ୍ଣ । ସେଗୁଡ଼ିକ ମଧ୍ୟରେ କୁକୁଡ଼ାଖଣ୍ଡି ବ୍ଲକର ରାମଗୁଡ଼ା, ଚିକିଟି ବ୍ଲକର ଭାଲୁଘାଇ, ଭଞ୍ଜନଗର ବ୍ଲକର ଖିଲାଡ଼ି, ଖଲିକୋଟ ବ୍ଲକର ମୋହନସାଗର ଓ ଦେଶବନ୍ଧୁ ଘାଇ, ବଡ଼ଗଡ଼ ବ୍ଲକର ଚୌଧୁରୀ ଘାଇ, ପାତ୍ରପୁର ବ୍ଲକର ମହେନ୍ଦ୍ର ତନୟା ପ୍ରଧାନ ।

ଦେଶବନ୍ଧୁ ଘାଇର କାର୍ଯ୍ୟ ବହୁ ବର୍ଷ ଧରି ପଡ଼ିରହିଥିଲା । ଭୂ-ଅର୍ଜନ ସମସ୍ୟାର ସମାଧାନ କରି ଏହାକୁ ସମ୍ପୂର୍ଣ୍ଣ କରିବାକୁ ଆସିଷ୍ଟାଣ୍ଟ ଇଞ୍ଜିନିୟର ଦାଶରଥି ନନ୍ଦ ଓ ଜୁନିୟର ଇଞ୍ଜିନିୟର ରାଘବ ସୁନ୍ଦର ଦାସଙ୍କ କାର୍ଯ୍ୟ ପ୍ରଶଂସନୀୟ । ଖିଲାଡ଼ି ଭଳି ଏକ କ୍ଷୁଦ୍ର ଜଳସେଚନ ଯୋଜନାର କେନାଲ ୨/୩ ନାଳକୁ ୨୦/୩୦ ଫୁଟ ଉଚ୍ଚ ଏକୁଇଡ଼କ୍ଟ ସାହାଯ୍ୟରେ ଅତିକ୍ରମ କରିଛି । ଏହାର ଡ଼ିଜାଇନ ଓ କନଷ୍ଟ୍ରକସନ ପାଇଁ

ଆସିଷ୍ଟାଣ୍ଟ ଇଞ୍ଜିନିୟର ପ୍ରଫୁଲ୍ଲ ରାୟ ଓ ଜୁନିୟର ଇଞ୍ଜିନିୟର ନିମେଇ ନାୟକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ରାମଗୁଡ଼ାର ଏଲାଇନମେଣ୍ଟକୁ ଏଭଳି ବଦଳାଇ ଦିଆଯାଇ ସାରିଥିଲା ଯେ ତାର ଡ଼ିଭିଏସନ ଦେଖି ସମସ୍ତେ ଡ଼ରି ଯାଉଥିଲେ । କୌଣସି ମତେ ଏହି କାର୍ଯ୍ୟ ସଂପୂର୍ଣ୍ଣ କରିବାକୁ ପଡ଼ିବ, ଏହି ସିଦ୍ଧାନ୍ତ ନେଇ ପ୍ରୋଜେକ୍ଟଟିର କାର୍ଯ୍ୟକୁ ସମ୍ପୂର୍ଣ୍ଣ କରାଯାଇପାରିଲା । ଏହି କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବା ସଙ୍ଗେ ସଙ୍ଗେ ଭାଲୁଘାଇ ଯୋଜନାକୁ ସମ୍ପୂର୍ଣ୍ଣ କରିବାରେ ମୋତେ ସାହାଯ୍ୟ କରିଥିଲେ ଆସିଷ୍ଟାଣ୍ଟ ଇଞ୍ଜିନିୟର ପ୍ରଦୀପ ମହାନ୍ତି ଓ ଜୁନିୟର ଇଞ୍ଜିନିୟର ଅନନ୍ତ ରାମ ପଟ୍ଟନାୟକ ଓ ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ । ଚୌଧୁରୀ ଘାଇ ମଧ୍ୟ ଏକ ସମସ୍ୟା ବହୁଳ ଯୋଜନା, ଦୁଇଟି ନାଳକୁ ମିଶାଇ ଗୋଟିଏ ଜଳଭଣ୍ଡାର ନିର୍ମାଣ ହେବ, ପୁଣି ଦୁଇଟିଯାକ ଜଳଭଣ୍ଡାରକୁ ଗୋଟିଏ ଲିଙ୍କ୍ କେନାଲ ଦ୍ୱାରା ଯୋଡ଼ାଯିବ । ହରଭଙ୍ଗୀର ଆୟକଟ ବାଉଣ୍ଡାରୀ ଦ୍ୱାରା ଏହାର ଆୟକଟ ସୀମାବଦ୍ଧ । ଗୋଟିଏ ପାଖରେ ସ୍ପିଲଓ୍ୱେ ତିଆରିହେବ, ଗ୍ରେଡ଼ ୱାଲ ଦ୍ୱାରା ଏଫ:ଆର:ଏଲ:କୁ ନଦୀ ପଉନ ସହିତ ସଂଯୋଗ କରାଯିବ, କିନ୍ତୁ ଏ ପ୍ରୋଜେକ୍ଟ ଗୁଡ଼ିକ ମୋ ପାଇଁ ବଡ଼ ସମସ୍ୟା ନ ଥିଲା, ଏମ:ଆଇ: ଡ଼ିଭିଜନରେ ମୁଁ ସମ୍ମୁଖୀନ ହେଲି ୩ଟି ବଡ଼ ସମସ୍ୟାର ।

ପ୍ରଥମ ସମସ୍ୟା ହେଲା ମୋର କାର୍ଯ୍ୟରେ ଯୋଗଦାନ ପୂର୍ବରୁ ଡ଼ିଭିଜନ,ସର୍କଲ ତଥା ଚିଫଇଞ୍ଜିନିୟରଙ୍କ ଅଫିସକୁ ରିପୋର୍ଟ ଚାଲି ଯାଇଥାଏ ଯେ ୨୮ଟି ଯାକ ଯୋଜନାର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇସାରିଛି ଓ ଜମିକୁ ପାଣି ଦିଆସରିଛି । କିନ୍ତୁ ପ୍ରକୃତ ପକ୍ଷେ ଯୋଜନାଗୁଡ଼ିକର ବହୁତ କାମ ବାକି ରହିଥାଏ । ଲେଣ୍ଡ ଏକୁଇଜସନ୍ ଟଙ୍କା ୪୦ଲକ୍ଷ ଓ କଣ୍ଟ୍ରାକ୍ଟର ମାନଙ୍କ ବାକିୟା ୬୦ଲକ୍ଷ ଟଙ୍କା ସହିତ ଅସମ୍ପୂର୍ଣ୍ଣ କାର୍ଯ୍ୟ ବାବଦ ପ୍ରାୟ ୨୫ଲକ୍ଷ ଏହିଭଳି ସମୁଦାୟ ୧୨୫ଲକ୍ଷ ଟଙ୍କା ଆବଶ୍ୟକ । ସମ୍ପୂର୍ଣ୍ଣ ହୋଇଥିବା ଯୋଜନା ଗୁଡ଼ିକ ପାଇଁ ଏତେ ଟଙ୍କା ଦେବାକୁ କେଉଁ ସରକାର ଏତେ ସହଜରେ ରାଜି ହେବେ, କିନ୍ତୁ ମୋତେ ଏଥିପାଇଁ ପ୍ରଭୂତ ସାହାଯ୍ୟ ମିଳିଥିଲା ମୋର ସୁପରିନଟେଣ୍ଡିଂ ଇଞ୍ଜିନିୟର୍ ଦିବାକର ମିଶ୍ରଙ୍କଠାରୁ । ସେ ମୋ ସହିତ ଏକମତ ହୋଇ ଗଞ୍ଜାମ ଜିଲ୍ଲାର ଏହି ଅସମ୍ପୂର୍ଣ୍ଣ ଯୋଜନା ଗୁଡ଼ିକୁ ସମ୍ପୂର୍ଣ୍ଣ କରିବାକୁ ରିଭାଇଜ୍ ଏଷ୍ଟିମେଟ୍ ଅନୁସାରେ ଟଙ୍କା ଏଲଟମେଣ୍ଟ ଦେବାକୁ ଦୃଢ଼ ଦାବୀ କରିଥିଲେ । ଦୀର୍ଘ ଏକ ବର୍ଷର

ଅକ୍ଲାନ୍ତ ପରିଶ୍ରମ କରି ଯେଉଁ ୨୮ଟି ରିଭାଇଜ୍ ଏଷ୍ଟିମେଟ୍ କରି ସରକାରଙ୍କୁ ଦିଆଗଲା ତା'ର ଫଳସ୍ୱରୂପ ୧୯୭୫-୭୬ରେ ଗଞ୍ଜାମ ଜିଲ୍ଲାକୁ ୧୬୦ଲକ୍ଷ ଟଙ୍କା ମିଳିଲା ଓ ଏଥିରେ ୨୯ଟି ଯାକ ପ୍ରୋଜେକ୍ଟ ସମ୍ପୂର୍ଣ୍ଣ ହୋଇ ଗଞ୍ଜାମ ଚାଷୀମାନଙ୍କ ମୁହଁରେ ହସଫୁଟାଇ ପାରିଛି ।

ଦ୍ୱିତୀୟ ସମସ୍ୟା ହେଲା ଝରନଈ ଯୋଜନା । ଝର ନଈ ଯୋଜନା ସାଢ଼େ ଚରି ବର୍ଗ ମାଇଲ ଅବବାହିକା ବିଶିଷ୍ଟ ଏକ ନାଳ ଉପରେ ଅବସ୍ଥିତ । କୋଦଳା ବ୍ଲକର ଦୁଇଟି ପାହାଡ଼ ମଧ ଦେଇ ନାଳଟି ପ୍ରବାହିତ ହେଉଥିବା ସ୍ଥାନରେ ମର୍ଦ୍ଦକୋଟ ଗ୍ରାମଠାରୁ ମାତ୍ର ୨କି.ମି ଦୂରରେ ଏହି ଯୋଜନାଟି ଅବସ୍ଥିତ । ଡ଼େମର ଉଚ୍ଚ ୭୫ଫୁଟ,ଲମ୍ବ ମାତ୍ର ୭୦୦ ଫୁଟ । ୧୯୭୪ ମସିହାରେ ଯେତେବେଳେ ଏହି ଯୋଜନାକୁ ୧୧୨ଟି ପ୍ରାୟରିଟି ଯୋଜନା ଅର୍ନ୍ତଭୁକ୍ତ କରିବା ପ୍ରସ୍ତାବ ହେଲା,ଏହାର କାର୍ଯ୍ୟ ଶତକଡ଼ା ୨୦ ଭାଗ ସରିଥିଲା, ଭୂ-ଅର୍ଜନ କାର୍ଯ୍ୟ ମଧ ପ୍ରାରମ୍ଭିକ ଅବସ୍ଥାରେ ରହିଥିଲା । କିନ୍ତୁ ମୋର ପୂର୍ବବର୍ତ୍ତୀ କାର୍ଯ୍ୟନିର୍ବାହୀ ଯନ୍ତ୍ରୀ ସୋଲମନ ରାଉତ ଆସିଷ୍ଟାଣ୍ଟ ଇଞ୍ଜିନିୟର, ଚିତ୍ତ ରଞ୍ଜନ ଚୌଧୁରୀଙ୍କ ପରାମର୍ଶ ଅନୁସାରେ ଏହାକୁ ପ୍ରାୟରିଟି ପ୍ରୋଜେକ୍ଟ ତାଲିକାରେ ଅନ୍ତର୍ଭୁକ୍ତ କରିଦେଇଥିଲେ । ଗୋଟିଏ ବର୍ଷ ଭିତରେ ଏତେବଡ଼ ବନ୍ଧର କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ପାଇଁ ଯେତେଗୁଡ଼ିଏ ଡୋଜର, ସିପଫୁଟ ରୋଲର, ପମ୍ପ ଓ ଅନ୍ୟାନ୍ୟ ଉପକରଣ ଆବଶ୍ୟକ ତାହା ଏ ପ୍ରୋଜେକ୍ଟରେ ନଥିଲା । ଏଣେ ରିଭର କ୍ଲୋଜିଂ କାର୍ଯ୍ୟ ଆରମ୍ଭ ହୋଇଗଲା । ମାତ୍ର ୬/୭ମାସ ଭିତରେ ଏତେଗୁଡ଼ିଏ କାର୍ଯ୍ୟତ ଯଥେଷ୍ଟ ମେସିନ ଅଭାବରୁ କଲେ ଯାହା ହେବା କଥା ହେଲା । ମାଟିବନ୍ଧର ନିର୍ମାଣ ନିୟମକୁ ଠିକ ଭାବେ ଅନୁସରଣ ନ କରି କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଲା । ବନ୍ଧ କାର୍ଯ୍ୟ ସରିଗଲା, କିନ୍ତୁ ବନ୍ଧରେ ଦୁର୍ବଳତା ଚିରଦିନ ପାଇଁ ରକ୍ଷାଣାବେକ୍ଷଣ ଦାୟିତ୍ୱରେ ରହିବା ଇଞ୍ଜିନିୟରମାନଙ୍କ ପାଇଁ ଏକ ସମସ୍ୟା ହୋଇରହିଗଲା । ଜୁଲାଇ ଓ ଅଗଷ୍ଟ ମାସରେ ଜଳଭଣ୍ଡାରରେ ପାଣି ପ୍ରବେଶ କରିବା ଫଳରେ ଏହାର ଲେଭଲ୍ ବଢିବାରେ ଲାଗିଲା । ଅଗଷ୍ଟ ମାସର ୨ୟ ସପ୍ତାହରେ ଏହି ଯୋଜନାର ମାଟିବନ୍ଧ ଆମକୁ ପ୍ରଥମ ସତର୍କ ଘଣ୍ଟି ବଜାଇ ଚେତାଇ ଦେଲା, "ଇଞ୍ଜିନିୟରମାନେ ସାବଧାନ, ତୁମେ ତୁମର ପାଠ ସହିତ ଖେଳ ଖେଳି ପାରିବ

ନାହିଁ । ବନ୍ଧ ନିର୍ମାଣରେ ଯେଉଁ ତ୍ରୁଟି ରହିଯାଇଛି ସେଥିପାଇଁ ତୁମ୍ଭେମାନେ ବହୁ ବାଧାବିଘ୍ନର ସମ୍ମୁଖୀନ ହେବ ।" ନଦୀଟିର ଡାହାଣ ପାର୍ଶ୍ୱ ଅତ୍ୟନ୍ତ ତୀଖ, ଭାଟିକେଲ କହିଲେ ଅତ୍ୟୁକ୍ତି ହେବନାହିଁ, ପୁଣି ୭୫ଫୁଟ ଉଚ୍ଚ । ଡିଜାଇନ ଅନୁସାରେ ଡ଼ାଉନ ଷ୍ଟ୍ରିମ ସ୍ଲୋପର ସିପେଜ ପାଣି ଭାଟିକେଲ ବାଲି ଚିମିନି ହୋରାଇଜେଣ୍ଟଲ୍ ଫିଲଟର ଓ ରକ ଟୋ ଜରିଆରେ ନଦୀ ମଧ୍ୟକୁ ନିଷ୍କାସିତ ହେବା କଥା, କିନ୍ତୁ ଏତେ ତୀଖ ତୀରରେ କେଉଁ ହରାଇଜଣ୍ଟାଲ ଫିଲଟର ନା ବାଲି ଚିମନି ରହିବ । ଡାହାଣ ପାଖ ତୀରରେ ଏ ଦୁଇଟି ଜିନିଷ Sand Chimny & Horizontal Filter ନାହିଁ କହିଲେ ଚଳେ, ତା ସାଙ୍ଗକୁ ଡ଼େମର ମାଟି ଠିକ ଭାବେ କମ୍ପେକସନ ହୋଇପାରିନାହିଁ । ୧୯୭୫ ଅଗଷ୍ଟ ୧୦ତାରିଖରେ ଡାଉନ ଷ୍ଟ୍ରିମ ସ୍ଲୋପରେ ଗୋଳିଆ ପାଣି ବାହାରି ଆମକୁ ପ୍ରଥମ ସତର୍କ ଘଣ୍ଟି ବଜାଇଦେଲା । ମୁଁ ଅଧିକ୍ଷଣ ଯନ୍ତ୍ରୀ ଦିବାକର ମିଶ୍ରଙ୍କ ସହ ପ୍ରୋଜେକ୍ଟ ପରିଦର୍ଶନ କରି ଦେଖିଲି ଡ଼େମଟି ବିପଦର ସମ୍ମୁଖୀନ । ତେଣୁ ତାଙ୍କର ଅନୁମତି ନେଇ ମୁଁ ଜଳସ୍ତରକୁ ୧୦ଫୁଟ କମାଇଦେଲି । ଏହା ଫଳରେ, ଡ଼େମର ଡାଉନଷ୍ଟ୍ରିମ ସ୍ଲୋପରୁ ଘଳିଆ ପଡ଼ିବା ବନ୍ଦ ହୋଇଗଲା । ଗୋଳିଆପାଣି ବନ୍ଦ ହୋଇଯିବା ସଙ୍ଗେ ସଙ୍ଗେ ଏସ:ଡ଼ି:ଓ ଚିତ୍ତ ରଞ୍ଜନ ଚୌଧୁରୀ ଅଧିକ୍ଷଣ ଯନ୍ତ୍ରୀଙ୍କୁ ଦେଖା କରି କବାଟ ବନ୍ଦ କରି ଜଳଭଣ୍ଡାର ପତନ ବଢାଇବା ପାଇଁ ଅନୁରୋଧ କଲେ । ଦିବାକରବାବୁ ଏଥିରେ ରାଜି ହୋଇ ଜଳଭଣ୍ଡାରର ପତନ ବଢାଇବା ପାଇଁ ଲିଖିତ ଆଦେଶ ଦେଇଦେଲେ । ମୋର ଶତ ଅନୁରୋଧ ସତ୍ତ୍ୱେ ସେ ତାଙ୍କର ସିଦ୍ଧାନ୍ତରେ ଦୃଢ ରହିଲେ । ମୋତେ ଓଲଟା କହିଲେ, 'ଗଞ୍ଜାମର ଚାଷୀ ଗୋଟିଏ ମାଠିଆ ପାଣିକୁ ଭରିଏ ସୁନା ଭଳି ଭାବନ୍ତି, ଆମେ କିପରି ତାଙ୍କର ମୂଲ୍ୟବାନ ପାଣିକୁ ନଦୀକୁ ଛାଡ଼ିଦେବା ?' ହାୟ ଦୁର୍ଯୋଗ, ସାରା ଜୀବନ ବୃହତ ଜଳସେଚନ ଯୋଜନାରେ କାର୍ଯ୍ୟ କରି ଆସିଥିବା ଓଡ଼ିଶାର ଏହି ସ୍ୱନାମଧନ୍ୟ ଇଞ୍ଜିନିୟର କିଭଳି ଜାଣନ୍ତେ କ୍ଷୁଦ୍ର ଜଳସେଚନ ଯୋଜନାଗୁଡ଼ିକ ମେସିନ ଅଭାବରୁ ଓ ଜିଲାର ବିଭିନ୍ନ ସ୍ଥାନରେ ବିକ୍ଷିପ୍ତ ଭାବରେ କାର୍ଯ୍ୟ ହେଉଥିବାରୁ ସୁପରଭିଜନ ଓ ଡ଼ୋଜର ଅଭାବରୁ ଡ଼େମ, ସ୍ପିଲୱେ ତଥା ହେଡ଼ ରେଗୁଲେଟରଗୁଡ଼ିକର କାର୍ଯ୍ୟ କେତେ ନିମ୍ନଧରଣର ହୋଇଛି । ସେ ସାଲନ୍ଦୀ ଓ ରେଙ୍ଗାଲୀ ପ୍ରୋଜେକ୍ଟରେ କାମ କରି କ୍ଷୁଦ୍ରଜଳସେଚନ ଯୋଜନାର କାମଗୁଡ଼ିକ ସେହି

ସ୍ଥରରେ ବୋଲି ଭାବୁଥିଲେ । ସେ ଝରନଈ ଡ୍ରେମର କାମକୁ ସାଲନ୍ଦୀ ବା ହୀରାକୁଦ ଡ୍ରେମର କାମ ଭାବି ଗେଟ୍ ବନ୍ଦ କରିବାକୁ ଆଦେଶ ଦେଲେ । ଏହା ଭିତରେ ଏସ:ଡ଼ି:ଓ ଚିତ୍ତରଞ୍ଜନ ଚୌଧୁରୀ ମଧ୍ୟ ବଦଳି ହୋଇଚାଲିଗଲେ । ଡେମ ଦାୟିତ୍ୱରେ ରହିଲେ ନୂଆ ଏସ:ଡ଼ି:ଓ ଦାଶରଥି ନନ୍ଦ ଓ ସବ-ଆସିଷ୍ଟାଣ୍ଟ୍ ଇଞ୍ଜିନିୟର ଅମ୍ବିକା ପ୍ରସାଦ ରଥ । ଅମ୍ବିକା ବାବୁଙ୍କୁ ମୋର ଉପଦେଶ ଥାଏ, "ଡେମର ସାମାନ୍ୟ ବିପଦ ଦେଖାଦେବା ମାତ୍ରେ ଫୋନ ଦ୍ୱାରା ଜଣାଇଦେବ ।"

ମୋର ଆଶଙ୍କା ସତ୍ୟ ହେଲା । ସେପ୍ଟେମ୍ବର ମାସ ୨୮ ତାରିଖ ସନ୍ଧ୍ୟାବେଳେ କୋଦଳାରୁ ଆସିଲା ଫୋନ । ଝରନଈ ଡ୍ରେମ ବିପଦର ସମ୍ମୁଖୀନ, କାଳ ବିଳମ୍ବ ନ କରି ବାହାରିଲି ଝରନଈ ଡ୍ରେମ ଅଭିମୁଖେ । ମର୍ଦ୍ଦକୋଟ ପାଖରେ ଯାଇ ଦେଖିଲି ନାଳରେ ଛୁଟିଛି ସୁଅ । ଝରନଈ ନାଳଟି ମର୍ଦ୍ଦକୋଟ ଗ୍ରାମ ମଧ୍ୟରେ ପ୍ରବାହିତ । ନାଳର ଦୁଇପଟେ ଘର । ଲୁଗା ବଦଳାଇ ନାଳ ଭିତରେ ଏକ ପ୍ରକାର ପହଁରି ପହଁରି ଆରପଟେ ପହଞ୍ଚିଲି । ଡ୍ରେମ ପାଖରେ ପହଞ୍ଚିବା ବେଳକୁ ପ୍ରାୟ ରାତ୍ରି ୮ଟା । ଅମ୍ବିକା ବାବୁ ସେତେବେଳେକୁ ଗେଟ୍ ପୂରା ଟେକି ଦେଇଥାନ୍ତି । ଦେଖିଲି ରିଜରଭରର ଜଳପତ୍ତନ ଏଫ:ଆର: ଏଲରେ ପହଞ୍ଚିବାକୁ ଆହୁରି ୨ଫୁଟ ବାକି ଅଛି । କିନ୍ତୁ ଡ୍ରେମର ଡ଼ାଉନଷ୍ଟ୍ରିମ ସ୍ଲୋପରୁ ପ୍ରାୟ ୫୦ଫୁଟ ଉଚ୍ଚର ମାଟି ଅତଡ଼ା ଖସିଛି । ସ୍ଲିପସର୍କଲ ଟେଷ୍ଟବେଳେ ମାଟିବନ୍ଧର ସ୍ଲୋପ ଯେଭଳି ବୃତ୍ତାକାରରେ ଫେଲିୟୋର ହୁଏ ସେହିଭଳି ଫେଲୟୋର ଦେଖିବାକୁ ପାଇଲି । କିନ୍ତୁ ଆଶ୍ଚର୍ଯ୍ୟର କଥା ଏହି ଫେଲିୟୋର ସବୁଠାରୁ ଗଭୀର ସେକସନରେ ନହୋଇ ଯେଉଁଠାରେ ନଦୀର ତୀର ଅତି ତୀଖ ସେହିଠାରେ ହୋଇଛି । ଭାଟିକେଲ ବାଲି ଚିମନି,ହରାଇଜେଣ୍ଟାଲ ଫିଲଟରର ଅଭାବ ଓ ହିଲ ସ୍ଲୋପ ଟ୍ରିଟମେଣ୍ଟର ଅଭାବରୁ ଏହି ସ୍ଲୋପ ଫେଲିୟୋର ହୋଇଛି, ଏହା ମୋତେ ଜଳ ଜଳ ହୋଇ ଦେଖାଗଲା । ବର୍ତ୍ତମାନ ମୁଁ ଦୁଇଟି ସମସ୍ୟାର ସମ୍ମୁଖୀନ । ପ୍ରଥମ ସମସ୍ୟାଟି ହେଉଛି ଡ୍ରେମର ବ୍ରିଚ । ଯଦି ଡ୍ରେମ ଭାଙ୍ଗିଯାଏ ତେବେ ୨କି.ମି ତଳେ ରହିଥିବା ମର୍ଦ୍ଦକୋଟି ଗ୍ରାମଟି ନିଶ୍ଚିହ୍ନ ହୋଇଯିବ । ବହୁ ଧନ ଜୀବନ ବିପଦାପନ୍ନ ହେବ । ଦ୍ୱିତୀୟ ସମସ୍ୟା ହେଉଛି ଗେଟ ଖୋଲା ରଖିବି କି ବନ୍ଦ କରିଦେବି । ଡ୍ରେମର ପାଣି ଘଣ୍ଟାକୁ ୩ଇଞ୍ଚ ହିସାବରେ ଖସିବା

ପରିବର୍ତ୍ତେ ବଢ଼ିଯିବ । ଏହି ବେଗରେ ଖସିଲେ ଦିନକୁ ୪/୫ଫୁଟ ଖସିବ । କିନ୍ତୁ ଦିନକୁ ଖସିବାର ବେଗ ୧ଫୁଟରୁ ଅଧିକ ହେଲେ ସଡ଼ନ ଡ୍ର-ଡ଼ାଉନର ଏଫେକ୍ଟ ପଡ଼ିବ । ଅବଶ୍ୟ ଅପଷ୍ଟ୍ରିମ ସ୍ଲୋପ ସଡ଼ନ ଡ୍ର ଡ଼ାଉନ ପାଇଁ ଡ଼ିଜାଇନ ହେବା କଥା । କିନ୍ତୁ ୯ରନଇରେ ଡୋଜର ଓ ସିପଫୁଟ ରୋଲର ଅଭାବରୁ ଯେଉଁ ନିମ୍ନଧରଣର କମ୍ପେକସନ ହୋଇଛି ତାହା କଣ ସଡ଼ନ ଡ୍ର ଡ଼ାଉନକୁ କାଉଣ୍ଟର କରିପାରିବ, କିନ୍ତୁ ଡ଼େମର ଜଳପତ୍ତନରୁ କୌଣସି ମତେ କମାଇ ଦେଇ ଡ଼େମକୁ ଭାଙ୍ଗିବାରୁ ରକ୍ଷା କରିପାରିଲେ ମର୍ଦ୍ଦକୋଟ ଗ୍ରାମଟି ରକ୍ଷାପାଇଯିବ । ତେଣୁ କିଛି ଉପାୟ ନପାଇ ଡ଼େମର କବାଟ ଖୋଲା ରଖିବାକୁ ବାଧ ହେଲି । ୩ଦିନ, ୩ରାତି ଜଳଭଣ୍ଡାରରୁ ଜଳ ନିଷ୍କାସନ ହେବାରେ ଲାଗିଥାଏ । ତାର ଏକ ମୂକସାକ୍ଷୀ ଭଳି ପ୍ରୋଜେକ୍ଟ ରେଷ୍ଟସେଡ଼ରେ ମୁଁ ବସିରହିଥାଏ । ୩ଦିନ ପରେ ଡ଼େମର ଜଳପତ୍ତନ ୧୫ଫୁଟ କମି ଯିବାର ୩୦୦ ବଖରା ବିଶିଷ୍ଟ ମର୍ଦ୍ଦକୋଟ ଗ୍ରାମ ବିପଦରୁ ରକ୍ଷା ପାଇଲା । ଡ଼େମ ନ ଭାଙ୍ଗି ରହିଗଲା,କିନ୍ତୁ ସଡ଼ନ ଡ୍ର ଡ଼ାଉନ ଏଫେକ୍ଟ ଯୋଗୁଁ ଡ଼େମର ଅପଷ୍ଟ୍ରିମ ସ୍ଲୋପ ସ୍ଲିପ କରିଗଲା । ହେଡ୍ ରେଗୁଲେଟରର ବେରେଲ ମେସିନାରି ମଧ୍ୟ ନିମ୍ନଧରଣର ହୋଇଥିବାରୁ ପାଣିର ପ୍ରେସର ସମ୍ଭାଳି ନପାରି ଭାଙ୍ଗିଗଲା । ଅପରେସନ ପାଇଁ ତିଆରି ହୋଇଥିବା ଫୁଟ ବ୍ରିଜଟି ମଧ୍ୟ ଭାଙ୍ଗିଗଲା । ଏସ:ଡ଼ି:ଓ ଛୁଟିରେ ଥିଲେ । ଅଧିକ୍ଷଣ ଯନ୍ତ୍ରୀ କଳାହାଣ୍ଡି ଯାଇଥିଲେ । ୨ଦିନ ପରେ ଟୁରରୁ ଫେରି ସଙ୍ଗେ ସଙ୍ଗେ ଡ଼େମ ଦେଖିବାକୁ ଆସିଲେ । କିନ୍ତୁ ସେତେବେଳକୁ ସବୁ ଶେଷ ହୋଇସାରିଥିଲା । ଲୋବୋରେଟୋରୀ ଟେଷ୍ଟରୁ ଜଣା ପଡ଼ିଲା ଯେ, ଡ଼େମର କମ୍ପେକସନ ୯୮ ପରିବର୍ତ୍ତେ ମାତ୍ର ୮୦ ଶତକଡ଼ା ହୋଇଛି। ଏହାର ପୁନରୁଦ୍ଧାର ଏଷ୍ଟିମେଟ ହେଲା ୧୨ଲକ୍ଷ ଟଙ୍କା । ତା ପରେ ଚାଲିଲା ପରିଦର୍ଶନ ପରେ ପରିଦର୍ଶନ । ପ୍ରଥମେ ମୁଖ୍ୟଯନ୍ତ୍ରୀ, ତା ପରେ ସେକ୍ରେଟେରୀ, ତା ପରେ ଏଷ୍ଟମେଟ କମିଟି, ଭିଜିଲେନ୍ସ ଆ:ଇ:ଜି ଓ ସର୍ବଶେଷରେ ଜଣକିଆ କମିଶନରଙ୍କର ଇନକ୍ୟୁରି । ଇଞ୍ଜିନିୟର ରୋହିଣୀ କୁମାର ସାହୁଙ୍କୁ ଏହି ଦାୟିତ୍ୱ ଦିଆଯାଇଥାଏ । ସେ ତାଙ୍କର ରିପୋର୍ଟରେ ନିର୍ମାଣ ସମୟରେ ଥିବା ନିର୍ବାହୀଯନ୍ତ୍ରୀଙ୍କଠାରୁ ଆରମ୍ଭ କରି ସେକ୍ରେଟେରୀ ପର୍ଯ୍ୟନ୍ତ ସମସ୍ତଙ୍କୁ ଦାୟୀକଲେ । ଯାହେତୁ ମନ୍ତ୍ରୀ ଲକ୍ଷ୍ମଣ ମଲ୍ଲିକଙ୍କ ହସ୍ତକ୍ଷେପ ଫଳରେ ଡ଼େମର

ପୁନରୁଦ୍ଧାର କାର୍ଯ୍ୟ ପାଇଁ ଟଙ୍କା ସେଙ୍କସନ ହୋଇ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରି ଏହାର କାର୍ଯ୍ୟ ସମ୍ପୂର୍ଣ୍ଣ କରାଗଲା । ଏହି କାର୍ଯ୍ୟ ସମ୍ପୂର୍ଣ୍ଣ କରିବାରେ ଅଧିକ୍ଷଣ ଯନ୍ତ୍ରୀ ଦିବାକର ବାବୁଙ୍କ ପ୍ରେରଣା,ଏସ:ଡ଼ି:ଓ ଜି:ଏସ: ଏନ: ମୂର୍ତ୍ତୀଙ୍କ ଅକ୍ଲାନ୍ତ ପରିଶ୍ରମ ମୋର ଚିରସ୍ମରଣୀୟ ହୋଇ ରହିବ ।

ତୃତୀୟ ହେଲା କ୍ୱାର୍ଟର ସମସ୍ୟା । ଦୀର୍ଘ ୧୩ବର୍ଷ ହେଲା ମାଇନର ଇରିଗେସନ ଓ ରୁରାଲ ଇଞ୍ଜିନିୟରିଂ ଏଭଳି ଦୁଇଟି ଡ଼ିଭିଜନ ବରହମପୁରରେ ସୃଷ୍ଟି ହୋଇଥିଲେ ହେଁ ମାତ୍ର ଗୋଟିଏ କ୍ୱାର୍ଟର ଏକଜିକ୍ୟୁଟିଭ ଇଞ୍ଜିନିୟରଙ୍କ ପାଇଁ ତିଆରି ହୋଇଥିଲା । ଅଧିକାଂଶ ଏସ:ଡ଼ି:ଓ ଓ ଓଭରସିଅରଙ୍କ ପାଇଁ କ୍ୱାର୍ଟର ନଥିଲା । ଅବଶ୍ୟ ୧୯୭୪-୭୫ ମସିହାରେ ସୋଲମନ ରାଉତ ଓ ମୋର ଚେଷ୍ଟା ଫଳରେ ବିଭିନ୍ନ ସ୍ଥାନରେ ଷ୍ଟାଫ ତଥା ଅଫିସର ମାନଙ୍କ ପାଇଁ ଗୁଡ଼ିଏ କ୍ୱାର୍ଟର ତିଆରି ସମ୍ଭବ ହେଲା । ସୋଲେମନ ବାବୁ ମଧ ମାଇନର ଇରିଗେସନ ନିର୍ବାହୀଯନ୍ତ୍ରୀଙ୍କ କ୍ୱାର୍ଟର ତିଆରି କରିବାକୁ ପଦକ୍ଷେପ ନେଇଥିଲେ । କିନ୍ତୁ ସ୍ଥାନ ନିରୂପଣ ସମ୍ପର୍କରେ ତାଙ୍କର କଲେକ୍ଟରଙ୍କ ସହିତ କେତେକ ମତ ପାର୍ଥକ୍ୟ ଘଟିବା ଫଳରେ କାର୍ଯ୍ୟ ଆରମ୍ଭ ହୋଇସାରିଥିବା ଘରଟି ସବୁଦିନ ପାଇଁ ବନ୍ଦ ହୋଇଗଲା । ମୁଁ ମାଇନର ଇରିଗେସନ ଡିଭିଜନରେ ଯୋଗଦେବା ପୂର୍ବରୁ ଯେଉଁ କ୍ୱାର୍ଟରରେ ରହୁଥିଲି ତାହା ତିଆରି ସମୟରୁ ରୁରାଲ ଇଞ୍ଜିନିୟରିଂ ଡିଭିଜନ ନିର୍ବାହୀଯନ୍ତ୍ରୀଙ୍କ ଦ୍ୱାରା ଅଧିକୃତ ହୋଇଆସୁଥିଲା । ମୋ ସ୍ଥାନରେ ରୁରାଲ ଇଞ୍ଜିନିୟରିଂ ଡ଼ିଭିଜନରେ ଯୋଗ ଦେଇଥିବା ବଂଶୀଧର ଷଡ଼ଙ୍ଗୀ ଏହି କ୍ୱାର୍ଟର ପାଇବା ପାଇଁ ଦାବି କଲେ । ମୋ ପାଇଁ କ୍ୱାର୍ଟର ନାହିଁ । ପୁଣି ଗୋଟିଏ ଡ଼ିପାର୍ଟମେଣ୍ଟର କ୍ୱାର୍ଟର । ଏକ ସ୍ଥାନରେ ହେଡ଼ କ୍ୱାର୍ଟର । ତେଣୁ ମୁଁ ସେହି କ୍ୱାର୍ଟର ଛାଡ଼ିବା ପ୍ରଶ୍ନ ଉଠୁନାହିଁ । ଗତବର୍ଷ ୨ଟି ଡ଼ି, ଟାଇପ କ୍ୱାର୍ଟର ତିଆରି ହେଉଥିଲା । ଏଥିରେ ୪ଟି ଲେଖାଏଁ ବଖରା ଥିଲା । ସେଭଳି ଏକ କ୍ୱାର୍ଟର ଅଧିକ୍ଷଣ ଯନ୍ତ୍ରୀଙ୍କ ଘର ପାଖରେ ଥିଲା । ଏଥିରେ ଏସ.ଡ଼ି.ଓ ରହୁଥିଲେ । ଡ଼ି.ଆଇ.ଜିଙ୍କ ଘର ପାଖରେ ତିଆରି ହେଉଥିବା, ଅନ୍ୟ ଏକ ଡ଼ି ଟାଇପ୍ ଘରେ ୨ବଖରା ଯୋଗ କରି ଦୁଇଟି କ୍ୱାର୍ଟର ନିର୍ମାଣ କରିବାକୁ ଗତବର୍ଷ ଯେଉଁ ପଦକ୍ଷେପ ଗ୍ରହଣ କରିଥିଲି ତାହା ଅସମ୍ପୂର୍ଣ୍ଣ ଅବସ୍ଥାରେ ରହିଥିଲା । ଏହି କ୍ୱାର୍ଟରକୁ ସମ୍ପୂର୍ଣ୍ଣ କରି ରହିବାକୁ ମୁଁ

ଷଡ଼ଙ୍ଗୀବାବୁଙ୍କୁ ପରାମର୍ଶ ଦେଲି । ସେ କିନ୍ତୁ ଏଥିରେ ସମ୍ମତ ନ ହୋଇ ପୂର୍ବତନ ଅଧିକ୍ଷଣଯନ୍ତ୍ରୀ ଜାନକୀ ବଲ୍ଲଭ ସ୍ୱାଇଁଙ୍କ ଜରିଆରେ ଦିବାକର ବାବୁଙ୍କ ଉପରେ ଚାପ ପକାଇଲେ । ଦିବାକରବାବୁଙ୍କୁ ମୁଁ ମଧ୍ୟ ଆଗରୁ କ୍ୱାର୍ଟର ବିଷୟ ଅବଗତ କରି ସାରିଥିଲି । ଯେହେତୁ ମୁଁ ୪ଜ କ୍ୱାର୍ଟରରେ ରହିଛି ଓ ମୋର ହେଡ଼କ୍ୱାର୍ଟର ବଦଳି ନାହିଁ ତେଣୁ ମୁଁ ସେହି କ୍ୱାର୍ଟରରେ  ରହିବି ଓ ଷଡ଼ଙ୍ଗୀବାବୁଙ୍କୁ ବୁଝାଇ ଅନ୍ୟ କ୍ୱାର୍ଟରରେ ସେ ଏଡ଼୍‌ଜଷ୍ଟ କରିଦେବେ ବୋଲି ମୋତେ ନିର୍ଭର ପ୍ରତିଶୃତି ଦେଇଥିଲେ । କିନ୍ତୁ ହଠାତ୍ ଅଗଷ୍ଟ ମାସରେ ଉପରୁ ଚାପ ଫଳରେ ତାଙ୍କର ଅର୍ଡ଼ର ହେଲା ଯେ ମୋତେ ୪ଜ କ୍ୱାର୍ଟର ଛାଡ଼ିବାକୁ ପଡ଼ିବ ଓ ବଂଶୀଧର ଷଡ଼ଙ୍ଗୀ ଏହି କ୍ୱାର୍ଟରରେ ରହିବେ । ମୋତେ ଏସ୍.ଡ଼ି.ଓ ହରିଦାସ ରହିଥିବା କ୍ୱାର୍ଟରଟି ଏଲଟ୍ କରି ଦିଆଗଲା । ଏହ ଅର୍ଡ଼ର ପାଇ ମୁଁ ଦିବାକରବାବୁଙ୍କ ପାଖକୁ ଯାଇ ଆପତ୍ତି କଲି । ମୁଁ କହିଲି ଯେ, ନିର୍ବାହୀଯନ୍ତ୍ରୀଙ୍କ କ୍ୱାର୍ଟର ଛାଡ଼ି ଜଣେ ଏସ୍‌ଡ଼ିଓଙ୍କ କ୍ୱାର୍ଟରରେ ରହିବା ମୋ ପକ୍ଷେ ଏକ ଅପମାନଜନକ ବିଷୟ । ମୁଁ ବରଂ ଏଠାରୁ ବଦଳି ହୋଇ ଅନ୍ୟତ୍ର ଚାଲିଯିବି ବା ଗୋଟିଏ ଭଡ଼ାଘରେ ରହିବି, କିନ୍ତୁ ଏସ୍‌ଡ଼ିଓ କ୍ୱାର୍ଟରକୁ ଯିବା ମୋ ପକ୍ଷେ ସମ୍ଭବ ନୁହେଁ । ସବୁ ବିଷୟ ଲେଖି ମୁଁ ମୁଖ୍ୟଯନ୍ତ୍ରୀଙ୍କ ପାଖକୁ ଏକ ରିପ୍ରେଜେଣ୍ଟେସନ୍ ଦେଲି । କିନ୍ତୁ ଦୁର୍ଭାଗ୍ୟ ଯେତେବେଳେ ଆସେ ସେ ଏକା ନଆସି ତାର ସାଙ୍ଗ ସାଥିମାନଙ୍କୁ ସାଙ୍ଗରେ ଧରି ଆସେ । ବଂଶୀଧର ଷଡ଼ଙ୍ଗୀଙ୍କ ଅଧୀନରେ ଥିବା ଏସ୍‌ଡ଼ିଓ ଏସ୍.ଏନ୍. ମିଶ୍ର ଯେକି ମୁଖ୍ୟଯନ୍ତ୍ରୀ ସଚ୍ଚିଦାନନ୍ଦ ଶତପଥିଙ୍କ ଜ୍ୱାଇଁ, ଭୁବନେଶ୍ୱର ଯାଇ ତାଙ୍କ ଶ୍ୱଶୁରଙ୍କ ଉପରେ ଚାପ ପକାଇ ଅଧିକ୍ଷଣ ଯନ୍ତ୍ରୀଙ୍କ ଅର୍ଡ଼ରକୁ କାଏମ୍ ରଖିବା ସଂଗେ ସଂଗେ ଘର ନଛାଡ଼ିଲେ ଚାର୍ଜସିଟ୍ ହେବ ବୋଲି ମୋତେ ଧମକପୂର୍ଣ୍ଣ ଚିଠି କରାଇଦେଲେ ।

ଯେଉଁଦିନ ଏହି ଅର୍ଡ଼ର ବାହାରିଲା, ସେଦିନ ମୁଁ ଭୁବନେଶ୍ୱରରେ ଥିଲି, ମନ କଷ୍ଟରେ ଫେରୁଛି, ବାଟସାରା ଭାବନାର ଅନ୍ତନାହିଁ, କ'ଣ କରାଯିବ ଭାବୁଛି, ବଦଳି ପାଇଁ ରିପ୍ରେଜେଣ୍ଟେସନ କରିବି, କି ଛୁଟିରେ ଯିବି, କି ଭଡ଼ା ଘରକୁ ଚାଲିଯିବି ଏହି ଚିନ୍ତାରେ ନିମଗ୍ନ ରହିଛି । କିଶୋରୀ ବାବୁଙ୍କ କଥା ମନେ ପଡ଼ିଲା । ବିପଦରେ ଅଧୈର୍ଯ୍ୟ ହେବନି । ଯେ ବିପଦ ଆଣିଛି ସେଥିରୁ ଉଦ୍ଧାର ପାଇବାର ବାଟ ସେ

ବତାଇବ । କାହିଁକି ବିପଦ ଆସଛି, ଏଥିରେ କାହାର ଭୁଲ ଏକଥା ବିଚାର କରିବାର ଅଧିକାର ଆମର ନାହିଁ । ତାଙ୍କୁ ସ୍ମରଣ କର ସେ ବତାଇଦେବେ । ଏହା ଭିତରେ ଅଢ଼େଇଘଣ୍ଟା ଘଣ୍ଟା ବିତିଗଲାଣି । ସେତେବେଳକୁ ଋଷିକୂଲ୍ୟା ନଦୀ ଉପରେ ନୂତନ ପୋଲ ନିର୍ମାଣ ସରିନଥାଏ । ଲୁହା ପୋଲ ଉପରେ ଗାଡ଼ିଯିବା ସମୟରେ ମୋର ହଠାତ୍ ଗଞ୍ଜାର କନ୍ଧଣୀ ଠାକୁରାଣୀଙ୍କ କଥା ମନେ ପଡ଼ିଗଲା । ଠାକୁରାଣୀଙ୍କ ପାଖରେ ଭୋଗ ଲଗାଇବା ସମୟରେ ହଠାତ୍ ମନକୁ ଆସିଲା, ଛତ୍ରପୁରରେ କଲେକ୍ଟରଙ୍କୁ ଦେଖା କରି, ଜାଗାଟିଏ ନେଇ ନୂଆ କ୍ୱାର୍ଟର ତିଆରି କରିଦେଲେ କିଭଳି ହୁଅନ୍ତା ? କ୍ୱାର୍ଟରଟିଏ କରିବାକୁ ୪/୫ ମାସ ସମୟ ଲାଗିବ । ସବୁ ସମସ୍ୟା ସମାଧାନ ହୋଇଯିବ ।

ସିଧା ବର୍‌ହମପୁର ନଆସି ଛତ୍ରପୁରରେ କଲେକ୍ଟରଙ୍କୁ ଦେଖା କଲି । କଲେକ୍ଟର ଥାଆନ୍ତି ଏସ୍ ବନ୍ଦୋପାଧ୍ୟାୟ । କ୍ୱାର୍ଟର ସାଇଟ୍ ସିଲେକ୍‌ସନ ବିଷୟରେ ସେ ମୋର ପ୍ରିଡ଼ିସିସର ସୋଲୋମନ ବାବୁଙ୍କ ଉପରେ କ୍ଷୁବଧ୍ ହୋଇଥାନ୍ତି । ସୌଭାଗ୍ୟକୁ ମୋର ବନ୍ଧୁ ବିଜୟ ପଟ୍ଟନାୟକ ଯେକି ସେତେବେଳେ ପାରଳାଖେମୁଣ୍ଡିରେ ଟ୍ରାଇବାଲ ଡେଭେଲପମେଣ୍ଟ ଏଜେନସିର ପ୍ରୋଜେକ୍ଟ ଡାଇରେକ୍ଟର ଥାନ୍ତି, ଉପସ୍ଥିତ ଥିଲେ । ମୋ ଠାରୁ ସବୁକଥା ଶୁଣି କଲେକ୍ଟର ଆଶ୍ଚର୍ଯ୍ୟ ହୋଇଗଲେ । ଏକ ଡିପାର୍ଟମେଣ୍ଟ,ଏକ ହେଡ଼କ୍ୱାର୍ଟରରେ ଅନ୍ୟ ଏକ ପୋଷ୍ଟକୁ ବଦଳି ହୋଇଥିବା ଜଣେ ଅଫିସରଙ୍କୁ ଏଭଳି ଅପମାନ ସୂଚକ ଭାବେ ଘର ଛାଡ଼ିବାକୁ ଅର୍ଡ଼ର ହୋଇଥିବା ଦେଖି ସେ ବିସ୍ମିତ ହୋଇ ପଡ଼ିଲେ । ସଙ୍ଗେ ସଙ୍ଗେ ରେଭିନ୍ୟୁ ଅଫିସରଙ୍କୁ ଡ଼ାକି ଆଦେଶ ଦେଲେ "ଆସନ୍ତା କାଲି ସୁଦ୍ଧା ସେ ବରହମପୁର ଯାଇ ସ୍ଥାନ ନିରୂପଣ କରି ଆସି ସାଇଟ୍ ସିଲେକସନ ମିଟିଂ ଡାକନ୍ତୁ ।" ଏହା ଏକ ଦୈବୀବାଣୀ ଭଳି ମନେ ହେଲା । ସଙ୍ଗେ ସଙ୍ଗେ ୪/୫ ଦିନ ଭିତରେ ସାଇଟ ସିଲେକସନ ହୋଇଗଲା । ମୋର ଏସ:ଡ଼:ଓ ଓଭରସିଅରମାନେ ମିଶି ଏଷ୍ଟିମେଟ ମଧ କରିଦେଲେ । ଏଷ୍ଟିମେଟ ଓ ସାଇଟ ସିଲେକସନ ଦେଖି ଦିବାକାର ବାବୁ ଏହାକୁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଦେଲେ । ୫ଟି ପ୍ରୋଜେକ୍ଟକୁ ୧୦ ହଜାର ଲେଖାଏଁ ଚାର୍ଜ କରି କ୍ୱାର୍ଟରଟିକୁ ନିର୍ମାଣ କରିବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ସୁପାରିଶ ସହ ସରକାରଙ୍କ ଅନୁମୋଦନ ମିଳିବାକୁ ଆଉ ୧୦ଦିନ ସମୟ ଲାଗିଲା । ୧୯୭୫ ନଭେମ୍ବର ପହିଲା ଦିନ ଆରମ୍ଭ ହେଲା

କ୍ୱାର୍ଟର ତିଆରି । ଦିନସାରା କାମ ଚାଲେ । ୨ୟ ସିଫଟରେ ଲୋକ ଅଣାଇ ରାତି ୧୨ଟାରୁ ସକାଳ ୮ଟା ପର୍ଯ୍ୟନ୍ତ ପାଣି ପକାଇ କିଓରିଂ ହୁଏ । ପୁଣି ସକାଳ ୮ଟାରେ କାମ ଆରମ୍ଭ । ଏହିଭଳି ଯୁଦ୍ଧ ଭିତରେ ଚାଲିଲା କାମ/୪ମାସ ମାର୍ଚ୍ଚ ୩୧ତାରିଖ ସୁଦ୍ଧା, ଘରକାମ ଶେଷ ଓ ଏପ୍ରିଲ ପହିଲା ସୁଦ୍ଧା ମୁଁ ନୂତନ ଘରକୁ ଚାଲି ଆସିଲି । ହେଲେ ସମସ୍ୟା ଏତିକିରେ ସମାଧାନ ହେଲାନି । ଜୁଲାଇ ଠାରୁ ମାର୍ଚ୍ଚ ପର୍ଯ୍ୟନ୍ତ ଷଡ଼ଙ୍ଗୀବାବୁଙ୍କୁ ଡ଼ାକବଙ୍ଗଳାରେ ପରିବାର ସହ ରହିବାକୁ ପଡ଼ିଲା । ପ୍ରତି ମୂହୁର୍ତ୍ତରେ ସେ ଉପରିସ୍ଥ ଅଫିସରଙ୍କ ଜରିଆରେ ଚାପ ପକାଇ ମୋତେ ଘରୁ ଉଠାଇବାକୁ ଚେଷ୍ଟା କରୁଥାନ୍ତି । ଅବଶ୍ୟ ମୋର ମନର ଅସନ୍ତୋଷ ଓ ନୂତନ ଗୃହ ନିର୍ମାଣରେ ଅଗ୍ରଗତି ଦେଖି ଅଧିକ୍ଷଣଯନ୍ତ୍ରୀ ଦିବାକରବାବୁ ମୋତେ ଘର ଛାଡ଼ିବାକୁ ଜୋର ଦେଲେନି । କିନ୍ତୁ ଏହି ଗୋଟିଏ ଘର ପାଇଁ ବରହମପୁର ଏସ:ଡ଼ି:ଓ ଓଭରସିଅର ଓ କଣ୍ଟ୍ରାକ୍ଟର, ରାଜନୈତିକ ଲୋକମାନେ ଦୁଇଭାଗରେ ବିଭକ୍ତ ହୋଇଗଲେ । ମୋ ପକ୍ଷରେ ରହିଲେ ଅଧିକାଂଶ କଂଗ୍ରେସ ଏମ:ଏଲ:ଏ ଓ ଚେୟାରମେନ, ଷଡ଼ଙ୍ଗୀ ବାବୁଙ୍କ ପକ୍ଷରେ ରହିଲେ ସମସ୍ତ କମ୍ୟୁନିଷ୍ଟ ଏମ:ଏଲ:ଏ ଓ ସ୍ୱଳ୍ପ କଂଗ୍ରେସ ଏମ:ଏଲ:ଏ । ଏଭଳିକି ଦୁଇଜଣ ମନ୍ତ୍ରୀ ପ୍ରକାରାନ୍ତରେ ଦୁଇ ପକ୍ଷଭୁକ୍ତ ହୋଇଗଲେ । ମୋର ପୁରାତନ ଶତ୍ରୁ କବିସୂର୍ଯ୍ୟନଗରର ଏମ:ଏଲ:ଏ ସଦାନନ୍ଦ ମହାନ୍ତି ପୁଣି ଥରେ ସୁଯୋଗ ପାଇ ମୁଣ୍ଡ ଟେକିଲେ । ସେ ମୁଖ୍ୟମନ୍ତ୍ରୀଙ୍କୁ ଏକ ଅବାସ୍ତବ ଚିତ୍ର ଦେଇ କହିଲେ ଯେ,ମାଇନର ଇରିଗେସନ ଏକଜିକ୍ୟୁଟିଭ ଇଞ୍ଜିନିୟର ୧୦ଲକ୍ଷ ଟଙ୍କା ବ୍ୟୟରେ ନିଜର ବାସଗୃହ ପାଇଁ ଏକ ନିର୍ମାଣସୌଧ କରିଛନ୍ତି । ମୁଖ୍ୟମନ୍ତ୍ରୀ ଏହାର ଅନୁସନ୍ଧାନ ଦାୟିତ୍ୱ ଚିଫ ସେକ୍ରେଟେରୀ ଭି:ଏସ: ମ୍ୟାଥୁସ୍‌ଙ୍କୁ ଦେଲେ । ସେ ରୁରାଲ ଡେଭେଲପମେଣ୍ଟ ସେକ୍ରେଟେରୀ ଏସ:କେ: ବସୁଙ୍କୁ ଜରିଆରେ ଅନୁସନ୍ଧାନ କରି ରିପୋର୍ଟ ଦେଲେ ଯେ ଘର ନିୟମ ଅନୁସାରେ ସରକାରୀ ଅନୁମୋଦନ ପାଇ ହୋଇଛି । ଏଥିରେ କୌଣସି ବୈଧାନିକ ତ୍ରୁଟି ନାହିଁ । ରୁରାଲ ଡ଼େଭେଲପମେଣ୍ଟ ମନ୍ତ୍ରୀ ଲକ୍ଷ୍ମଣ ମଲିକ ଏଥିରେ କ୍ଷୁବ୍ଧ ହେଲେ । ବଂଶୀଧର ଷଡ଼ଙ୍ଗୀ କମ୍ୟୁନିଷ୍ଟ ଏମ:ଏଲ:ଏ ମାନଙ୍କୁ ଲଗାଇ ଏଭଳି ଏକ ଇନକ୍ୟୁଆରି କରାଇଛନ୍ତି ଜାଣିପାରି ତାଙ୍କୁ ଗଞ୍ଜାମରୁ ଅନ୍ୟତ୍ର ବଦଳି କରିବା ପାଇଁ ସୁପାରିଶ କଲେ । ଏହି ଆଦେଶ ଦେଖି ଭାଗିରଥି ଗମାଙ୍ଗ ଜିଦ ଧରିଲେ ଯେ ଯଦି ବଂଶୀଧର ଷଡ଼ଙ୍ଗୀ ବଦଳି ହେବେ,

ତେବେ ଭାସ୍କର ଚନ୍ଦ୍ର ନାୟକ ମଧ ବଦଳି ହେବା ଆବଶ୍ୟକ । ମୁଖ୍ୟମନ୍ତ୍ରୀ ବାଧ ହୋଇ ଜୁଲାଇ ମାସରେ ମୋର ବଲାଙ୍ଗୀର ବଦଳି ଆଦେଶ କଲେ । ତା ପରେ ଗଞ୍ଜାମ ଜିଲ୍ଲାର ବହୁ କଂଗ୍ରେସ ଏମ:ଏଲ:ଏ ମୋର ବଦଳି ଆଦେଶ ସ୍ଥଗିତ କରିବା ପାଇଁ ଜିଦ ଧରିବା ସତ୍ତ୍ୱେ ଏହା ଆଉ ବଦଳିଲା ନାହିଁ । ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥି ତାଙ୍କ ସିଦ୍ଧାନ୍ତରେ ଅଟଳ ରହିଲେ ।

ବଂଶୀଧର ଷଡ଼ଙ୍ଗୀ ବଦଳରେ ରୁରାଲ ଇଞ୍ଜିନିୟରିଂ ଡ଼ିଭିଜନକୁ ଆସିଲେ ମନୋରଞ୍ଜନ ମହାନ୍ତି ଓ ମୋ ବଦଳରେ ଯୋଗଦେଲେ ଶ୍ରୀନିବାସ ଚୌଧୁରୀ । ଉଭୟ ରାସ୍ତା ଓ କୋଠା ବିଭାଗର ଇଞ୍ଜିନିୟର । ଗଞ୍ଜାମ ଜିଲ୍ଲାର କ୍ଷୁଦ୍ର ଜଳସେଚନ ଯୋଜନାଙ୍କର ସଂଖ୍ୟା ସମୁଦାୟ ଓଡ଼ିଶାର ଅର୍ଦ୍ଧେକ । ଏଥିପାଇଁ ପ୍ରତିବାଦ ହେଲା । କିନ୍ତୁ ମୁଖ୍ୟମନ୍ତ୍ରୀ ନିଜ ସିଦ୍ଧାନ୍ତରେ ଅଟଳ । ଅଗଷ୍ଟ ମାସର ପ୍ରଥମ ସପ୍ତାହରେ ଦାୟିତ୍ୱ ହସ୍ତାନ୍ତର କରି ବଲାଙ୍ଗିର ଚାଲିଗଲି । କିନ୍ତୁ ସମସ୍ୟା ସମାଧାନ ଏତିକିରେ ହେଲାନି । ମୋର ଉତରାଧିକାରୀ (ସକସେସର) ନିଜର ବଡ଼ିମା ଦେଖାଇବା ପାଇଁ କ୍ୱାର୍ଟର ତିଆରି ପାଇଁ ବିଭିନ୍ନ ପ୍ରୋଜେକ୍ଟକୁ ବୁକିଂ ହୋଇଥିବ, ଜିନିଷର ତାଲିକା କରି ନୂତନ ଭାବେ ଅଧିକ୍ଷଣ ଯନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିବା ବିରେନ ପଟ୍ଟନାୟକଙ୍କୁ ଦେଖାଇଲେ । ତାଙ୍କ ସହ ତାଳ ଦେଇ ନାଚିଲେ ହରିହର ଦାସ ଏସ:ଡ଼ି:ଓ । ଏହି ଏସ:ଡ଼ି:ଓ ଙ୍କୁ ମୁଁ ଥିଲାବେଳେ କେତେ ସାହାଯ୍ୟ କରିଛି । ପୂର୍ବତନ ଅଧିକ୍ଷଣ ଯନ୍ତ୍ରୀ ଜାନକୀ ବଲ୍ଲଭ ସ୍ୱାଇଁ କେବଳ ଏହି ହରିହର ଦାସ ପାଇଁ ମୋ ଉପରେ ଅସନ୍ତୁଷ୍ଟ । ସେ ଥରେ ସରକାରୀ ଗାଡ଼ି ଚଳାଇ ଯାଉଥିବା ସମୟରେ ଏକ୍ସିଡ଼େଣ୍ଟ କରି ଗୋଟିଏ ପିଲାକୁ ମଡ଼ାଇଦେବା ଫଳରେ ଘଟଣା ମୂଳରେ ପିଲାଟିର ମୃତ୍ୟୁ ଘଟିଥିଲା । ନିଜ ଚାକିରିକୁ ବିପଦାପନ୍ନ କରି ତାଙ୍କୁ ସେଥିରୁ ମୁଁ ରକ୍ଷା କରିଛି । ପିଲ୍ଲି ପଦ୍ମନାଭପୁର ରୋଡ଼ ଟେଣ୍ଡରରେ କରିଥିବା ଗଣ୍ଡୋଗୋଳରୁ ତାଙ୍କୁ ରକ୍ଷା କରିବା ପାଇଁ ମୁଁ ଆପ୍ରାଣ ଚେଷ୍ଟା କରିଛି । ନୂତନ ଭାବେ ତିଆରି ହୋଇଥିବା ଡ଼ି.ଟାଇପ ଘରକୁ ଅଧିକ୍ଷଣ ଯନ୍ତ୍ରୀଙ୍କ ଇଚ୍ଛା ବିରୁଦ୍ଧରେ ତାଙ୍କୁ ଏଲଟ କରିଛି । ତାଙ୍କ ସବ ଡ଼ିଭିଜନର ଆସ୍କାରେ ଥିବା ଦୁଇଟି ସମ୍ମାନଜନକ ପ୍ରେଷ୍ଟିଜିୟସ ସେକସନ, ଅଧିକ୍ଷଣ ଯନ୍ତ୍ରୀ ଜାନକୀ ବାବୁ ଭଞ୍ଜନଗର ସବଡ଼ିଭିଜନକୁ ଦେଇ ଦେଉଥିଲେ । ମୋ ଚେଷ୍ଟା ଫଳରେ ସେ ସେକସନ୍ ଦୁଇଟି ତାଙ୍କ ପାଖରେ ରହିଲା । ସେଥିପାଇଁ ଜାନକୀ ବାବୁଙ୍କ ପାଖରେ

ମୁଁ ଅପ୍ରିୟ ହେଲି । ତଥାପି ନିଜର ସବୋଡ଼ିନେଟ ଷ୍ଟାଫକୁ ରକ୍ଷା କରିବା ଉଦ୍ଦେଶ୍ୟ ନେଇ ତାଙ୍କୁ ସାହାଯ୍ୟ କରିଛି । କିନ୍ତୁ ହରିହର ଦାସ ମୁଁ ଯିବା ପରେ ମୋର କ୍ୱାର୍ଟର୍‌ର ଟେପ୍ ପର୍ଯ୍ୟନ୍ତ ଗଣି ଅଧିକ୍ଷଣ ଯନ୍ତ୍ରୀ ବିରେନ ବାବୁଙ୍କୁ ରିପୋର୍ଟ; କଲେ । ମୁଁ ନାହିଁ, ପିଲାମାନେ ଏକା ଅଛନ୍ତି । ଘରେ କାମ କରୁଥିବା ଖଲାସି ପିଅନ ମାନଙ୍କୁ ବାହାର କରିଦେଲେ । କଲୋନୀର ସମସ୍ତଙ୍କ ଘରେ ପାଣି ଦେଉଥିବା ଗାଡ଼ିକୁ ଆମ ଘରକୁ ବନ୍ଦ କରିଦେଲେ । ଆଉ ସର୍ବୋପରି ମୋ ମିସେସ୍‌ଙ୍କୁ ଅପମାନିତ କଲେ ଶୁଣି ଦୁଃଖ ଲାଗିଲା । ଭାବିଲି ସତରେ କ'ଣ ଭଗବାନ ନାହାଁନ୍ତି । ସେ ଜଣେ ଲୋକର ଏବେ ଅନ୍ୟାୟ ସହୁଛନ୍ତି କିପରି ? ଲୋକର ଗର୍ବ ବେଶୀଦିନ ରହିପାରେ ନାହିଁ । ଅଳ୍ପଦିନ ଭିତରେ ତାଙ୍କର ସବଡ଼ିଭିଜନରୁ ଅଫିସରୁ ବଦଳି ହେଲା । ପରବର୍ତ୍ତୀ କାଳରେ ମୋର C.C.R ବଳରେ ଅବଶ୍ୟ ସେ ପ୍ରମୋଶନ୍ ପାଇଲେ କିନ୍ତୁ ଭଗବାନ ତାଙ୍କର କୃତ କର୍ମ ପାଇଁ ଦଣ୍ଡ ଦେବାକୁ ଭୁଲିଲେ ନାହିଁ । ଯେଉଁ ପଲ୍ଲି ପଦ୍ମନାଭପୁର ରାସ୍ତାର ଟେଣ୍ଡରରେ ସେ କରିଥିବା ଅନ୍ୟାୟରୁ ମୋ ଚେଷ୍ଟା ଫଳରେ ସେ ସାମୟିକ ରକ୍ଷା ପାଇ ପାରିଥିଲେ, ପରବର୍ତ୍ତୀ କାଳରେ ସେହି ରାସ୍ତାର ଟେଣ୍ଡର ତାଙ୍କର କାଳ ହେଲା । ଏହା ତାଙ୍କୁ ଏକଜିକ୍ୟୁଟିଭ ଇଞ୍ଜିନିୟର ପଦବୀରୁ ଏସ:ଡ଼ି:ଓ ପଦବୀକୁ ଖସାଇ ଦେଲା । ବିରେନବାବୁ ଫାଇଲଟି ଆମୂଳଚୂଳ ପଢ଼ି ଦେଖିଲେ ଯେ କ୍ୱାର୍ଟର ତିଆରି ପାଇଁ ମୁଖ୍ୟଯନ୍ତ୍ରୀ ଓ ସରକାରଙ୍କଠାରୁ ଅନୁମତି ନିଆଯାଇ ୧୦ ଲକ୍ଷ ଟଙ୍କାରେ ନୁହେଁ ୫୦ ହଜାର ଟଙ୍କାର ତିଆରି ହୋଇଛି । ସେ ସେହି ଅନୁସାରେ ରିପୋର୍ଟ ଦେଇଦେଲେ ଓ ଏହାପରେ ଦୀର୍ଘ ଦେଢ଼ ବର୍ଷର ଘଣ୍ଟାଚକଟାର ଅବସାନ ଘଟିଲା । ସଦାନନ୍ଦ ବାବୁଙ୍କୁ ୫୦ ହଜାର ଟଙ୍କାର କାମ ତା ୧୦ ଲକ୍ଷ ପରି ଲାଗିଲା ।



## ଅଷ୍ଟାଦଶ ଅଧ୍ୟାୟ

# ବଲାଙ୍ଗିରର ଆହ୍ୱାନ

ବରହମପୁରରୁ ବଲାଙ୍ଗିରକୁ ବଦଳି ପରିବାର ପ୍ରତି ଏକ ପ୍ରଚଣ୍ଡ ଆଘାତ ଭଳି ହେଲା । ବଡ଼ପୁଅ ଶୁଭେନ୍ଦୁର ସେ ବର୍ଷ ଶେଷ ବର୍ଷ । ସେ ସେଣ୍ଟ୍ରାଲ ସ୍କୁଲରେ ପଢୁଥାଏ । ବଲାଙ୍ଗୀରରେ ସେଣ୍ଟ୍ରାଲ୍ ସ୍କୁଲ୍ ନାହିଁ । ତେଣୁ ସମୁଦାୟ ପରିବାରକୁ ବରହମପୁରରେ ରଖିବାକୁ ପଡ଼ିବ । ଏଣେ ସବୁ ପିଲା ପଢା ପାଇଁ ମୋ ଉପରେ ଏକ ପ୍ରକାର ନିର୍ଭରଶୀଳ ହୋଇ ଯାଇଥିଲେ । ବରହମପୁରରୁ ବାରମ୍ବାର ବଦଳି ଓ ମାନସିକ ଅଶାନ୍ତି ମଧ୍ୟରେ ପିଲାମାନଙ୍କର ପଢାରେ ବହୁତ ବିଶୃଙ୍ଖଳା ସୃଷ୍ଟି ହୋଇସାରିଥାଏ । ୧୦ମ ଶ୍ରେଣୀ ବେଳକୁ ବଡ଼ପୁଅର ପଢା ଗୋଟାଏ ପ୍ରକାର ଶୃଙ୍ଖଳିତ ଭାବେ ଚାଲୁଥିଲା । ପୁଣି ତାର ୧୧ଶ ଶ୍ରେଣୀରେ ମୋର ବଲାଙ୍ଗିରକୁ ବଦଳି ତା ପ୍ରତି ଏକ ଧକ୍କାସ୍ୱରୂପ ହେଲା । ଝିଅ ଦୁଇଜଣଙ୍କ ପଢା କଥା ଛାଡ଼ । ବଡ଼ଝିଅ ଇଲା ୭ମ ଶ୍ରେଣୀରେ ବୃତ୍ତି ପାଇଥିଲା । କିନ୍ତୁ ତା ପ୍ରତି ନଜରର ଅଭାବ ଓ ତାର ନାଚ ପ୍ରତି ଅତ୍ୟଧିକ ଆଗ୍ରହ ଫଳରେ ସେ ମଧ୍ୟ ପାଠପଢାରେ ବହୁତ ଅବହେଳା କରିସାରିଥିଲା । ତା ସାଙ୍ଗକୁ ତାର ୧୦ମ ଶ୍ରେଣୀରେ ମୋର ବଦଳି । କିନ୍ତୁ ଉପାୟ କିଛି ନାହିଁ । ଜାନୁୟାରୀ ବେଳକୁ କ୍ୱାର୍ଟର ଛାଡ଼ିବାକୁ ପଡ଼ିଲା । ଗାନ୍ଧିନଗରରେ ଥିବା ମୋ ଜଣେ ବନ୍ଧୁ ଦୟାନିଧି ନାୟକଙ୍କ ଘରେ ପିଲାମାନେ ୪ମାସ ରହିଲେ । କୌଣସି ମତେ ଗୋଟିଏ ବର୍ଷ ବିତାଇ ବଲାଙ୍ଗିର ଗଲେ । କିନ୍ତୁ ବୁଲୁ ତାର ସେଣ୍ଟ୍ରାଲ ସ୍କୁଲ ୧୧ଶ ଶ୍ରେଣୀରେ ଆଶାନୁରୂପ ସଫଳତା ଲାଭ କରିପାରିଲା ନାହିଁ । ବଡ଼ ଝିଅ ଇଲା ଓ ସିଲା କୌଣସିମତେ ପରୀକ୍ଷାରେ ପାଶ୍ କରିଗଲେ । ବଲାଙ୍ଗିରରେ ପହଞ୍ଚି ଦେଖିଲି ଯେ ଏ ଜିଲ୍ଲାର କାର୍ଯ୍ୟ ଇଞ୍ଜିନିୟରିଂ ବିଦ୍ୟା ପାଇଁ ଏକ ଆହ୍ୱାନ । ବଲାଙ୍ଗିର ପଶ୍ଚିମ ଓଡ଼ିଶାର ଗୋଟିଏ ଜିଲ୍ଲା ଯାହାର ମାଟି ମୁଖ୍ୟତଃ କୃଷ୍ଣ କାର୍ପାସ ମୃତ୍ତିକା ଶ୍ରେଣୀ ଅନ୍ତର୍ଭୁକ୍ତ । କାଁ-ଭାଁ ପାହାଡ଼ ପର୍ବତ ରହିଛି । ଆଦିବାସୀ ନାହାନ୍ତି କହିଲେ ଚଳେ । ସମୁଦାୟ ଓଡ଼ିଶାରେ କ୍ଷୁଦ୍ର ଜଳସେଚନ ଯୋଜନା

ଜରିଆରେ ପ୍ରାୟ ୬ଲକ୍ଷ ଏକର ଜମି ଜଳସେଚିତ ହେଉଥିବା ସମୟରେ ବଲାଙ୍ଗିରରେ ମାତ୍ର ୧୨ ହଜାର ଏକର ଜମି କ୍ଷୁଦ୍ର ଜଳସେଚନ ଯୋଜନା ଦ୍ୱାରା ଜଳସେଚିତ ହେଉଛି ଅର୍ଥାତ ଓଡ଼ିଶାର ସମୁଦାୟ କ୍ଷୁଦ୍ର ଜଳସେଚନ ଯୋଜନା ଆୟକଟର ଶତକଡ଼ା ୨ଅଂଶ ବଲାଙ୍ଗିର ଜିଲ୍ଲାରେ ଅବସ୍ଥିତ । ବଲାଙ୍ଗିରରେ ଯୋଗଦେବା ସଙ୍ଗେ ସଙ୍ଗେ ମୁଁ ପ୍ରଥମ ଶପଥ ଗ୍ରହଣ କଲି କିପରି ବଲାଙ୍ଗିରର କ୍ଷୁଦ୍ରଜଳସେଚନ ଯୋଜନାର ଆୟକଟକୁ ଦ୍ୱିଗୁଣିତ କରିବି । ସୌଭାଗ୍ୟକୁ ବଲାଙ୍ଗିର ଜିଲ୍ଲା ଅଧିନରେ କେତେ ଜଣ କର୍ମଠ ଇଞ୍ଜିନୟରିଂ ରହିଥିଲେ । ଟିଟିଲାଗଡ଼ ଏସ:ଡ଼ି:ଓ ଜୟପ୍ରକାଶ ଚାନ୍ଦ, ପାଟନାଗଡ଼ ଏସ.ଡି.ଓ ସାଳିଗ୍ରାମ ପାଣିଗ୍ରାହି, ଅଫିସ ଆସିଷ୍ଟାଣ୍ଟ ଇଞ୍ଜିନିୟର ଭଗବାନ ପଣ୍ଡା, ରବିନାରାୟଣ ଦାଶଙ୍କ ଦ୍ୱାରା ଡ଼ିଜାଇନ ଓ ଏଷ୍ଟିମେଟ୍ ଦ୍ୱରାନ୍ୱିତ ହୋଇପାରିବ । ନରସିଂହ ପାରମାର ଅମରେଶ ମହାପାତ୍ର ଓ ଦିଲ୍ଲିପ ଚକ୍ରବର୍ତ୍ତୀ ସର୍ଭେ ଓ ଏଷ୍ଟିମେଟ୍ ପାଇଁ ଧୁରନ୍ଧର । ସମସ୍ତଙ୍କୁ ନିଜର ଶକ୍ତି ଅନୁସାରେ କାମରେ ଲଗାଇ ଦିଆଗଲା । ୧୧୨ଟି ଯୋଜନାରୁ ବଲାଙ୍ଗୀର ଛଅଟି ଯୋଜନା ଯଥା ଟାଙ୍ଗର ପାଲି, ଘାଗୁର୍ଲି, ଡୁଙ୍ଗୁରି ପାଲି, ସୁଜିଆ ଓ ଘୁଙ୍ଗି-ଯୋର ପ୍ରୋଜେକ୍ଟ ରିଭାଇଜ ଏଷ୍ଟିମେଟ୍ ତିଆରି ଆରମ୍ଭ କରାଗଲା । ଚାଲିଥିବା ଯୋଜନା ଯଥା ନିବୃତ୍ତି ଜୋର, ମାୟାବତୀ ଓ ମାଥାନା ପୋଲାର କେନାଲ ଏଲାଇନମେଣ୍ଟ ଭୂ-ଅର୍ଜନ ସହ ଷ୍ଟ୍ରକଚର୍ ଡିଜାଇନ୍ ଓ ଏଷ୍ଟିମେଟ, ବହୁଦିନୁ ଉପେକ୍ଷିତ ପାଣ୍ଡ୍ରିଜୋର, ନାଇକେନ ଯୋର, ଗାଇ ଖାଇ ପ୍ରୋଜେକ୍ଟର କେନାଲ ଏଲାଇନମେଣ୍ଟ ଓ ଭୂ-ଅର୍ଜନ ସଙ୍ଗେ ଷ୍ଟ୍ରକଚର ଡିଜାଇନ ଓ ରିଭାଇଜ୍ ଏଷ୍ଟିମେଟ୍ କାମରେ ସବୁ ଦକ୍ଷ ଇଞ୍ଜିନିୟରଙ୍କୁ ନିଜ ନିଜ ଶକ୍ତି ଅନୁସାରେ କାମରେ ଲଗାଇଦିଆଗଲା । ଏତେଗୁଡ଼ିଏ ଯୋଜନାର କାର୍ଯ୍ୟ ପାଇଁ ପ୍ରାୟ ଏକ କୋଟି ଟଙ୍କାର ଅର୍ଥ ଆବଶ୍ୟକ । ସୌଭାଗ୍ୟକୁ ୧୯୭୪-୭୫ରେ ୧୧୨ଟି ଯୋଜନାର ବହୁତ କାମ ସରିଯାଇଥାଏ । କ୍ଷୁଦ୍ର ଜଳସେଚନର ଟଙ୍କା ଖର୍ଚ୍ଚ କରିବାକୁ ଓଡ଼ିଶାର ଅଧିକାଂଶ ଡ଼ିଭିଜନରେ କାମ ନ ଥାଏ । ତେଣୁ ମୁଁ ଯେତେବେଳେ ଡ୍ରଇଂ ଡ଼ିଜାଇନ ଓ ରିଭାଇଭ୍ ଏଷ୍ଟିମେଟ୍ କରି ମୁଖ୍ୟମନ୍ତ୍ରୀଙ୍କୁ ପ୍ରୋଜେକ୍ଟ ଶେଷ କରିବାକୁ ଟଙ୍କା ମାଗିଲି ସେ ଆନନ୍ଦରେ ଏକ କୋଟି ଟଙ୍କା ଅଟକଳର ଯୋଜନା ପାଇଁ ଟଙ୍କା ଯୋଗାଇ ଦେଲେ ।

ଉପରୋକ୍ତ ଯୋଜନାଗୁଡ଼ିକର କାର୍ଯ୍ୟ ଏତେ ସରଳଗତିରେ ଗଲା ନାହିଁ। ଜଳସେଚନ ଯୋଜନା କାର୍ଯ୍ୟ ପାଇଁ ବହୁ ବାଧାବିଘ୍ନ ପହଞ୍ଚିଲା। ପ୍ରଥମ ବାଧା ବିଘ୍ନ ଆସିଲା ଗାଈ ଖାଇ କ୍ଷୁଦ୍ର ଜଳସେଚନ ଯୋଜନାରେ। ଗାଈଖାଇର ଜଳଭଣ୍ଡାର Full reservior level ଓ ଅଙ୍ଗ କେନାଲର ଜଳ ପତନ ପ୍ରାୟ ସମାନ। ତେଣୁ ଅଙ୍ଗ କେନାଲ ପାଇଁ ୩ଟି ଏଲାଇନମେଣ୍ଟ ସମ୍ଭବ। ପ୍ରଥମଟି ହେଲା ଗାଈ ଖାଇ ଜଳଭଣ୍ଡାର ସହ ଗୋଟିଏ ପାଖରେ ସଂଯୋଗ କରି ଆରପାଖରେ ବାହାର କରିବା। ୨ୟଟି ହେଲା ରିଜରଭରର ଉପର ପାଖରେ ୧୫ ଫୁଟ କଟିଂରେ କେନାଲ ନେବା ଓ ୩ୟଟି ହେଲା ଜଳଭଣ୍ଡାର ତଳେ ଏକ୍ୟୁଡକ୍ଟ କରି କେନାଲ ନିର୍ମାଣ କରିବା। ୩ଟି ଯାକର ସର୍ଭେ ଡିଜାଇନ୍ ଓ ଏଷ୍ଟିମେଟ୍ କରି ଗୋଟିଏ ହାଇଲେଭଲ୍ ମିଟିଂ ଡକାଇ ଚିଫ୍ ସେକ୍ରେଟେରୀଙ୍କ ଜରିଆରେ ଏହାର ସମାଧାନ ହେଲା ଯେ ଅଙ୍ଗ କେନାଲର ଇନ୍‌ଲେଟ୍ ଆଉଟ୍‌ଲେଟ୍ ଡିଜାଇନକୁ ଗ୍ରହଣ କରାଯିବ ଓ ଗାଈ ଖାଇ ଯୋଜନାର କାର୍ଯ୍ୟ ତାର ଡିଜାଇନ୍ ଅନୁସାରେ ସମ୍ପୂର୍ଣ୍ଣ କରାଯିବ।୨ୟ ସମସ୍ୟାଟି ହେଲା ନିବୃତ୍ତି ଜୋର ଯୋଜନାରେ ନିବୃତ୍ତି କ୍ଷେତ୍ରର ଆୟକଟ ୪୫୦୦ ଏକର। କିନ୍ତୁ ଏହି ନଦୀଟିର ଉପରେ ମୁଣ୍ଡରେ ଲୋକେ କ୍ରସ ବନ୍ଧ କରି ମରୁଡ଼ି ସମୟରେ ପାଣି ନେଇ ଯିବା ଯୋଗୁଁ କେନାଲକୁ ଯଥେଷ୍ଟ ପାଣି ଆସୁନାହିଁ ଓ ଜଳମୁଣ୍ଡକୁ ପାଣି ପହଞ୍ଚାଇବା ସମ୍ଭବ ନୁହେଁ। କେନାଲ ଅନୁସନ୍ଧାନ ସମୟର ଜାଣିବାକୁ ପାଇଲି ଯେ କେନାଲର ୧୦ କି.ମି. ଆରଡ଼ିରେ ଗୋଟିଏ ବିରସ୍ରୋତା ନାଳ ରହିଛି ଓ କେନାଲକ୍ରସିଂର ଅଳ୍ପ ଦୂରରେ ନାଳ ବେଡ଼ରେ ଗୋଟିଏ ପଥର ଚଟାଣ ଅଛି। ତେଣୁ ଏ କେନାଲକୁ ଅଣ୍ଡରଟନେଲରେ ଅତିକ୍ରମ ନ କରି ଇନ୍‌ଲେଟ ଓ ଆଉଟଲେଟରେ ଅତିକ୍ରମ କଲେ ୨୫ ବର୍ଗ କି.ମି.ର ଜଳକୁ ନିବୃତ୍ତି ଯୋରର ପ୍ରୋଜେକ୍ଟରେ ବ୍ୟବହାର କରିହେବ ଓ ଆମେ ପୁରା ୪୫୦୦ ଏକର ଜମିକୁ ଜଳସେଚିତ କରିବା ସମ୍ଭବ ହେବ। ୩ୟ ସମସ୍ୟାଟି ହେଲା ନାଇକେନ ଜୋର ଯୋଜନାରେ। ନାଇକେନ ଯୋରର କେଚ୍‌ମେଣ୍ଟ ଏରିଆ ମାତ୍ର ୧୮ ବର୍ଗ କିମି କିନ୍ତୁ ପ୍ରୋଜେକ୍ଟ ତିଆରି ପୂର୍ବରୁ ଏହା ୩୫ ବର୍ଗ କିମି ବୋଲି ଦର୍ଶାଯାଇଛି। ତେଣୁ ଏହାଦ୍ୱାରା ୧୪୦୦ ଏକର ଜମିକୁ ଜଳସେଚିତ କରିବା ସମ୍ଭବ ନୁହେଁ। ସରକାରଙ୍କ ଆଦେଶ ଏହି ଭୁଲ୍ ପାଇଁ କିଏ

ଦାୟୀ ସ୍ଥିର କରାଯାଉ । କେନାଲ ପରିଦର୍ଶନ ସମୟରେ ଜାଣିଲି ଯେ ଆୟକଟ ମଧ୍ୟରେ ଗୋଟିଏ ଚିରସ୍ରୋତା ନାଳ ରହିଛି । ତାର ନାମ ବାଉରା ଯୋର । ଏହି ନାଳକୁ ସାଇଫନ ଦ୍ୱାରା ପାରି କରା ନଯାଇ ଇନଲେଟ୍ ଓ ଆଉଟ୍‌ଲେଟ କଲେ ୧୨୦୦ ଏକର ଜମି ଜଳସେଚନ ସମ୍ଭବ । ତେଣୁ ରିଭାଇଜ ଏଷ୍ଟିମେଟ୍ କରି ସରକାରଙ୍କ ଠାରୁ ମଞ୍ଜୁରୀ ଆଣି ପ୍ରୋଜେକ୍ଟର କାର୍ଯ୍ୟ ସମ୍ପାଦନ କରାଗଲା । ସେହିପରି ପାଣ୍ଡ୍ରି ଯୋର ଯୋଜନାର ଭୂ-ଅର୍ଜନକୁ ତ୍ୱରାନ୍ୱିତ କରିବା ଫଳରେ ସବୁ କାମସରି ଥିବା ଏହି ଯୋଜନା ୧୬୦୦ ଏକର ଜମିକୁ ଜଳ ଯୋଗାଇବା ସମ୍ଭବ ହେଲା ।

ମାତ୍ର ଅଢ଼େଇବର୍ଷ ଭିତରେ ନିମ୍ନଲିଖିତ ଯୋଜନାରୁ ଅଧିକ ୧୫୦୦୦ ଏକର ଜମି ଜଳସେଚିତ ହେବା ସମ୍ଭବ ହେଲା ।

| | |
|---|---|
| ନିବୃତ୍ତି ଯୋର | : ୪୦୦୦ ଏକର |
| ମାଥାନ ପୋଲା | : ୩୧୦୦ ଏକର |
| ନାଇକେନ ଜୋର | : ୧୧୦୦ ଏକର |
| ପାଣ୍ଡ୍ରି ଜୋର | : ୩୦୦ ଏକର (ଅଧିକ) |
| ଗାଈଖାଇ | : ୧୦୦୦ ଏକର |
| ମାୟାବତୀ | : ୨୦୦୦ ଏକର |
| ଡୁଙ୍ଗରିପାଲି | : ୧୦୦୦ ଏକର (ଅଧିକ) |
| ସୁଜିଆ | : ୧୧୦୦ ଏକର (ଅଧିକ) |
| ଟାଙ୍ଗଯୋର | : ୩୦୦ (ଅଧିକ) |
| ମୋଟ | : ୧୫,୬୦୦ ଏକର |

ତେଣୁ ମାତ୍ର ଅଢ଼େଇବର୍ଷ ଭିତରେ ବଲାଙ୍ଗିର ଜିଲ୍ଲାର କ୍ଷୁଦ୍ର ଜଳସେଚନ ଆୟକଟରେ ୧୨୫୦୬ ଏକର ବୃଦ୍ଧି ସମ୍ଭବ ହେଲା । ଏହା କେବଳ ଜନସାଧାରଣରେ ଆଲୋଡ଼ନ ସୃଷ୍ଟି କଲା ନାହିଁ, ଚିଫ୍‌ସେକ୍ରେଟେରୀ ତଥା ଡେଭଲପ୍‌ମେଣ୍ଟ କମିଶନର ସୁଧାଂଶୁମୋହନ ପଟ୍ଟନାୟକ ଜିଲ୍ଲା ଉନ୍ନୟନ ମିଟିଂରେ ମୋର କାର୍ଯ୍ୟର ଭୁରିଭୁରି ପ୍ରଶଂସା କରିବାକୁ ଭୁଲିଲେ ନାହିଁ । ପଞ୍ଚମ ପଞ୍ଚବାର୍ଷିକ ଯୋଜନାରେ ବାଘଝରଣ, ହରିଶଙ୍କର ଓ ଦମକିପଲି ଯୋଜନାକୁ ଅନ୍ତର୍ଭୁକ୍ତ

କରାଗଲା । ସେ ସମୟରେ କାମ ପାଇଁ ଯେଉଁ ଖାଦ୍ୟ ଯୋଜନା ଆସିଥାଏ, ତାର ସଦୁପଯୋଗ କରି ବେକାମି ଜଳସେଚନ ଯୋଜନା ହାତକୁ ନିଆଗଲା, ତାର ସୁଯୋଗ ନେଇ ନିମ୍ନଲିଖିତ ଯୋଜନାର ପୁନରୁଦ୍ଧାର ଫଳରେ ୩୬୦୦ ଏକର ଜମିକୁ ଜଳସେଚନ ସମ୍ଭବ ହେଲା । ସେଗୁଡ଼ିକ ହେଲା:-

| | |
|---|---|
| ଖପରାଖୋଲ ବ୍ଲକ୍ | : ଖପରାଖୋଲ : ୧୨୦ ଏକର |
| | : ପିଙ୍ଗଳମୁଣ୍ଡା : ୧୭୦ ଏକର |
| ଲୋଇସିଂହା ବ୍ଲକ୍ | : ଲୋଇସିଂହା ସାଗର : ୩୦୦ ଏକର |
| ମୁରିବାହାଲ ବ୍ଲକ୍ | : ମୁରିବାହାଲ : ୬୦ ଏକର |
| | : ତେନ୍ତଳି ଖୁଣ୍ଟି : ୬୦ ଏକର |
| | : ବଙ୍ଗମୁଣ୍ଡା : ୧୮୦ ଏକର |
| | : ଇଛପଡ଼ା : ୨୦୦ ଏକର |
| ପାଟନାଗଡ଼ | : ଦରକଟା : ୧୬୦ ଏକର |
| | : ଭୈଇଁସା : ୫୦୦ ଏକର |
| | : ଭାଲୁଧର : ୨୦୦ ଏକର |
| | : ଗଣ୍ଡାମାଳା : ୧୯୫୦ ଏକର |
| ପୁଇଁତାଲ ବ୍ଲକ୍ | : ବିଛାପାଲି : ୧୮୦ ଏକର |
| | : ମାଲମୁଣ୍ଡା : ୨୦୦ ଏକର |
| ସଇଁତାଳ ବ୍ଲକ୍ | : କଦଳୀଧୂଆ : ୧୫୦ ଏକର |
| ସୋନପୁର | : ମୋହନ ସାଗର : ୫୦୦ ଏକର |
| ଟିଟଲାଗଡ଼ | : ଡଙ୍ଗମୁଣ୍ଡା : ୧୫୦ ଏକର |
| | : ଡ଼ମପଡ଼ା : ୧୦୦ ଏକର |
| | : ଗଉଡ଼ ଗାଁ : ୧୭୫ ଏକର |

ଏଭଳି ପୁନଃ ଉଦ୍ଧାର ଯୋଜନା ଦ୍ୱାରା ୩୬୦୦ ଏକର ଜମିକୁ ଜଳସେଚନ ସମ୍ଭବ ହେଲା । ସମୁଦାୟ କ୍ଷୁଦ୍ରଜଳସେଚିତ ଜମିର ଆୟତନ ୧,୨୦୦ରୁ ଆସି ପହଞ୍ଚିଲା ୩୧,୨୦୦ ଏକରରେ, ଅର୍ଥାତ୍ ଆୟକଟ ବଢ଼ିଲା, ୧୯୨୦୦ ଅର୍ଥାତ୍ ୧୬୦% ।

ବଲାଙ୍ଗିର ଜିଲ୍ଲାର କ୍ଷୁଦ୍ର ଜଳସେଚନ ଯୋଜନାର ଆୟକଟକୁ ୧୨,୦୦୦ ଏକରରୁ ୩୧,୦୦ ଏକରରେ ପହଞ୍ଚାଇବା ସଙ୍ଗେ ସଙ୍ଗେ ଜିଲ୍ଲାର ଆର.ଇ.ଓ ରାସ୍ତାଗୁଡ଼ିକର ଉନ୍ନତି ପାଇଁ ନଜର ଦେବାକୁ ମୁଁ ଭୁଲି ନଥିଲି । ଭୌଗୋଳିକ ପରିସ୍ଥିତିକୁ ଦୃଷ୍ଟିରେ ରଖି ଏହି ଜିଲ୍ଲାର ରାସ୍ତାଗୁଡ଼ିକର ଉନ୍ନତି ପାଇଁ କେହି ବିଶେଷ ଧ୍ୟାନ ଦେଲାଭଳି ମନେ ହେଲାନି । ଜିଲ୍ଲାର ଉତ୍ତର ଦିଗରେ ମହାନଦୀ ଓ ପୂର୍ବ ଦିଗରେ ତେଲନଦୀ ପ୍ରବାହିତ । ଅଙ୍ଗ, ସୁକତେଲ ଓ ଲନ୍ଥ ନଦୀଗୁଡ଼ିକ ତେଲ ନଦୀ ସହ ସମାନ୍ତରାଳ ଭାବେ ଦକ୍ଷିଣରୁ ଉତ୍ତରରୁ ପ୍ରବାହିତ ହୋଇ ଜିଲ୍ଲାଟିକୁ ଋରି ଭାଗରେ ବିଭକ୍ତ କରିଛନ୍ତି । ମଧ୍ୟଭାଗରେ ବରଗଡ଼-ବଲାଙ୍ଗିର ଭବାନୀପାଟନା ଷ୍ଟେଟ୍ ହାଇୱେ ଗତି କରି ଜିଲାଟିକୁ ଦୁଇ ଭାଗରେ ବିଭକ୍ତ କରିଛି । ଏହି ହାଇୱେରୁ ଦୁଇ ପାଖରେ ଦୁଇଟି ରାସ୍ତା ବାହାରିଛି । ସେଗୁଡ଼ିକ ହେଲା ବଲାଙ୍ଗିର ପାଟନାଗଡ଼ କଣ୍ଟାବାଞ୍ଜି ରାସ୍ତା ଓ ବଲାଙ୍ଗିର ସୋନପୁର ଜିଲ୍ଲାସ୍ତରୀୟ ରାସ୍ତା । ଆଉ ଅନ୍ୟ ଏକ ରାସ୍ତା ହେଉଛି ସଇଁତାଲା, ଟିଟିଲାଗଡ଼, ତୁରେଇକେଲା ଦେଇ କଣ୍ଟାବାଞ୍ଜି ଜିଲ୍ଲାସ୍ତରୀୟ ରାସ୍ତା । ସବୁଦିନିଆ ରାସ୍ତା କହିଲେ ଏହି ୪ଟି ରାସ୍ତା ଯାହାର ଲମ୍ୱ ପ୍ରାୟ ୩୦୦ କି.ମି. । ଏତେ ବଡ଼ ଜିଲ୍ଲା ପାଇଁ ମାତ୍ର ୪ଟି ରାସ୍ତା ଯେ କେତେ କମ ତାହା ହୃଦୟଙ୍ଗମ କରି ମୁଁ ଅତ୍ୟନ୍ତ ମର୍ମାହତ ହେଲି । ସୌଭାଗ୍ୟକୁ ଅନେକଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ରାସ୍ତା ଆର.ଇ.ଓ. ସଂସ୍ଥା ଅଧିନରେ ରହିଥିଲା, ପୁଣି ସେହି ରାସ୍ତା ଗୁଡ଼ିକ ଜିଲ୍ଲାର ଅଭ୍ୟନ୍ତରକୁ ସଂଯୋଗ କରିବା ସଂଗେ ସଂଗେ ଷ୍ଟେଟ୍ ହାଇୱେ ସହିତ ସମାନ୍ତରାଳ ଓ ଜିଲ୍ଲାସ୍ତରୀୟ ରାସ୍ତା ସହିତ ସମକୋଣରେ ସଂଯୁକ୍ତ । ପୁଣି ସେଗୁଡ଼ିକ ମିନିମମ୍ ନିଡ଼ସ୍ ରାସ୍ତାର ଏକ ଅଂଶବିଶେଷ । କ୍ଷୁଦ୍ର ଜଳସେଚନ ଯୋଜନା ଭଳି ଆର.ଇ.ଓ ରାସ୍ତା କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣି ବଲାଙ୍ଗିର ଜିଲ୍ଲାର ସବୁଦିନିଆ ରାସ୍ତାର ପରିମାଣକୁ ଦ୍ୱିଗୁଣିତ କରିବା ଲକ୍ଷ୍ୟ ନେଇ ଆଗେଇ ଋଲିଲି ।

ବଲାଙ୍ଗିରରେ ଥିବା ନିମ୍ନ ଆର.ଇ.ଓ ରାସ୍ତାଗୁଡ଼ିକ ଜିଲାର ଅଭ୍ୟନ୍ତରକୁ ଗମନାଗମନ ପାଇଁ ଏକାନ୍ତ ଆବଶ୍ୟକ । କିନ୍ତୁ ଏହାର ଉନ୍ନତି ପାଇଁ ବିଶେଷ ଧ୍ୟାନ ଦିଆଯାଇ ନଥିଲା । ରାସ୍ତାଗୁଡ଼ିକର ଉନ୍ନତି ପାଇଁ ୨ ପ୍ରକାର ଯୋଜନା ହେଲା:-

**ଆର.ଇ.ଓ ରାସ୍ତା ଓ ଲିଙ୍କ ରୋଡ଼ ରାସ୍ତା**

**ଆର.ଇ.ଓ. ରାସ୍ତା:**

୧. ଲୋଇସିଂହା- ଭରାସୂଜା : ୨୪ କି.ମି

୨. ବଲାଙ୍ଗିର - ଚନ୍ଦନଭାଟି - କରକଟିଆ : ୫୦ କି.ମି

୩. ପାଟନାଗଡ଼ - ଦମକିପଲି - ଗାଇସିଲେଟ : ୩୦ କି.ମି.

୪. ଛୁଇଁବନ୍ଧ - ଲୋକାପଡ଼ା (ଭାୟା) ବହେଇ ସରଷା : ୨୪ କି.ମି.

୫. ଚେରୁ ପଲି- ଅଗରପଡ଼ା : ୨୧ କି.ମି

୬. ଚେରୁ ପଲି - ମହଦା ଫୁଲମୁଠି : ୩୩ କି.ମି

୭. ଧର୍ମଶାଳା ସୁବଳୟା ବରିହାମୁଣ୍ଡା - ୩୩ କି.ମି

୮. ଖପରାଖୋଲ - ହରିଶଙ୍କର : ୧୩ କି.ମି

୯. ଖପରାଖୋଲ - ଝୁରିଆ : ୨୬ କି.ମି

୧୦. ଟିଟିଲାଗଡ଼ - ଲୁଥୁର ବନ୍ଧ ୧୪ କିମି

୧୧. ସାଲେଭଟା - କୁଟାସିଙ୍ଗା -୧୩ କି.ମି

**ଲିଙ୍କ ରୋଡ୍ ଯୋଜନା :**

୧) ଷ୍ଟେଟ୍ ହାଇୱେ ଠାରୁ ତୁଙ୍ଗୁରି ପାଲି ବ୍ଲକ୍ କଲୋନୀ : ୧ କି.ମି

୨) ବିନିକା ପାପକ୍ଷୟ ଘାଟ : ୩ କି.ମି

୩) ଦେଓଗାଁ : ରେଲଷ୍ଟେସନ : ୫ କି.ମି.

୪) ଷ୍ଟେଟ୍ ହାଇୱେ ଠାରୁ ହାଟ : ୫ କି.ମି.

୫) ପାଟନା ଗଡ ଭୈଇସା : ୩ କି.ମି

୬) ପାଟନାଗଡ଼, ଦମକି ପଲି ରାସ୍ତାଠାରୁ ସୁକଟେଲ : ୩ କି.ମି

୭) ରେହାରୁ ନିବୃତ୍ତି ଯୋଗର : ୫ କି.ମି.

ମୋଟ : ୨୫ କି.ମି

**ସମୁଦାୟ - ୩୦୬ କିମି.**

ବଲାଙ୍ଗିର ଜିଲ୍ଲାରେ ପିଡ଼ବ୍ଲୁଡ଼ି ଅଧୀନରେ ଥିବା ୨ଟି ଡ଼ିଭିଜନରେ ଥାଏ ୩୦୦ କି.ମି. ରାସ୍ତା କିନ୍ତୁ ଆର.ଇ.ଓ. ଅଧିନରେ ଥାଏ ୩୦୬ କି.ମି.। ସୌଭାଗ୍ୟକୁ ଅଧିକାଂଶ ରାସ୍ତା ମିନିମମ ନିଡ୍‌ସ ପ୍ରୋଗ୍ରାମ ଅନ୍ତଭୁକ୍ତ ଥାଏ। ଫ୍ଲଡ୍

ଗ୍ରେଣ୍ଟ ଓ ଫୁଡ୍ ଫର୍ ୱାର୍କ ପୋଗ୍ରାମ୍‌ରେ ମଧ୍ୟ ଟଙ୍କା ଆସିଥାଏ । କିନ୍ତୁ ଏଗୁଡ଼ିକର ନିର୍ମାଣ ପାଇଁ ପ୍ରଧାନ ପ୍ରତିବନ୍ଧକ ଥିଲା ନାଳମାନଙ୍କ ଉପରେ ପୋଲ । ସେଥିପାଇଁ ପାଟନାଗଡ଼ ଦମିକିପଲି, ପାଟଣାଗଡ଼ର ଗାଇସିଲେଟ୍ ଓ ଛୁଇଁବନ୍ଧ ଲେଡ଼ାଗଡ଼ା ରାସ୍ତାରେ ନିର୍ମାଣ କରାଗଲା ସବମାରସିବ୍ଲ କଜୱେ । ନଦୀ ମଝିରେ ହ୍ୟୁମ ପାଇପ୍ ଓ ଦୁଇ ପାଖରେ କଟଅଫ୍ । ମାତ୍ର ଗୋଟିକୁ ୫୦ରୁ ୭୦ହଜାର ଟଙ୍କାରେ ୬ ପୋଲର ନିର୍ମାଣ ଓ କାର୍ଯ୍ୟକାରିତା ଦେଖି ସାରା ବଲାଙ୍ଗିର ଜିଲାର ଜିଲା ପରିଷଦ ଆଚମ୍ୱିତ ହୋଇଗଲେ । ସାଲେଭଟା ଆଗଲପୁର ରାସ୍ତା ମଝିରେ ଅଙ୍ଗନଦୀ । କିନ୍ତୁ ଚେରୁପଲି ଆଗଲପୁର ମଝିରେ ଅଙ୍ଗ ନଦୀ ପଡ଼ିବନି । ତେଣୁ ଅଧିକାଂଶ ରାସ୍ତାରେ ଖରାଦିନେ ବସ୍ ଚଳିବା ସମ୍ଭବ ହେଲା । ପ୍ରାୟ ୨୦୦ କି.ମି. ମେଟାଲିଂ ରାସ୍ତା ଓ ଛୋଟବଡ଼ ପୋଲ ସାହାଯ୍ୟରେ ବଲାଙ୍ଗିର ପାଟନାଗଡ଼ ପଦ୍ମପୁର ସହିତ ସଂଯୋଗ ହୋଇପାରିଲା । ବୀରମହାରାଜପୁର ଓ ଓଲଣ୍ଡା ବଲାଙ୍ଗିର ଜିଲା ଅନ୍ତର୍ଗତ ହୋଇଥିଲେ ହେଁ ତାର ଯାତାୟତ ସମ୍ବଲପୁର ଓ ରେଢ଼ାଖୋଲ ସହିତ ହରିହର ଯୋର, ସୁବଲୟା କେରାଣ୍ଡି ଜୋରକୁ ଛାଡ଼ି ବାକି ସବୁ ଜୋର ଓ ରାସ୍ତା ନିର୍ମାଣ ହୋଇଗଲା । ସେହିପରି ସୁକତେଲ ନଦୀ ଉପରେ ଚନ୍ଦନଭାଟି ଓ ଜମକିପଲି ପୋଲ ବ୍ୟତିତ ସବୁ ପୋଲ ନିର୍ମାଣ ସରିଗଲା । ଏହିଭଳି ୩୦୦ କି.ମି. ଆଇ.ଇ.ଓ ରୋଡ୍‌ରୁ ୨୦୦ କି.ମି. ପକ୍କା ରାସ୍ତା ତିଆରି ହୋଇ ବଲାଙ୍ଗିର ଜିଲ୍ଲାରେ ରାସ୍ତା ନିର୍ମାଣ ଦିଗରେ ବୈପ୍ଳବିକ ପରିବର୍ତ୍ତନ ସୃଷ୍ଟି ହେଲା । ଆଇଓ ଅଧିନରେ ମାତ୍ର ୨ଟି ରୋଲର ଥିଲା । ଏହା ସାହାଯ୍ୟରେ ଓ ବାହାରୁ ୨/୩ଟି ରୋଲର ଭଡ଼ାରେ ଆଣି ଏତେ ବେଶୀ ରୋଡ୍ ମେଟାଲିଂ ହୋଇପାରିଲା ଏଥିରେ ମୋତେ ସବୁଠୁ ବେଶୀ ସାହାଯ୍ୟ କରିଥିଲେ ମୋର ପୁରାତନ ବନ୍ଧୁ ଓ ମୋର ଅଧିକ୍ଷଣ ଯନ୍ତ୍ରୀ ନିମାଇ ଚରଣ ପାଣି । ଆରଇଓ ରୋଡ଼ର ଅଗ୍ରଗତି ଦେଖି ପିଡ଼ବ୍ଲୁଡ଼ି ତାଙ୍କର ରାସ୍ତାର ମେଟାଲିଂ ଓ ପିଚୁ କାମ ବଢ଼ାଇଦେଲେ । ତେଣୁ ରାସ୍ତାର ଉନ୍ନତି କ୍ଷେତ୍ରରେ ମୋର ରହଣିକାଳରେ ଅନ୍ୟ ଏକ ବିପ୍ଳବ ସୃଷ୍ଟି ହୋଇଥିଲା ।

ପାରିବାରିକ ଜୀବନରେ ଅନେକାଂଶରେ ସ୍ଥିରତା ଆସିବା ସମ୍ଭବ ହୋଇଥିଲା । ବଡ଼ପୁଅ ଶୁଭେନ୍ଦୁ ବରହମପୁର ସେଣ୍ଟ୍ରାଲ୍ ସ୍କୁଲରେ ପାଶ୍ କରିବା ପରେ

ବାଙ୍ଗାଲୋରରେ ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇଲା । ବଡ଼ଝିଅ ମେଟ୍ରିକୁଲେସନ୍‌ରେ ମାତ୍ର ୭ ନମ୍ବର ପାଇଁ ପ୍ରଥମ ଶ୍ରେଣୀରୁ ବଞ୍ଚିତ ହେଲା । ପରବର୍ତ୍ତୀ ସମୟରେ ସେ କୃତିତ୍ୱର ସହ ଇଣ୍ଟରମିଡ଼ିଏଟ୍ ସାଇନ୍ସ ପାଶ୍ କଲା । ସାନଝିଅ ମଧ୍ୟ କୃତିତ୍ୱର ସହ ମେଟ୍ରିକ୍ ପାଶ୍ କଲା । ସାନପୁଅ ଇଂରାଜୀ ମିଡ଼ିୟମ ଛାଡ଼ି ୫ମ ଶ୍ରେଣୀରେ ଓଡ଼ିଆ ମିଡ଼ିୟମରେ ଯୋଗଦେଇ ମଧ୍ୟ ବୃତ୍ତି ପାଇବାକୁ ସକ୍ଷମ ହେଲା । ବଂଶୀ ଭାଇଙ୍କ ଝିଅ ଶୈଳକୁ ଆମ ଘରକୁ ଆଣି ରଖିଲୁ । ସେ ମଧ୍ୟ ମେଟ୍ରିକ୍ ଓ ଇଣ୍ଟରମେଡ଼ିଏଟ୍ ସାଇନ୍ସ ପାଶ୍ କଲା ।

## ପିତୃ ବିୟୋଗ

୧୯୭୭ ମସିହା ନଭେମ୍ବର ୮ ତାରିଖ ଦିନ ବାପାଙ୍କର ୮୫ ବର୍ଷ ବୟସରେ ଦେହାବସାନ ଘଟିଲା । ୩ ଭଉଣୀଙ୍କ ପରେ ତାଙ୍କର ୩୯ ବର୍ଷ ବୟସରେ ମୁଁ ଜନ୍ମ । ମୋର ଓ ମୋ ଉପର ଭଉଣୀଙ୍କ ମଧ୍ୟରେ ପାର୍ଥକ୍ୟ ୭ ବର୍ଷ । ଦୀର୍ଘ ୧ ବର୍ଷ ଆମ ଗାଁ ତାଡ଼କେଶ୍ୱରଙ୍କ ପାଖରେ ଉପାସନା ପରେ ମୋର ଜନ୍ମ । ସେତେବେଳକୁ ପାରିବାରିକ ଅର୍ଥନୈତିକ ଚାପରେ ସେ ମ୍ରିୟମାଣ ହୋଇପଡ଼ିଥିଲେ । ଦୁଇ ଭାଇଙ୍କର ଅକାଳ ବିୟୋଗ ସଙ୍ଗେ ସଙ୍ଗେ ତାଙ୍କ ନିଜର ଓ ଭାଇମାନଙ୍କ ପରିବାର ଭରଣପୋଷଣ ଦାୟିତ୍ୱ ଗ୍ରହଣ କରି ସେ ଯେଉଁ ଧୈର୍ଯ୍ୟର ପରାକାଷ୍ଠା ଦେଖାଇ ଯାଇଛନ୍ତି ତାହା ଆଧୁନିକ ସମାଜରେ ସ୍ୱପ୍ନ । ତାଙ୍କର ଆର୍ଥିକ ଅଭାବ ମୋର ପଢ଼ାରେ ବ୍ୟାଘାତ ସୃଷ୍ଟି କରି ନଥିଲା । କାରଣ ମୁଁ ପ୍ରାଥମିକ ଠାରୁ ଇଞ୍ଜିନିୟରିଂ ଶିକ୍ଷା ଶେଷ ପର୍ଯ୍ୟନ୍ତ ବୃତ୍ତି ପାଇବା ସହିତ ସ୍କୁଲ କଲେଜରୁ ସାହାଯ୍ୟ ପାଇ ପଢ଼ାରେ ଅଗ୍ରସର ହେଉଥିଲି । କିନ୍ତୁ ମୋ ପଢ଼ା ପ୍ରତି ତାଙ୍କର ଆଗ୍ରହ ଓ ଉତ୍ସାହ ମୋତେ ସଦାବେଳେ ପ୍ରେରଣା ଦେଇ ଆସିଛି । ନିଜ ପରିବାରର ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ନିଜର ଭାଇମାନଙ୍କ ପିଲାମାନଙ୍କୁ ସାହାଯ୍ୟ କରିବାରେ ସେ ଯେଉଁ ଆଦର୍ଶ ଦେଖାଇଥିଲେ ତାହା ମୋର ନୈତିକ ଚରିତ୍ର ଗଠନରେ ସହାୟକ ହୋଇଥିଲା । ସେ କୃଷିକର୍ମ ସହିତ ଛୋଟ ଛୋଟ ବ୍ୟବସାୟ କରି ଘରର ଆର୍ଥିକ ସ୍ଥିତିକୁ ସମ୍ଭାଳି ଚାଲିଥିଲେ । ମୋର ଇଞ୍ଜିନିୟରିଂ ପଢ଼ା ଶେଷବେଳକୁ ତାଙ୍କର ବୟସ ୬୦ରୁ ଅଧିକ ହୋଇସାରିଥିଲା । କିନ୍ତୁ ସେ ବହୁତ କଷ୍ଟସହିଷ୍ଣୁ ଥିବାରୁ ବହୁଦିନ ପର୍ଯ୍ୟନ୍ତ ସୁସ୍ଥ ରହିଥିଲେ ।

ଜେଜେ ମା'ଙ୍କ ମୁହଁରୁ ଶୁଣିଛି ସେ ଥରେ ଗୋଟିଏ ମୋକଦ୍ଦମା ସଂକ୍ରାନ୍ତରେ ଦିନ ୧୨ଟାରେ ଖାଇସାରି ଭଦ୍ରକ ବାହାରିଗଲେ । ସେତେବେଳକୁ ତାଙ୍କର ବୟସ ୩୨/୩୩ ବର୍ଷ ହୋଇଥିଲା । ସେତେବେଳେ ଯାତାୟତରେ ଏକମାତ୍ର ସୁଯୋଗ ଥିଲା ରେଳଗାଡ଼ି । କିନ୍ତୁ ସୋରୋରୁ ଗାଡ଼ି ଧରିବାକୁ ହେଲେ ୧୦/୧୨ ମାଇଲ ଚାଲିବାକୁ ପଡ଼ିବ । ତେଣୁ ସେ ସିଧା ବାଟରେ ୨୫ ମାଇଲ ବାଟ ଚାଲି ଚାଲି ଭଦ୍ରକ ଗଲେ । ସମୟ ଥିଲା ଖରାଦିନ । ସକାଳ କଚେରୀ, ଓକିଲ କହିଲେ ଗୋଟିଏ ଦଲିଲ ସେ ଛାଡ଼ି ଯାଇଛନ୍ତି । ୨/୩ ଟି ଡ଼େଟ୍ ହେଲାଣି, ଆଉ ମହଲତ ମିଳିବ ନାହିଁ । ସେ ତତ୍କ୍ଷଣାତ୍ ୨୫ ମାଇଲ୍ ବାଟ ଚାଲି ଗାଁକୁ ଆସିଲେ ଓ କବଲା ଧରି ସେହି ରାତିରେ ଭଦ୍ରକ ଫେରି ସକାଳ କଚେରୀ ପୂର୍ବରୁ ଓକିଲଙ୍କ ପାଖରେ କବଲା ଦାଖଲ କଲେ । ୧୮ ଘଣ୍ଟା ମଧ୍ୟରେ ସେ ଚାଲିଲେ ୭୫ ମାଇଲ । ଏହା ଗଳ୍ପ ଭଳି ମନେ ହେଉଥିଲେ ବି ନିରାଟ ସତ ।

ତାଙ୍କ ସମୟରେ ଓଡ଼ିଶା କୋଷ୍ଟ କେନାଲରେ ଷ୍ଟିମର୍ ଚାଲୁଥିଲା । ଜନବିରଳ ସମୁଦ୍ରକୂଳ ଅଞ୍ଚଳରେ ଚାଷ କରି ବିକ୍ରିଲବ୍ଧ ଫସଲ ଘରକୁ ଆଣି ସେ ପରିବାର ସ୍ୱଚ୍ଛଳ ଅବସ୍ଥା ଆଣିବାକୁ ସକ୍ଷମ ହୋଇଥିଲେ ।

ମୁଁ ଚାକିରି କଲାପରେ ସେ ପ୍ରାୟ ମୋ ପାଖରେ ରହିଲେ । ଉମା ଓ ବଡ଼ପୁଅ ବୁଲୁ ଥିଲେ ତାଙ୍କ ଅତିପ୍ରିୟ । ସେ ମରିବା ପୂର୍ବରୁ କହିଯାଇଥିଲେ ତାଙ୍କର ସମାଧି ଉପରେ ବୁଲୁ ତାଙ୍କ ବ୍ୟବହୃତ ବାଡ଼ିଟିକୁ ୧୧ ଦିନରେ ପୋତିବ । ତାହା ମଧ୍ୟ କରାଗଲା । ଚାକିରି ଜୀବନରେ ବିଭିନ୍ନ ସ୍ଥାନରେ ଅବସ୍ଥାନ ସମୟରେ ସେ ସେଠାରେ ରହିବାକୁ ଭଲ ପାଆନ୍ତି । ବିଶେଷ ପରି ୧୯୬୬ ମସିହାର ବୋଉଙ୍କର କାଳ ହେବା ପରେ ମୁଁ ତାଙ୍କୁ ଗାଁକୁ ଛାଡୁ ନଥିଲି । କିନ୍ତୁ ସେ ତ ଆମ ଗାଁ ମାଟିର ମଣିଷ । ସେ ଗାଁ ଛାଡ଼ି ରହନ୍ତେ କିପରି ? ୮୫ ବର୍ଷ ପର୍ଯ୍ୟନ୍ତ ସାଙ୍ଗରେ କାହାକୁ ଯିବାକୁ କହିଲେ ମନା କରନ୍ତି । ତାଙ୍କୁ ବାସୁଦେବପୁରରୁ ନେବା ପାଇଁ ଗାଁରୁ ଆସିଥିବା ଶଗଡ଼ରେ ସେ ବସନ୍ତି ନାହିଁ । ଏହିଭଳି ଏକ କର୍ମମୟ ଜୀବନର ଅବସାନ ଘଟିଲା, ୧୯୭୭ ନଭେମ୍ବର ୮ ତାରିଖରେ । ବୃଦ୍ଧ ବୟସର ତାଙ୍କର ସୁଚିନ୍ତିତ ପରାମର୍ଶ ଚାହୁଥିଲି । ତାଙ୍କର ଦେହାନ୍ତ ମୋ ଜୀବନରେ ଏକ ଶୂନ୍ୟସ୍ଥାନ ସୃଷ୍ଟି କଲା । ମରିବାର ୧୧ ଦିନ ଏକାଦଶାହ ଭୋଜନ ପାଇଁ ପୁରୀ ଓ ଭୁବନେଶ୍ୱରର ପ୍ରସାଦ ମଗାଇଥିଲି ।

ମାତ୍ର ୧୦୦୦ ଜଣଙ୍କ ପାଇଁ ପ୍ରସାଦ ବ୍ୟବସ୍ଥା ହୋଇଥିଲା । ୧୧ଦିନରେ ଖାଇଲେ ୧୬୦୦ ଲୋକ। ୧୨ ଦିନରେ ଖାଇଲେ ୭୦୦ ଲୋକ। କିନ୍ତୁ ଜଗନ୍ନାଥଙ୍କ ମହିମା ଅପାର । ଯେତେ ଖାଇଲେ ବି ପ୍ରସାଦ ସରୁନି । ଦୀର୍ଘ ୨୦୦/୩୦୦ କିମି ଦୂରରୁ ଆମ ଗାଁକୁ ପ୍ରସାଦ ଯିବା ଥିଲା ପ୍ରଥମ ଉଦ୍ୟମ । ଆଜି ପର୍ଯ୍ୟନ୍ତ ଲୋକମାନେ କହନ୍ତି ପୂଣ୍ୟବାନ ଭୀମ ନାୟକଙ୍କ ୧୧ ଦିନରେ ଆମେ ଯେଉଁ ଅମୃତ ଭକ୍ଷଣ କରିଛୁ ତାହା ଚିରଦିନ ମନେରହିବ ।

## ଗୁରୁଙ୍କ ଦେହାବସାନ

୧୯୭୮ ମସିହା ଜୁଲାଇ ମାସରେ ଗୁଣ୍ଡିଚା ଯାତ୍ରାର ପୂର୍ବଦିନ ମୋର ପରମ ପୂଜ୍ୟ ଗୁରୁଦେବ କିଶୋରୀ କିଙ୍କର ଦାସ ତାଙ୍କ ଅଗଣିତ ଛାତ୍ର ସମାଜକୁ ଶୋକ ସାଗରରେ ଭସାଇ ଦେଇ ଇହଲୀଳା ତ୍ୟାଗ କଲେ । ସେ ମୋର କେବଳ ଶିକ୍ଷାଗୁରୁ ନଥିଲେ । ଥିଲେ ମୋର ଜ୍ଞାନ, ଧର୍ମ ତଥା କର୍ମଗୁରୁ । ପ୍ରତି କଥା କାର୍ଯ୍ୟ, ଅବସ୍ଥାନ ଓ ପରିସ୍ଥିତିରେ ତାଙ୍କରି ଉପଦେଶ ମୋତେ ପ୍ରେରଣା ଦେଇ ଆସୁଥିଲା । ବିପଦ ଆପଦ ବେଳେ ମୋତେ ଲାଗେ ମୋ ପଛରେ କିଶୋରୀବାବୁ ଛିଡ଼ା ହୋଇଛନ୍ତି । ସଦାବେଳେ ସେ ମୋ ପାଖରେ ଛିଡ଼ା ହୋଇ ତାଙ୍କର ଆଦର୍ଶ ଓ ପ୍ରେରଣା ଦ୍ୱାରା ମୋର ଜୀବନକୁ ପରିଚାଳିତ କରୁଛନ୍ତି । ତାଙ୍କର ହଜାର ହଜାର ଗୁଣଗ୍ରାହୀ ଛାତ୍ର ତାଙ୍କର ୭୦ ତମ ଜନ୍ମ ଦିବସରେ ଏକ ଗୁରୁ ଦକ୍ଷିଣା ଦେବା ପାଇଁ ଯୋଜନା କରୁଥାନ୍ତି । କିନ୍ତୁ ତା ପୂର୍ବରୁ ସେ ଚାଲିଗଲେ । ତାଙ୍କ ମୃତ୍ୟୁର ଦ୍ୱାଦଶ ଦିବସରେ ଯେଉଁ ଶୋକସଭା ଅନୁଷ୍ଠିତ ହୋଇଥିଲା, ସେଥିରେ ଓଡ଼ିଶାର ବିଭିନ୍ନ ସ୍ଥାନରୁ ହଜାର ହଜାର ଛାତ୍ର ଯୋଗ ଦେଇଥିଲେ । ସେହି ସଭାରେ ଭଦ୍ରକର ବିଶିଷ୍ଟ ଆଡ଼ଭୋକେଟ୍ ନରେନ୍ଦ୍ର ପ୍ରସାଦ ଦାସ କହିଥିଲେ, "ଆଜି ଏ ଛାତ୍ର ସମାଗମ ଦେଖି ମୋର ମନେ ହେଉଛି କିଶୋରି ମରିନାହିଁ, ସେ ମରିପାରେନା, ସେ ମରି ମଧ୍ୟ ତାର ସହସ୍ର ସହସ୍ର ଛାତ୍ରଙ୍କ ହୃଦୟରେ ଜୀବିତ ରହିଛି ଓ ରହିଥିବ ।" ପ୍ରଥମ ଶ୍ରାଦ୍ଧ ଦିବସରେ ଛାତ୍ରମାନେ ମିଶି ସ୍କୁଲର ପ୍ରାଙ୍ଗଣରେ ତାଙ୍କର ଏକ ପ୍ରତିମୂର୍ତ୍ତି ସ୍ଥାପନ କରିବା ସଂଗେ ସଂଗେ ଦୁଇଜଣ ମେଧାବୀ ଛାତ୍ରଙ୍କ ପାଇଁ ବୃତ୍ତି, ଶ୍ରାଦ୍ଧପାଇଁ ଆବଶ୍ୟକୀୟ ଅର୍ଥ ଓ କିଶୋରୀ କିଙ୍କର ବୁକ୍ ବ୍ୟାଙ୍କ (Book Bank) ପାଇଁ ଆବଶ୍ୟକୀୟ ଅର୍ଥ ଦାନ କରି ତାଙ୍କୁ

ଅମର କରିଯାଇଛନ୍ତି । ସେହି ଅବସରରେ ଯେଉଁ ସ୍ମରଣିକା ଛପାଯାଇଥିଲା ତାହା ତାଙ୍କର ସଦ୍‌ଗୁଣାବଳୀର ଏକ କ୍ଷୁଦ୍ର ପଞ୍ଜିକା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହିଦିନ ଠାରୁ ପ୍ରତିବର୍ଷ ଗୁଣ୍ଡିଚା ଯାତ୍ରାର ପୂର୍ବଦିନ ତାଙ୍କର ଶ୍ରାଦ୍ଧଦିବସ ବାଗୁରାଇ ହାଇସ୍କୁଲରେ ପାଳିତ ହେଉଛି । ଦୁଇଜଣ ମେଧାବୀ ଛାତ୍ରଙ୍କୁ ପ୍ରତିବର୍ଷ ବୃତ୍ତି ଦିଆଯାଉଛି ଓ ଛାତ୍ରମାନଙ୍କ ଦ୍ୱାରା ପ୍ରତିଷ୍ଠିତ ବୁକ୍ ବେଙ୍କ ଦ୍ୱାରା ଶହ ଶହ ଛାତ୍ର ଉପକୃତ ହେଉଛନ୍ତି ସେଥିପାଇଁ ଆବଶ୍ୟକୀୟ ଅର୍ଥ ଛାତ୍ରମାନେ ରୋଟାରୀ କ୍ଲବ୍‌ରେ ଜମା ଦେଇଛନ୍ତି ଓ ସେହି ଟଙ୍କାର ସୁଧରେ ପ୍ରତିବର୍ଷ ତାଙ୍କର ଶ୍ରାଦ୍ଧ କାର୍ଯ୍ୟ ସମ୍ପାଦିତ ହେଉଛି । ସେ ବିଭା ହୋଇ ନଥିଲେ । ତିଳ ତର୍ପଣ ଦେବା ପାଇଁ ତାଙ୍କର ପୁଅ ବୋହୂ ନାହାନ୍ତି । କିନ୍ତୁ ସେ ଛାଡ଼ିଯାଇଛନ୍ତି ତାଙ୍କର ପୁତ୍ର ପ୍ରତିମ ଅସଂଖ୍ୟ ଛାତ୍ର, ଯେଉଁମାନେ ପ୍ରତିବର୍ଷ ଗୁଣ୍ଡିଚା ପୂର୍ବଦିନ ବାଗୁରାଇ ହାଇସ୍କୁଲରେ ସମବେତ ହୋଇ ତାଙ୍କର ପ୍ରିୟ ଅନୁଷ୍ଠାନ କଡ଼ରେ ପ୍ରବାହିତ ସାଳନ୍ଦୀ ନଦୀରେ କରନ୍ତି ତାଙ୍କର ତିଳ ତର୍ପଣ ।

## ଦେଶର ତତ୍‌କାଳୀନ ରାଜନୈତିକ ପରିସ୍ଥିତି

୧୯୭୫ ମସିହାରେ ଆହ୍ଲାବାଦ ହାଇକୋର୍ଟରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ନିର୍ବାଚନ ଅସିଦ୍ଧ ହେବା ଫଳରେ ସାରାଦେଶରେ ଯେଉଁ ଜରୁରୀକାଳୀନ ପରିସ୍ଥିତି ଜାରି ହୋଇଥିଲା, ତାହା ୧୯୭୬ ମସିହା ଡିସେମ୍ବର ମାସ ପର୍ଯ୍ୟନ୍ତ ବଳବତ୍ତର ରହିଲା । ୧୯୭୬ ଜାନୁୟାରୀ ପରିବର୍ତ୍ତେ ୧ ବର୍ଷ ବିଳମ୍ବରେ ୧୯୭୭ ଜାନୁୟାରୀ ମାସରେ ନିର୍ବାଚନ ହେଲା । ଜରୁରୀ କାଳୀନ ପରିସ୍ଥିତିରେ ଭାରତର ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ଜେଲ ବରଣ କରିବାକୁ ପଡ଼ିଥିଲା । ଜୟପ୍ରକାଶ ନାରାୟଣ, ମୋରାରଜୀ ଦେଶାଇ, ଚରଣ ସିଂ, ଅଟଳବିହାରୀ ବାଜପେୟୀ, ରାଜନାରାୟଣ, ଜର୍ଜ ଫର୍ଣ୍ଣାଣ୍ଡିସ୍, ଚନ୍ଦ୍ରଶେଖରଙ୍କୁ ଜେଲ ବରଣ କରିବାକୁ ପଡ଼ିଥିଲା । ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ନବକୃଷ୍ଣ ଚୌଧୁରୀଙ୍କୁ ଦୀର୍ଘଦିନ ଜେଲଦଣ୍ଡ ଭୋଗିବାକୁ ପଡ଼ିଥିଲା । ପ୍ରେସର ସ୍ୱାଧୀନତା ନଥିଲା । ସରକାର ଯାହାକୁ ଚାହୁଁଥିଲେ ଏମ.ଆଇ.ଏସ.ଏ ବଳରେ ଏରେଷ୍ଟ କରୁଥିଲେ । ବିନାବିଚାରରେ ସେମାନଙ୍କୁ ହାଜତରେ ବର୍ଷ ବର୍ଷ ଧରି ରଖାଯାଉଥିଲା । ଅବଶ୍ୟ ଜରୁରୀ ପରିସ୍ଥିତି ଫଳରେ ଦରଦାମରେ ସ୍ଥିରତା ଓ କର୍ମଚାରୀମାନଙ୍କ ମଧ୍ୟରେ ଶୃଙ୍ଖଳା ଆସିବା ସମ୍ଭବ

ହୋଇଥିଲା । କିନ୍ତୁ ଲୋକଙ୍କର ସ୍ୱାଧୀନତା କ୍ଷୁର୍ଣ୍ଣ ହୋଇଥିଲା । ଏହାଫଳରେ ସାରାଦେଶରେ ଏକ ଶୀତଳ ନୀରବ ବିପ୍ଳବ ସୃଷ୍ଟି ହୋଇଥିଲା । ଜରୁରୀକାଳୀନ ପରିସ୍ଥିତି ଉଠିଯିବା ସଙ୍ଗେ ସଙ୍ଗେ ସବୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ମୁକ୍ତି ଦିଆଗଲା । ସେତେବେଳକୁ କଂଗ୍ରେସକୁ ଛାଡ଼ିଦେଲେ କୌଣସି ରାଜନୈତିକ ଦଳର ସ୍ଥିତି ନଥିଲା କହିଲେ ଚଳେ । କିନ୍ତୁ କି ଆଶ୍ଚର୍ଯ୍ୟ କଥା ? ଖୁବ୍ ଅଳ୍ପ ଦିନ ଭିତରେ ବିଭିନ୍ନ ଦଳର ଲୋକେ ଗୋଟିଏ ପତାକା ଓ ଗୋଟିଏ ନିର୍ବାଚନ ସଙ୍କେତ ନେଇ ଲଢ଼ିବାକୁ ଆଗଭର ହୋଇ ଆସିଲେ । ସିଣ୍ଡିକେଟ୍ ଗ୍ରୁପ୍‌ର କଂଗ୍ରେସ (ଇନ୍ଦିରା ଙ୍କ ନେତୃତ୍ୱ କଂଗ୍ରେସର ବିରୋଧୀ) ଗୋଷ୍ଠୀ, ଲୋକଦଳ, ଜନସଂଘ, ପ୍ରଜା ସୋସାଲିଷ୍ଟ ସମାଜବାଦୀ ଦଳ ଏଥିରେ ଯୋଗଦେଲେ । ଦେଶରେ ହଠାତ୍ ଏ ଭଳି ଏକ ଜନଜାଗରଣ ଦେଖି କଂଗ୍ରେସର ପୁରୁଣା ନେତା ଜଗଜ୍ଜୀବନ ରାମ, ହେମବତୀ ନନ୍ଦନ ବହୁଗୁଣା, ନନ୍ଦିନୀ ଶତପଥୀ କଂଗ୍ରେସ ଫର୍ ଡ଼ିମୋକ୍ରେସି (ସି.ଏଫ୍.ଡ଼ି) ଦଳ ଗଠନ କରି କଂଗ୍ରେସ ପରିତ୍ୟାଗ କଲେ । ସେମାନେ ପରବର୍ତ୍ତୀ କାଳରେ ବିରୋଧୀ ଦଳ ମାନଙ୍କ ମହାସ୍ରୋତରେ ମିଶିଯାଇ ଜନତା ଦଳ ନାମକ ଏକ ସର୍ବଭାରତୀୟ ଜଳ ସୃଷ୍ଟି କଲେ । ଭାରତର ଇତିହାସରେ ପ୍ରଥମଥର ପାଇଁ ଦ୍ୱିଦଳୀୟ ଭିତ୍ତିରେ ନିର୍ବାଚନ ଲଢ଼ାଇ ହେଲା । କେବଳ ପଶ୍ଚିମବଙ୍ଗ ଓ କେରଳରୁ ସିପିଏମ୍ ଜନତା ଦଳ ସହ ନ ମିଶି ସିଟ୍ ବୁଝାବଣାରେ ନିର୍ବାଚନ ଲଢ଼ିଲେ । ଏହାର ଫଳସ୍ୱରୂପ ସାରା ଉତ୍ତର ଭାରତରୁ କଂଗ୍ରେସ ଏକାବେଳକେ ମୂଳପୋଛ ହୋଇଗଲା । କେବଳ ଆନ୍ଧ୍ର, କର୍ଣ୍ଣାଟକରୁ କଂଗ୍ରେସ ଅଧିକ ସିଟ୍ ପାଇଲା ।

ତାମିଲନାଡୁରୁ ଡ଼ିଏମକେ ସହିତ ବୁଝାମଣା କରି କେତୋଟି ସ୍ଥାନ ହାସଲ କଲା ଓ କେରଳରେ ସିପିଆଇ, କେରଳ କଂଗ୍ରେସ ମସ୍ଲିମ୍ ଆଦି ଦଳ ସହିତ ସିଟ୍ ବୁଝାମଣା ଫଳରେ କେତେଗୁଡ଼ିଏ ସିଟ୍ ପାଇ ପାରିଲା । ନିଜେ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧି ତାଙ୍କର ରାଜନୈତିକ ଉତ୍ତରାଧିକାରୀ ଭାବେ ପରିଗଣିତ ସଞ୍ଜୟ ଗାନ୍ଧୀ, ପ୍ରଧାନ ସହଚର ମନ୍ତ୍ରୀ ବଂଶୀଲାଲ, ସତପାଲ ସିଂ, ଜସପାଲ ସିଂ, ବିଦ୍ୟାଚରଣ ଶୁକ୍ଲା ଆଦି ସବୁ ହାରିଗଲେ । ଫଳରେ କେନ୍ଦ୍ରରେ ଜନତା ସରକାର ପ୍ରତିଷ୍ଠିତ ହେଲା ଓ ମାତ୍ର ୨ ମାସ ପରେ ଲୋକଙ୍କର ଇଚ୍ଛାକୁ ସମ୍ମାନ ଦେବା ନାମରେ ରାଜ୍ୟ ସରକାର

ଗୁଡ଼ିକ ଭାଙ୍ଗି ଦିଆଯାଇ ଆସେମ୍ବ୍ଲି ନିର୍ବାଚନ କରାଗଲା । ଏହାଫଳରେ ସାରା ଉତ୍ତରଭାରତରେ ଅଧିକାଂଶ ରାଜ୍ୟରେ ଜନତା ସରକାର ଗଠିତ ହେଲା । କେବଳ କାଶ୍ମୀରରେ ନେସନାଲ୍ କନଫରେନ୍ସ କେରଳ ଓ ପଶ୍ଚିମବଙ୍ଗରେ ସି.ପି.ଏମ. ଦଳ ସରକାର ଗଠନ କଲେ ।

ଓଡ଼ିଶାର ଲୋକେ ମଧ୍ୟ ସର୍ବଭାରତୀୟ ସ୍ତରରେ ନିଜକୁ ସାମିଲ କରି କେନ୍ଦ୍ର ତଥା ରାଜ୍ୟ ସରକାର ପାଇଁ ଜନତା ଦଳକୁ ଭୋଟ ଦେଲେ । ନୀଳମଣି ରାଉତରାୟଙ୍କ ନେତୃତ୍ୱରେ ଓଡ଼ିଶାରେ ଜନତା ସରକାର ଗଠିତ ହେଲା । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ପାର୍ଲ୍ୟାମେଣ୍ଟକୁ ପଠାଗଲା ଓ ପୁରୁଣା ନେତାମାନଙ୍କୁ ମନ୍ତ୍ରୀପଦ ଦିଆଗଲା । କଂଗ୍ରେସ ସରକାରଙ୍କ ସମୟରେ ମାତ୍ରାଧିକ କାର୍ଯ୍ୟ ଫଳରେ ଘରିଆଡ଼େ ଯେଉଁ ଦୁର୍ନୀତି ବ୍ୟାପି ଯାଇଥିଲା ତାକୁ ସୁଧାରିବା ପାଇଁ ଜନତା ସରକାର ପ୍ରଥମବସ୍ଥାରେ ଆପ୍ରାଣ ଚେଷ୍ଟା କରିଥିଲା । କିନ୍ତୁ କିଛିଦିନ ପରେ ସେମାନଙ୍କର ସେହି ଆଦର୍ଶ ମନୋଭାବ ଆଉ ରହିଲା ନାହିଁ । ସର୍ବଭାରତୀୟ ସ୍ତରରେ ପୂର୍ବତନ ଜନସଂଘ ଗୋଷ୍ଠୀ, ଲୋକଦଳ ଗୋଷ୍ଠୀ ଓ ସମାଜବାଦୀ ଗୋଷ୍ଠୀ ମଧ୍ୟରେ କନ୍ଦଳ ଆରମ୍ଭ ହୋଇଗଲା । ଜୟପ୍ରକାଶ ନାରାୟଣ ଓ ଆଚାର୍ଯ୍ୟ କୃପାଳାନିଙ୍କ ପରାମର୍ଶ ଅନୁସାରେ ମୋରାରଜୀ ଦେଶାଇଙ୍କୁ ପ୍ରଧାନମନ୍ତ୍ରୀ କରାଯାଇଥିଲେ ମଧ୍ୟ ଚରଣ ସିଂ ଓ ଜଗଜ୍ଜୀବନ ରାମ ଏଥିରେ ସଦାବେଳେ କ୍ଷୁବ୍ଧ ହୋଇରହିଥାନ୍ତି । କାରଣ ପ୍ରଧାନମନ୍ତ୍ରୀ ହେବା ପାଇଁ ଏ ଦୁଇଜଣଙ୍କର ଯେଉଁ ଅତୃପ୍ତ ବାସନା ରହିଥିଲା ତାକୁ ଚରିତାର୍ଥ କରିବା ପାଇଁ ସେମାନେ ପ୍ରାଣମୂର୍ଚ୍ଛା ଉଦ୍ୟମ ଚଳାଇଥାନ୍ତି । ହନୁମାନ ନାମଧାରୀ ଚରଣ ସିଂଙ୍କ ଅନୁଚର ରାଜ ନାରାୟଣଙ୍କୁ କଂଗ୍ରେସ ନିଜ ପାଇଁ ବ୍ୟବହାର କଲା । ପୂର୍ବତନ ଜନସଂଘ ଦଳର ସଭ୍ୟମାନଙ୍କର ଦ୍ୱୈତ୍ୟ ମେମ୍ବରସିପ୍ ନାମରେ ବିଶୃଙ୍ଖଳା ସୃଷ୍ଟି କରି ଚରଣ ସିଂହ ଓ ରାଜନାରାୟଣ ପ୍ରାୟ ୧୫୦ ଜଣ ଏମ.ପି.ଙ୍କୁ ଧରି ଦଳତ୍ୟାଗ କଲେ । ତାଙ୍କ ସହିତ ଜର୍ଜ ଫର୍ଣ୍ଣାଣ୍ଡିଜ୍, ବିଜୁ ପଟ୍ଟନାୟକ, ବହୁଗୁଣା ଆଦିନେତା ଯୋଗ ଦେଲେ । କଂଗ୍ରେସ ଦଳ (ଇ) ଏହାକୁ ସୁବର୍ଣ୍ଣ ସୁଯୋଗ ମନେ କରି ସେମାନଙ୍କୁ ପ୍ରଥମେ ସମର୍ଥନ କରିବାର ପ୍ରତିଶ୍ରୁତି ଦେଇ, ପରେ ମନ୍ତ୍ରୀମଣ୍ଡଳରୁ ସମର୍ଥନ ପ୍ରତ୍ୟାହାର କରିନେଲେ । ଏହା ଭିତରେ ୧୯୭୯ କଂଗ୍ରେସ ପାର୍ଟି ବିଭାଜିତ

ହୋଇ ଇନ୍ଦିରା କଂଗ୍ରେସ ସୃଷ୍ଟି ହୋଇଥାଏ । ୧୯୭୯ ମସିହା ଅଗଷ୍ଟ ମାସରେ କେନ୍ଦ୍ରସରକାରଙ୍କୁ ଭାଙ୍ଗି ଦେଇ ଡିସେମ୍ବର ମାସ ସୁଦ୍ଧା ନିର୍ବାଚନ କରିବାକୁ ତତ୍‌କାଳୀନ ରାଷ୍ଟ୍ରପତି ସଞ୍ଜୀବ ରେଡ଼ି ଆଦେଶନାମା ଜାରି କଲେ ।

ବଲାଙ୍ଗିର ଜିଲ୍ଲାରୁ ରାମ ପ୍ରସାଦ ମିଶ୍ର ମନ୍ତ୍ରୀ ମଣ୍ଡଳରେ ସ୍ଥାନ ପାଇଥାନ୍ତି । ତାଙ୍କ ଅଧିନରେ ଅର୍ଥ ବିଭାଗ ରହିଥାଏ । ପାଟଣାଗଡ଼ର ଏମ.ଏଲ.ଏ. ବିବେକ ମେହେର ଉପ ମୁଖ୍ୟ ସଚେତକ ହିସାବରେ ସ୍ଥାନ ପାଇଥାନ୍ତି । ରୁରାଲ ଡେଭେଲପ୍‌ମେଣ୍ଟ ବିଭାଗର ଦାୟିତ୍ୱରେ ଥାନ୍ତି ମନ୍ତ୍ରୀ ହରିଶ ଚନ୍ଦ୍ର ବକ୍ସିପାତ୍ର ଓ ତାଙ୍କର ସହଯୋଗୀ ଷ୍ଟେଟ୍ ମିନିଷ୍ଟର ଥାନ୍ତି ସହରାଇ ଓରାମ । ସହରାଇ ବାବୁ ବିବେକ ମେହେରଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ । ଏମ.ଏଲ.ଏ. ହେବା ପୂର୍ବରୁ ବିବେକ ବାବୁ ଜଣେ କଣ୍ଟ୍ରାକ୍ଟର ଥିଲେ । ଅନ୍ୟ ଜଣେ କଂଗ୍ରେସ ସମର୍ଥକ କଣ୍ଟ୍ରାକ୍ଟରଙ୍କ ସହିତ ତାଙ୍କର ବହୁ ଦିନର ଶତ୍ରୁତା ଥାଏ । ସେ ବିବେକ ବାବୁଙ୍କୁ ଜରୁରୀ ପରିସ୍ଥିତିରେ ଜେଲରେ ଭର୍ତ୍ତି କରିଦେଇଥିଲେ । ଜେଲରୁ ମୁକୁଳିବା ବେଳକୁ ବିବେକ ବାବୁ ଜଣେ ଜନତା ଦଳର ନେତା ହୋଇ ବାହାରିପଡ଼ିଲେ ଓ ପାଟଣାଗଡ଼ର ଆସେମ୍ବ୍ଲି ସିଟ୍ ମଧ୍ୟ ତାଙ୍କୁ ସହଜରେ ଟିକେଟ୍ ମିଳିଗଲା, କାରଣ ଯେଉଁମାନେ ଦୀର୍ଘଦିନ ଧରି ଜରୁରୀ ପରିସ୍ଥିତିରେ ଜେଲଦଣ୍ଡ ଭୋଗିଥିଲେ ଜନତା ସରକାର ତାଙ୍କୁ ଆସେମ୍ବ୍ଲି ସିଟ୍ ଅଗ୍ରାଧିକାର ଭିତ୍ତିରେ ଦେଉଥିଲେ । ବିବେକ ବାବୁ ଆଗରୁ କଣ୍ଟ୍ରାକ୍ଟର ଥିବାରୁ ସେ ତାଙ୍କର ପୂର୍ବ ଅଭିଜ୍ଞତାର ସଦୁପଯୋଗ କରି ସରକାରଙ୍କ ସହ ଲଢ଼ି ଏଲଟମେଣ୍ଟ ଆଣିବା ସଙ୍ଗେ ସଙ୍ଗେ ଆସିଷ୍ଟାଣ୍ଟ ଇଞ୍ଜିନିୟର ଓ ସବ୍ ଆସିଷ୍ଟାଣ୍ଟ ଇଞ୍ଜିନିୟରମାନଙ୍କ ଠାରୁ ବିଭିନ୍ନ ଉପାୟରେ ଫାଇଦା ଉଠାଇବାକୁ ଚେଷ୍ଟା କଲେ । ତେଣୁ ସେ ପାଟନାଗଡ଼ର ଆର.ଇ.ଓ ଏସ.ଡ଼ି.ଓ. ଧ୍ରୁବଚରଣ ଦାସଙ୍କୁ ବଦଳି କରି ତାଙ୍କ ସ୍ଥାନରେ ସାଳିଗ୍ରାମ ପାଣିଗ୍ରାହିଙ୍କୁ ଆଣିଲେ । ମାତ୍ର ବର୍ଷକ ମଧ୍ୟରେ ସାଳିଗ୍ରାମ ପାଣିଗ୍ରାହୀଙ୍କୁ ବଦଳି କରି ତାଙ୍କ ଜାଗାରେ ନରସିଂହ ପାରମାରଙ୍କୁ ନେଲେ । ପାରମାର ଜଣେ କର୍ମଠ ଓ ଦକ୍ଷ ଇଞ୍ଜିନିୟର । କିନ୍ତୁ ସେ ବିବେକ ବାବୁଙ୍କ ଚକରରେ ପଡ଼ିଗଲେ । ୧୯୭୯ ମସିହା ମେ ମାସରେ ହରିଶଙ୍କର ଠାରେ ଗୋଟିଏ ବଡ଼ଧରଣର ମେଳା ହୋଇଥିଲା । ସେଠାକୁ ବହୁ ନେତୃସ୍ଥାନୀୟ ବ୍ୟକ୍ତି ଓ ମନ୍ତ୍ରୀ ଆସିଥିଲେ । ଅନୁଗୁଳର

ମୋର ପୂର୍ବତନ ବନ୍ଧୁ ଗୋଷ୍ଠୀ ଉନ୍ନୟନ ମନ୍ତ୍ରୀ ଅଦ୍ୱୈତ ବାବୁ ମଧ୍ୟ ଏହି ସଭାକୁ ଆସିଥିଲେ । ତାଙ୍କର ଏକାନ୍ତ ଇଚ୍ଛା ଥିଲା ଢେଙ୍କାନାଳ ରୁରାଲ ଇଞ୍ଜିନିୟରିଂ ଡିଭିଜନକୁ ମୋତେ ବଦଳି କରି ନେଇ ସେଠାକାର ଉନ୍ନତି ମୂଳକ କାମଗୁଡ଼ିକ ତ୍ୱରାନ୍ୱିତ କରିବେ । ତେରଜାଙ୍ଗ ଡ୍ୟାମ୍ ତିଆରି ବେଳେ ମୋର କାର୍ଯ୍ୟଦକ୍ଷତା ସେ ଭଲ ଭାବେ ହୃଦୟଙ୍ଗମ କରିଥିଲେ । କିନ୍ତୁ ବଲାଙ୍ଗିର ଏମ.ପି. ଅଗଁଠୁ ସାହୁ, ମନ୍ତ୍ରୀ ରାମ ପ୍ରସାଦ ମିଶ୍ର ଓ ଉପମୁଖ୍ୟ ସଚେତକ ବିବେକ ବାବୁ ଓ ଅନ୍ୟାନ୍ୟ ଏମ.ଏଲ.ଏ. ଏହାକୁ ଦୃଢ଼ ସ୍ୱରରେ ପ୍ରତିବାଦ କଲେ । ପୁଣି ସେହିବର୍ଷ ଜୁଲାଇ ମାସରେ ଯେତେବେଳେ ରୁରାଲ ଡ଼େଭେଲପମେଣ୍ଟ ମନ୍ତ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ମୋତେ କୋରାପୁଟ ବଦଳି କରିବାକୁ ଚାହିଁଲେ ସେମାନେ ଏହାର ପ୍ରତିବାଦ କଲେ । କିନ୍ତୁ ୬ ମାସ ପରେ ଯେତେବେଳେ ବିବେକବାବୁ ଦେଖିଲେ ଯେ ସେ ଓ ପାରମାର କରିଥିବା ଯୋଜନା ମୁଁ ଥିବା ପର୍ଯ୍ୟନ୍ତ ସଫଳ ହୋଇପାରିବନି, ସହରାଇ ଓରାମଙ୍କ ଜରିଆରେ ମୋର ବଦଳି ପାଇଁ ଆପ୍ରାଣ ଚେଷ୍ଟା ଚଳାଇଲେ । ୧୯୭୮ ଡିସେମ୍ବର ମାସରେ ବାଘ ଝରଣ ଯୋଜନାର ଶୁଭ ରାଷ୍ଟ୍ରମନ୍ତ୍ରୀ ସହରାଇ ଓରାମଙ୍କ ଦ୍ୱାରା ଦିଆଗଲା । ଏକ ଆଡ଼ମ୍ବରପୂର୍ଣ୍ଣ ପରିବେଶ ମଧ୍ୟରେ ଭିତ୍ତିପ୍ରସ୍ତର କାର୍ଯ୍ୟଟି ସମ୍ପୂର୍ଣ୍ଣ ହେଲା । ଏସ.ଡ଼ି.ଓ. ଓ ବିବେକବାବୁ ମିଶି ଯୋଜନା କରିଥାନ୍ତି ଯେ ଡ଼େମର ଭୂମି ପତ୍ତନ ଲେଭଲ୍‌କୁ କମାଇଦେଇ ୩ ଲକ୍ଷ ଟଙ୍କାର ଫାଇଦା ଉଠାଇ ଅଧା ଅଧା ବାଣ୍ଟି ନେବେ । ମୁଁ ଯେତେବେଳେ ପ୍ରାରମ୍ଭିକ ଲେଭଲ ଚେକ୍ କରିବାକୁ ଚାହିଁଲି ନିଜେ ବିବେକବାବୁ ଓ ସହରାଇ ବାବୁ ଏଥିରେ ପ୍ରତିବାଦ କଲେ । ସେମାନଙ୍କ ମତରେ ନିର୍ବାହୀଯନ୍ତ୍ରୀମାନେ ଲେଭେଲ ନେବା ଭୁଲିଯାଇଥାନ୍ତି । କିନ୍ତୁ ସେମାନେ କିଭଳି ଜାଣନ୍ତେ ବଲାଙ୍ଗିର ନିର୍ବାହୀଯନ୍ତ୍ରୀ ତାଙ୍କ ସରକାରୀ ଯନ୍ତ୍ରୀଙ୍କର ୨ଗୁଣ ବେଗରେ ଲେଭଲ୍ ନେଇପାରିବେ । ସହରାଇ ବାବୁ ଭୁବନେଶ୍ୱର ଫେରିବା ମାତ୍ରେ ମୋର ବଦଳି ପାଇଁ ଫାଇଲ୍‌ଟିକୁ ମନ୍ତ୍ରୀଙ୍କ ପାଖକୁ ପଠାଇଦେଲେ । ଏ ଖବର ପାଇ ମୁଁ ଯେତେବେଳେ ବକ୍ସିବାବୁଙ୍କୁ ଦେଖା କଲି ସେ କହିଲେ ଯେ ମୁଁ ବଲାଙ୍ଗିରର କଂଗ୍ରେସ (ଇ) ସଭାପତିଙ୍କୁ ଗାଡ଼ିରେ ବସାଇ ବୁଲୁଥିବାର ଦୃଶ୍ୟ ରାଷ୍ଟ୍ରମନ୍ତ୍ରୀ ସ୍ୱଚକ୍ଷୁରେ ଦେଖିଛନ୍ତି । ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି ମନ୍ତ୍ରୀ ମହୋଦୟ ବାଘ ଝରଣ ଭିତ୍ତିପ୍ରସ୍ତର ଦେବା ଦିନ ମୁଖ୍ୟଯନ୍ତ୍ରୀଙ୍କ ପରିଦର୍ଶନ

ଥିଲା ଓ ମୁଁ ତାଙ୍କ ସହିତ ବରଗଡ଼, ବରପାଲି, ଲୋଇସିଂହା ଆଦି ବ୍ଲକ୍‌ରେ ବୁଲୁଥିଲି । ରାଷ୍ଟ୍ରମନ୍ତ୍ରୀ ମୋତେ କଂଗ୍ରେସ (ଇ) ପ୍ରେସିଡ଼େଣ୍ଟଙ୍କ ସହ ବୁଲୁଥିବାର କେତେବେଳେ ଦେଖିଲେ ? ବଙ୍କିବାବୁ ମୋର କଥାରେ ବିଶ୍ୱାସ କଲେ ଓ ସଙ୍ଗେ ସଙ୍ଗେ ଫାଇଲ୍ ଫେରାଇ ଦେଲେ । ଏମ.ପି. ଅଇଁଠୁ ସାହୁ ଦିଲ୍ଲୀରୁ ଫେରି ବିବେକବାବୁ ଓ ସହରାଇ ବାବୁଙ୍କ ଏହି କାରସାଦି ବିଷୟ ଶୁଣି ଅତ୍ୟନ୍ତ କ୍ଷୁବ୍ଧ ହେଲେ । ସେ ବଙ୍କି ବାବୁଙ୍କୁ ଫୋନ୍ କରି କହିଦେଲେ ଯେ ଏଭଳି ପରିସ୍ଥିତିରେ ଜଣେ ନିର୍ବାହୀଯନ୍ତ୍ରୀଙ୍କର ବଦଳି ହେଲେ ଅଫିସ୍‌ରମାନଙ୍କର ମନୋବଳ ଭାଙ୍ଗିପଡ଼ିବ । କିନ୍ତୁ ୧୯୭୯ ମେ ମାସରେ ଯେତେବେଳେ ବଦଳି ଚେନ୍ ବାହାରିଲା, ମୁଁ ଅଦ୍ୱୈତ ବାବୁଙ୍କୁ କହି ଅନୁଗୁଳ ଇରିଗେସନ୍ ଡିଭିଜନକୁ ମୋର ବଦଳି କରାଇ ଦେଲି । ସେତେବେଳକୁ ଅଇଁଠୁ ବାବୁ ଦିଲ୍ଲୀରେ ଥିଲେ । ମୋର ରିଲିଭର ରାସ ବିହାରୀ ମହାନ୍ତି କଳାହାଣ୍ଡି ଡିଭିଜନର ଦାୟିତ୍ୱ ହସ୍ତାନ୍ତର କରି ଯେଉଁଦିନ ବଲାଙ୍ଗିରରେ ଯୋଗଦେଲେ ସେଦିନ ଅଇଁଠୁବାବୁ ଦିଲ୍ଲୀରୁ ଆସି ବଲାଙ୍ଗିରରେ ପହଞ୍ଚିଲେ । ମୋତେ ଫୋନ୍ କରିବାରୁ ମୁଁ ତାଙ୍କୁ କହିଲି ଯେ ନିଜର ମାନସିକ ଅଶାନ୍ତି ଦୂର କରିବାକୁ ଅନୁଗୁଳ ଚାଲିଯାଉଛି । ସେ କିନ୍ତୁ ରାଜି ହେଲେନି । ଓଲଟି କହିଲେ ତାଙ୍କର ସମ୍ମାନ ଓ ବଲାଙ୍ଗିର ଜିଲ୍ଲାର ଅଫିସରମାନଙ୍କ ସମ୍ମାନ ରକ୍ଷା ପାଇଁ ମୋତେ ପ୍ରୋମୋଶନ ପର୍ଯ୍ୟନ୍ତ ବଲାଙ୍ଗିରରେ ରହିବାକୁ ପଡ଼ିବ । ସେ ସଙ୍ଗେ ସଙ୍ଗେ ମୁଖ୍ୟମନ୍ତ୍ରୀଙ୍କୁ ଫୋନ୍ କରି କହିଲେ ଯେ ଯଦି ମୋର ବଦଳି ଅର୍ଡ଼ର ବାତିଲ୍ ନ ହୁଏ ତେବେ ବିବେକ ମେହେରଙ୍କୁ ଛାଡ଼ି ତାଙ୍କର ଓ ବଲାଙ୍ଗିର ଜିଲ୍ଲାର ସବୁ ଏମ.ଏଲ.ଏ.ଙ୍କର ଇସ୍ତଫାପତ୍ର ମୁଖ୍ୟମନ୍ତ୍ରୀଙ୍କୁ ଗ୍ରହଣ କରିବାକୁ ପଡ଼ିବ । ଏଭଳି ଏକ ନାଟକୀୟ ପରିସ୍ଥିତିରେ ମୋର ବଦଳି ଅର୍ଡ଼ର ବାତିଲ ହେଲା । ରାହାସ ବାବୁଙ୍କୁ ମୁଁ ଫୋନ୍ କରି ଡକାଇଥିଲି; ଏଭଳି ନାଟକୀୟ ପରିସ୍ଥିତିରେ ତାଙ୍କୁ ଫେରିଯିବାକୁ ପଡ଼ିବାରୁ ମୁଁ ତାଙ୍କ ପାଇଁ ଅତ୍ୟନ୍ତ ଦୁଃଖିତ ହେଲି । କିନ୍ତୁ ଉପରେ ରହି ଜଣେ ଏ ସମସ୍ତ ଦେଖୁଛନ୍ତି, ତାଙ୍କ ଦୃଷ୍ଟିରୁ କୌଣସି ଦୃଶ୍ୟ ବାଦ ଯିବନି । ଏହି ନାଟର ଗୋବର୍ଦ୍ଧନ ବିବେକ ମେହେରଙ୍କୁ ଅଳ୍ପଦିନ ଭିତରେ ଲୋକଦଳ ଛାଡ଼ିବାକୁ ପଡ଼ିଲା । ସେହିଦିନଠାରୁ ତାଙ୍କର କ୍ରମ ଅବନତି ଘଟିବାରେ ଲାଗିଲା । କଥାରେ ଅଛି ଯେ ପାଞ୍ଚେ ସଦା ପରମନ୍ଦ, ତା ମନ୍ଦ ଚିନ୍ତନ୍ତି ଗୋବିନ୍ଦ ।

ଏଣେ ମୋର ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ପୋଷ୍ଟକୁ ପ୍ରେମୋଶନ ପାଇଁ ଡ଼ିପିସି ବସିଲା । କିନ୍ତୁ ୧୯୭୮-୭୯ ମସିହାର ସି.ସି. ଆର: ଲେଖାଯାଇନି । କଲେକ୍ଟର ଥାନ୍ତି ଶ୍ରୀକୃଷ୍ଣଚନ୍ଦ୍ର ମହାପାତ୍ର । ତାଙ୍କୁ ବିବେକବାବୁ ଧମକାଇଥାନ୍ତି ଯେ ଯଦି ସେ ମୋର ସି.ସି.ଆର ଖରାପ ନ ଲେଖନ୍ତି ତେବେ ସେ ତାଙ୍କୁ ବିରୋଧ କରିବେ । କୃଷ୍ଣବାବୁ ସରଳ ଲୋକ ମୁଁ ନିଜେ, ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ନିମାଇ ଚରଣ ପାଣି, ଏ.ଡ଼ି.ଏମ. ଆର.ଏଣ୍ଡ. ବି ନିର୍ବାହୀଯନ୍ତ୍ରୀ ବସନ୍ତ ପଣ୍ଡା, ଆର.ଟି.ଓ. କଲେକ୍ଟରଙ୍କୁ ଯେତେ ଅନୁରୋଧ କଲେବି ୧୯୭୮-୭୯ର ସି.ସି.ଆର ଯାଉନି । ଦୁଇଥର ଡ଼ି.ପି.ସି. ଡ଼କା ସରିଥିଲେ ମଧ ମୋର ସି.ସି. ଆର ମିଳି ନଥିବାରୁ କୌଣସି ସ୍ଥିର ସିଦ୍ଧାନ୍ତ ହୋଇପାରୁ ନଥାଏ । ଚିଫ୍ ଇଞ୍ଜିନିୟର ସୁରେଶ ବାବୁ ଏହି ସୁଯୋଗର ଅପେକ୍ଷାରେ ଥିଲେ । ସେ ସେକ୍ରେଟେରୀ ରାମ ଦୋରାଇଙ୍କୁ ପ୍ରବର୍ତ୍ତାଇଲେ ଯେ ଭାସ୍କର ଚନ୍ଦ୍ର ନାୟକ ତାର ସି.ସି.ଆରକୁ ଜାଣି ଜାଣି ଚାପି ଦେଇଛି । ତାକୁ ସୁପରସିଡ୍ କରି ଅନ୍ୟମାନଙ୍କୁ ପ୍ରେମୋଶନ ଦିଆଯାଉ । କିନ୍ତୁ ରାମ ଦୋରାଇ ସାହେବ ରାଜି ହେଲେନି । ଶେଷରେ କଲେକ୍ଟର ୧୯୭୯ ମସିହା ଅଗଷ୍ଟ ୨୦ ତାରିଖ ଦିନ ସି.ସି.ଆର ଲେଖିଲେ । ଏହାକୁ ବିଦ୍ୟୁତ ବେଗରେ ଏସ.ଇ. ଓ ଆର.ଡ଼ି.ସି.ଙ୍କ ଜରିଆରେ ୫/୬ ଦିନ ଭିତରେ ଇରିଗେସନ୍ ଡିପାର୍ଟମେଣ୍ଟରେ ପହଞ୍ଚାଇ ଦିଆଗଲା । ୧୯୭୯ ସେପ୍ଟେମ୍ବର ପହିଲା ଦିନ ଯେତେବେଳେ ଡି.ପି.ସି. ବସିଲା ନିଜେ ରାମ ଦୋରାଇ ସାହେବ ମୋର ସି.ସି.ଆର.ଗୁଡ଼ିକ ପଢ଼ି ଆଶ୍ଚର୍ଯ୍ୟ ହେଲେ । ସେ କହିଲେ ସୁରେଶବାବୁ, ଆପଣ କହୁଥିଲେ ଭାସ୍କର ଚନ୍ଦ୍ର ନାୟକଙ୍କୁ ସୁପରସିଡ୍ କରିଦେବାକୁ, କିନ୍ତୁ ସେ ଯେଉଁ ସି.ସି.ଆର ପାଇଛନ୍ତି ତା ବଳରେ ସେ ଅନ୍ୟ କେତେ ଜଣକୁ ସୁପରସିଡ୍ କରିଯିବ । ସୁରେଶ ବାବୁ ସି.ସି.ଆର. ଗୁଡ଼ିକ ଆମୂଳଚୂଳ ପଢ଼ି ଡିଲିଂ ଆସିଷ୍ଟାଣ୍ଟଙ୍କୁ ପଚାରିଲେ, ସେ ଲେଖିଥିବା ସି.ସି.ଆର. କାହିଁ ? କିନ୍ତୁ ଡିଲିଂ ଆସିଷ୍ଟାଣ୍ଟ ଜଲାଲ ବାବୁ ତାଙ୍କୁ ଦୃଢ଼ ଭାବେ କହିଲେ ଯେ ସେ ସି.ସି.ଆର ଲେଖି ନାହାନ୍ତି, ତା ସତ୍ତ୍ୱେ ସି.ସି.ଆର ଗୁଡ଼ିକ ଅପଟୁ-ଡ଼େଟ୍ ଅଛି । ସେ ଆଶ୍ଚର୍ଯ୍ୟ ହୋଇ ନିରବ ରହିଲେ । ସୁରେଶ ବାବୁ ୧୯୭୩ ଡିସେମ୍ବର ୩୧ ତାରିଖ ଦିନ ଦାୟିତ୍ୱ ଗ୍ରହଣ କଲେ, ତେଣୁ ୧୯୭୩-୭୪ ସି.ସି.ଆର.ର ତାଙ୍କ ଅଂଶ ୧୨୦ ଦିନରୁ କମ୍ ହୋଇଥିବାରୁ

ତାହା ତାଙ୍କ ପାଖକୁ ଯିବାର ଅବକାଶ ନଥିଲା । ପୁଣି ୧୯୭୪ ଜୁଲାଇ ମାସରେ ମୋର ରୁରାଲ ଇଞ୍ଜିନିୟରିଂ ଡିଭିଜନକୁ ବଦଳି ହୋଇଯିବାରୁ ୧୯୭୪-୭୫ ସି.ସି.ଆରର ତାଙ୍କ ଅଂଶ ୧୨୦ ଦିନରୁ କମ ହୋଇଥିବାରୁ ତାହା ମଧ ତାଙ୍କ ପାଖକୁ ଯିବାର ଅବକାଶ ନଥିଲା । ନିର୍ବିଘ୍ନରେ ମୋର ପ୍ରମୋଶନ ହୋଇଗଲା । ଏ ଖବର ଶୁଣିବା ମାତ୍ରେ ମୁଁ ଭାବିଲି ଗଞ୍ଜାମର ମନ୍ତ୍ରୀ ଓ ଏମ.ଏଲ.ଏ ମାନଙ୍କର ଏତେ ଚେଷ୍ଟା ସତ୍ୱେ କାହିଁକି ମୋର ଟିକିଟି ଡ଼ିଭିଜନରୁ ବଦଳି ଆଦେଶ କ୍ୟାନ୍‌ସଲ ହୋଇ ନଥିଲା । ଏହା ଥିଲା ବିଧି ନିର୍ଦ୍ଦେଶ । ଯଦି ଅର୍ଡ଼ର କ୍ୟାନ୍‌ସଲ୍ ହୋଇଥାନ୍ତା ଓ ମୁଁ ଟିକିଟି ଡ଼ିଭିଜନରେ ଆଉ ବର୍ଷେ ରହିଥାନ୍ତି ସୁରେଶ ବାବୁ ତାଙ୍କ ଜୀବନରେ ଯେଭଳି ଅନ୍ୟ କେତେ ଜଣଙ୍କୁ ଖତମ କରିଦେଇଛନ୍ତି ମୁଁ ସେମାନଙ୍କର ଭଳି ଭାଗ୍ୟକୁ ଆଦରି ନିର୍ବାହୀଯନ୍ତ୍ରୀ ଭାବେ ଅବସର ଗ୍ରହଣ କରିଥାନ୍ତି । ମୁଖ୍ୟଯନ୍ତ୍ରୀ ପଦବୀ ପର୍ଯ୍ୟନ୍ତ କେବେ ଉଠିପାରିନଥାନ୍ତି ।

ବଲାଙ୍ଗିର ଅବସ୍ଥାନ କାଳରେ ମୋର ପ୍ରଥମ ଅଧିକ୍ଷଣ ଯନ୍ତ୍ରୀ ଥିଲେ ଅଚ୍ୟୁତା ନନ୍ଦ । ସେ ଜଣେ ସାଧୁ ପ୍ରକୃତିର ଇଞ୍ଜିନିୟର । ନିଜର ଖାଇବା ଜିନିଷ ଧରି ଟୁର୍‌ରେ ଯାଆନ୍ତି, ରୋଷାଇ କରି ଖାଇ, ୧୧ଟା ବେଳକୁ ଟୁରରେ ବାହାରନ୍ତି ଓ ୫ଟା ବେଳକୁ ଟୁର ଶେଷ କରନ୍ତି । କାର୍ଯ୍ୟରେ ଅତ୍ୟନ୍ତ ଥିଓରିଟିକେଲ୍ । କାହାରିକୁ ବିଶ୍ୱାସ ନାହିଁ । ଏଭଳି କି ସର୍ଭେରେ କାହାରିକୁ ବିଶ୍ୱାସ କରନ୍ତି ନାହିଁ । ଏଣେ ଇରିଗେସନ୍ ବିଷୟରେ ଜ୍ଞାନ ନାହିଁ । କୌଣସି ଡ୍ରଇଂ ଦସ୍ତଖତ କରିବାକୁ ନାରାଜ । ତାଙ୍କ ପାଖରେ ଦେଢ଼ ବର୍ଷ କାର୍ଯ୍ୟ କରିବା ଏକ ସାଧନା କହିବାକୁ ହେବ । ୧୯୭୭ ମସିହା ଡିସେମ୍ବର ମାସରେ ନିମାଇ ଚରଣ ପାଣି ରୁରାଲ ଇଞ୍ଜିନିୟରିଂ ପଦାଧିକାରୀ ଯନ୍ତ୍ରୀଭାବେ ଦାୟିତ୍ୱ ଗ୍ରହଣ କଲେ । ସେ ମୋର ଜଣେ ପୁରାତନ ବନ୍ଧୁ । ତାଙ୍କର ଓ ଆମର ପରିବାର ପରସ୍ପର ସହିତ ମାନସିକ ସ୍ତରରେ ବନ୍ଧୁତା ପାଶରେ ଆବଦ୍ଧ । ତେଣୁସେ ଆସିବା ପରେ ମୁଁ ଅପେକ୍ଷାକୃତ ଅଧିକ ସ୍ୱାଧୀନ ଭାବେ କାମ କରିପାରିଲି । ଡ୍ରଇଁ ଏଷ୍ଟିମେଟ୍ ଆଦି ଦ୍ରୁତ ଗତିରେ ମଂଜୁର ହୋଇପାରିଲା ଓ କାର୍ଯ୍ୟ ମଧ ତ୍ୱରାନ୍ୱିତ ହୋଇପାରିଲା । ପାଣି ସାହେବ ସବୁଦିନେ ମୋର ବନ୍ଧୁ, ଉପଦେଷ୍ଟା ଓ ମାର୍ଗନିର୍ଦ୍ଦେଶକ ଭଳି କାର୍ଯ୍ୟ କରିଆସିଛନ୍ତି ।

୧୯୭୮ ମସିହା ମେ ମାସରେ ଯେଉଁ ଚମକପ୍ରଦ ଘଟଣା ଘଟିଲା ତାହା ବର୍ଣ୍ଣନା ନ କଲେ ବଲାଙ୍ଗିର ଜୀବନର ଅଧ୍ୟାୟଟି ଅପୂର୍ଣ୍ଣ ରହିଯିବ । ରେଡ଼କ୍ରସ ତରଫରୁ ବ୍ଲଡ଼୍ ବ୍ୟାଙ୍କ ବିଲ୍ଡିଂ ତିଆରି ପାଇଁ ଗୋଟିଏ ଭେରାଇଟି ଏଣ୍ଟରଟେନ୍‌ମେଣ୍ଟ ପ୍ରୋଗ୍ରାମ କରାଗଲା । ଏହି ଉତ୍ସବରେ ଲକ୍ଷ୍ମୀଛାୟା, କମଳାଛାୟାଙ୍କ ଭଳି ଚିତ୍ର ତାରକା ଓ ନୃତ୍ୟ ଶିଳ୍ପୀଙ୍କୁ, ଆଗାଙ୍କ ଭଳି କମିକ ଆର୍ଟିଷ୍ଟ, କିଶୋର କୁମାର (ଜୁନିଅର)ଙ୍କ ଭଳି ସଙ୍ଗୀତଜ୍ଞଙ୍କୁ ନିମନ୍ତ୍ରଣ କରାଯାଇଥିଲା । ପ୍ରଥମ ଦିନ ସୋ ଆରମ୍ଭ ହେବା ମାତ୍ରେ ତଳ ଶ୍ରେଣୀର ବହୁଦର୍ଶକ ଉପର ଶ୍ରେଣୀର ଚୌକି ଅଧିକାର କରିବା ଫଳରେ ୨ୟ ରାତ୍ରି ସୋ ପାଇଁ ଅଧିକ କଡ଼ା ବ୍ୟବସ୍ଥା କରାଗଲା । ଜଣେ ପ୍ରଥମଶ୍ରେଣୀ ଅଫିସର ଶ୍ରେଣୀ ଦାୟିତ୍ୱରେ ରହିଲେ ଓ ତାଙ୍କ ଅଧିନରେ ୨ ଜଣ ୨ୟ ଶ୍ରେଣୀ ଅଫିସର ଓ ଜଣେ ସବ୍ ଇନ୍ସପେକ୍ଟର ରହିଲେ । ମୋତେ ସ୍ପେସାଲ କ୍ଲାସ୍‌ର ଦାୟିତ୍ୱ ଦିଆଗଲା । ଏହି କ୍ଲାସ୍‌ର ଟିକେଟ୍‌ର ମୂଲ୍ୟ ୧୦୦ ରୁ ଅଧିକ । ୧ମ ଶ୍ରେଣୀର ଟିକେଟ୍‌ର ମୂଲ୍ୟ ୫୦ ଟଙ୍କା । ବଲାଙ୍ଗିର ବିଶିଷ୍ଟ ଆଡ଼ଭୋକେଟ୍ ହରି ସ୍ୱାଇଁଙ୍କ ପୁଅ ୫୦ ଟଙ୍କାର ଖଣ୍ଡିଏ ଟିକେଟ୍ କାଟି ସ୍ପେସାଲ କ୍ଲାସ୍‌ରେ ବସିବାକୁ ଋହିଁଲେ । ଏହା ମୋ ନଜରକୁ ଆସିବାରୁ ମୁଁ ସିଧା ମନା କରିଦେଲି । ସେ ଭଦ୍ର ବ୍ୟକ୍ତି ମୋ ସହିତ ବହୁତ ଯୁକ୍ତି କଲେ । ଏହି ସମୟରେ ଶାନ୍ତି ଶୃଙ୍ଖଳା ଦାୟିତ୍ୱରେ ଥିବା ସବ୍ ଇନ୍‌ସ୍‌ପେକ୍ଟର ଟଙ୍କା ନ ଦେଇ ସ୍ପେସାଲ କ୍ଲାସ୍‌ରେ ବସିବାକୁ କିଭଳି ଋହୁଁଛ ବୋଲି ଆକ୍ଷେପ କରି କହିଦେଲେ । ସଙ୍ଗେ ସଙ୍ଗେ ହରିସ୍ୱାଇଁଙ୍କ ପୁଅ ତାଙ୍କର ଅନୁଚରମାନଙ୍କୁ ସାଙ୍ଗରେ ଧରି ସୋ ଛାଡ଼ି ପଳାଇ ଆସିଲେ । ଏହି ଘଟଣା ପରେ ଉପସ୍ଥିତ କଲେକ୍ଟର ଓ ଏସ.ପି. ସଙ୍ଗେ ସଙ୍ଗେ ଘଟଣାର ଗମ୍ଭୀରତା ହୃଦୟଙ୍ଗମ କରି ମୋଠାରୁ ରିପୋର୍ଟ ନେଇ ସରକାରୀ କର୍ମଋରୀଙ୍କୁ ତାଙ୍କ କାର୍ଯ୍ୟରେ ବାଧା ସୃଷ୍ଟି କରୁଥିବା ଅପରାଧ ଜନିତ ଏଫ.ଆଇ.ଆର ଥାନାରେ ଦେଇଦେଲେ । ତାପର ଦିନ ହରିସ୍ୱାଇଁ ଯେତେବେଳେ ଏଫ.ଆଇ.ଆର. ଦେବାକୁ ଯାଆନ୍ତି କଲେକ୍ଟରଙ୍କ ଏଫ.ଆଇ.ଆର ଶୁଣି ତାଙ୍କ ବୁଦ୍ଧି ବଣା ହୋଇଗଲା । ସେ କୁଆଡ଼େ ଇମରଜେନସି ବେଳେ ଜନତା ପାର୍ଟିର ନେତାମାନଙ୍କ ପାଇଁ ଲଢ଼ିଥିଲେ । ସେଥିପାଇଁ ତାଙ୍କର ବହୁତ ଗର୍ବ । ସେ ଦିନ ସେକ୍ରେଟେରୀ ଏ.ଏନ. ତିଓ୍ୱାରି ଟୁର୍‌ରେ ଆସିଥିଲେ । ତାଙ୍କ ପାଖରେ ହରିସ୍ୱାଇଁ

ଅଭିଯୋଗ କଲେ । ତିୱାରି ସାହେବ କିନ୍ତୁ କଲେକ୍ଟରଙ୍କ ରିପୋର୍ଟ ନେଇ ଆଗରୁ ଚିଫ୍ ମିନିଷ୍ଟରଙ୍କ ଅର୍ଡ଼ର ଫାଇଲ୍‌ରେ ନେଇଗଲେ ଯେ ବଲାଙ୍ଗିରରେ ଘଟିଥିବା ଗଣ୍ଡଗୋଳ ପାଇଁ ଅଫିସରମାନେ ଆଦୌ ଦାୟି ନୁହଁନ୍ତି ଓ କୌଣସି ରାଜନୈତିକ ଚାପ ପାଖରେ ସରକାର ମୁଣ୍ଡ ନୁଆଇବା ଅନୁଚିତ । ତାପରଦିନ ଏସ.ପି. କୈଳାସ ମହାପାତ୍ର ହରି ସ୍ୱାଇଁଙ୍କ ପୁଅକୁ ଏରେଷ୍ଟ କରି ବିଚ୍ ରାସ୍ତା ଉପରେ ଚଲାଇ ଚଲାଇ ନେଲେ । ସେହିଦିନଠାରୁ ହରି ସ୍ୱାଇଁଙ୍କ ଭଳି ଉଦ୍ଧତ ବ୍ୟକ୍ତିମାନେ ଆଉ ସରକାରୀ କର୍ମଚାରୀଙ୍କ ସହ ଗଣ୍ଡଗୋଳ କରିବା ବନ୍ଦ କରିଦେଲେ ।



## ଊନବିଂଶ ପରିଚ୍ଛେଦ

# ପଦୋନ୍ନତି ଓ ଦକ୍ଷିଣ ଓଡ଼ିଶାକୁ ପ୍ରତ୍ୟାବର୍ତ୍ତନ

ଅଧିକ୍ଷଣ ଯନ୍ତ୍ରୀପଦକୁ ପ୍ରମୋଶନ ହୋଇ ମୋର ପୋଷ୍ଟିଂ ହେଲା ଉତ୍ତରାଞ୍ଚଳ ଜଳସେଚନ ସର୍କଲ ଶାଳପଡ଼ାରେ। ଏହି ପୋଷ୍ଟିଂ ପାଇଁ ନିଜେ ଜଳସେଚନ ମନ୍ତ୍ରୀ ଅଦ୍ୱୈତ ପ୍ରସାଦ ସିଂ ବହୁତ ଯତ୍ନ କରିଥିଲେ। ଢେଙ୍କାନାଳ ଜିଲ୍ଲା ଶାଳପଡ଼ା ସର୍କଲ ଅନ୍ତର୍ଗତ ହୋଇଥିବାରୁ ମୋର ପୋଷ୍ଟିଂ ପାଇଁ ସେ ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କରି ଅର୍ଡ଼ର କରାଇଥିଲେ। ଚିଫ୍ ଇଞ୍ଜିନିୟର୍ ସୁରେଶବାବୁଙ୍କ ବିରୋଧ ସତ୍ତ୍ୱେ ତାଙ୍କର ହସ୍ତକ୍ଷେପ ଫଳରେ ଏହା ସମ୍ଭବ ହୋଇଥିଲା। ସେପ୍ଟେମ୍ବର ମାସର ତୃତୀୟ ସପ୍ତାହରେ ପ୍ରମୋଶନ ଅର୍ଡ଼ର ବାହାରିଲା। ଦୀର୍ଘ ୧୭ ବର୍ଷ କାଳ ବିଭିନ୍ନ ଡିଭିଜନରେ ନିର୍ବାହୀଯନ୍ତ୍ରୀ ହିସାବରେ କାମ କରିଛି। ସଦାବେଳେ ଗୋଟିଏ ନୀତି ଅନୁସରଣ କରିଛି, ଦାୟିତ୍ୱ ହସ୍ତାନ୍ତର ପୂର୍ବରୁ ସବୁ କାମର ଫାଇନାଲ୍ ବିଲ୍ ତିଆରି ହେବ। ଅତିରିକ୍ତ ସମୟ ମଞ୍ଜୁରୀ ବା ଅତିରିକ୍ତ ଆଇଟମ୍ ଗୁଡ଼ିକର ମଞ୍ଜୁରୀ ମିଳି ନଥିଲେ ୧୦% ସିନା ଡିପୋଜିଟ୍‌ରେ ରହିବ, କିନ୍ତୁ ଫାଇନାଲ ବିଲ୍ ନିଶ୍ଚୟ ପାଶ୍ ହେବ। ସେହି ଅନୁସାରେ ସବୁ ଏସ୍.ଡ଼ି.ଓ.ଙ୍କୁ ନିର୍ଦ୍ଦେଶ ଦିଆଗଲା। ଦିନରାତି ଏସ.ଡ଼ି.ଓ. ଜୁନିୟର ଇଞ୍ଜିନିୟର ଓ ସବ୍ଏସିଷ୍ଟାଣ୍ଟ ଇଞ୍ଜିନିୟର ମିଶି ଫାଇନାଲ୍ ବିଲ୍ କରିବାରେ ଲାଗିଲେ। କେତେକ ଏସିଷ୍ଟାଣ୍ଟ ଇଞ୍ଜିନିୟର ମନେ ମନେ ବିରକ୍ତ ହୋଇଭାବୁଥାନ୍ତି, କାହିଁକି ଏ ପାଲା। ଅଧିକାଂଶ ବିଲ୍ ତ ନିଲ୍  ଫାଇନାଲ, ଏତେ ପରିଶ୍ରମ କାହିଁକି ? କିନ୍ତୁ ସେମାନେ ପରବର୍ତ୍ତୀ ସମୟରେ ଅନୁଭବ କରିବେ, ଜଣେ ଅଫିସର ବଦଳି ହୋଇଗଲା ପରେ ଫାଇନାଲ ବିଲ୍ ଆଉ ପାଶ୍ ହୁଏନି।

ସେପ୍ଟେମ୍ବର ମାସ ସୁଦ୍ଧା ବିଲ୍ ପାଶ୍ କରିଦେଇ, ଅକ୍ଟୋବର ମାସର ଦଶ ତାରିଖ ସୁଦ୍ଧା ରିଲିଭ୍ ହୋଇ ମୁଁ ଶାଳପଡ଼ା ଅଭିମୁଖେ ଯାତ୍ରା କଲି। କିନ୍ତୁ ସେଠାରେ ଯାଇ ଦେଖିଲି ଏକ ଭିନ୍ନ ପରିସ୍ଥିତି। ମୋର ପୂର୍ବବର୍ତ୍ତି (ପ୍ରିଡ଼ିସରର) ଗିରିଜା ଶଙ୍କର ପାଣିଗ୍ରାହୀ  ଓ ଅନ୍ୟ ରାଜନୈତିକ କର୍ମୀଙ୍କୁ ବିଶେଷ କରି ଭଦ୍ରକର ତତ୍କାଳୀନ

ଏମ.ପି. ବୈରାଗୀ ଜେନା ଓ ଏମ.ଏଲ୍ ସୁବଳ ସେଠୀଙ୍କୁ ଏକାଠି କରି ତାଙ୍କ ବଦଳି ଅର୍ଡ଼ର କେନସଲ୍ ହେବା ପାଇଁ ଏକ ସୁଚିନ୍ତିତ ଯୋଜନା କରିସାରିଛନ୍ତି। ସବୁଠାରୁ କୌତୂହଳର ବିଷୟ ସେ ତାଙ୍କର ଭଦ୍ରକ ଇରିଗେସନ୍ ଡିଭିଜନର ନିର୍ବାହୀଯନ୍ତ୍ରୀଙ୍କ ଜରିଆରେ ବାସୁଦେବପୁର ଅଞ୍ଚଳରୁ ୧୦/୧୨ ଜଣ କୁଜୀ ନେତାଙ୍କୁ ନେଇ ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଞ୍ଚାଇଛନ୍ତି। ବରୁଣ୍ଡୁଆ ଗ୍ରାମର ଆଜୀବନ ଗାନ୍ଧିବାଦୀ କର୍ମୀ ଗୌରାଙ୍ଗ ମହାନ୍ତି ଦଳେ ଲୋକ ନେଇ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କୁ (ମୋର ନିର୍ବାଚନମଣ୍ଡଳିର ନିର୍ବାଚିତ ସଭ୍ୟ) କହିଛନ୍ତି ଯେ ଭାସ୍କରଚନ୍ଦ୍ର ନାୟକ ଜଣେ ବଦ୍ଧ ପାଗଳ। ତାଙ୍କୁ କାଙ୍କେ ହସ୍‌ପିଟାଲକୁ ୨ ଥର ପଠାଯାଇଛି। ସେଭଳି ଜଣେ ପାଗଳ ଇଞ୍ଜିନିୟରଙ୍କୁ ଶାଳପଡ଼ାରେ ପୋଷ୍ଟିଂ କରାନଯାଉ, ତାଙ୍କ ସହିତ ସହଯୋଗ କରିଛନ୍ତି ଆଦିକନ୍ଦ ମଲ୍ଲିକ, ଅଡୁଆଁର ଅର୍ଜୁନ ପଣ୍ଡା ଓ ଅନ୍ୟ କେତେ। ଏସବୁ ଘଟଣା ମୋତେ ଦିବା ସ୍ୱପ୍ନ ଭଳି ଲାଗିଲା। ଯେଉଁ ଗୌରାଙ୍ଗବାବୁ ମୋତେ ପିଲାଦିନୁ ଦେଖି ଆସିଛନ୍ତି ଓ ନିଜର ଅଧ୍ୟବସାୟ ବଳରେ ଜଣେ ମେଧାବୀ ଛାତ୍ର କିଭଳି ଅସାଧ ସାଧନ କରିପାରେ ତାହା ଅନେକବାର ଅନେକ ସ୍ଥାନରେ ବୟାନ କରିଛନ୍ତି, ତାଙ୍କ ମୁହଁରୁ ଏଭଳି ଭାଷା ବାହାରିଲା କିପରି ? ଏ ଘଟଣା ଶୁଣି ସ୍ତମ୍ଭୀଭୂତ ହୋଇପଡ଼ିଲେ ମୋର ପିତୃପ୍ରତିମ ମଉସା ଦିବାକର ଘଡ଼େଇ, ଡ଼ାଃ. ହରେକୃଷ୍ଣ ମହତାବଙ୍କର କନିଷ୍ଠ ଭ୍ରାତା ତତ୍‌କାଳୀନ ସିମୁଳିଆ ଏମ.ଏଲ.ଏ. ଗୋପୀନାଥ ଦାସ। ମୋର ବନ୍ଧୁ ତତ୍‌କାଳୀନ ଜଳସେଚନ ମନ୍ତ୍ରୀ ଅଦ୍ୱୈତ ବାବୁତ ନିଜ କାନକୁ ବିଶ୍ୱାସ କରିପାରିଲେ ନାହିଁ। ସେ ମୁଖ୍ୟମନ୍ତ୍ରୀଙ୍କ ସମ୍ମୁଖରେ ବାସୁଦେବପୁରର ସେହି କୁଜି ନେତାମାନଙ୍କୁ ପଚାରିଲେ, ଆପଣ କାହା କଥା କହୁଛନ୍ତି ? ମୁଁ ଭାସ୍କର ବାବୁଙ୍କର କାର୍ଯ୍ୟ ପାଞ୍ଚବର୍ଷ ଧରି ଦେଖିଛି। ଓଡ଼ିଶାର ୨ୟ ନଅଙ୍କ ଦୁର୍ଭିକ୍ଷ ସମୟରେ ଯେ ଯେଭଳି ଅକ୍ଳାନ୍ତ ପରିଶ୍ରମ କରି ୧୯୬୬-୬୭ ମସିହାରେ ୨/୩ କୋଟି ଟଙ୍କାର ଯୋଜନା କରି ୯/୧୦ଟି ଆସିଷ୍ଟାଣ୍ଟ୍ ଇଞ୍ଜିନିୟର ଓ ୧୦୦ ଜଣ ସବ୍‌ଆସିଷ୍ଟାଣ୍ଟ ଇଞ୍ଜିନିୟରଙ୍କୁ ଖଟାଇ ଢେଙ୍କାନାଳରେ ଉନ୍ନତିମୂଳକ କାର୍ଯ୍ୟ କରିଯାଇଛନ୍ତି, ତାହା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିଛି। ଦୀର୍ଘ ୧୦ ବର୍ଷ ଧରି ପଡ଼ି ରହିଥିବା ଦେରଜାଙ୍ଗ ଯୋଜନାକୁ ଯେ ମାତ୍ର ଅଢ଼େଇ ବର୍ଷ ଭିତରେ ଶେଷ କରିପାରିଛନ୍ତି, ତାଙ୍କୁ ଆପଣ ପାଗଳ କହୁଛନ୍ତି, ତାଙ୍କର ମୁଣ୍ଡ ପାଗଳ ନୁହେଁ, ସେ ଦେଶର ଉନ୍ନତି ପାଇଁ ପାଗଳ। ଦେଶମାତୃକାର

ସେବା ପାଇଁ ସେ ପାଗଳ। ବାଲେଶ୍ୱରର ଦୁର୍ଭାଗ୍ୟ ଯେ ତା'ର ଉପଯୁକ୍ତ ନିଜର ସନ୍ତାନକୁ ଆଜିଯାଏ ଚିହ୍ନି ପାରିଲାନି ?

ଗଞ୍ଜାମର ଜନସାଧାରଣ ବୋଧହୁଏ ଏହି ସୁଯୋଗର ଅପେକ୍ଷାରେ ରହିଥିଲେ। ୧୯୭୪ ଓ ୭୬ ମସିହାରେ ସ୍ମୃତି ତାଙ୍କର ମାନସପଟରୁ ଲିଭି ନ ଥାଏ। ଗଞ୍ଜାମ ଜିଲ୍ଲାର ଅଧିକାଂଶ ଏମ.ଏଲ.ଏ. ଯାଇ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରି ମୋର ଦକ୍ଷିଣାଞ୍ଚଳ ରୁରାଲ ଇଞ୍ଜିନିୟରିଂ ସର୍କଲରେ ପୋଷ୍ଟିଂ ପାଇଁ ଦାବି କଲେ। ସେମାନଙ୍କର ନେତୃତ୍ୱ ନେଲେ ସାନଖେମୁଣ୍ଡିର ରାଜା ସାହେବ, ମୋହନା ଏମ.ଏଲ.ଏ. ଉଦୟ ନାରାୟଣ ଦେଓ। ଅଦ୍ୱୈତ ବାବୁଙ୍କର ଇଚ୍ଛାଥିଲା ମୁଁ ଆଉଥରେ ଢେଙ୍କାନାଳ ଜିଲ୍ଲାର ଦାୟିତ୍ୱ ଗ୍ରହଣ କରିବି। ତେରଜାଙ୍ଗ ଯୋଜନାର ସଂପ୍ରସାରଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବି। ଟିକ୍ରା ଯୋଜନାର କାର୍ଯ୍ୟ ଆରମ୍ଭ କରିବି। କିନ୍ତୁ ତାଙ୍କର ସେ ଅଭିଳାଷ କଳ୍ପନାରେ ହିଁ ରହିଗଲା। ଶେଷରେ ମୁଖ୍ୟମନ୍ତ୍ରୀଙ୍କ କଥାକୁ କାଟି ନ ପାରି ରୁରାଲ ଇଞ୍ଜିନିୟରିଂ ସଂସ୍ଥାର ମନ୍ତ୍ରୀ ହରିଶଚନ୍ଦ୍ର ବକ୍ସିପାତ୍ରଙ୍କ ସହ ପରାମର୍ଶ କରି ଦକ୍ଷିଣାଞ୍ଚଳ-ରୁରାଲ ଇଞ୍ଜିନିୟରିଂ ସଂସ୍ଥାରେ ପୋଷ୍ଟିଂ କରିବାକୁ ଫାଇଲ୍ ପଠାଇଦେଲେ। ଦକ୍ଷିଣାଞ୍ଚଳ ସର୍କଲରେ ବୀରେନ ପଟ୍ଟନାୟକ ୧୯୭୬ ରୁ ୧୯୭୯ ପର୍ଯ୍ୟନ୍ତ ଖୁବ୍ ଦକ୍ଷତାର ସହ କାର୍ଯ୍ୟ କଲାପରେ ସମଲ ବେରେଜକୁ ମୁଖ୍ୟ ନିର୍ମାଣ ଯନ୍ତ୍ରୀ ଭାବେ ବଦଳି ହୋଇଥାନ୍ତି। ତାଙ୍କ ସ୍ଥାନରେ ଆସିଥାନ୍ତି ଧନେଶ୍ୱର ପାତ୍ର। କାହିଁ ବିରେନ୍ ବାବୁଙ୍କ ଡାଇନାମିକ ନେତୃତ୍ୱ କାହିଁ ଧନେଶ୍ୱର ପାତ୍ରଙ୍କ ଭଳି ବୟସ୍କ ମାନ୍ଦା ଲୋକଙ୍କ କାର୍ଯ୍ୟ। ଦୁଇଜଣ ଯାକ ପୁରା କଣ୍ଟ୍ରାଷ୍ଟ ଚରିତ୍ରର। ସେଥିପାଇଁ ୪ଟି ଯାକ ଜିଲ୍ଲାର ଏମ.ଏଲ.ଏ. ଅତ୍ୟନ୍ତ ଅସନ୍ତୁଷ୍ଟ। ଏହି ସମୟରେ ଗଞ୍ଜାମ ଗୌରବ ବୃନ୍ଦାବନ ନାୟକ କଂଗ୍ରେସ ଦଳ ଛାଡ଼ି ଆସି ଜନତା ଦଳରେ ଯୋଗଦେଲେ, ତାଙ୍କ ଅଧିନରେ ରହିଲା ନିର୍ମାଣ ବିଭାଗ ଓ ରୁରାଲ ଇଞ୍ଜିନିୟରିଂ ବିଭାଗ। ସେ ଋହିଁଲେ ବରହମପୁର ସର୍କଲ ପାଇଁ ଜଣେ ଦକ୍ଷ ଅଧିକ୍ଷଣଯନ୍ତ୍ରୀ। ହଠାତ୍ ଆସ୍କା ଏମ.ଏଲ. ଏ. ହରିହର ସ୍ୱାଇଁ ଏକ ପ୍ରତିବନ୍ଧକ ହୋଇ ଦଣ୍ଡାୟମାନ ହେଲେ। ମୋର ଶାଳପଡ଼ା ଅର୍ଡ଼ର କେନସଲ ସହିତ ଶରତ ଚନ୍ଦ୍ର ସାମନ୍ତରାୟଙ୍କର ମଧ ବାରିପଦା ସର୍କଲକୁ ଅର୍ଡ଼ର କେନସଲ୍ ହୋଇ ଓ.ସି.ସି.କୁ ପୋଷ୍ଟିଂ ହୋଇଥାଏ। ସେ ହରି ସ୍ୱାଇଁଙ୍କୁ ଧରି ଆଇ.ଇ.ଓ ସର୍କଲରେ

ପୋଷ୍ଟିଂ ହେବା ପାଇଁ ଆପ୍ରାଣ ଚେଷ୍ଟା ଚଳାଇଲେ। ଏଣେ ବିବେକ ମେହେର ସହରାଇ ଓରାମଙ୍କୁ ଲଗାଇଥାନ୍ତି। ମୁଁ କିପରି ଆର.ଇ.ଓ.ରେ ରହି ନ ପାରେ। ସାହରାଇ ବାବୁ ଫାଇଲଟି ଦୁଇ ମାସ କାଳ ଚପି ଧରି ବସିଲେ। ଶେଷରେ ମୋର ବନ୍ଧୁ ଅଜିତ ରାୟ ସହରାଇ ବାବୁଙ୍କ ଜଣେ ବନ୍ଧୁଙ୍କୁ ଧରିଲେ। ସେ ସହରାଇ ବାବୁଙ୍କୁ ବୁଝାଇଦେଲେ, ତୁମେ ଓଲଟା ନୋଟ ଦେଲେ ଭାସ୍କର ଚନ୍ଦ୍ର ନାୟକଙ୍କର କଦାପି ବରହମ୍ପୁରରେ ପୋଷ୍ଟିଂ ହେବନି। ସେହି ଅନୁସାରେ ସେ ଫାଇଲ ଦେଲେ। ସେହିଦିନ ବୃନ୍ଦାବନ ବାବୁ ମୁଖ୍ୟମନ୍ତ୍ରୀଙ୍କ ଠାରୁ ଅର୍ଡ଼ର ଆଣି ନୋଟିଫିକେସନ୍ କରିଦେଲେ। ଶରତ ଚନ୍ଦ୍ର ସାମନ୍ତରାୟଙ୍କର ଓ.ସି.ସି. ପୋଷ୍ଟ କାଏମ୍ ରହିଲା। ସହରାଇ ବାବୁ ଏହାକୁ କିଭଳି ଗ୍ରହଣ କଲେ କେଜାଣି ବିବେକ ମେହେର ସେହିଦିନ ଠାରୁ ଆଉ ଆର.ଇ.ଓ କାର୍ଯ୍ୟରେ ହସ୍ତକ୍ଷେପ କରିନାହାଁନ୍ତି। ଅନ୍ୟପକ୍ଷରେ ଓଡ଼ିଶାର କ୍ଷମତାପ୍ରାପ୍ତ ଲୋକଦଳରୁ ତାଙ୍କୁ ଦୂରେଇଯିବାକୁ ପଡ଼ିଲା। ଦୀର୍ଘ ୨ ମାସ ଧରି ଚାଲିଥିବା ଅନିଶ୍ଚିତତାର ଅବସାନ ଘଟିଲା। ନଭେମ୍ବର ୨୨ ତାରିଖ ଦିନ ଅର୍ଡ଼ର ଧରି କାର୍ଯ୍ୟରେ ଯୋଗ ଦେଲି। ଧନେଶ୍ୱର ବାବୁଙ୍କର ମନ ସହଜେ ଖରାପ ହେବା କଥା। ତାଙ୍କ ଘରକୁ ଖବର ପଠାଇଲି। ମୋର ପରିବାର ମେ଼ ମାସ ପର୍ଯ୍ୟନ୍ତ ଆସି ପାରିବେନି, ମୁଁ ୫ ମାସ ରୋଟେସନ୍‌ରେ ରହିଯିବି। ସେ ଆରାମରେ ମେ ମାସ ପର୍ଯ୍ୟନ୍ତ ସବୁ ଅଧସ୍ତନ କର୍ମଚାରୀଙ୍କୁ ଧରି ରହନ୍ତୁ। କିନ୍ତୁ ତାଙ୍କ ସ୍ତ୍ରୀଙ୍କ ଏକ ଜିଦ୍। ମୁଁ ରୁରକୀକୁ ପଢ଼ିବାକୁ ଯାଇଥିବା ସମୟରେ ନିଃସହାୟ ଅବସ୍ଥାରେ ଥିବାବେଳେ ମୋର ପିଲାମାନଙ୍କୁ ବହୁ ଭାବରେ ହଇରାଣ କରିଛନ୍ତି। ଚୋର ମନ ଚୋର ଗଣ୍ଠିଲିରେ। ସେ ଭାବିଲେ ମୁଁ ମଧ୍ୟ ପ୍ରତିଶୋଧପରାୟଣ ହୋଇ ତାଙ୍କ ପିଲାମାନଙ୍କୁ ହଇରାଣ କରିବି। ଜଣେ ଅଫିସର ଦାୟିତ୍ୱ ହସ୍ତାନ୍ତର କରାଯିବା ପରେ ତା'ର ପରିବାର ସହିତ କିଭଳି ବ୍ୟବହାର କରିବା ଉଚିତ ତାହା ନିଜର କାର୍ଯ୍ୟ ଦ୍ୱାରା ଦେଖାଇଦେବାକୁ ଚାହୁଁଥିଲି। କିନ୍ତୁ ତା'ହୋଇପାରିଲାନି। ଦାୟିତ୍ୱ ହସ୍ତାନ୍ତର କରିବା ଦିନ ଉପରଓଳି ସେ ଜିନିଷପତ୍ର ଧରି ବରହମପୁର ପରିତ୍ୟାଗ କରି ଚାଲିଗଲେ।

ଦକ୍ଷିଣାଞ୍ଚଳ ସର୍କଲ ସମୁଦାୟ ଆର.ଇ.ଓ. ସଂସ୍କାର ଏକ ବିଶିଷ୍ଟ ଅଙ୍ଗ ତାହା ନିମ୍ନ ତାଲିକାରୁ ପ୍ରତୀୟମାନ ହେବ।

| ସମୁଦାୟ ଓଡ଼ିଶାର (୧୩ ଜିଲା) | ଦକ୍ଷିଣାଞ୍ଚଳ ସର୍କଲ (୪ଟି ଜିଲ୍ଲାର) | ଗଞ୍ଜାମ ଜିଲ୍ଲାର କ୍ଷୁଦ୍ର ଜଳସେଚିତ ଅଞ୍ଚଳ |
|---|---|---|
| ୭, ୮୯, ୭୦୦ ଏକର | ୩,୭୭ ୯୦୦ଏକର | ୨,୬୧,୮୦୦ ଏକ |
| ୭୧୨୬ କି.ମି | ୨.୫୫୫ କିମି | ୧୫୦୦ କି.ମି |

(ଆର.ଆଇ ରାସ୍ତା)

ତା ବ୍ୟତୀତ କଳାହାଣ୍ଡି ଏକ ଶୁଷ୍କାଞ୍ଚଳ ଓ କୋରାପୁଟ୍ ଫୁଲବାଣୀ ଆଦିବାସୀ ଅଧ୍ୟୁସିତ ଅଞ୍ଚଳ ହୋଇଥିବାରୁ ସେଥିପାଇଁ ଭାରତ ସରକାରଙ୍କ ବହୁ ଯୋଜନା ଯଥା ଡ଼ିପିଏ, ଆଇଟିଡ଼ିଏ, ବୋଣ୍ଡା ଓ ସଉରା କନ୍ଧ ଡେଭଲପମେଣ୍ଟ ଯୋଜନା ପାଇଁ ପ୍ରଚୁର ଅର୍ଥ ଅଟକଳ ରହିଛି। ସର୍ବୋପରି ଗଞ୍ଜାମ ଗୌରବ ବୃନ୍ଦାବନ ନାୟକ ଆରଇଓ ମନ୍ତ୍ରୀ ଥିବାରୁ ସେ ଏହି ଦକ୍ଷିଣାଞ୍ଚଳର ଉନ୍ନତି ପାଇଁ ଅତ୍ୟନ୍ତ ତତ୍ପର। ତେଣୁ ଉନ୍ନତିମୂଳକ କାମ କରିବାକୁ ମୋତେ ଏକ ପ୍ରଶସ୍ତ କ୍ଷେତ୍ର ମିଳିଗଲା। କେତୋଟି ପ୍ଲାନ୍ ଯୋଜନା ଯଥା ଗଞ୍ଜାମ ଜିଲ୍ଲାର ଚୌଧୁରୀ ଘାଇ, ମହେନ୍ଦ୍ର ତନୟା, ଭାକ୍ରାଡ଼ା, ଜଗତଘାଇର (ପୁନରୁଦ୍ଧାର) ମହାରାଣୀ ସାଗର କାମକୁ ତ୍ୱରାନ୍ୱିତ କରାଗଲା। ତା' ସାଙ୍ଗକୁ ଭାଲୁଘାଇ, ଭିତିର ବାଡ଼ିଗୁବା ଓ ପୁରିଆ ସାହି ଭଳି ନୂତନ ଯୋଜନାର କାମ ଆରମ୍ଭ ହେଲା।

ମରୁଡ଼ି ଓ ଟ୍ରାଇବାଲ ଗ୍ରାଣ୍ଟର ସଦବ୍ୟବହାର କରି ଫୁଲବାଣୀ ଜିଲ୍ଲାର କାକଲବାଙ୍କି, କଳାନାଳୁ, କାଙ୍ଗଣି ନାଳ, ବନାଙ୍ଗିଆ, ନନ୍ଦିନୀନାଳ, ଗୋରୁବନ୍ଧ, ଲକ୍ଷ୍ମୀପୁର, ଲଇଙ୍ଗା ଆଦି କ୍ଷୁଦ୍ରଜଳସେଚନ ଯୋଜନାର କାର୍ଯ୍ୟ ସମ୍ପୂର୍ଣ୍ଣ କରାଗଲା। କଳାହାଣ୍ଡି ଜିଲ୍ଲାକୁ ରାଜୀବ ଗାନ୍ଧିଙ୍କ ଆଗମନ ପରେ ଶୁଷ୍କାଞ୍ଚଳ ଯୋଜନା ନାମରେ ପ୍ରଚୁର ଅର୍ଥ ଆସୁଥାଏ। ତାର ସଦୁପଯୋଗ ଦ୍ୱାରା ପିପନନାମା, ପ୍ରତାପପୁର, ବେହେରା, ଧୂଜାହଟା, କରଞ୍ଜନୋଟ, ଲୁଟକନ ପଡ଼ା, ରାଜାମୁଣ୍ଡା ଓ ତୁମେରପଡ଼ାର କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ଫଳରେ କଳାହାଣ୍ଡି ଜିଲ୍ଲାର ଇରିଗେସନ୍ ଆୟକଟରେ ୩୨୦୦ ଏକର ଅଧିକ ଯୋଗ ହେଲା। ଏହି ଯୋଜନା ଗୁଡ଼ିକ ମଧ୍ୟରେ ବେହେରା ଓ ପ୍ରତାପପୁର ଯୋଜନା ଦୁଇଟି ସମସ୍ୟା ବହୁଳ। ବେହେରା ଯୋଜନାର ଡ଼େମ୍ ଗୋଟିଏ ଟୀଖ ଗର୍ଜରେ। ତଳ ଲମ୍ୱ ୧୦୦ ଫୁଟ ଉପର ଲମ୍ୱ ୨୩୦ ଫୁଟ ଓ ଉଚ୍ଚତା

୮୦ ଫୁଟ୍। ଏହା ଗୋଟିଏ ମେସିନାରି ଡ୍ରେମ୍। ଉପରକୁ ପଥର ଓ ବାଲି ନେବା ପାଇଁ ସ୍ତର ସ୍ତର ରାସ୍ତା ଆବଶ୍ୟକ । ଡ୍ରେନେଜ୍ ଗେଲେରୀ ଓ ତା ତଳେ ଗ୍ରାଇଟିଂ ଆଦି ବହୁ ସମସ୍ୟା। ପରବର୍ତ୍ତୀ କାଳରେ ମୁଁ ଡିଜାଇନର ମୁଖ୍ୟଯନ୍ତ୍ରୀ ଥିବା ସମୟରେ ଡ୍ରେମ ସେଫଟି ଯୋଜନାରେ ଏହାର ଅନେକ ସମସ୍ୟା ସମାଧାନ କଲି। ପ୍ରତାପପୁରର ସମସ୍ୟା ହୋଇଛି କଟ୍ ଅଫ୍ ଟ୍ରେଞ୍ଚ୍। ଏହା ୩୦ ଫୁଟ୍ ଗଭୀରକୁ ଖୋଳିଲେ ମଧ୍ୟ ମାଟି ନାହିଁ। ଖାଲି ମାଙ୍କଡ଼ା। ତାକୁ ଆଂଶିକ ଗ୍ରାଉଟିଂ କରି ତାର ସମାଧାନ କରାଯାଇଥିଲା। କୋରାପୁଟରେ ଚାଲିଥିବା ଯୋଜନା ଗୁଡ଼ିକ ସମ୍ପୂର୍ଣ୍ଣ କରିବାକୁ ପ୍ଲାନ୍ ସ୍କିମ୍ ସହିତ ବିଭିନ୍ନ ଆଦିବାସୀ ଉନ୍ନୟନ ଯୋଜନାର ସୁବିଧା ମିଳିଲା। ଯେଉଁ ଯୋଜନା ଗୁଡ଼ିକ ସମ୍ପୂର୍ଣ୍ଣ କରାଗଲା ତା ମଧ୍ୟରେ ଉପର ପାଣିମୁଣ୍ଡ, ବଡ଼ଯୋର କୁଳି, ଲୋଅର ବାଦଗଦା, ପୁଟା ଲକ୍ଷ୍ମୀପୁର ବଡ଼ନାଳ ପଡ଼ିଆ ଆଦି ଯୋଜନାର କାମ ସମ୍ପୂର୍ଣ୍ଣ ହୋଇ ଜଳସେଚନ ଆୟକଟ ୩୫ ହଜାର ଏକରକୁ ବୃଦ୍ଧି ପାଇଲା।

ବାଲାଙ୍ଗିର ଜିଲ୍ଲାର ପ୍ଲାନି ଭଳି ୪ଟି ଯାକ ଜିଲାରେ ଥିବା ଆରଇଓ ରାସ୍ତା ଗୁଡ଼ିକର ଉନ୍ନତି ପାଇଁ ପୋଲ ଓ ମେଟାଲିଂ ଯୋଜନା କରାଗଲା। Grain for work ମରୁଡ଼ି ଗ୍ରାଣ୍ଟ ଓ ବିଭିନ୍ନ ଆଦିବାସୀ ଗ୍ରେଣ୍ଟ ମିଶାଇ ସଡ଼କ ଗୁଡ଼ିକର ଉନ୍ନତି ପାଇଁ ଯୋଜନା ପ୍ରସ୍ତୁତି ସରିବା ପରେ ରାଜନୈତିକ ଅବସ୍ଥାର ପରିବର୍ତ୍ତନ ଫଳରେ ଆଇ.ଇ.ଓ.ର ସବୁ ସଡ଼କ ଓ କୋଠାବାଡ଼ି ପି.ଡ଼ବ୍ଲୁ.ଡ଼ି.କୁ ୧୯୮୦ ମସିହା ମାର୍ଚ୍ଚ ମାସରେ ହସ୍ତାନ୍ତର ହୋଇଗଲା।

ଗଞ୍ଜାମର ମରୁଡ଼ି ଗ୍ରେଣ୍ଟ Food for work ଓ ପୁନର୍ଗୁଦ୍ଧାର ଗ୍ରେଣ୍ଟ ଜରିଆରେ ତିନିକୋଟି ଟଙ୍କା ବ୍ୟୟ ଅଟକଳରେ ୧୦୦ଟି ପୁରାତନ କ୍ଷୁଦ୍ର ଜଳସେଚନ ଯୋଜନାର କାମକୁ ଆଧୁନିକରଣ ଯୋଜନାରେ ଅନ୍ତର୍ଭୁକ୍ତ କରି ଚାଷୀମାନଙ୍କ ମୁହଁରେ ହସ ଫୁଟାଇବା ସମ୍ଭବ ହେଲା। ଏହାଦ୍ୱାରା ଜଳସେଚିତ ଆୟକଟ ୩୦,୦୦୦ ଏକର ବଢ଼ିଲା।

କୋରାପୁଟ୍ ଜିଲ୍ଲାରେ କ୍ଷୁଦ୍ର ଜଳସେଚନ ଏକ ସମସ୍ୟାବହୁଳ ଯୋଜନା। ବଡ଼ଯୋରା (ନାଗାବଳୀ ନଦୀର ଏକ ଉପନଦୀ) କେନାଲ ପାଇଁ କୋଟିଏ ଏକ୍ୟୁଡକ୍ଟ ଆବଶ୍ୟକ। ଏହାର ଉଚ୍ଚତା ୪୪ ଫୁଟ୍। ଅବଶ୍ୟ ନାଳର ତଳସ୍ତରରେ ପଥର ଚଟାଣ

ରହିଛି। କିନ୍ତୁ ଆଇ.ଇ.ଓ. ସଂସ୍ଥା ଦ୍ୱାରା ଏଭଳି ଏକ୍ୟୁଡ଼କ୍ଟ ତିଆରି ଥିଲା ଏକ ଚେଲେଞ୍ଜ। ମୁଁ ଆସିଷ୍ଟାଣ୍ଟ ଇଞ୍ଜିନିୟର ଶ୍ୟାମସୁନ୍ଦର ସାହୁଙ୍କୁ ସାହସ ଦେଇ ଏହା କରାଇ ଦେଲି। ଏହାଦ୍ୱାରା କେନାଲ ଖୋଳାଯାଇ ଜଳସେଚିତ ହୋଇପାରୁ ନଥିବା ୪୦୦୦ ଏକର ଜମିକୁ ଜଳସେଚନ ସମ୍ଭବ ହେଲା।

## ତତ୍‌କାଳୀନ ରାଜନୈତିକ ଅବସ୍ଥା

୧୯୭୯ କେନ୍ଦ୍ରରେ ପ୍ରତିଷ୍ଠିତ ସରକାର ଭାଙ୍ଗିଯିବା ଫଳରେ ଯେଉଁ ନିର୍ବାଚନ ହେଲା ସେଥିରେ ପୁର୍ନବାର ଇନ୍ଦିରାଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସ ପାର୍ଟି (ଇ) କେନ୍ଦ୍ରରେ ସରକାର ଗଠନ କଲେ। ୧୯୭୭ ମସିହାରେ ଯେଭଳି ଜନତା ସରକାର ଷ୍ଟେଟ୍ ଆସେମ୍ଳିମାନଙ୍କୁ ଭାଙ୍ଗି ଦେଇ ପାନି ନିର୍ବାଚନ କରିଥିଲେ, ସେହି ଢାଞ୍ଚାରେ ପ୍ରାଦେଶିକ ସରକାରକୁ ଭାଙ୍ଗି ଦିଆଗଲା। ପୂର୍ବତନ ଜନସଂଘ ଦଳ ଜନତା ଦଳ ଠାରୁ ଅଲଗା ହୋଇଯାଇଥିଲା। ଲୋକଦଳ ମଧ୍ୟ ବିଭାଜିତ ହୋଇ ଉତ୍ତରପ୍ରଦେଶରେ ସମାଜବାଦୀ ପାର୍ଟି ଓ ଲୋକଦଳ ଗଠନ ହେଲା। ପରବର୍ତ୍ତୀ କାଳରେ ଜନତା ପାର୍ଟି ଓ ଲୋକଦଳ ମିଶି ଜନତା ଦଳ ସୃଷ୍ଟି ହେଲା। ଓଡ଼ିଶା ଆସେମ୍ଳି ନିର୍ବାଚନ୍‌ରେ ଲୋକଦଳ ଶୋଚନୀୟ ଭାବେ ପରାଜିତ ହେଲା। କିନ୍ତୁ ବିହାରରେ ଜନତାଦଳ ଲାଲୁ ପ୍ରସାଦ ଯାଦବଙ୍କ ନେତୃତ୍ୱରେ ସରକାର ଗଠନ କରିବାକୁ ସକ୍ଷମ ହେଲା। ଓଡ଼ିଶାର ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ ହେଲା। ନିରଞ୍ଜନ ପଟ୍ଟନାୟକ ଇରିଗେସନ ବିଭାଗର ଦାୟିତ୍ୱରେ ରହିଲେ। ସେ ଜଣେ ସାହସୀ କର୍ମଠ ଯୁବକ ମନ୍ତ୍ରୀ ହୋଇଥିବାରୁ ତାଙ୍କ ନେତୃତ୍ୱରେ ଓଡ଼ିଶାର ଜଳସେଚନ ଯୋଜନାଗୁଡ଼ିକ ଆଗେଇଲା। ସେ ତାଙ୍କର ଗସ୍ତକାଳରେ କ୍ଷୁଦ୍ର ଜଳସେଚନ ଯୋଜନାଗୁଡ଼ିକ ସମୀକ୍ଷାକରି ବୃନ୍ଦାବନ ବାବୁ ଆରମ୍ଭ କରିଥିବା ଯୋଜନାଗୁଡ଼ିକୁ ପସନ୍ଦ କଲେ ଓ ଗଞ୍ଜାମର ଋଷୀଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ଏହା ଏକ ଦୃଢ଼ ପଦକ୍ଷେପ ବୋଲି ଅନୁଭବ କରି ୧୦୦ଟି ଯାକ ରିନୋଭେସନ୍ ପ୍ରୋଜେକ୍ଟ ପାଇଁ ଅର୍ଥନୈତିକ ବ୍ୟବସ୍ଥା କରିବାକୁ ମୁଖ୍ୟମନ୍ତ୍ରୀଙ୍କୁ ଉପଦେଶ ଦେଲେ।

କିନ୍ତୁ ୧୯୮୦ ମସିହାର ପ୍ରଥମ ମନ୍ତ୍ରୀମଣ୍ଡଳ ବୈଠକରେ ଆଇଇଓ ସଂସ୍ଥାକୁ ଦୁଇଭାଗ କରି କ୍ଷୁଦ୍ରଜଳସେଚନ ଯୋଜନାଗୁଡ଼ିକୁ ଜଳସେଚନ ବିଭାଗ ସହିତ ଓ

ଆରଇଓ ରାସ୍ତାଗୁଡ଼ିକ ପିଡ଼ବ୍ଲୁଡ଼ି ସହିତ ମିଶାଇ ଦେବାକୁ ନିଷ୍ପତ୍ତି ନିଆଗଲା। ଫଳରେ ଆରଇଓ ସଂସ୍ଥା ତାର ୭୨୦୦ କି.ମି ରାସ୍ତା ଅର୍ଥାତ୍ ଏକତୃତୀୟାଂଶ କାମ ହରାଇଲା। ଆର.ଇ.ଓ କର୍ମଚାରୀଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟି ହେବାରୁ ୫୫ ଦିନ ଧରି ଆନ୍ଦୋଳନ ଚାଲିଲା। ଆର.ଇ.ଓ. ସଂସ୍ଥାର ସବୁ ଇଞ୍ଜିନିୟର, ଓଭରସିୟର, ଷ୍ଟାଫ୍ ଓ ୱାର୍କଚାର୍ଜ କର୍ମଚାରୀମାନେ ଆନ୍ଦୋଳନରେ ଯୋଗଦେବା ଫଳରେ ସମସ୍ତ କାମ ବନ୍ଦ ହୋଇଗଲା। ପିଡ଼ବ୍ଲୁଡ଼ିର ଇଞ୍ଜିନିୟରମାନଙ୍କୁ ଆରଇଓ ସଂସ୍ଥାରୁ ରିଲିଭ୍ କରିଦିଆଗଲା। ଆଗରୁ ଇରିଗେସନ୍‌ରୁ ଆସିଥିବା ଏସିଷ୍ଟାଣ୍ଟ ଇଞ୍ଜିନିୟର ଓ ଓଭରସିଅର ତାଙ୍କ ଡିପାର୍ଟମେଣ୍ଟକୁ ଫେରିଯାଉଥିଲେ। କେବଳ ରହିଲେ ଅଧିକ୍ଷଣ ଯନ୍ତ୍ରୀ ଓ ନିର୍ବାହୀଯନ୍ତ୍ରୀ। ଡ୍ରାଇଭରମାନେ ଆନ୍ଦୋଳନ କରିଥିବାରୁ ନିଜେ ଗାଡ଼ି ଧରି କାମ ତଦାରଖ କରିବାକୁ ପଡ଼ିଲା। ବର୍ଷାଋତୁ ଆସିଗଲା। ଗଞ୍ଜାମରେ ଥିବା ୧୫୦୦ କ୍ଷୁଦ୍ର ଜଳସେଚନ ଯୋଜନାକୁ ପାଣି ଯୋଗାଇବାକୁ ପଡ଼ିବ। ପୁଣି ନୂତନ ଭାବେ ନିର୍ମିତ କେତେକ ଯୋଜନାକୁ ରକ୍ଷା କରିବାକୁ ପଡ଼ିବ। ଏଥିରେ ସହାୟକ ହେଲା ମୋର ଲୋକସମ୍ପର୍କ। ଜୁଲାଇ ଓ ଅଗଷ୍ଟ ମାସରେ ବିନା ଆସିଷ୍ଟାଣ୍ଟ ଇଞ୍ଜିନିୟର, ଓଭରସିଅର ଓ ୱାର୍କଚାର୍ଜ କର୍ମଚାରୀଙ୍କ ସହାୟତରେ ଗାଁ ଗାଁ ବୁଲି ଓ ସ୍ଥଳବିଶେଷରେ ଟ୍ରେନ୍ ବସ୍‌ରେ ଯାଇ ୪ଟି ଜିଲାର ଜଳସେଚନ କାର୍ଯ୍ୟ ଯେଉଁଳି ପରିଚାଳନା କଲି ତା ଦେଖି ମୋ ପ୍ରତି ସଦା ବିମୁଖ ଜଳସେଚନ ବିଭାଗର ମୁଖ୍ୟଯନ୍ତ୍ରୀ ସୁରେଶ ବାବୁ ମୋତେ ପ୍ରଂଶସା କରିବାକୁ ଭୁଲିଲେନି। ସେ ମୋର ବନ୍ଧୁ ଅଜିତ .ରାୟଙ୍କ ଜରିଆରେ ଖବର ପଠାଇଲେ ଭାସ୍କର ଭଳି ଜଣେ ଡାଇନାମିକ ଇଞ୍ଜିନିୟର ଆରଇଓ ସଂସ୍ଥାରେ ରହି ତାର କାର୍ଯ୍ୟଦକ୍ଷତା ନଷ୍ଟ କରୁଛି। ତାକୁ ବୁଝାଅ ମୁଁ ତାକୁ ହରଭାଙ୍ଗି ଓ ବଡ଼ନାଳ ଯୋଜନାର ଚିଫ୍ କନଷ୍ଟ୍ରକସନ୍ ଇଞ୍ଜିନିୟର କରିଦେବି। ସେତେବେଳକୁ ସେ ରିଟାୟର୍ କରିବାକୁ ଆଉ ମାତ୍ର ୨ ବର୍ଷ ଥାଏ। ସେ ଖବର ପଠାଇଥିଲେ ମୁଁ ହରଭଙ୍ଗି ଓ ବଡ଼ନାଳ ପ୍ରୋଜେକ୍ଟର ଅଗ୍ରଗତି ମୋର ଚାକିରୀ କାଳ ମଧ୍ୟରେ ଦେଖିବାକୁ ଚାହେଁ। ତାକୁ କୁହ ସେ ରାଜି ହୋଇଯାଉ। ମୁଁ କହିଲି ନଃ ଗଙ୍ଗଦତ୍ତ ପୁନଃରପି କୂପମ୍। ଯଦିଓ କ୍ଷୁଦ୍ରଜଳ ସେଚନ ବିଭାଗ ଜଳସେଚନ ବିଭାଗ ସହିତ ମିଶିଗଲା ଓ ସୁରେଶବାବୁ ସମୁଦାୟ ଜଳସେଚନ ବିଭାଗର ମୁଖ୍ୟ ହୋଇରହିଲେ, ମୋର

ଦକ୍ଷିଣାଞ୍ଚଳରେ ଲୋକପ୍ରିୟତା ଓ ଗଞ୍ଜାମ ତଥା କୋରାପୁଟ, ଫୁଲବାଣୀ ଓ କଳାହାଣ୍ଡି ଏମ.ଏଲ.ଏ.ଙ୍କ ସହ ସମ୍ପର୍କ ଦେଖି ମୋତେ ଆଉ ବଦଳି କରିବାକୁ ଚେଷ୍ଟା କରି ନାହାନ୍ତି ।

୧୯୮୦ ଅଗଷ୍ଟ ମାସ ବେଳକୁ ଆରଇଓ ଷ୍ଟାଫ୍‌ଙ୍କର ଷ୍ଟ୍ରାଇକ୍ ଭାଙ୍ଗିଗଲା । ଆରଇଓରେ ଥିବା ୬ଟି ଡିଭିଜନ ପିଡ଼ବ୍ଲୁଡ଼ିକୁ ଟ୍ରାନ୍ସଫର ହୋଇଗଲା । ଆରଇଓର ନାମ କ୍ଷୁଦ୍ର ଜଳସେଚନ ସଂସ୍ଥା ହୋଇଗଲା । ଏହା ଅଧୀନରେ ୧୩ଟି ଫିଲ୍ଡ ଡିଭିଜନ ଓ ୩ଟି ଇନଭେଷ୍ଟିଗେସନ୍ ଡିଭିଜନ ରହିଲା । ବରହମପୁର ଓ ସମ୍ବଲପୁର ଅଧିକ୍ଷଣଯନ୍ତ୍ରୀ କ୍ଷୁଦ୍ର ଜଳସେଚନ ବିଭାଗରେ ରହିଲେ । ଭୁବନେଶ୍ୱର ଅଧିକ୍ଷଣ ଯନ୍ତ୍ରୀଙ୍କର ପିଡ଼ବ୍ଲୁଡ଼ିକୁ ବଦଳି ହୋଇଗଲା । ହାଇଡ୍ରୋଲେଜି ସର୍କଲ ଅଧୀନରେ ୩ଟି ହାଇଡ୍ରୋଲେଜି ଡିଭିଜନ ରହିଲେ । କ୍ଷୁଦ୍ର ଜଳସେଚନ ଯୋଜନାର ମୁଖ୍ୟମନ୍ତ୍ରୀଙ୍କର ସବୁ କ୍ଷମତା ରହିଲେ ମଧ୍ୟ ସେ ଇରିଗେସନ୍ ଚିଫ୍‌ଙ୍କ ଅଧୀନରେ ରହିଲେ । ବାଲେଶ୍ୱର ଓ ମୟୂରଭଞ୍ଜ ଡିଭିଜନ ବାରିପଦା ଇରିଗେସନ୍ ଅଧିକ୍ଷଣଯନ୍ତ୍ରୀଙ୍କର ଅଧିନରେ ରହିଲା । ଖୋର୍ଦ୍ଧା ଓ କଟକର ଦୁଇଟି ମାଇନର ଇରିଗେସନ୍ ଡିଭିଜନ ଡ଼େଲ୍ଟା ଅଧିକ୍ଷଣ ଯନ୍ତ୍ରୀଙ୍କ ଅଧିନରେ ରହିଲା । ଅବଶ୍ୟ ପରବର୍ତ୍ତୀ କାଳରେ ହୋଇଡ୍ରୋଲଜି ଅଧିକ୍ଷଣଯନ୍ତ୍ରୀଙ୍କୁ କେନ୍ଦ୍ରାଞ୍ଚଳ ମାଇନର ଅଧିକ୍ଷଣ ଯନ୍ତ୍ରୀ କରାଯାଇ ତାଙ୍କ ଅଧିନରେ ମୟୂରଭଞ୍ଜ, ବାଲେଶ୍ୱର, କଟକ ଓ ଖୋର୍ଦ୍ଧାର କ୍ଷୁଦ୍ର ଜଳସେଚନ ଡିଭିଜନକୁ ରଖାଗଲା । କିନ୍ତୁ ଏହି ସମସ୍ୟା ସମାଧାନ ପାଇଁ ପ୍ରାୟ ୭ ବର୍ଷ ସମୟ ଲାଗିଗଲା । ଗଞ୍ଜାମ ଓ କୋରାପୁଟରୁ ୨ଟି ଡିଭିଜନ ପିଡ଼ବ୍ଲୁଡ଼ିକୁ ଚାଲିଯିବା ଫଳରେ ପ୍ରଥମେ ସବ୍‌ଡିଭିଜନ ଓ ସେକ୍ସସନ୍‌ଗୁଡ଼ିକର ପୁନଃବଣ୍ଟନ କରାଗଲା । ପରର୍ବତୀ କାଳରେ ଗଞ୍ଜାମ ଓ କୋରାପୁଟରେ ଦୁଇଟି ନୂତନ ଡିଭିଜନ ଖୋଲାଗଲା । ସେତେବେଳେ ଗଞ୍ଜାମରେ ମନୋରଞ୍ଜନ ମହାନ୍ତି ନିର୍ବାହୀଯନ୍ତ୍ରୀ ଥିଲେ । ସେ ତାଙ୍କର ନିଜ ଡ଼ିପାର୍ଟମେଣ୍ଟ ପିଡ଼ବ୍ଲୁଡ଼ିକୁ ଫେରିଯିବାରୁ ତାଙ୍କ ସ୍ଥାନରେ ଆସିଲେ ପ୍ରଦୀପ ମହାନ୍ତି, ଫୁଲବାଣୀରେ ନିର୍ବାହୀଯନ୍ତ୍ରୀ ଥିଲେ ସତ୍ୟାନନ୍ଦ ମହାନ୍ତି । ରାୟଗଡ଼ାରେ ଥିଲେ ପର୍ଶୁରାମ ପାଢ଼ୀ ଓ ପରେ ଆସିଲେ ସୋଲୋମନ ରାଉତ । ଉଭୟ କର୍ମଠ । କଳାହାଣ୍ଡିର ନିର୍ବାହୀଯନ୍ତ୍ରୀ ଥିଲେ ଡି.ପି. ଶର୍ମା । ସେ ମଧ୍ୟ ଉତ୍ସାହୀ ଓ କର୍ମଠ ଇଞ୍ଜିନିୟର ।

ବରହମପୁର ସର୍କଲ ଅଧିନରେ ଯେଉଁ ଆସିଷ୍ଟାଣ୍ଟ ଇଞ୍ଜିନିୟରମାନେ ମୋତେ ବିଶେଷଭାବରେ ପ୍ରଭାବିତ କରିଥିଲେ ତାଙ୍କ ଭିତରେ ଶଙ୍କର ନାରାୟଣ ସୁବୁଦ୍ଧି ଅଗ୍ରଗଣ୍ୟ। ସେ ଜଣେ କର୍ମଠ ଇଞ୍ଜିନିୟର। ତାଙ୍କୁ ବାଟ ବତାଇ ଦେଲେ ସେ ଦ୍ରୁତଗତିରେ ମାଡ଼ିଯିବେ। ତାଙ୍କର ଚେଷ୍ଟା ଫଳରେ ପାରଳାଖେମୁଣ୍ଡି ଅଞ୍ଚଳରେ କ୍ଷୁଦ୍ରଜଳସେଚନ କ୍ଷେତ୍ରରେ ଏକ ବିପ୍ଳବ ସୃଷ୍ଟି ହୋଇଥିଲା। ପାରଳାଖେମୁଣ୍ଡିର ମହାରାଜା ନିର୍ମାଣ କରିଥିବା ଗଜପତି ସାଗର, ରାମସାଗର, ସୀତାସାଗର, କୃଷ୍ଣସାଗର, କୃଷ୍ଣ ଚନ୍ଦ୍ର ସାଗର, ନୀଳାଗେଡ଼ା, ବୈଜାଲଗେଡ଼ା ଆଦି ଯୋଜନାର ପୁନରୁଦ୍ଧାର ତାଙ୍କ ଭଳି ଜଣେ କର୍ମଠ ଇଞ୍ଜିନିୟରଙ୍କ ଯୋଗୁଁ ସମ୍ଭବ ହୋଇଥିଲା। ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ ଜଣେ ଉଦ୍‌ଯୋଗୀ ଯନ୍ତ୍ରୀ। ତାଙ୍କ ଚେଷ୍ଟାରେ ଭାଲୁଘାଇ, ବଡ଼ଦେବ ସାଗର ନନ୍ଦିନୀ ନାଳ ଆଦି ଯୋଜନା ସମ୍ଭବ ହୋଇଥିଲା। ସାନ ମହେନ୍ଦ୍ର ତନୟା ମହେନ୍ଦ୍ରଗିରିରୁ ବାହାରି ଆନ୍ଧ୍ର ମଧ୍ୟରେ ପ୍ରବେଶ କରିଛି। ତାର ପାଣିକୁ ଆଣି ପାତ୍ରପୁର ବ୍ଲକ୍‌ରେ ଥିବା ନାରାୟଣ ସାଗର ଓ ଅନ୍ୟଛୋଟ କଟାରେ ଭର୍ତ୍ତିକର ବାହୁଦା କେନାଲ ପର୍ଯ୍ୟନ୍ତ ସମ୍ପ୍ରସାରଣ ପାଇଁ ସେ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି। ସେହିପରି ଉମା ଚୌଧୁରୀ ବିରେନ ପାତ୍ର ଗଞ୍ଜାମର ୧୦୦ଟି ପୁନରୁଦ୍ଧାର ଯୋଜନାକୁ କାର୍ଯ୍ୟକାରି କରିବା ପାଇଁ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି। ଗୁଣୁପୁରର ପୁଟାସିଂ ଯୋଜନା ପାଇଁ ହରିଶଚନ୍ଦ୍ର ପରିଛାଙ୍କ ଦାନ ଅତୁଳନୀୟ। ରାୟଗଡରେ କାମ କରୁଥିବା ଆସିଷ୍ଟାଣ୍ଟ ଇଞ୍ଜିନିୟର ଶ୍ୟାମସୁନ୍ଦର ସାହୁ ଜଣେ ଦକ୍ଷ ଇଞ୍ଜିନିୟର। ରାୟଗଡ଼ାର ଯୋଜନାଗୁଡ଼ିକୁ ତ୍ୱରାନ୍ୱିତ ପାଇଁ ଶ୍ୟାମ ସୁନ୍ଦର ସାହୁଙ୍କ ଅକ୍ଳାନ୍ତ ପରିଶ୍ରମ ପାଇଁ ସେ ରାୟଗଡ଼ାବାସୀଙ୍କ ପାଖରେ ସ୍ମରଣୀୟ ହୋଇରହିବେ। ଜେ.ଏସ.ଏନ. ମୂର୍ତ୍ତିଙ୍କ ଭଳି ପରିଶ୍ରମୀ ଓ ଶିଖିବାର ଅଦମ୍ୟ ଇଚ୍ଛା ଥିବା ଇଞ୍ଜିନିୟର ବିରଳ। ତାଙ୍କର ଚେଷ୍ଟା ଫଳରେ ମୁନିଗୁଡ଼ା ଓ ରାୟଗଡ଼ା ଅଞ୍ଚଳରେ କ୍ଷୁଦ୍ରଜଳସେଚନ କ୍ଷେତ୍ରରେ ଏକ ବିପ୍ଳବ ସୃଷ୍ଟି ହୋଇଥିଲା। ତାଙ୍କୁ ବାଟ ବତାଇ ଦେଲେ ସେ ଆଗକୁ ମାଡ଼ିଯିବେ। ମୁନିଗୁଡ଼ା ଅଞ୍ଚଳର ଗୋଟିଏ ମାଇନର ଇରିଗେସନ୍‌ର କେନାଲକୁ ପାହାଡ଼ ସ୍ଲୋପ୍‌ରେ ନେବାକୁ ପଡ଼ିଲା। ପାହାଡ଼ଟି ତୀଖ। କେନାଲଟି ବର୍ଷକରେ ଧୋଇଯିବ। କେନାଲକୁ ପାହାଡ଼ ସ୍ଲୋପରେ ହ୍ୟୁମ୍ ପାଇପ୍ ସାହାଯ୍ୟରେ ନେବାକୁ ହେବ, ପୁଣି ହ୍ୟୁମପାଇପ୍ ଗୁଡ଼ିକ ସ୍ଲିପ୍ ନ କରିବା

ପାଇଁ ଏଙ୍କର ବ୍ଲକର ଆବଶ୍ୟକତା ରହିଛି। ନିଜେ ଠିଆ ହୋଇ ଜଣେ ଇଞ୍ଜିନିୟର କର୍ତ୍ତବ୍ୟ ଯେଭଳି ସମାଧାନ କଲେ ତାହା ସାଧାରଣ ଇଞ୍ଜିନିୟରଙ୍କ ପାଖରେ ବିରଳ। ସେ ସବୁଦିନ ପାଇଁ ଜଣେ ବନ୍ଧୁ ହୋଇ ରହିଯାଇଛନ୍ତି। ଏହିଭଳି ୩ ବର୍ଷ କାଳ ଏକ କର୍ମବହୁଳ ଜୀବନ ବିତାଇବା ପରେ ୧୯୮୨ ମସିହାରେ ବଦଳି ହେଲା। ସମ୍ବଲପୁର କ୍ଷୁଦ୍ରଜଳସେଚନ ବିଭାଗର ଅଧିକ୍ଷଣ ଯନ୍ତ୍ରୀ ଭାବେ ପାରିବାରିକ ଜୀବନରେ ବରହମପୁରରେ ରହଣି ଏକ ସ୍ୱଚ୍ଛନ୍ଦମୟ ସମୟ। ଉମା ୧୯୭୪-୭୫ରେ ଏମ.ଏ. ପାଶ୍ କଲା। ସେତେବେଳକୁ ତାର ସରକାରୀ ଚାକିରୀ କରିବା ବୟସ ଅତିକ୍ରାନ୍ତ ହୋଇଯାଇଥିଲା। କିନ୍ତୁ ଆହରଣ କରିଥିବା ଜ୍ଞାନର ସଦ୍‌ବ୍ୟବହାର ପାଇଁ ସେ ସଦାତତ୍ପର। ବଲାଙ୍ଗିରରେ ୨ ବର୍ଷ ରହଣିକାଳରେ ସେ କୌଣସି ସୁଯୋଗ ପାଇ ନଥିଲା। ସେ ଦେଖିଲା ବରହମପୁରରେ ସେଥିପାଇଁ ପ୍ରଶସ୍ତ କ୍ଷେତ୍ର ରହିଛି। ବୃନ୍ଦାବନ ବାବୁ ଜଣେ ଶିକ୍ଷାପ୍ରେମୀ। ତାଙ୍କ ଚେଷ୍ଟାରେ ସଞ୍ଜୟ ମେମୋରିଆଲ୍ କଲେଜ ପ୍ରତିଷ୍ଠା ହୋଇ ଡିପ୍ଲୋମା ଓ ଏ.ଏମ.ଆଇ.ଇ ଶିକ୍ଷାର ପ୍ରସାର ହେଲା। ଏହି ସୁଯୋଗର ବରହମପୁରରେ ଗୋଟିଏ ବେସରକାରୀ ମହିଳା ମହାବିଦ୍ୟାଳୟ ପ୍ରତିଷ୍ଠା ପାଇଁ ବିନାୟକ ମହାପାତ୍ର ବୃନ୍ଦାବନବାବୁଙ୍କ ପୁଅ ଉଦୟ ଓ ତାଙ୍କର କେତେକ ସହକର୍ମୀ ଆଗଭର ହେଲେ। ଉମାକୁ ତାର ସେକ୍ରେଟେରୀ କମ ପ୍ରିନ୍ସିପାଲ କରାଗଲା। ବରହମପୁରର ଅଧିଷ୍ଠାତ୍ରୀ ଦେବୀଙ୍କ ନାମରେ କଲେଜର ନାମ ରହିଲା ମହାମାୟୀ ମହିଳା ମହାବିଦ୍ୟାଳୟ। ନିଜର ଷ୍ଟାଫ୍‌ଙ୍କ ସହାୟତାରେ ବରହମପୁର ଟାଉନ୍‌ରେ ବୁଲି ବୁଲି ଦୋକାନୀ ଓ ସର୍ବସାଧାରଣଙ୍କ ଠାରୁ ଚାନ୍ଦା ସଂଗ୍ରହ କରି ଯେ ଯେଉଁ ଅନୁଷ୍ଠାନର ଶୁଭାରମ୍ଭ କରିଥିଲା, ତାହା ପୂର୍ଣ୍ଣାଙ୍ଗ ରୂପଧାରଣ କରି ଆଜି ବରହମପୁର ସହରର ଏକ ପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନ। ସେଥିପାଇଁ ସେଥିରୁ ଉତ୍ତୀର୍ଣ୍ଣ ହେଉଥିବା ଛାତ୍ରୀମାନଙ୍କ ପାଖରେ ସେ ଚିରନମସ୍ୟା।

କାର୍ଯ୍ୟବ୍ୟସ୍ତତା ମଧ୍ୟରେ ପିଲାମାନଙ୍କୁ ଭାରତର ବିଭିନ୍ନ ସ୍ଥାନକୁ ବୁଲାଇ ଦେଖାଇବାର ଅବହେଳା କରି ନଥିଲି। ୧୯୮୦ ମସିହା ଦୁର୍ଗାପୂଜା ଛୁଟିରେ ମୋର ବନ୍ଧୁ ଅଜିତ ରାୟଙ୍କ ପରିବାର ଓ ଆମ ପରିବାର ବୁଲିଯାଇଥିଲୁ କେରଳ ଓ ତାମିଲନାଡୁ।

ପ୍ରଥମେ ଆମେ କୋଏମ୍ବାଟୁରେ ଓହ୍ଲାଇ ଗଲୁ ଉତକାମଣ୍ଡ। ଏହା ଦକ୍ଷିଣ ଭାରତରେ ଏକ ପ୍ରସିଦ୍ଧ ଗ୍ରୀଷ୍ମନିବାସ। ଉଚ୍ଚତା ସମୁଦ୍ର ପତ୍ତନରୁ ୭୦୦୦ ଫୁଟ। ମେନ୍ ଲାଇନ୍‌ରୁ ଉତକାମଣ୍ଡୁକୁ ଗୋଟିଏ ଛୋଟ ନେରୋଗେଜ ରେଳ ଲାଇନ୍ ରହିଛି। ସେହି ଅଙ୍କାବଙ୍କା ହୋଇ ରାସ୍ତାର ରେଳଯାତ୍ରା ପିଲାମାନଙ୍କ ପାଇଁ ଅତ୍ୟନ୍ତ ଆମୋଦଦାୟକ। ତାମିଲନାଡୁ ସରକାର ସ୍ଥାନଟିକୁ ନାନା ଫଳ ପୁଷ୍ପ ଉଦ୍ୟାନରେ ପରିପୂର୍ଣ୍ଣ କରି ଏକ ଆଧୁନିକ ଟୁରିଷ୍ଟ ଏକ୍‌ଜିବିସନ୍ ସ୍ଥଳରେ କରି ପରିଣତ କରିଛନ୍ତି।

କେରଳ ମୋର କିଶୋର ବୟସର କର୍ମଭୂମି। ୪ ବର୍ଷ କାଳ ତ୍ରିଭାନ୍ଦ୍ରମରେ ଅଧ୍ୟୟନର କେତେକ ସ୍ମୃତି, ପୁନର୍ବାର ଜାଗରୁକ ହେଲା। ଦୀର୍ଘ ୨୭ ବର୍ଷ ପରେ ଭେଟିଲି ବନ୍ଧୁ ପଦ୍ମନାଭନ, ମୁରଲୀଧରନ ମହାଦେବନ, ଆପୁକୁଟ୍ ନାୟର, ଜୟଚନ୍ଦ୍ରନ, ଜୟ ଦେବନଙ୍କୁ। ବନ୍ଧୁ ମହାଦେବନ, ଆପୁକୁଟାଳ ନାୟର ଡିପାର୍ଟ୍‌ମେଣ୍ଟରେ ନିର୍ବାହୀଯନ୍ତ୍ରୀ। ଜୟଚନ୍ଦ୍ରନ ଆଇ.ଏ.ଏସ. ପାଇ କମିଶନର ଓ ଜୟଦେବନ କଲେଜର ପ୍ରିନ୍‌ସିପାଲ। ପଦ୍ମନାଭନ ଓ ମୁରଲୀଧରନ ଇଞ୍ଜିନିୟରିଂ କଲେଜର ଅଧ୍ୟାପକ। ଦୀର୍ଘଦିନ ପରେ ମିଳନ ଅତ୍ୟନ୍ତ ଆମୋଦଦାୟକ। ବିଶେଷ କରି ପୁରାତନ ବନ୍ଧୁଙ୍କର ପରିବାର ସହ ମୋର ପରିବାରର ମିଳନ ଅତ୍ୟନ୍ତ ପ୍ରାଣସ୍ପର୍ଶୀ। ତ୍ରିଭାନ୍ଦ୍ରମରୁ ଆମେ ଗଲୁ କନ୍ୟାକୁମାରୀ, ଆରବ ସାଗର ଓ ବଙ୍ଗୋପସାଗରର ମିଳନ ସ୍ଥଳରେ ନିର୍ମିତ ହୋଇଛି, କନ୍ୟାକୁମାରୀ ମନ୍ଦିର। ତା ଆଗରେ ଥିବା ପଥର ଉପରେ ଧ୍ୟାନ ମଗ୍ନ ହୋଇ ସ୍ୱାମୀ ବିବେକାନନ୍ଦ ଅଧ୍ୟାତ୍ମିକଜ୍ଞାନ ଆହରଣ କରିଥିଲେ। ସେହି ପଥର ଉପରେ ଅଧଘଣ୍ଟାଏ ବସିଗଲେ ଯେଉଁ ସ୍ୱର୍ଗୀୟ ଆନନ୍ଦ ମିଳେ ତାହା କର୍ମମୟ ଜଞ୍ଜାଳର ଚିତ୍ତବିନୋଦନ ପାଇଁ ଏକ ଅତ୍ୟାବଶ୍ୟକ ମୁହୂର୍ତ୍ତ। ତ୍ରିଭେନ୍ଦ୍ରମରୁ କୁଉଲନ ବାଟ ଦେଇ ଆମେ ଗଲୁ, ମଦୁରାଇ ମିନାକ୍ଷୀ ମନ୍ଦିର ଦର୍ଶନ କରିବାକୁ। ଚୋଳ ରାଜାଙ୍କର ଏହି ଅପୂର୍ବ କୀର୍ତ୍ତି ଓ ତାର ମୁଖଶାଳା ଅତ୍ୟନ୍ତ ମନୋରମ। ରାସ୍ତାରେ ପଡ଼ିଲା ଶାଙ୍କୋଟା ଘାଟ। ଏହି ଘାଟଦେଇ ପଶ୍ଚିମଘାଟ ପର୍ବତକୁ ଅତିକ୍ରମ କରିଛି ରେଳରାସ୍ତା। ୩ କି.ମି. ଦୀର୍ଘ ସୁଡ଼ଙ୍ଗ ଓ ଆହୁରି ଛୋଟ ବଡ଼ ୧୦ଟି ସୁଡ଼ଙ୍ଗ ମଧ୍ୟରେ ରେଳଗାଡ଼ିର ଯାତ୍ରା ମୋର ଛାତ୍ରାବସ୍ଥା କଥା ସ୍ମରଣ କରାଇ ଦେଉଥାଏ। ସତେ ଯେପରି ମନେ ହେଉଥାଏ ପଶ୍ଚିମଘାଟ ପର୍ବତ ମୋତେ

ସୂଚାଇ ଦେଉଛି ମୁଁ ଜାଣିଥିଲି ତୁମେ ମୋତେ ଭୁଲି ପାରିବନି। ତୁମେ ଆସିବ ଓ ମୋର ସୌନ୍ଦର୍ଯ୍ୟକୁ ଉପଭୋଗ କରିବ।

ମଦୁରାଇରୁ ଆମେ ଗଲୁ ରାମେଶ୍ୱରମ୍ ଯେଉଁଠାରେ ପ୍ରଭୁ ରାମଚନ୍ଦ୍ର ମହେଶ୍ୱରଙ୍କୁ ଆରାଧନା କରି ଲଙ୍କା ଯାତ୍ରା କରିଥିଲେ। ରାମେଶ୍ୱରଙ୍କ ମନ୍ଦିର ଚାରି ଧାମ ଓ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ମଧ୍ୟରେ ଅନ୍ୟତମ। ପ୍ରକୃତରେ ପାଳନକର୍ତ୍ତା ବିଷ୍ଣୁ ଓ ସଂହାରକର୍ତ୍ତା ମହାଦେବଙ୍କ ଏକ ଅପୂର୍ବ ମିଳନସ୍ଥଳ। ଏଠାରେ ଶେଷ ହୋଇଛି ପାଳନକର୍ତ୍ତାଙ୍କ ଶାନ୍ତ ମହୋଦଧି ବଙ୍ଗୋପସାଗର ଓ ଆରମ୍ଭ ହୋଇଛି ସଂହାରକର୍ତ୍ତାଙ୍କ ମହୋଦଧି ଆରବ ସାଗର। ଅନତି ଦୂରରେ ଅବସ୍ଥିତ ଧନୁଷ୍କୋଟି ଯେଉଁ ସ୍ଥାନରେ ପୁରୁଷୋତ୍ତମ ରାମଚନ୍ଦ୍ର ସେତୁବନ୍ଧ ନିର୍ମାଣ କରି ଲଙ୍କା ଯାତ୍ରା କରିଥିଲେ। ମନ୍ଦିର ପରିସରରେ ଥିବା ବିଭିନ୍ନ କୂଅରେ ସ୍ନାନ ସାରି ରାମେଶ୍ୱର ଦର୍ଶନ ଓ ପରେ ପିତୃପୁରୁଷଙ୍କୁ ଅଗଭୀର ବଙ୍ଗୋପସାଗରରେ ତିଳତର୍ପଣ ଦାନ ଏକ ଅନ୍ତର୍ନିହିତ ଶକ୍ତିର ଉଦ୍ରେକ କରାଏ।

ରାମେଶ୍ୱର ଦର୍ଶନ ପରେ ଆମେ ଫେରିଲୁ ମାଡ୍ରାଜ (ଆଧୁନିକ ଚେନାଇ) ସେଠାରୁ ବରହମପୁର ପ୍ରତ୍ୟାବର୍ତ୍ତନ। ଅଜିତ ବାବୁଙ୍କ ପରିବାର ଓ ଆମ ପରିବାରଙ୍କ ପାଇଁ ଏହା ଥିଲା ଏକ ଆନନ୍ଦଦାୟକ ଯାତ୍ରା। ପିଲାମାନେ ସମସ୍ତେ ମିଶି ଆନନ୍ଦରେ ସମୟ କଟାଇଲେ। ତାଙ୍କର ପଢ଼ାପଢ଼ିରେ ଏଭଳି ଏକ ପରିବେଶ ଅତ୍ୟନ୍ତ ଉପଯୋଗୀ।

ଏକ ବର୍ଷ ପରେ ୧୯୮୧ ମସିହା ଅକ୍ଟୋବର ମାସରେ ଅଜିତ ବାବୁଙ୍କ ପରିବାର ଓ ଆମ ପରିବାର ମିଶି ଆଉ ଗୋଟିଏ ଟୁର୍‌ରେ ଉତ୍ତରଭାରତ ଯାତ୍ରାରେ ବାହାରିଲେ। କିନ୍ତୁ ଏଥର ଆମ ସହ ମିଶିଲେ ବନ୍ଧୁ ପ୍ରଦୀପ ମହାନ୍ତି ଓ ତାଙ୍କ ପରିବାର। ବଡ଼ ପୁଅ ଶୁଭେନ୍ଦୁର ଛୁଟିଥିବାରୁ ସେ ଆମ ସହ ଯୋଗ ଦେଲା। ତିନୋଟି ପରିବାର ପାଇଁ ଆମେ ଗୋଟିଏ ପେକେଜ ତିଆରି କଲୁ। ବରହମପୁରରୁ ରେଳଯୋଗେ ଯାତ୍ରା କଲୁ ଗୟା। ସେଠାରେ ପିତୃପୁରୁଷଙ୍କୁ ଶ୍ରାଦ୍ଧ ଦେଇ ଆମେ ଗୋଟିଏ ଦିନ ପରେ ବନାରସ ଯିବା କଥା। କିନ୍ତୁ ଆମର ଧାରଣା ନଥିଲା ଗୟା ସହରରୁ ରେଳ ଯାତ୍ରା ଏକ ବଡ଼ ସମସ୍ୟା। ଗୟା ରେଳ ଷ୍ଟେସନ୍ ମାଷ୍ଟରଙ୍କ ଠାରୁ

ଜାଣିଲୁ ସେଠାରେ କେହି ଟିକେଟ୍ କାଟନ୍ତି ନାହିଁ। କେହି ନିୟମ ମଧ ମାନନ୍ତି ନାହିଁ। କୌଣସି ଲୋକ ରିଜରଭେସନ୍ ଯାତ୍ରୀଙ୍କୁ ସମ୍ମାନ ଦିଅନ୍ତି ନାହିଁ। ଟ୍ରେନ୍ ଆସିବା ମାତ୍ରେ ଯାତ୍ରୀମାନେ ଟ୍ରେନର ବିଭିନ୍ନ ଡବାକୁ ଧସେଇ ପଶିଯାଆନ୍ତି। ଯେ ପାରିଲା ଯେଉଁ ସିଟ୍‌ରେ ବସିଗଲା। ସେଠାରେ ପୋଲିସ୍‌ର ଶୃଙ୍ଖଳା ରକ୍ଷା କରିବାର ଶକ୍ତି ନାହିଁ। ଖାଲି ସିଟ୍ ନୁହେଁ ଉପର ବାର୍ଥରେ ମଧ ଯାତ୍ରୀମାନେ ବସିଯାଆନ୍ତି। ପ୍ରଥମ ଦିନ ଆମେତ ଟ୍ରେନ୍‌ରେ ପଶିପାରିଲୁ ନାହିଁ। ୨ୟ ଦିନ ରହିଁଲୁ ଯେ କୌଣସି ଟ୍ରେନ୍‌ରେ କୌଣସି ମତେ ପଶିଯାଇ ବନାରସ ପର୍ଯ୍ୟନ୍ତ ଚାଲିଯିବୁ। କିନ୍ତୁ ସବୁ ଟ୍ରେନ୍‌ରେ ପାଦ ଦେବାକୁ ସ୍ଥାନ ନାହିଁ। ଦ୍ୱିତୀୟ ଦିନ ଶତଚେଷ୍ଟା ସତ୍ତ୍ୱେ ଟ୍ରେନ୍ ଭିତରେ ପଶି ନ ପାରି ସାରାଦିନ ଷ୍ଟେସନ୍‌ରେ କଟାଇଲୁ। ତହି ଆରଦିନ ଆମର କାଠମାଣ୍ଡୁ ପାଇଁ ପ୍ଲେନ୍ ଟିକେଟ୍ କଟା ସରିଛି। କୌଣସି ମତେ ଯିବାକୁ ହେବ। ସମସ୍ତେ ମିଶି କେତେକ କୁଲିଙ୍କ ସାହାଯ୍ୟରେ ଗୋଟିଏ ଡବାରେ ଜିନିଷତକ ପୁରାଇ ଦେଇ ସ୍ତ୍ରୀଲୋକ ଓ ପିଲାଙ୍କୁ ଉଠାଇଦେଲୁ। ମୁଁ ଅଜିତ୍ ବାବୁ, ପ୍ରଦୀପ ବାବୁ କୌଣସି ମତେ ଡବା ଭିତରେ ପ୍ରବେଶ କରିଛୁ କି ନାହିଁ ଟ୍ରେନ୍ ଛାଡ଼ିଦେଲା। ସାରାରାତି ଠିଆ ହୋଇ କଟାଇଲୁ। ଟ୍ରେନ୍‌ରେ ଥିବା କେତେଜଣ ଭଦ୍ରବ୍ୟକ୍ତି ସ୍ତ୍ରୀଲୋକ ଓ ପିଲାମାନଙ୍କୁ ତାଙ୍କ ପାଖରେ ଅଧାଅଧା ସିଟ୍ ଦେଇ ବସାଇ ଦେଲେ। ବନାରସରୁ ତା ପରଦିନ କାଠମାଣ୍ଡୁ ଯାତ୍ରା ପାଇଁ ଟିକେଟ୍ ଆଗରୁ ରିଜର୍ଭ ହୋଇଥାଏ। କାଠମାଣ୍ଡୁରେ ହୋଟେଲ ମଧ ପ୍ଲେନ୍ ଟିକେଟ୍ ସହିତ ରିଜର୍ଭ। ସେଠାରେ ଏକ ନୂତନ ପରିବେଶ। ହୋଟେଲର ଖାଇବା ଖର୍ଚ୍ଚ ଆକାଶଛୁଆଁ। ଆମ ଗ୍ରୁପ୍‌ରେ ଥାଉ ୧୧ ଜଣ। ଖାଲି ସକାଳର ଜଳଖିଆ ପର୍ବ ହୋଇଗଲା ୧୦୦୦ ଟଙ୍କା, ପରେ ବୁଝିଲୁ ଏହି ଷ୍ଟାର୍ ହୋଟେଲ୍ ଖର୍ଚ୍ଚ ଆକାଶଛୁଆଁ। ବାହାର ମଧମ ଧରଣ ହୋଟେଲର ଖର୍ଚ୍ଚ ଅଳ୍ପ ଅଧିକ ହେଲେ ମଧ ଏଭଳି ଆକାଶଛୁଆଁ ନୁହେଁ। ହୋଟେଲ ତରଫରୁ ବିଭିନ୍ନ ଦର୍ଶନୀୟ ସ୍ଥାନ ପାଇଁ ବସଯାତ୍ରାର ବ୍ୟବସ୍ଥା ରହିଛି। ବିଶେଷ କରି ପଶୁପତିନାଥଙ୍କ ଦର୍ଶନ ପାଇଁ ବସଯାତ୍ରାର ବ୍ୟବସ୍ଥା ରହିଛି। ପଶୁପତିଙ୍କ ଦର୍ଶନ ଓ ହିମାଳୟ ପର୍ବତର ବିଭିନ୍ନ ଝରଣା ଓ ଅରଣ୍ୟର ଦର୍ଶନ ଅତ୍ୟନ୍ତ ମନୋମୁଗଧକର। ଦୁର୍ଗାପୂଜା ସମୟ ହୋଇଥିବାରୁ ନେପାଳବାସୀଙ୍କ ଅବସର ବିନୋଦନ ସମୟ। ଏହା ଏକମାତ୍ର ସ୍ୱାଧୀନ ହିନ୍ଦୁରାଜ୍ୟ। ନେପାଳ ସରକାର

ପର୍ଯ୍ୟଟନର ସୁବିଧା ପାଇଁ ହୋଟେଲ ଓ ଦୋକାନୀଙ୍କୁ ଉତ୍ସାହ ଦେଉଅଛି। ସାରା ବଜାର ବିଦେଶୀ ଦ୍ରବ୍ୟରେ ଭର୍ତ୍ତି। ଯାହା ଦେଖିବ କିଣିବାକୁ ମନ ହେବ। କିନ୍ତୁ ଆଣିବ କିପରି ? ବନାରସରେ ଏୟାରପୋର୍ଟରେ ଚେକିଂ। ତେଣୁ ଆମେ କରିଥିବା କୋଟ କନାରେ କୋର୍ଟ ତିଆରି କରି ଦେଲୁ। ଶାଢ଼ୀ ଗୁଡ଼ିକ ପିନ୍ଧିକରି ଏହା ବ୍ୟବହୃତ ଶାଢ଼ୀର ରୂପ ଦିଆଗଲା। ଅନ୍ୟାନ୍ୟ ସାମଗ୍ରିକୁ ମଧ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ରୂପେ ଦେଖାଇ ଆମେ ଯେତେ ପାରିଲୁ ଜିନିଷ ନେଇ ଆସିଲୁ। ରାତିରେ କାଠମାଣ୍ଡୁର କେସିନୋରେ ଜୁଆଖେଳ। ସେଥିପାଇଁ ଟିକେଟ୍ ମଧ୍ୟ ମିଳିଥାଏ। ନେପାଳର ସରକାରଙ୍କ ପକ୍ଷରୁ ଏହା ପର୍ଯ୍ୟଟକଙ୍କ ପାଇଁ ଉପହାର। ତିନି ଦିନ କାଠମାଣ୍ଡୁରେ କଟାଇ ଆମେ ଫେରିଲୁ ବନାରସ। ସେଠାରୁ ଏହ୍ଲାବାଦ ଯାତ୍ରା। ବାପାମା'ଙ୍କ ଅସ୍ଥି ବିସର୍ଜନ ପାଇଁ ଗଙ୍ଗା ଓ ଯମୁନାର ମିଳନ ସ୍ଥଳକୁ ନୌକାରେ ଯାତ୍ରା। ଅସ୍ଥି ବିସର୍ଜନ ପରେ ଗଙ୍ଗା ନଦୀକୁ ଦାନର ବ୍ୟବସ୍ଥା ରହିଛି। ଏହାକୁ ଟଙ୍କା ଓ ନଡ଼ିଆ ଆକାରରେ ବିସର୍ଜନ କରାଯିବାର ବିଧି ରହିଛି। ଆଶ୍ଚର୍ଯ୍ୟର ବିଷୟ ଗଙ୍ଗାନଦୀକୁ କ୍ଷେପଣ ମାତ୍ରେ ସେଠାରେ ଥିବା ଟ୍ରେନିଂ ପ୍ରାପ୍ତ ଡାଇଭର ସେଗୁଡ଼ିକୁ ଉଦ୍ଧାର କରି ନେଇପାରୁଛନ୍ତି। ତ୍ରିବେଣୀରେ ଅସ୍ଥି ବିସର୍ଜନ ପରେ କେତେକ ଦର୍ଶନୀୟ ସ୍ଥାନ ଯଥା ଆନନ୍ଦ ଭବନ, ଯେଉଁଠାରେ ମୋତିଲାଲ ନେହେରୁ ଆରମ୍ଭ କରିଥିଲେ, ସ୍ୱାଧୀନତା ସଂଗ୍ରାମ ଓ ଜହ୍ବାହାର ଲାଲଙ୍କ ପରିବାରର ଫଟୋ ପ୍ରଦର୍ଶନୀ ଦେଖିଲୁ। ତା' ପରଦିନ ପ୍ରତ୍ୟାବର୍ତ୍ତନ ଯାତ୍ରା। ପିଲାମାନଙ୍କ ଏହି ୧୦ ଦିନ ଯାତ୍ରା ଥିଲା, ତାଙ୍କ ପାଇଁ ଆନନ୍ଦଦାୟକ ସମୟ। ବିଶେଷ କରି କାଠମାଣ୍ଡୁ ବଜାର ବୁଲା ଓ କେସିନୋରେ ଖେଳ ତାଙ୍କୁ ପ୍ରଚୁର ଆନନ୍ଦ ଯୋଗାଇଥିଲା।

ଡିଭିଜନ ପୁନର୍ଗଠନ ପରେ କ୍ଷୁଦ୍ର ଜଳସେଚନ କାର୍ଯ୍ୟ ଶୃଙ୍ଖଳିତ ଗତିରେ ଚାଲିଲା। ଗଞ୍ଜାମରେ ପୂର୍ବରୁ ଆରମ୍ଭ ହୋଇ ଅସମ୍ପୂର୍ଣ୍ଣ ଥିବା ଗଜପତି ସାଗର, ମହେନ୍ଦ୍ର ତନୟା, ଭାକୁଦା, ଚୌଧୁରୀ ଘାଇ, ୧୦୦ଟି ରିନୋଭେସନ୍ ଯୋଜନା ସହିତ ନୂତନ ଭାବେ ପୁରିଆ ସାହି, ଭିତିରି ବାଡ଼ିଗୁଡ଼ା ଓ ଭାଲୁଘାଇ ଯୋଜନାର କାର୍ଯ୍ୟ ଆରମ୍ଭ କରାଗଲା। ପୁରିଆ ସାହି ଯୋଜନାର ଆନିକଟ କାର୍ଯ୍ୟ ଯେ ଭଳି ସହଜସାଧ ଭାବେ ସମ୍ପାଦିତ ହେଲା ତାର କେନାଲ ଏଲାଇନମେଣ୍ଟ ସେଭଳି କଷ୍ଟସାଧ କାର୍ଯ୍ୟ ।

ଭାଲୁଘାଇ ଯୋଜନା ସହିତ କେତେକ କଟାମିଶାଇ ଏହାର ସମ୍ପ୍ରସାରଣ କରାଗଲା । ଫୁଲବାଣୀର କାକଲକାଙ୍କି, କଳାନାଦୁ, ଗୋଇବନ୍ଧ, କଟାରି, କଙ୍ଗଣିନାଳ ରିନୋରେସନ୍ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯିବ । ସଙ୍ଗେ ସଙ୍ଗେ ବନାଙ୍ଗିଆ, ପଇତା ଗାଁ, ଡାଉଙ୍ଗିଆ, ପେନାଜୋର, ଲାଖପର୍ବତ, ପରହେଲ, ଡ଼ମକୋଚ ଆଦି ଯୋଜନା ଗୁଡ଼ିକୁ ନୂତନ ଭାବେ ଗ୍ରହଣ କରାଗଲା । କୋରାପୁଟର ବହୁତ ଦିନୁ ଗ୍ଭଲି ଆସିଥିବା ହାତୀମୁଣ୍ଡା ଏକୁଇଡ଼କ୍ଟର କାର୍ଯ୍ୟ ସମ୍ପୂର୍ଣ୍ଣ କରି ୪୦୦୦ ଏକର ଜମିକୁ ଜଳ ଯୋଗାଇବା ଏକ ଐତିହାସିକ ଘଟଣା । ସେହିପରି ନାରାୟଣପାଟଣାର ମାଣ୍ଡିଆଗୁଡ଼ା ଯୋଜନାକୁ ଆଂଶିକ ସମ୍ପୂର୍ଣ୍ଣ କରି ଜଳ ଯୋଗାଇବା ଅନ୍ୟ ଏକ ପ୍ରଧାନ ଘଟଣା । ତା ବ୍ୟତୀତ କୋରାପୁଟର ଫୁଲଝରି, ବାଘରିର୍ଝୋଲା, ସିଲତିଗୁଡ଼ା କାଣିଯୋଡ଼ି ଯୋଜନାର କାର୍ଯ୍ୟ ହାତକୁ ନିଆଗଲା । ଫୁଲଝରି ଯୋଜନା ଚନ୍ଦାହାଣ୍ଡି ବ୍ଲକ୍‌ରେ ଅବସ୍ଥିତ । ତାହା ଜୟପୁର ଠାରୁ ପ୍ରାୟ ୨୦୦ କି.ମି. ଦୂରରେ ଅବସ୍ଥିତ । ଏହି ଯୋଜନାର ଶୁଭ ଦିଆଯିବା ଦିନ ଯେଉଁ ଜନ ସମାଗମ ହୋଇଥିଲା । ତାହା ସେ ଅଞ୍ଚଳର ଏକ ବିଶିଷ୍ଟ ଘଟଣା ହୋଇ ରହିଯାଇଥିବ । ଜୟପୁର ଠାରେ ଯେଉଁ ନୂତନ ଡିଭିଜନ ସୃଷ୍ଟି ହେଲା ତାର ଦାୟିତ୍ୱ ନେଲେ ଜପାମାଳି ପୂଜାରୀ । ତାଙ୍କ ଅଧିନରେ ୩ଟି ସବ୍ ଡିଭିଜନ ରହିଲା । କାଲିମେଳା ଉମରକୋଟ ଠାରେ ଖାଲି ପଡ଼ିଥିବା ଘର ଗୁଡ଼ିକର ସଦ୍ ବ୍ୟବହାର କରି ଡିଭିଜନଟିକୁ ଅତି ଅଳ୍ପ ସମୟ ମଧରେ ସଜାଡ଼ି ଦିଆଯାଇ ପାରିଲା । ସେଥିପାଇଁ ମୋତେ ସାହାଯ୍ୟ କରିଥିବା ଏସ.ଡ଼ି.ଓ ହରିଶବାବୁ ଓ ଶ୍ରୀଧର ବାବୁ ଧନ୍ୟବାଦାର୍ହ, ମାଥିଲି ଠାରେ ବହୁଦିନ ଅବହେଳିତ ଅବସ୍ଥାନରେ ଗୋଟିଏ କ୍ଷୁଦ୍ର ଜଳସେଚନ ଯୋଜନା ପଡ଼ିରହିଥିଲା । ତାର ସଂପ୍ରସାରଣ କରି, ଏହାକୁ ଏକ ପୂର୍ଣ୍ଣାଙ୍ଗ ଜଳସେଚନ ଯୋଜନାରେ ପରିଣତ କରିବାର ଜନସାଧାରଣଙ୍କ ସ୍ୱପ୍ନକୁ ସାର୍ଥକ ରୂପ ଦେବା ପାଇଁ ଜୟପୁର ଡିଭିଜନ ପ୍ରଥମ ପଦକ୍ଷେପ ଗ୍ରହଣ କଲା । ନୂତନ ଡିଭିଜନରେ ଡୋଜର ଓ ସିଫଫୁଟ ରୋଲରର ଅଭାବ । ଦୁଇଟି ଫୋର୍ଡ଼ ଟ୍ରାକ୍ଟରରେ ବ୍ଲେଡ୍ ଖଞ୍ଜା ଯାଇ ତାକୁ ଡୋଜର ଭଳି ବ୍ୟବହାର କରି ବନ୍ଧର ମାଟିକାମ କମ୍ପେକସନ୍ କାର୍ଯ୍ୟ କରାଗଲା । ମାତ୍ର ୧ ବର୍ଷ ଭିତରେ ଏହାର କାର୍ଯ୍ୟଟିକୁ ସମ୍ପୂର୍ଣ୍ଣ କରିବା ସମ୍ଭବ ହୋଇପାରିଲା ।

ରାୟଗଡ଼ା ଡିଭିଜନରେ ୱାର୍କଲୋଡ୍ ଜୟପୁର ଡିଭିଜନ ତୁଳନାରେ ଅଧିକ ଥିଲା। ରାୟଗଡ଼ାର ୧ ନମ୍ବର ମାଇନର ଇରିଗେସନ୍ ସବ୍‌ଡିଭିଜନକୁ ଦଶମନ୍ତପୁର ଓ ଲକ୍ଷ୍ମୀପୁର ଯୋଜନା ସହ ମାଲକାନଗିରି ଓ ମାଣ୍ଡିଆଗୁଡ଼ା ଯୋଜନାର କାର୍ଯ୍ୟ ସମ୍ପୂର୍ଣ୍ଣ କରିବାର ଦାୟିତ୍ୱ ଦିଆଯାଇଥିଲା। ଏହାର ଏସ୍.ଡ଼ି.ଓ କୃଷ୍ଣ ସାହୁ ବାବୁ ଟିକିଏ ମାନ୍ଦା ହୋଇଥିବାରୁ ଦଶମନ୍ତପୁର ଯୋଜନାର ରିଭର୍ ଗ୍ୟାପ୍ ଫିଲିଂ କାର୍ଯ୍ୟରେ ଏକ ବିଷମସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଲା। ସେ ଦେଇଥିବା ଭୁଲ ତଥ୍ୟ ଉପରେ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ପର୍ଶୁରାମ ପାଢ଼ୀ ମୋତେ ଯେଉଁ ପୋଗ୍ରେସ୍ ରିପୋର୍ଟ ଦେଲେ ତାହା ମୋତେ ଆଗରୁ ସାବଧାନ ହେବାର ସୁଯୋଗ ଦେଲାନି। ହଠାତ୍ ମେ ମାସ ପହିଲା ଦିନ ଇନ୍ସପେକସନ୍ ବେଳେ ଜାଣିଲି ଯେ ଦଶମନ୍ତପୁର ଡେମ୍ ଡ଼େଡ୍ ଷ୍ଟୋରେଜ୍‌ର ୨୦ ଫୁଟ ତଳେ ରହିଛି। ମୁଁ ଜାଣେ କୋରାପୁଟରେ ଜୁନ୍‌ମାସ ପ୍ରଥମ ସପ୍ତାହରେ ବର୍ଷା ଆରମ୍ଭ ହୁଏ। ବାର୍ଷିକ ବୃଷ୍ଟିପାତ ୨୦୦୦ ମିଲି ମିଟରରୁ ଅଧିକ। ଅନେକ ଜଳଭଣ୍ଡାର ଜୁନ୍ ମାସରେ ସ୍ପିଲ୍ କରିବା ଆରମ୍ଭ କରିଦିଅନ୍ତି। ପ୍ରୋଜେକ୍ଟର ଏ ଅବସ୍ଥା ଦେଖି କ୍ଷୁବ୍ଧ ଓ ମର୍ମାହତ ହୋଇପଡ଼ିଲି। ତା ସଙ୍ଗେ ସଙ୍ଗେ ଶପଥ ଗ୍ରହଣ କଲି ପ୍ରୋଜେକ୍ଟଟିକୁ ନିରାପଦ ଅବସ୍ଥାକୁ ନ ଆଣିବା ପର୍ଯ୍ୟନ୍ତ ଦଶମନ୍ତପୁର ଛାଡ଼ିବି ନାହିଁ। କାର୍ଯ୍ୟଆରମ୍ଭ ହେଲା ଯୁଦ୍ଧ ଭିତ୍ତିରେ। ବିଭିନ୍ନ ଡିଭିଜନର ଡୋଜର ଓ ଟ୍ରକ୍ ମଗାଇ ଆଣି ଡିପାର୍ଟମେଣ୍ଟାଲ୍ କାର୍ଯ୍ୟ ଆରମ୍ଭ କରିଦିଆଗଲା। କଣ୍ଟ୍ରାକ୍ଟର ଲେବର ରେଟ୍‌ରେ ଚିପ୍‌ସ ଦେଉଥିଲେ। ଲୋକଙ୍କୁ ପୋଷାଇବା ଭଳି ମାଟି ଖୋଳା, ଲୋଡ଼ିଂ ଓ ଅନଲୋଡ଼ିଂ ରେଟ୍ ଦେଇଦେବା ଫଳରେ ସ୍ଥାନୀୟ ଆଦିବାସୀଙ୍କ ମଧ୍ୟରେ କି ଉତ୍ତେଜନା। ଏକ ସମୟରେ ଚାଲିଲା ୨୫/୩୦ ଟ୍ରକ। ମାଟି କମ୍ପେକ୍‌ସନରେ ଚାଲିଲା। ୫ଟି ଡୋଜର ଓ ୨ଟି ପାଣି ପମ୍ପ। ୧୦ ଦିନ ଧରି ମୁଁ ତ ନିର୍ବାହୀଯନ୍ତ୍ରୀ ମୋର ସାଙ୍ଗ ପର୍ଶୁରାମ ପାଢ଼ୀ ଦଶମନ୍ତପୁରରେ କେମ୍ପ କରି ରହିଲୁ। ଆମକୁ ଆପ୍ରାଣ ସାହାଯ୍ୟ କଲେ ଶ୍ୟାମସୁନ୍ଦର ସାହୁ। ମେ ମାସ ୧୦ ତାରିଖ ଦିନ ସ୍ଲୁଇସ୍ ବାଟ ଦେଇ ପାଣି ଛାଡ଼ିବା ପରେ ମୁଁ ବରହମପୁରକୁ ପ୍ରତ୍ୟାବର୍ତ୍ତନ କଲି। ମେ ୩୧ ତାରିଖ ସୁଦ୍ଧା ବନ୍ଧ କାମ ସରିଗଲା। କହିବା ବାହୁଲ୍ୟ ଯେ ଜୁନ୍ ମାସର ପ୍ରଥମ ବର୍ଷାରେ ଜଳଭଣ୍ଡାର ଭର୍ତ୍ତି ହୋଇ ଜୁନ୍ ୫ ତାରିଖ ଦିନ ସ୍ପିଲ୍ କରିବା ଆରମ୍ଭ

କରିଦେଲା ବହୁତ ଥର ଭାବିଛି ଯଦି ମୁଁ ଦଶମନ୍ତପୁରରେ ୧୦ ଦିନ କେମ୍ପ କରି ନଥାନ୍ତି ମାଟି ବନ୍ଧକୁ କ'ଣ ସତରେ ରକ୍ଷା କରାଯାଇ ପାରିଥାନ୍ତା।

୧୯୮୦ ମସିହାରେ ବଂଶଧାରା ନଦୀରେ ଯେଉଁ ବନ୍ୟା ଆସିଲା ତାହା ରାୟଗଡ଼ା ଡିଭିଜନର ମାଇନର ଇରିଗେସନ୍ ଯୋଜନାଗୁଡ଼ିକର ପ୍ରଭୂତ କ୍ଷତି ଘଟାଇଲା। ସେ ବନ୍ୟା କି ଭୟଙ୍କର ସ୍ୱ-ଚକ୍ଷୁରେ ତା'ର ପ୍ରଳୟଙ୍କରୀ ରୂପ ନ ଦେଖିଲେ କେହି ବିଶ୍ୱାସ କରିପାରିବେନି। ସକଟା ଓ ବଡ଼ ବାଙ୍କିଲି କ୍ଷୁଦ୍ର ଜଳସେଚନ ଯୋଜନା ଦୁଇଟିର ଆନିକଟ ବନ୍ୟା ଦ୍ୱାରା ପୁରା ଭାସିଗଲା। ବନ୍ୟା ପରେ ଯେତେବେଳେ ପାଖ ଗଛରେ ଥିବା ବନ୍ୟା ଦାଗ ଦେଖିଲି ମୁଁ ନିଜକୁ ବିଶ୍ୱାସ ମଧ୍ୟ କରିପାରିଲି ନାହିଁ। ଆନିକଟ ଠାରୁ ପ୍ଲାଟ୍‌ଫର୍ମ ୧୨ ଫୁଟ୍ ଉଚ୍ଚ। ପ୍ଲାଟ୍‌ଫର୍ମ ଉପରେ ୧୦ ଫୁଟ୍ ଅର୍ଥାତ୍ ଆନିକଟ ଉପରେ ୨୨ ଫୁଟ୍ ପାଣି ପ୍ରବାହିତ ହୋଇଛି। କେଉଁ ଆନିକଟ ଏତେ ବେଶୀ ପାଣି ପ୍ରେସର ହେଡ଼ ସମ୍ଭାଳିବ। ଗୁଣୁପୁର ଟାଉନ୍ ଉପରେ ପ୍ରାୟ ୧୦/୧୫ ଫୁଟ୍ ପାଣି ପ୍ରବାହିତ ହେଲା। ଗୁମୁଡ଼ାପୋଲର ୩ଟି ସ୍ପାନ ଓ ଟ୍ରାନ୍ସମିସନ୍ ଲାଇନ୍ ଉଡ଼ିଗଲା। ସେହିପରି ସିକର ପାଇ, ଭାଙ୍ଗି, କୁଲି ଆଦି ଯୋଜନାର ବହୁତ କ୍ଷତି ଘଟିଲା। ବନ୍ୟା ସାହାଯ୍ୟ ପାଣ୍ଠିରୁ ମିଳିଥିବା ଅର୍ଥରେ ପ୍ରୋଜେକ୍ଟକୁ ଗୁଡ଼ିକୁ ତାର ପୂର୍ବ ଅବସ୍ଥାକୁ ଫେରାଇ ଅଣାଯାଇ ପାରିଲା।

ଗୁଣୁପୁରର ପୁଟା ସିଂ ଗ୍ରାମ ନିକଟରେ ପୁଟା ବୋଲି ଗୋଟିଏ କ୍ଷୁଦ୍ର ଜଳସେଚନ ଯୋଜନା ଆଇ.ଟି.ଡ଼ି.ଏ ଯୋଜନାର ଅର୍ଥରେ ନିର୍ମାଣ କରିବା ପାଇଁ ହାତକୁ ନିଆଯାଇଥାଏ। ଗୁଣୁପୁର ଠାରୁ ପୁଟାସିଂ ପର୍ଯ୍ୟନ୍ତ କେବଳ ଜିପ୍ ବା ଟ୍ରାକ୍ଟର ଯିବା ସମ୍ଭବ। ପୁଟା ସିଂ ଠାରୁ ପ୍ରୋଜେକ୍ଟ ପର୍ଯ୍ୟନ୍ତ ୬ କି.ମି. ରାସ୍ତା ପଦବ୍ରଜରେ ଯିବାକୁ ପଡ଼ିବ। ସ୍ଥାନୀୟ ଅଧିବାସୀ ସଉରାମାନଙ୍କୁ ନିଜ ଭାଷା ବ୍ୟତୀତ ଅନ୍ୟ ଭାଷା ଜଣା ନାହିଁ। ଆଶ୍ରମ ସ୍କୁଲରେ ପଢ଼ିଥିବା ପୁଅ ଓ ଝିଅମାନେ ହେଲେ ସଉରା ଭାଷାର ଇଣ୍ଟରପ୍ରିଟର। ଆମେ ଯେତେବେଳେ କେତୋଟି ଗଛ କାଟି ପ୍ରୋଜେକ୍ଟ ପାଖକୁ ରାସ୍ତା କରିବାକୁ ଗହିଁଲୁ ଆଦିବାସୀମାନଙ୍କ ପାଖରୁ ଆସିଲା ପ୍ରବଳ ପ୍ରତିରୋଧ। ସେମାନଙ୍କ ମତରେ ସରକାର ବା ସରକାରୀ ଜମି କିଛି ନାହିଁ। ସମୁଦାୟ ପାହାଡ଼ଟିକୁ ସେମାନେ ନିଜ ନିଜ ଭିତରେ ବାଣ୍ଟି ଦେଇଛନ୍ତି। ସବୁ ଗଛର ମାଲିକ ସେମାନେ।

ଜମି ପଥର ସବୁକିଛି ସେମାନଙ୍କର। ଗ୍ରାମର ଗମାଙ୍ଗ ସେମାନଙ୍କର ରାଜା। ତାଙ୍କର ଆଦେଶରେ ଶାସନ ଚାଲିଛି। ଏଭଳି ସମସ୍ୟାର ସମ୍ମୁଖୀନ ମୁଁ କେବେ ହୋଇନଥିଲି। ଗୁଣୁପୁରର ମାଇନର ଇରିଗେସନ୍ ଏସ.ଡ଼ି.ଓ. ହରିଶ୍ଚନ୍ଦ୍ର ପରିଛା ଜଣେ କର୍ମଠ ଇଞ୍ଜିନିୟର। ସେ ପରିଣତ ବୟସରେ ପଦାର୍ପଣ କରିଥିଲେ ମଧ ଅତ୍ୟନ୍ତ କର୍ମତତ୍ପର। ଏଭଳି ପରିସ୍ଥିତି ସୃଷ୍ଟି ହେବାରୁ ସେ ଗମାଙ୍ଗଙ୍କୁ ଡାକି କହିଲେ ତୁମେ ତ ଏ ଅଞ୍ଚଳର ରାଜା। ଆମେ ସବୁ ଅନ୍ୟ ସ୍ଥାନରେ ସିନା ସରକାରୀ କର୍ମଚାରୀ। ଏଠାରେ ତ ଆମେ ତୁମର କର୍ମଚାରୀ। ତୁମେ ଯେଭଳି ଆଦେଶ ଦେବ ସେହି ଅନୁସାରେ କାର୍ଯ୍ୟ ଚାଲିବ। ଗମାଙ୍ଗଙ୍କର ଆଦେଶ ହେଲା। ଗ୍ରାମର ଅଧିବାସୀମାନେ ଗୋଟିଏ ପଟୁଆର୍‌ରେ ଯିବେ। ବାଦ୍ୟଯନ୍ତ୍ରର ସମାରୋହରେ ଅଞ୍ଚଳର ରାଜା ଗମାଙ୍ଗ ପାଲିଙ୍କି ଆରୋହଣ କରି ନାଲି ପଗଡ଼ି ପିନ୍ଧି ବିରାଜମାନ କରିବେ, ଏକ ମହିଷ ବଳି ଠାକୁରାଣୀଙ୍କୁ ଦିଆଯିବ। ଗ୍ରାମବାସୀମାନେ ମଦ୍ୟ ଓ.ମାଂସ ଭୋଜନ କରି ଆମୋଦ କରିବେ। ତା' ପରେ ଗମାଙ୍ଗ ପ୍ରୋଜେକ୍ଟର ଶୁଭ ଦେଇ କାର୍ଯ୍ୟ ଆରମ୍ଭ ପାଇଁ ଆଦେଶ ଦେବେ। ସେହି ଅନୁସାରେ କାର୍ଯ୍ୟ ଆରମ୍ଭ ହେଲା। କିନ୍ତୁ ପାହାଡ଼ ପର୍ବତ ଦେଇ ମାତ୍ର ୩ କି.ମି. ରାସ୍ତା ସମ୍ଭବ ହେଲା। ବାକି ୩ କି.ମି. ରାସ୍ତା ହୋଇପାରିଲାନି। ବାଲି ଓ ସିମେଣ୍ଟ ଭାର ସାହାଯ୍ୟରେ ନେଇ ୩ଟି ଆନିକଟ କାମ ସମ୍ଭବ ହେଲା। ଏତେ ତୀଖ ଗଡ଼ାଣିଆ ଜମିରେ କେନାଲ କାର୍ଯ୍ୟ ସମ୍ଭବ ନୁହେଁ। ଗୋଟିଏ ପ୍ଲଟ୍ ଜମିରୁ ଅନ୍ୟ ପ୍ଲଟ୍ ପ୍ରାୟ ୫ ଫୁଟ୍ ଉଚ୍ଚ। ଆଦିବାସୀମାନେ ପ୍ଲଟ୍ ଦୁଇଟିକୁ ଗୋଟିଏ ଫୁଟିକିଆ ପଥର କାନ୍ଥ ଦ୍ୱାରା ପୃଥକ କରିଛନ୍ତି। କାନ୍ଥଟି ପଥର ଓ ମାଟିରେ ତିଆରି। ପ୍ରତି ବର୍ଷ ଏହାର ମରାମତି ଆବଶ୍ୟକ। ଏଭଳି ଟପୋଗ୍ରାଫି ଥିବା ଟେରାଇନରେ କେନାଲ କାର୍ଯ୍ୟ ସମ୍ଭବ ନୁହେଁ। କିନ୍ତୁ ଆଦିବାସୀ ମାନଙ୍କର ନିଜର କେନାଲ ତିଆରି କରିବା ପଦ୍ଧତି ରହିଛି। ପାହାଡ଼ ସ୍ଲୋପରେ କଣ୍ଟୁର କେନାଲ (ଅବଶ୍ୟ ତୀଖ ସ୍ଲୋପ୍‌ରେ) ତିଆରି କରି ମଝିରେ ମଝିରେ ଶୁଖିଲା ପଥରର ଆଉଟଲେଟ୍ ସ୍ଲୁଇସ୍ ତିଆରି କରି ସେମାନେ ନିଜ ଜମିକୁ ଜଳସେଚିତ କରନ୍ତି। ତାଙ୍କରି ପଦ୍ଧତି ଅନୁସରଣ କରି ଆନିକଟ ଓ କେନାଲ କାର୍ଯ୍ୟ ସମ୍ପୂର୍ଣ୍ଣ କରାଗଲା। ସେମାନେ ଖୁସି, ଆମ୍ଭେମାନେ ଖୁସି। ସେମାନଙ୍କ ବୈଷୟିକ ଜ୍ଞାନକୁ ପ୍ରଶଂସା ମଧ କଲୁଁ।

କଳାହାଣ୍ଡି ଜିଲ୍ଲା କ୍ଷୁଦ୍ର ଜଳସେଚନ କ୍ଷେତ୍ରରେ ଅନ୍ୟାନ୍ୟ ଜିଲ୍ଲାମାନଙ୍କ ତୁଳନାରେ ବହୁତ ପଛୁଆ ହୋଇ ରହିଥିଲା। କିନ୍ତୁ ଶୁଷ୍କାଞ୍ଚଳ ଯୋଜନା ମାଧ୍ୟମରେ ଏ ଜିଲ୍ଲାକୁ ଅଧିକ ଅର୍ଥ ଆସିବା ଫଳରେ ବହୁତ ଗୁଡ଼ିଏ ଯୋଜନାର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ଜଳସେଚନ ଏରିଆର ପ୍ରଭୂତ ବୃଦ୍ଧି ସମ୍ଭବ ହେଲା। ରାହାସ ବିହାରୀ ମହାନ୍ତିଙ୍କର ପାଞ୍ଚବର୍ଷ କାର୍ଯ୍ୟକାଳ ମଧ୍ୟରେ କଳାହାଣ୍ଡି ଜିଲ୍ଲାରେ ବଡ଼ ବଡ଼ କ୍ଷୁଦ୍ର ଜଳସେଚନ ଯୋଜନା ହାତକୁ ନିଆଯାଇ ଏହାର ଅନେକ ଶୁଷ୍କାଞ୍ଚଳକୁ ମରୁଡ଼ି କବଳରୁ ରକ୍ଷା କରାଯାଇପାରିଲା। ସେମାନଙ୍କ ମଧ୍ୟରେ ପିପଳ ନାଳା, ଟିକ୍ରାପଡ଼ା, ଦେପାରି, ରେତ, ତୁରଲା ଖମଣ, ତୁଳାପଡ଼ା, କରଞ୍ଜକୋଟ, କରଲା ନାଳ, ଦୁଜାଭଟା, ବେହେରା, ଲଖନପଡ଼ା, ରାଣିମୁଣ୍ଡା, ରାଜାମୁଣ୍ଡା, ଡୁମେର ଯୋର ଓ ଲିଆଡ଼ ପ୍ରୋଜେକ୍ଟ ଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ। କିନ୍ତୁ କଣ୍ଟ୍ରାକ୍ଟରମାନଙ୍କ ମଧ୍ୟରେ ଆରବିଟ୍ରେସନ୍ କରି ଅର୍ଥ ସଂଗ୍ରହ କରିବାର ଯେଉଁ ପ୍ରବଳ ବାସନା ୧୯୭୦ ରୁ ୧୯୮୧ ପର୍ଯ୍ୟନ୍ତ ସୃଷ୍ଟି ହେଲା, ତା ଫଳରେ ଶୁଷ୍କାଞ୍ଚଳ ଯୋଜନା ପାଇଁ ଆସୁଥିବା ଅର୍ଥର ପ୍ରବାହରେ ପ୍ରତିବନ୍ଧକ ସୃଷ୍ଟି ହେଲା। ଆରବିଟ୍ରେସନ୍ ରୂପକ ରାକ୍ଷସ କବଳରୁ ରକ୍ଷା ପାଇବା ପାଇଁ ଶୁଷ୍କାଞ୍ଚଳ ଯୋଜନା ମାଧ୍ୟମରେ ବଡ଼ଧରଣର କ୍ଷୁଦ୍ର ଜଳସେଚନ ଯୋଜନା ହାତକୁ ନିଆନଯାଇ ଅପେକ୍ଷାକୃତ ଛୋଟ ଧରଣର ଜଳସେଚନ ଯୋଜନା ହାତକୁ ନେବା ପାଇଁ ଶୁଷ୍କାଞ୍ଚଳ ଯୋଜନାର କର୍ତ୍ତୃପକ୍ଷ ସ୍ଥିର କଲେ। ଅବଶ୍ୟ ପ୍ଲାନ୍‌ସ୍କିମ୍ ଜରିଆରେ ଭାଲୁଧର ପେଣ୍ଡାଭନ ଓ ପେରୋଞ୍ଜ ଭଳି ବଡ଼ଧରଣର କ୍ଷୁଦ୍ର ଜଳସେଚନ ଯୋଜନାର କାର୍ଯ୍ୟ ଆରମ୍ଭ ହେଲା। କଳାହାଣ୍ଡି ଜିଲ୍ଲାର ବେହେରା କ୍ଷୁଦ୍ର ଜଳସେଚନର କାର୍ଯ୍ୟ ମାଇନର ଇରିଗେସନ୍ ଡିଭିଜନ ପାଇଁ ଗୋଟିଏ ଚେଲେଞ୍ଜ। ୮୦ ଫୁଟ୍ ଉଚ୍ଚ ମେସୋନାରୀ ଡେମ୍ ଏକ ଅପ୍ରଶସ୍ତ ଗର୍ଜରେ ତିଆରି ହେଉଥାଏ। ଡେମର ଲମ୍ବ ନିମ୍ନ ଦେଶରେ ମାତ୍ର ୧୦୦ ଫୁଟ୍ ଓ ଉପରି ଭାଗରେ ୩୦୦ ଫୁଟ୍। ଡେମ୍ ତିଆରି ହେଉଥିବା ସ୍ଥାନଟି ଦୁଇଟି ସୁଉଚ୍ଚ ପାହାଡ଼ ମଧ୍ୟରେ ଏକ ଗର୍ଜ। ଆର୍ଚ୍ଚ ଡ଼େମ୍ ତିଆରି ପାଇଁ ଏହା ଏକ ଉପଯୁକ୍ତ ସ୍ଥାନ। ଡ଼େମ୍ ପାଖକୁ ରାସ୍ତା ନାହିଁ। ତା' ସାଙ୍ଗକୁ ଡେମର ଉଚ୍ଚତା ବୃଦ୍ଧି ସଙ୍ଗେ ସଙ୍ଗେ ବିଭିନ୍ନ ପତ୍ତନରେ ରାସ୍ତା ନିର୍ମାଣ କରି ଟ୍ରକ ଯାତାୟତ କରାଇବା କ୍ଷୁଦ୍ର ଜଳସେଚନ ଯୋଜନା ପାଇଁ ଏକ ଦୁରୁହ କାର୍ଯ୍ୟ। ଭିନ୍ନ

ଭିନ୍ନ ପତ୍ତନର ଟ୍ରକ୍ ଯିବା ପାଇଁ ରାସ୍ତା ତିଆରି କରି କଂକ୍ରିଟ୍ ଓ ପଥର ଯୋଡ଼ାଇ କରିବା ଏକ ଦୂରୁହ ବ୍ୟାପାର। ସେଥିପାଇଁ ଲକ୍ଷ୍ମୀକାନ୍ତ ଖମାରି ନାମକ ଏକ ଦକ୍ଷ ଅସିଷ୍ଟାଣ୍ଟ ଇଞ୍ଜିନିୟରକୁ ଅଣାଗଲା। ପୁରାତନ କଣ୍ଟ୍ରାକ୍ଟର କାର୍ଯ୍ୟଟିକୁ ସମ୍ପୂର୍ଣ୍ଣ କରିବାକୁ ଅକ୍ଷମ ହେବାରୁ ଚିଫ୍ ଇଞ୍ଜିନିୟର ବିରେନ୍ ବାବୁଙ୍କ ଠାରୁ ଅର୍ଡ଼ର ନେଇ ସେହି ରେଟରେ କାମଟିକୁ ଡିପାର୍ଟମେଣ୍ଟାଲି କରାଗଲା। ପେରୋଞ୍ଜ ଯୋଜନାଟି ଗୋଟିଏ ଡାଇଭରସନ୍ ସ୍କିମ୍। ଏକ ପଥର ଚଟାଣ ଉପରେ ଅତି ଅଳ୍ପ ଖର୍ଚ୍ଚରେ ଆନିକଟ ଟିଏ ନିର୍ମାଣ କରି ନଦୀର ପେରିନିଏଲ ଫ୍ଲୋକୁ ବ୍ୟବହାର କରି ପ୍ରାୟ ୨୦୦୦ ଏକର ଜମିରେ ଜଳସେଚନ କରିବାର ଯୋଜନା କରାଗଲା। ପେଣ୍ଡାଭନ ଯୋଜନାଟିରେ ସ୍ପିଲ ଚେନାଲରେ ପଥର ଥିବାରୁ ଅଳ୍ପ ଖର୍ଚ୍ଚରେ ଯୋଜନାଟିର ଅଟକଳ ହୋଇପାରିଲା। ଏକଜିକ୍ୟୁଟିଭ୍ ଇଞ୍ଜିନିୟର ଡି.ପି. ଶର୍ମା, ଏସିଷ୍ଟାଣ୍ଟ୍ ଇଞ୍ଜିନିୟର ବେହେରା ବାବୁ, ଚୌହାନ ବାବୁ, ନାୟକ ବାବୁ, ଶୁଷ୍କାଞ୍ଚଳ ଯୋଜନା ଓ ପ୍ଲାନସ୍କିମ୍ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ଅକ୍ଳାନ୍ତ ପରିଶ୍ରମ କରିଥିଲେ। ଇଞ୍ଜିନିୟର ମାନଙ୍କ କର୍ମତତ୍ପରତା ଫଳରେ ଶୁଷ୍କାଞ୍ଚଳ ଯୋଜନାର ଚେୟାର୍‌ମେନ୍ ଓ କମିଟି ମେମ୍ବରମାନେ ମାଇନର ଇରିଗେସନ୍ ଯୋଜନା ମାଧ୍ୟମରେ ଅଧିକାଂଶ କାମ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ।

ପ୍ରାୟ ଅଢ଼େଇବର୍ଷ ଦକ୍ଷିଣ ଓଡ଼ିଶାରେ ବିଭିନ୍ନ କ୍ଷୁଦ୍ର ଜଳସେଚନ ଓ ଗ୍ରାମ୍ୟରାସ୍ତା ଗୁଡ଼ିକର କାମ କରିବାର ସୁବିଧା ମିଳିଲା। ବରହମପୁରକୁ ପୋଷ୍ଟିଂ ହେବା ସମୟରେ ଯେଉଁ ଝଡ଼ ସୃଷ୍ଟି ହୋଇଥିଲା ତା'ର ଅବସାନ ଘଟାଇଥିଲେ ଗଞ୍ଜାମ ଗୌରବ ବୃନ୍ଦାବନ ନାୟକ। ସେ ଜଣେ ଅତ୍ୟନ୍ତ କର୍ମଠ ମନ୍ତ୍ରୀ। ପରିଣତ ବୟସରେ ଲୋକସେବା ପାଇଁ ତାଙ୍କର ତତ୍ପରତା ଯେ କୌଣସି ବ୍ୟକ୍ତିଙ୍କୁ ଆଚମ୍ବିତ କରିବା ସ୍ୱାଭାବିକ। ମୁଁ ମାତ୍ର ୩ମାସ ପାଇଁ ତାଙ୍କ ଅଧୀନରେ କାମ କରିବାର ସୁଯୋଗ ପାଇଛି। କିନ୍ତୁ ତାଙ୍କର ଅଞ୍ଚଳରେ ଉନ୍ନତିମୂଳକ କାର୍ଯ୍ୟ ପାଇଁ ତତ୍ପରତା, ଅକ୍ଳାନ୍ତ ପରିଶ୍ରମ, ଲୋକ ସମ୍ପର୍କ, କର୍ମଠ ଅଫିସରଙ୍କ ପ୍ରତି ସମ୍ମାନ ମୋତେ ଆଚମ୍ବିତ କରି ପକାଇଥିଲା। ତାଙ୍କର ଆନ୍ତରିକତା ଓ ସାହାଯ୍ୟ ଫଳରେ ଗଞ୍ଜାମରେ ପ୍ରାୟ ୧୦୦ଟି କ୍ଷୁଦ୍ର ଜଳସେଚନ ଯୋଜନା ଓ ଅନେକ ରୁରାଲ ଇଞ୍ଜିନିୟର ରାସ୍ତାର ଉନ୍ନତି ସମ୍ଭବ

ହୋଇଥିଲା। ଜନତା ସରକାରର ପତନ ପରେ ନେତାମାନେ ପ୍ରଥମେ ତାଙ୍କର ଏ ମନୋଭାବକୁ ଭଲ ଦୃଷ୍ଟିରେ ଦେଖି ନଥିଲେ। କିନ୍ତୁ ପରବର୍ତ୍ତୀ କାଳରେ ଚିକିଟି ଏମ.ଏଲ.ଏ. ଚିନ୍ତାମଣି ଦ୍ୟାନସାମନ୍ତରାୟ, କୋଦଳା ଏମ.ଏଲ.ଏ. କାହ୍ନୁ ନାୟକ ଆସ୍କା ଏମ.ଏଲ.ଏ ରାଘବ ପରିଡ଼ା, ପାରଳାଖେମୁଣ୍ଡି ଏମ.ଏଲ.ଏ ବିଜୟ ଜେନା ଓ ସର୍ବୋପରି ମନ୍ତ୍ରୀ ସୋମନାଥ ରଥ, ଏମ.ପି. ରାମଚନ୍ଦ୍ର ରଥ ଓ ଜଗନ୍ନାଥ ରାଓଙ୍କ ହସ୍ତକ୍ଷେପ ଫଳରେ ଯୋଜନା ଗୁଡ଼ିକୁ ସମ୍ପୂର୍ଣ୍ଣ କରିବା ପାଇଁ ଅର୍ଥର ବ୍ୟବସ୍ଥା ହୋଇ ୧୦୦ଟି ଯୋଜନାର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇପାରିଲା। ମୁଁ ବୃନ୍ଦାବନ ବାବୁଙ୍କର ଅତି ପ୍ରିୟ ଅଫିସର ହୋଇଥିବାରୁ କେତେକ ଟାଣୁଆ ମନ୍ତ୍ରୀଙ୍କର କୁ-ଦୃଷ୍ଟିର ପାତ୍ର ହୋଇପଡ଼ିଥିଲି। କିନ୍ତୁ ଏମ.ପି. ରାମଚନ୍ଦ୍ର ରଥ ଓ ଜଗନ୍ନାଥ ରାଓ ଗଞ୍ଜାମରେ ମାତ୍ର ୬ ମାସ ଭିତରେ ହୋଇଥିବା ଉନ୍ନତିମୂଳକ କାର୍ଯ୍ୟଗୁଡ଼ିକ ଦେଖି ମୁଖ୍ୟମନ୍ତ୍ରୀଙ୍କୁ ବୁଝାଇଦେବା ଫଳରେ ମୋ ପ୍ରତି ଆଉ ସରକାରଙ୍କର ବିଷଦୃଷ୍ଟି ରହିଲା ନାହିଁ। କିନ୍ତୁ ଜନୈକ ଶକ୍ତିଶାଳୀ ମନ୍ତ୍ରୀଙ୍କର ତୀକ୍ଷ୍ଣ ଦୃଷ୍ଟି ମୋ ଉପରେ ରହିଥାଏ। ସବୁଦିନ ସମାନ ଭାବରେ ଯାଏ ନାହିଁ। କେତେ ମାସ ପରେ ଏମ.ପି. ରାମଚନ୍ଦ୍ର ରଥ ଓ ମୁଖ୍ୟମନ୍ତ୍ରୀଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିଲା। ଏହାର ଏକ ବିଶେଷ କାରଣ ରହିଥିଲା। ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ଡିଭାଇଡ୍ ଏଣ୍ଡ ରୁଲ ଶାସନ ନିୟମ ଅନୁସାରେ ସେ ରାମଚନ୍ଦ୍ର ରଥଙ୍କୁ ମୁଖ୍ୟମନ୍ତ୍ରୀଙ୍କ ସମାଲୋଚକ ହିସାବରେ ବ୍ୟବହାର କଲେ। ବିଶିଷ୍ଟ ମନ୍ତ୍ରୀ ମହୋଦୟ ବୋଧହୁଏ ଏହି ସୁବିଧାର ଅପେକ୍ଷାରେ ଥିଲେ। ତେଣୁ ସେ ମୁଖ୍ୟମନ୍ତ୍ରୀଙ୍କ ପାଖରେ ଦାବି କଲେ ଯେ ମୋର ବରହମପୁରରୁ ବଦଳି ହେବା ଏକାନ୍ତ ଆବଶ୍ୟକ। କିନ୍ତୁ ମୋର କାର୍ଯ୍ୟ ଫଳରେ ମୁଁ ଜଳସେଚନ ମନ୍ତ୍ରୀ ନିରଞ୍ଜନ ପଟ୍ଟନାୟକ ଓ ଗଞ୍ଜାମ, କୋରାପୁଟ, କଳାହାଣ୍ଡି ଓ ଫୁଲବାଣୀର ସବୁ ଏମ.ଏଲ.ଏ.ଙ୍କ ପାଖରେ ଅତ୍ୟନ୍ତ ପ୍ରିୟ ହୋଇପଡ଼ିଥିଲି। ବଦଳି ପ୍ରଶ୍ନ ଯେତେବେଳେ ଉଠିଲା ସବୁଆଡୁ ପ୍ରତିବାଦ ହେବା ସ୍ୱଭାବିକ। ନିରଞ୍ଜନ ବାବୁ ବୋଧହୁଏ ଏହି ସୁଯୋଗର ଅପେକ୍ଷାରେ ଥିଲେ। ତାଙ୍କର ଜିଲ୍ଲା ସମ୍ବଲପୁର ମାଇନର ଇରିଗେସନ୍ ଅଧୀନରେ। ତା'ର ଅଧିକ୍ଷଣ ଯନ୍ତ୍ରୀ ମୋର ଅନ୍ତରଙ୍ଗବନ୍ଧୁ, ଆର.ଇ.ଓ ସଂସ୍ଥା ଭାଙ୍ଗିଯିବା ପରେ ଆର.ଏଣ୍ଡ.ବି.କୁ ଫେରିଯିବା କଥା। ସେ ସମ୍ବଲପୁର ପାଇଁ ଜଣେ ଉପଯୁକ୍ତ ଅଧିକ୍ଷଣ ଯନ୍ତ୍ରୀଙ୍କର

ସନ୍ଧାନରେ ଥିଲେ। ସଙ୍ଗେ ସଙ୍ଗେ ପ୍ରସ୍ତାବ ଦେଇ ମୁଖ୍ୟମନ୍ତ୍ରୀଙ୍କ ଅନୁମୋଦନ ଆଣି ୧୯୮୨ ମସିହା ଜୁନ୍ ମାସରେ ମୋର ସମ୍ବଲପୁରକୁ ପୋଷ୍ଟିଂ କରିଦେଲେ।

ପାରିବାରିକ କ୍ଷେତ୍ରରେ ଅନେକ ସ୍ଥିରତା ଆସିସାରିଥିଲା। ବଡ଼ ପୁଅର ଇଞ୍ଜିନିୟରିଂ ବିଦ୍ୟା ଶେଷ ହୋଇ ସାରିଥିଲା। ବଡ଼ ଝିଅ ଇକୋନୋମିକସ୍ ଅନର୍ସ ଓ ଡ଼ିଷ୍ଟିଙ୍ଗସନ ରଖି ବି.ଏ. ପାଶ୍ କଲା। ସାନ ଝିଅ ମଧ୍ୟ କୃତିତ୍ୱର ସହିତ ଆଇ.ଏ. ପାଶ୍ କଲା। ସାନପୁଅର ନବମ ଶ୍ରେଣୀ। ଉମା ଏହା ଭିତରେ ବରହମପୁର ଟ୍ରେନିଂ କଲେଜରେ ଏମ.ଇଡ଼ି ପଢ଼ିଦେଲା। ବୃନ୍ଦାବନ ବାବୁଙ୍କ ପ୍ରଚେଷ୍ଟାରେ ମହାମାୟୀ ମହିଳା ବିଦ୍ୟାଳୟ ନାମରେ ବରହମପୁରରେ ଗୋଟିଏ ପ୍ରାଇଭେଟ୍ ମହିଳା କଲେଜ ଖୋଲିଲା। ଉମାକୁ ତାର ପ୍ରିନ୍ସପାଲ ଓ ସେକ୍ରେଟେରୀ ପଦବୀରେ ସ୍ଥାନୀୟ ଲୋକେ ଅଧିଷ୍ଠିତ କଲେ। ପୁରା ଗୋଟିଏ ବର୍ଷ କଲେଜଟିକୁ ସୁଋରୁ ରୂପେ ସେ ଚଳାଇଲା। ବଦଳି ଅର୍ଡ଼ର ପାଇ ସମସ୍ତେ ବ୍ୟସ୍ତ ହେଲେ। ଉମାର ଇଛା ଥିଲା, ଆଉ ବର୍ଷେ କି ଦିବର୍ଷ କଲେଜରେ ରହି ତାର ପରିଋଳନା କରିଥାନ୍ତା। ମୁଁ ଯେତେବେଳେ ନିରଞ୍ଜନ ବାବୁଙ୍କୁ ଉମାର ଏହି ମନ କଥା କହିଲି, ସେ ସଙ୍ଗେ ସଙ୍ଗେ ପ୍ରସ୍ତାବ ଦେଲେ କେଉଁଝରର ମହିଳା କଲେଜର ପ୍ରିନ୍ସିପାଲ ନାହାନ୍ତି। ମିସେସ୍ ନାୟକଙ୍କ ଭଳି ଆମର ଜଣେ ପ୍ରିନ୍ସପାଲ ଆବଶ୍ୟକ। ସେ ମୋ ଠାରୁ ଦରଖାସ୍ତ ନେଇ ସେକ୍ରେଟେରୀଙ୍କୁ ନିର୍ଦ୍ଦେଶ ଦେଲେ ଯେ ଶୀଘ୍ର ମିସେସ ନାୟକଙ୍କୁ ପ୍ରିନସ୍‌ପାଲ କରିଦିଅନ୍ତୁ। ଏହା ଏକ ବିଷମ ସମସ୍ୟା ହେଲା। ବାଧ ହୋଇ ଉମା କେଉଁଝର ମହିଳା ବିଦ୍ୟାଳୟରେ ଯୋଗଦେଲା। ଅବଶ୍ୟ ୪/୫ ମାସ ପରେ ଘରେ ବହୁତ ଅସୁବିଧା ହେବାରୁ ସେ ଇସ୍ତଫା ଦେଇଦେଲା।



## ବିଂଶ ପରିଚ୍ଛେଦ

# ଉତ୍ତର ଓଡ଼ିଶାରେ କର୍ମଭୂମି

ବରହମ୍ପୁରରେ ତିନି ବର୍ଷ ରହଣି କାଳ ମଧ୍ୟରେ ଦକ୍ଷିଣଓଡ଼ିଶାରେ କ୍ଷୁଦ୍ର ଜଳସେଚନ କ୍ଷେତ୍ରରେ ଏକ ବିପ୍ଳବାତ୍ମକ ଚିନ୍ତାଧାରା ସାଙ୍ଗକୁ ଯଥେଷ୍ଟ କ୍ଷେତ୍ର ଅଭିଜ୍ଞତା ସୃଷ୍ଟି ହୋଇପାରିଥିଲା। ପ୍ଲାନ୍ ସ୍କିମ୍ ଜରିଆରେ ଆସୁଥିବା ଅର୍ଥ ସହିତ ମରାମତି ଗ୍ରେଣ୍ଟ କର୍ମ ପାଇଁ ଖାଦ୍ୟଯୋଜନା, ବନ୍ୟା ଓ ବାତ୍ୟା ପାଣ୍ଠିର ସଦୁପଯୋଗ କରିପାରିଲେ ବହୁତ ଗୁଡ଼ିଏ ଯୋଜନାର କାର୍ଯ୍ୟକୁ ତ୍ୱରାନ୍ୱିତ କରିହେବ। ବହୁଦିନଠୁଁ ଅବହେଳିତ ଡିଫଙ୍କଟ୍ ଯୋଜନାକୁ ଯେ ପୁର୍ନଜୀବିତ କରି ହେବ, ତାହା ବରହମପୁରରେ ୩ ବର୍ଷର କାର୍ଯ୍ୟ ସମୟ ମଧ୍ୟରେ ମୋର ସହକର୍ମୀମାନେ କାର୍ଯ୍ୟରେ ପ୍ରତିପାଦିତ କରିପାରିଥିଲେ। ଉତ୍ତରଓଡ଼ିଶା ବିଶେଷ କରି କେଉଁଝରରେ ଏହି ଚିନ୍ତାଧାରାର ପ୍ରସାର ପାଇଁ ମନ୍ତ୍ରୀ ନିରଞ୍ଜନ ପଟ୍ଟନାୟକ ଓ ମୁଖ୍ୟମନ୍ତ୍ରୀ ବୀରେନ ପଟ୍ଟନାୟକ ମୋତେ ସମ୍ବଲପୁରକୁ ପଠାଇଥିଲେ। ତେଣୁ ମୋ ଉପରେ ଥିବା ତାଙ୍କର ଏହି ବିଶ୍ୱାସକୁ ବାସ୍ତବ ରୂପ ଦେବା ମୋର ପ୍ରଥମ କର୍ତ୍ତବ୍ୟ ମନେ କରି ଉତ୍ତର ଓଡ଼ିଶାରେ ମୋର କର୍ମକ୍ଷେତ୍ରରେ ଯାତ୍ରା ଆରମ୍ଭ କଲି।

୧୯୮୨ ଅଗଷ୍ଟ ୧୮ ତାରିଖରେ ସମ୍ବଲପୁର ଓ ତାର ଆଖପାଖ ଅଞ୍ଚଳରେ ହୋଇଥିବା ପ୍ରବଳ ବର୍ଷା ଆଗରୁ କେବେ ହୋଇ ନଥିଲା। ମାତ୍ର ୬ ଘଣ୍ଟା ମଧ୍ୟରେ ୧୮ ଇଞ୍ଚ ବର୍ଷା ସ୍ୱଚକ୍ଷୁରେ ନ ଦେଖିଲେ କେହି ବିଶ୍ୱାସ କରିବେ ନାହିଁ। ଆକାଶରୁ ବର୍ଷୁଥିବା ବାରିଧାରା ୧୨ ସେ.ମି. ପାଇପରୁ ପଡୁଥିବା ଜଳଧାରା ଭଳି ମନେ ହେଉଥିଲା। ଏହା ଫଳରେ ଦେଓଗଡ଼, କୁଚିଣ୍ଡା ଓ ଝାରସୁଗୁଡ଼ା ସବ ଡିଭିଜନରେ ବହୁତ କ୍ଷୁଦ୍ର ଜଳସେଚନ ଯୋଜନାର କ୍ଷତି ହେବା ସଙ୍ଗେ ସଙ୍ଗେ ସମ୍ବଲପୁର ସହରର ପ୍ରଭୂତ କ୍ଷତି ହୋଇଥିଲା। ସାରା ସହରରେ ଆଣ୍ଠୁଏ ଉଚ୍ଚରେ ଜଳ ସ୍ରୋତ ପ୍ରବାହିତ ହେଲା। ସମଲେଶ୍ୱରୀ ଠାକୁରାଣୀଙ୍କ ନିକଟରେ ନିର୍ମିତ ବାଲିବନ୍ଧ ଭାଙ୍ଗି ନଥିଲେ

ସମ୍ବଲପୁର ସହର ହୁଏତ ମହାନଦୀ ଗର୍ଭରେ ଲୀନ ହୋଇଯାଇଥାଆନ୍ତା। ମାଇନର ଇରିଗେସନ୍‌ର ଭଡ଼ାଘରେ ସିମେଣ୍ଟ ଗୋଦାମରେ ପାଣି ପଶି ବହୁତ କ୍ଷତି ଘଟିଲା। ତେଣୁ ବନ୍ୟାପାଣ୍ଠି ସଦୁପଯୋଗ କରି ପ୍ରଥମେ ଗୋଟିଏ ସିମେଣ୍ଟ ଗୋଦାମ ଓ ଷ୍ଟୋରୟାର୍ଡ଼ ସୃଷ୍ଟି କରାଗଲା। ଗୋଟିଏ ଓ୍ୱାର୍କସପ୍ ରେଷ୍ଟସେଡ୍, ୬ଟି କ୍ୱାର୍ଟର ଓ ୧୦ କଠୋରୀ ବିଶିଷ୍ଟ ବେରେକ୍ ଏହି ବନ୍ୟା ସାହାଯ୍ୟ ପାଣ୍ଠିର ସଦୁପଯୋଗ ଫଳରେ ସମ୍ଭବ ହେଲା। ୧୯୮୨ ମସିହାର ଅଗଷ୍ଟ ୨୯ ତାରିଖରେ ହୋଇଥିବା ବନ୍ୟା ବଲାଙ୍ଗୀର, ଫୁଲବାଣୀ, କଟକ ଓ ପୁରୀ ଜିଲ୍ଲା ପାଇଁ ଏକ ସ୍ମରଣୀୟ ଐତିହାସିକ ବନ୍ୟାଭାବେ ଲିପିବଦ୍ଧ ହୋଇ ରହିଥିବ। ଆମର ପରିବାର ପାଇଁ ଏହା ଏକ ସ୍ମରଣୀୟ ଘଟଣା। ଶୁଣିଲେ ଗଳ୍ପ ଭଳି ମନେ ହେଉଥିଲେ ହେଁ ଏହା ଏକ ବାସ୍ତବ ଘଟଣା। ଅଗଷ୍ଟ ୨୯ ତାରିଖ ଦିନ ଚିର ମରୁଡ଼ି ପ୍ରପିଡ଼ିତ ସମ୍ବଲପୁରର ପଦ୍ମପୁର ସବ୍‌ଡିଭିଜନ ଓ ବଲାଙ୍ଗିର ପାଟଣାଗଡ଼ ଓ ଟିଟିଲାଗଡ଼ ସବଡ଼ିଭିଜନ ଓ ଫୁଲବାଣୀର ବୌଦ ଓ ଫୁଲବାଣୀ ସବ୍‌ଡିଭିଜନରେ ପ୍ରବଳ ବର୍ଷା ହେବା ଫଳରେ ମହାନଦୀର ଉପନଦୀ ଅଙ୍ଗ, ସୁକ ତେଲ, ସାଲକୀ, ବାଘ ଓ ମେହେରାଣୀ, ବୁର୍ତ୍ତିଙ୍ଗ ନଦୀରେ ପ୍ରବଳ ବନ୍ୟା ସୃଷ୍ଟି ହେଲା। ମହାନଦୀର ଉପର ଅବବାହିକାରେ ଆଦୌ ବର୍ଷା ହୋଇନଥିଲା। କିନ୍ତୁ ଉପରୋକ୍ତ ନଦୀ ମାନଙ୍କ ଅବବାହିକାରେ ୨ ଦିନରେ ୩୦ ସେ.ମିରୁ ୫୦ ସେ.ମି. ପର୍ଯ୍ୟନ୍ତ ବୃର୍ଷା ହୋଇଥିଲା। ନରାଜଠାରେ ମହାନଦୀର ଅବବାହିକାର କ୍ଷେତ୍ରଫଳ ୧୦୮ ହଜାର ବର୍ଗ କି.ମି., ତା ଭିତରୁ ହୀରାକୁଦଠାରେ ଅବବାହିକାର କ୍ଷେତ୍ରଫଳ ୭୨ ହଜାର ବର୍ଗ କି.ମି., ହୀରାକୁଦ ତଳେ ଥିବା ପ୍ରଧାନ ଉପନଦୀ ତେଲର୍ ଅବବାହିକା କଳାହାଣ୍ଡି ଜିଲ୍ଲାରେ ବର୍ଷାର ପ୍ରକୋପ ବେଶୀ ନଥିଲେ ମଧ ଚିର ମରୁଡ଼ି ପ୍ରପୀଡ଼ିତ ପଦ୍ମପୁର, ଟିଟିଲାଗଡ଼, ବଲାଙ୍ଗିର ଓ ବୌଦ୍ଧ ସବ୍‌ଡ଼ିଭିଜନ ଅଞ୍ଚଳରୁ ଆସୁଥିବା ବନ୍ୟାଜଳ କଟକଠାରେ ୧୫ ଲକ୍ଷ ଘନଫୁଟ ବନ୍ୟା ସୃଷ୍ଟି କରିବାକୁ ସକ୍ଷମ ହୋଇଥିଲା। କହିବା ବାହୁଲ୍ୟ ଯେ ଅଗଷ୍ଟ ୨୮,୨୯, ୩୦ ଓ ୩୧ ତାରିଖ ହୀରାକୁଦରେ ଗେଟ୍ ବନ୍ଦ ଥିଲା।

ସମ୍ବଲପୁରରେ ଯୋଗଦେବା ପରେ ଅଗଷ୍ଟ ୨୨ ତାରିଖ ଦିନ ନିଜର ଆସବାବପତ୍ର ଧରି ମୁଁ ବଡ଼ ଝିଅକୁ ସାଙ୍ଗରେ ଧରି ସମ୍ବଲପୁର ଚାଲି ଆସିଲି। ଉମା

ପ୍ରିନ୍ସପାଲ ଥିବା ମହାମାୟୀ ମହିଳା ବିଦ୍ୟାଳୟର ଛାତ୍ରୀମାନେ ତାକୁ ଗଣେଶ ପୂଜା ପାଇଁ ଗୋଟିଏ ସପ୍ତାହ ଅଟକାଇ ଦେଲେ। ଏଣେ ବଡ଼ଝିଅ ଇପ୍ସିତାର ବରହମପୁର ବିଶ୍ୱବିଦ୍ୟାଳୟରେ ଇକୋନୋମିକ୍ସ ଏମ.ଏ.ରେ ନାମଲେଖା ସରିଥାଏ। ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ମାର୍କଲିଷ୍ଟ ଅନୁସାରେ ଏଡ଼ମିସିନ୍ ନ କରି ଇଣ୍ଟରଭିଉ ଅନୁସାରେ ଏଡ଼ମିସନ୍ କଲେ। ଫଳରେ ଇଲା ଭଳି ଅନେକ ମେଧାବୀ ଛାତ୍ରଛାତ୍ରୀ ବିଶ୍ୱବିଦ୍ୟାଳୟର ଏହି ମନମୁଖୀ ବିଗ୍ଭରର ଶିକାର ହେଲେ। କିନ୍ତୁ ଗଙ୍ଗାଧର ମେହେର କଲେଜ ଏକ ସରକାରୀ ଅନୁଷ୍ଠାନ। ସେଠାରେ ସିଲେକସନ୍ ମାର୍କ ବେସିସରେ ହେବା ଫଳରେ ଇଲାର ସିଲେକସନ୍ ସହଜ ସାଧ୍ୟ ହେଲା। ସେପ୍ଟେମ୍ବର ପହିଲାରେ ଏଡ଼ମିସନ୍। ଅଗଷ୍ଟ ୨୯ ତାରିଖ ଦିନ ଭଞ୍ଜବିହାର ବିଶ୍ୱବିଦ୍ୟାଳୟରୁ ସାର୍ଟିଫିକେଟ୍ ଆଣି ଉମା, ସାନ ଝିଅ ସିଲା ଓ ସାନ ପୁଅ ପୁପୁଲୁ ବରହମପୁରରୁ ବଲାଙ୍ଗିର ବାଟ ଦେଇ ସମ୍ବଲପୁର ଅଭିମୁଖେ ଯାତ୍ରା ଆରମ୍ଭ କଲେ ଅଗଷ୍ଟ ୩୦ ତାରିଖ ସକାଳ ୭ଟା ସମୟରେ। ସାଙ୍ଗରେ ଦୁଇଜଣ ଡ୍ରାଇଭର ଆଜିଜ୍ ଓ ଗୋବିନ୍ଦ ପଣ୍ଡା ଓ ଜଣେ ଲେକଚରର ଭାଗବତ ପାତ୍ର। ଟିକାବାଲି ପହଞ୍ଚିବା ବେଳକୁ ସମୟ ଦିନ ୧୧ଟା। ଦେଖିଲେ ସେଠାକାର ଗୋଟିଏ କଜୱେ ଉପରେ ପ୍ରବଳ ବନ୍ୟା ସ୍ରୋତ ଗ୍ଭଲୁଛି। ଫେରିଆସି ଟିକାବାଲିରେ ଥିବା ମାଇନର ଇରିଗେସନ୍ ଜୁନିୟର ଇଞ୍ଜିନିୟର (ଯାହାଙ୍କ ସ୍ତ୍ରୀ ବଡ଼ଝିଅ ଇଲାର ସାଙ୍ଗ) ଘରେ ମଧ୍ୟାହ୍ନ ସମୟଟି କଟାଇ ପୁଣି ଯାତ୍ରା ଆରମ୍ଭ କଲେ ସନ୍ଧ୍ୟା ୪ଟା ସମୟରେ। ଯେତେବେଳେ ଦେଖିଲେ କଜୱେ ଉପରେ ବନ୍ୟା ସ୍ରୋତ କମିବା ପରିବର୍ତ୍ତେ ବଢ଼ିବାରେ ଲାଗିଛି ସେମାନେ ବାଧ୍ୟ ହୋଇ ଘାଟି ତଳକୁ ଫେରି, ଭଞ୍ଜନଗର, ଖଲିକୋଟ ବାଟ ଦେଇ ସମ୍ବଲପୁରକୁ ଫେରିବାକୁ ମନସ୍ଥ କଲେ। ସନ୍ଧ୍ୟା ୫ଟା ସମୟରେ ଭଞ୍ଜନଗର ଘାଇର ସ୍ପିଡୱେ ଯାହାକି ଷ୍ଟେଟ୍ ହାଇୱେ ଏସ.ଏଚ.-୭ର ଗୋଟିଏ କଜୱେ, ତା' ଉପରେ ୨ମିଟର ପାଣି ଯାଉଥିବା ଦେଖି ହତାଶ ହୋଇପଡ଼ିଲେ। ଭାଗ୍ୟକୁ ସାଙ୍ଗରେ ଥିବା ଭାଗବତ ବାବୁଙ୍କର ଜଣେ ବନ୍ଧୁ ମୋଜାଗଡ଼ରେ ଗୋଟିଏ ବ୍ୟାଙ୍କର ଏକାଉଟେଣ୍ଟ ଥିଲେ। ଅନ୍ୟ ଉପାୟ ନ ପାଇ ସମସ୍ତେ ତାଙ୍କ ଘରେ ରାତ୍ରିଯାପନ କଲେ। ତା'ପରଦିନ ସକାଳେ ପୁଣି ଫୁଲବାଣୀ ଅଭିମୁଖେ ଯାତ୍ରା ଆରମ୍ଭ କଲେ। ସେତେବେଳକୁ କଜୱେ ଉପରେ ପ୍ରାୟ ୧ ମିଟର

ପାଣି ପ୍ରବାହିତ ହେଉଥାଏ। ଭଞ୍ଜନଗର ମାଇନର ଇରିଗେସନ୍ ଏସ.ଡ଼ି.ଓ ବୀରେନ ପାତ୍ରଙ୍କ ସହାୟତାରେ ଗାଡ଼ିର ସାଧାରଣ ମରାମତି କରାଇ ପୁଣି ଚାଲିଲେ କଳିଙ୍ଗା ଘାଟି ପାର୍ ହୋଇ ଫୁଲବାଣୀ ଅଭିମୁଖେ। ସେଠାରେ ଦେଖିଲେ ପିଲାସାଲକୀ ପୋଲ ଭାଙ୍ଗିବା ଉପରେ। ଆହୁରି ମଧ୍ୟ ଶୁଣିଲେ ଫୁଲବାଣୀ ଓ ବୌଦ୍ଧ ଭିତରେ ସଡ଼କରେ ବହୁତ ଘାଇ ହୋଇଯାଇଛି। ଆଗକୁ ଯିବାର ଉପାୟ ନାହିଁ। ସେଦିନ ଅଗଷ୍ଟ ୩୧ ତାରିଖ। ସେପ୍ଟେମ୍ବର ପହିଲାରେ ଗଙ୍ଗାଧର ମେହେର କଲେଜରେ ଇଲାର ନାମ ଲେଖା। ଅନ୍ୟ ଉପାୟ ନ ଦେଖି ସେମାନେ ଫେରିଲେ ଭଞ୍ଜନଗର। ସେତେବେଳକୁ ଭଞ୍ଜନଗର ପାଖରେ ଥିବା କଜୱେରେ ବନ୍ୟାଜଳର ପ୍ରକୋପ କମିଯାଇଥାଏ। ଗ୍ରାମବାସୀଙ୍କ ସହାୟତାରେ ଗାଡ଼ିଟି କୌଣସି ମତେ ପାରି କରିଦେଇ ଭଞ୍ଜନଗରରେ ପହଞ୍ଚିଲେ ସନ୍ଧ୍ୟା ୫ଟା ବେଳେ। ସେଠାରୁ କୋଦଳା ଖଲିକୋଟ ଦେଇ କଟକ ମୁଖେ ଯାତ୍ରା ଆରମ୍ଭ ହେଲା ସନ୍ଧ୍ୟା ୬ଟା ବେଳେ। ଭୁବନେଶ୍ୱର ପହଞ୍ଚିବା ବେଳକୁ ରାତି ଗୋଟାଏ। ଭୁବନେଶ୍ୱର ଓ କଟକ ମଧ୍ୟରେ ପ୍ରବଳ ବନ୍ୟା। ନେସନାଲ୍ ହାଇୱେର ଦୁଇପାଖ ଟଳଟଳ ହେଉଛି। କେତେବେଳେ ଏହା ଭାଙ୍ଗିଯିବ କହି ହେବନି। କହିବା ବାହୁଲ୍ୟ ଯେ ଆମ ଗାଡ଼ି ପ୍ରତାପ ନଗରୀ ଅତିକ୍ରମ କରିବାର ଅଧଘଣ୍ଟା ମଧ୍ୟରେ ନେସନାଲ ହାଇୱେରେ ଅଧ କି.ମି. ଲମ୍ବ ଏକ ବିରାଟ ଘାଇ ସୃଷ୍ଟି ହୋଇ ଗମନାଗମନ ଦେଢ଼ମାସ ପର୍ଯ୍ୟନ୍ତ ବନ୍ଦ ହୋଇଗଲା। ଗାଡ଼ି ଆସି ଚୌଦ୍ୱାରରେ ପହଞ୍ଚିବା ବେଳକୁ ରାତି ଦୁଇଟା। ନୂଆପାଟଣା ଠାରୁ ଚୌଦ୍ୱାର ପର୍ଯ୍ୟନ୍ତ ଦୀର୍ଘ ୩.କି.ମି. ଧରି ସଡ଼କ ପୁରା ବୁଡ଼ି ରହିଛି। ଏହାକୁ ଅତିକ୍ରମ କରିବା ଆଦୌ ସମ୍ଭବ ନୁହେଁ। ୩୧ ତାରିଖ ରାତ୍ରିଟି ସେଠାରେ ଥିବା ଏକ ସାର ଯୋଗାଣ ଅଫିସ୍‌ରେ କଟାଇଲେ। ସେପ୍ଟେମ୍ବର ପହିଲା ସକାଳେ ବରହମ୍‌ପୁରର ଡ୍ରାଇଭର ଅଜିଜ୍ କହିଲା ଯେ ଚୌଦ୍ୱାରରେ ଆମ ପାଖରେ ଆଗରୁ ଥିବା ଏକଜିକ୍ୟୁଟିଭ୍ ଇଞ୍ଜିନିୟର ମନୋରଞ୍ଜନ ମହାନ୍ତି ଅଛନ୍ତି। ତାଙ୍କ ଘରେ ପହଞ୍ଚି ମୋତେ ସମ୍ବଲପୁରକୁ ଫୋନ୍ କରି ସମସ୍ତ ବିଷୟ ଜଣାଇଦେଲେ। ୩ ଦିନ ଧରି ମନର ବ୍ୟଗ୍ରତା ସାମୟିକ ଭାବେ ପ୍ରଶମିତ ହେଲା। ସମସ୍ତ ବିଷୟ ଉଲ୍ଲେଖ କରି ଏଡ଼ମିସନ୍ ପାଇଁ ୩ ଦିନ ସମୟ ପ୍ରିନ୍ସିପାଲଙ୍କ ଠାରୁ ନେଇଆସି ଢେଙ୍କାନାଳକୁ ଖବର ଦେଲି। ସେଠାରେ ଥିବା

ଏସ.ଡ଼ି.ଓ. ଢେଙ୍କାନାଳ, ଷଡ଼ଙ୍ଗି, ନିହଳ ପ୍ରସାଦ ଚଣ୍ଡିଖୋଲ ଦେଇଯାଇ ଚୌଦ୍ୱାରରେ ପହଞ୍ଚିଲେ ଓ ସେପ୍ଟେମ୍ବର ୨ ତାରିଖ ସନ୍ଧ୍ୟାବେଳେ ପିଲାମାନେ ନିରାପଦରେ ସମ୍ବଲପୁରରେ ଆସି ପହଞ୍ଚିଲେ। ତହିଁ ଆରଦିନ ଗଙ୍ଗାଧର ମେହେର କଲେଜରେ ବଡ଼ ଝିଅର ଇକୋନୋମିକ୍ସ ଏମ.ଏ.ରେ ଏଡ଼ମିସନ ହେଲା। ସାନ ଝିଅର ସରକାରୀ ମହିଳା ମହାବିଦ୍ୟାଳୟରେ ଓ ସାନ ପୁଅର ସମ୍ବଲପୁର୍ ଜିଲ୍ଲା ସ୍କୁଲରେ ନାମଲେଖା ହେଲା। ଈଶ୍ୱରଙ୍କ କୃପାରୁ ପିଲାମାନଙ୍କର ଏହି ସଂକଟପୂର୍ଣ୍ଣ ଯାତ୍ରାର ନିର୍ବିଘ୍ନରେ ପରିସମାପ୍ତି ଘଟିଲା।

ବନ୍ୟା ଯୋଗୁଁ କ୍ଷତିଗ୍ରସ୍ତ ହୋଇଥିବା କ୍ଷୁଦ୍ର ଜଳସେଚନ ଯୋଜନା ଗୁଡ଼ିକର ପୁନରୁଦ୍ଧାର ପାଇଁ ଆସିଥିବା ଅର୍ଥର ସଦୁପଯୋଗ ପାଇଁ ମୁଁ ବିଶେଷ ଯତ୍ନବାନ ଥିଲି। ଏହି ଅର୍ଥର ସଦୁପଯୋଗ ହୋଇ କେତେଗୁଡ଼ିଏ ଯୋଜନା ପୁନରୁଦ୍ଧାର ସମ୍ଭବ ହେଲା। ଏହି ଅର୍ଥର ସଦୁପଯୋଗ ଫଳରେ ଢାଲଖୋଲ ଯୋଜନାର ସ୍ପିଲ ଚେନାଲରେ ୨ଟି ୧୦ ଫୁଟିଆ ଓଗିଫଲ୍ ତିଆରି ହେଲା। ଘେଁସ୍ ପାଖରେ ଥିବା ଏହି କ୍ଷୁଦ୍ର ଜଳସେଚନ ଯୋଜନାର ଆୟକଟ ୨୮୦୦ ଏକର। ଅବବାହିକା ମାତ୍ର ୧୭ ବର୍ଗକି.ମି.। କେନାଲ ଗୁଡ଼ିକର ମରାମତି ପାଇଁ ଖାଦ୍ୟପାଣ୍ଠିର ସଦ୍‌ବ୍ୟବହାର ପାଇଁ ପୁରୁଣା ଆନିକଟକୁ ମରାମତି କରି ଯୋଜନାଟିକୁ ପୁନର୍ଜିବିତ କରାଗଲା। ବାଲନ୍ ଠାରେ ଭାଙ୍ଗିଯାଇଥିବା କ୍ଷୁଦ୍ର ଜଳସେଚନ ଯୋଜନାକୁ ବନ୍ୟାପାଣ୍ଠିର ମାତ୍ର ୪ ଲକ୍ଷ ଟଙ୍କା ବ୍ୟୟରେ ପୁନର୍ଜିବିତ କରି ୨୦୦ ଏକର ଜଳସେଚିତ ଜମିର ପୁନରୁଦ୍ଧାର ସେ ଅଞ୍ଚଳରେ ଲୋକଙ୍କ ମଧ୍ୟରେ ଏକ ଚହଳ ସୃଷ୍ଟି କରିଥିଲା। କେନ୍ଦୁଝର ଜିଲ୍ଲାକୁ ବନ୍ୟା ଓ ବାତ୍ୟା ସାହାଯ୍ୟ ପାଣ୍ଠିରୁ ପ୍ରାୟ ୩୫ ଲକ୍ଷ ଟଙ୍କା ମିଳିଥିଲା। ଏହି ଅର୍ଥର ବିନିଯୋଗ କରି ୯ଲକ୍ଷ ଟଙ୍କା ବ୍ୟୟରେ ଘାସିପୁରା ବ୍ଲକ୍‌ରେ ଓସ୍ତପୁରା କ୍ଷୁଦ୍ର ଜଳସେଚନ ଯୋଜନା ଓ ୧୦ ଲକ୍ଷ ଟଙ୍କା ବ୍ୟୟରେ ମଦନପୁର କ୍ଷୁଦ୍ର ଜଳସେଚନ ଯୋଜନା ଆନନ୍ଦପୁର ବ୍ଲକ୍‌ରେ ୧୨ ଲକ୍ଷ ଟଙ୍କା ବ୍ୟୟରେ ବାହିଆ ଜଳସେଚନ ଯୋଜନାର ମାଟିବନ୍ଧ ସ୍ପିଲୱେ ନିର୍ମାଣ ହୋଇ ଜଳ ଭଣ୍ଡାର ସୃଷ୍ଟି ହେବା ସମ୍ଭବ ହୋଇପାରିଲା। ପରବର୍ତ୍ତୀ କାଳରେ ଆର.ଏଲ. ଜି.ପି. ଅର୍ଥର ବିନିଯୋଗ ହୋଇ ଏହି ୩ଟି ଯୋଜନାର କେନାଲ ନିର୍ମାଣ ସମ୍ଭବ ହେଲା। କେନ୍ଦୁଝର ବ୍ଲକ୍‌ର ସାନମାଛ କାନ୍ଦଣା

ଓ ଅରଡ଼େଇ ଦୁଇଟ ଉଚ୍ଚମାନର କ୍ଷୁଦ୍ର ଜଳସେଚନ ଯୋଜନାର ସ୍ପିଲଓ୍ୱେ ତଳେ କେତେକ ପ୍ରୋଟେକସନ୍ କାର୍ଯ୍ୟ ଫଳରେ ଦୁଇଟି ଯାକ ଯୋଜନା ଧ୍ୱଂସ ମୁଖରୁ ଉଦ୍ଧାର ପାଇବା ସମ୍ଭବ ହେଲା। ତେଲକୋଇ ବ୍ଲକ୍‌ର ଓଡ଼ିଆ ଯୋଜନାର ସ୍ଲୁଇସ୍ ଭାଙ୍ଗିଯିବା ଫଳରେ ଏହାର ମାଟି ବନ୍ଧରେ ଏକ ବିରାଟ ଘାଇ ସୃଷ୍ଟି ହେଲା। ଏହାର ପୁନରୁଦ୍ଧାର ସହିତ ଅନ୍ୟ ମାଟି ବନ୍ଧରେ ସେଭଳି ଘାଇ ନ ହେବା ପାଇଁ ଯୋଜନା କରାଗଲା। ୧୯୬୭ରୁ ୧୯୭୪ ମଧ୍ୟରେ ନିର୍ମିତ ସବୁ ସ୍ଲୁଇସରେ ଡିଜାଇନ ତ୍ରୁଟି ରହିଯାଇଥିଲା। ଗଞ୍ଜାମ ଜିଲ୍ଲାର ଝରନଈ ଓ ସମ୍ବଲପୁର ଜିଲ୍ଲାର ବାଙ୍କସାଲ କ୍ଷୁଦ୍ର ଜଳସେଚନ ଯୋଜନାର ମାଟିବନ୍ଧ ଏହି କାରଣରୁ ଭାଙ୍ଗିଥିଲା। ତେଣୁ ମାଟିବନ୍ଧର ସୁରକ୍ଷା ପାଇଁ ସ୍ଲୁଇସ୍‌ର ସୁରକ୍ଷା ଯେ ଏକାନ୍ତ ଆବଶ୍ୟକ ତାହା ମୋର ହୃଦୟଙ୍ଗମ ହେଲା।

ଏହାକୁ ଆଖି ଆଗରେ ରଖି କେନ୍ଦୁଝର ଜିଲ୍ଲାର ସାନମାଛ କାନ୍ଦନାର ସ୍ଲୁଇସ୍, ଢ଼େଙ୍କାନାଳ ଜିଲ୍ଲାର ଗୁଣ୍ଡରାପୋଷି ସ୍ଲୁଇସ୍, ଡମଶାଳ ରିଜରଭର ସ୍ଲୁଇସ୍, ସମ୍ବଲପୁର ଜିଲ୍ଲାର କୁମ୍ଭ ମାଟିବନ୍ଧର ସ୍ଲୁଇସ୍ ଗୁଡ଼ିକୁ ମରାମତି କରାଗଲା। ଏହି ସ୍ଲୁଇସ୍‌ଗୁଡ଼ିକ ୧୯୬୭ରୁ ୧୯୭୪ ମଧ୍ୟରେ ନିର୍ମିତ ହୋଇଥିଲା ଓ ସେଗୁଡ଼ିକ ପଥର ଯୋଡ଼ାଇ ହୋଇ ନିର୍ମିତ ହୋଇଥିଲା। ଏବଟମେଣ୍ଟ ଓ୍ୱାଲ୍‌ଗୁଡ଼ିକର ତଳ ଚଉଡ଼ା ୦.୯ ମି ଓ ଉପର ଚଉଡ଼ା ୦.୪୫ ମି. ଥିଲା। ଯୋଡ଼ାଇର ମାନ ମଧ୍ୟ ନିମ୍ନ ଧରଣର ଥିଲା। ସ୍ଲୁଇସ୍ ଗୁଡ଼ିକର ଭିତରପଟେ ଆର.ସି.ସି.ର ୩ ଇଞ୍ଚ୍ କାନ୍ଥ ତିଆରି କରି ସେଗୁଡ଼ିକର ସୁରକ୍ଷା କରାଗଲା। ତିରିଶବର୍ଷ ବିତି ଯାଇଥିଲେ ମଧ୍ୟ ସେଗୁଡ଼ିକ ସୁରକ୍ଷିତ ଅବସ୍ଥାରେ ରହିଛି।

ଢେଙ୍କାନାଳ ଜିଲ୍ଲା ପାଇଁ ଆସିଥିବା ବନ୍ୟା ସାହାଯ୍ୟ ପାଣ୍ଠି ଓ କର୍ମ ପାଇଁ ଖାଦ୍ୟ ଯୋଜନା ଅର୍ଥର ଉପଯୋଗ କରି ଅନୁଗୁଳର କୁକୁରପେଟା, ବଡ଼କେରାଜାଙ୍ଗ, ଜଗନ୍ନାଥପୁର, ପାଲଲହଡ଼ାର ସାଳିଆ ଗୁଣ୍ଡା, ଗଣ୍ଡିଯୋର, ଢେଙ୍କାନାଳର ତିନିମୁହାଣି, ପିଙ୍ଗୁଆ ଆଦି ଯୋଜନା ଗୁଡ଼ିକୁ ପୁନର୍ଜିବିତ କରିବା ସମ୍ଭବ ହେଲା। ବନ୍ୟା ଯୋଗୁଁ ବଲାଙ୍ଗୀର ଜିଲ୍ଲାର କ୍ଷତିର ପରିମାଣ ଥିଲା, ସବୁଠାରୁ ବେଶୀ। ବନ୍ୟା ମରାମତି ପାଇଁ ମିଳିଥିବା ଅର୍ଥର ସଦୁପଯୋଗ କରି ପୁନରୁଦ୍ଧାର ହୋଇଥିବା ଜଳସେଚନ

ଯୋଜନା ମଧ୍ୟରେ ଲୋଇସିଂହା ସାଗର, ସୁଜିଆ, ନେହେନା ବନ୍ଧ, କାର୍ଲାକଟା, ମେଣ୍ଡଲିମୁଣ୍ଡା, ନରସିଂହ କଟା, ଗୌରକେଲା, ନରସିଂହ କଟା, ଘୁଙ୍ଗିଯୋର ଆଦି ନାମ ଉଲ୍ଲେଖଯୋଗ୍ୟ।

ସେହିପରି ସୁନ୍ଦରଗଡ଼ ଜିଲ୍ଲାର କୁରାଡ଼ି ଓ କୁଲିପୋଷ ଓ ଘୁଗୁର୍ଲିଯୋର ଯୋଜନାର ପୁନରୁଦ୍ଧାର ଏହି ପାଣ୍ଠିର ସଦୁପଯୋଗ ଫଳରେ ସମ୍ଭବ ହୋଇଥିଲା।

ବନ୍ୟା ସାହାଯ୍ୟ ପାଣ୍ଠିକୁ ଛାଡ଼ି ପ୍ଲାନ୍ ସ୍କିମ୍ ଜରିଆରେ ଆସୁଥିବା ଟଙ୍କାର ସଦୁପଯୋଗ କରି ପ୍ରତି ଜିଲ୍ଲାରେ ଆୟକଟ ବୃଦ୍ଧି ପାଇଁ ମୋର ସହକର୍ମୀମାନଙ୍କୁ ପରାମର୍ଶ ଦେଇଥିଲି। ବଲାଙ୍ଗିର ଜିଲ୍ଲାରେ ନିର୍ମିତ ମଣିଣାକଟା, ଦେଓଗାଁ ସାଗର ଓ ତୁମେରବାହାଲ ଯୋଜନା, ଏହି ସମୟରେ ସମ୍ପୂର୍ଣ୍ଣ ହୋଇଥିଲା।

ଇମ୍ପ୍ଲିମେଣ୍ଟସନ୍ ଫେକ୍ଟ୍ରି ପାଇଁ ବଲାଙ୍ଗିର ଜିଲ୍ଲାର ସଇଁତାଲାକୁ ଭାରତ ସରକାର ମନୋନୀତ କରିଥାନ୍ତି। କେନ୍ଦ୍ରମନ୍ତ୍ରୀ କାମାକ୍ଷା ପ୍ରସାଦ ସିଂହଦେଓ ହଠାତ୍ ମୋତେ ସମ୍ବଲପୁରରେ ଦେଖିଲେ। ସେତେବେଳକୁ ଇରିଗେସନ୍ ଇଞ୍ଜିନିୟର ଚିଫ୍, ପି.ଏଚ.ଡ଼ି.ର ଚିଫ୍ ଇଞ୍ଜିନିୟର ଓ ଇନ୍ଦ୍ରାବତୀ ଚିଫ୍ ଇଞ୍ଜିନିୟର ମିଟିଂ କରି ସ୍ଥିର କରିଥାନ୍ତି ଯେ ଫେକ୍ଟ୍ରି ପାଇଁ ଦୈନିକ ୫ ମିଲିଅନ ଗେଲନ ପାଣି କେବଳ ଇନ୍ଦ୍ରାବତୀ ସରିବା ପରେ ୧୦ ବର୍ଷ ଉତ୍ତାରେ ଦେବା ସମ୍ଭବ ହେବ। ଇମ୍ପ୍ଲିମେଣ୍ଟସନ୍ କାରଖାନା ମଧ୍ୟପ୍ରଦେଶକୁ ସ୍ଥାନାନ୍ତରିତ ହେବା ଅବସ୍ଥାରେ। ଏଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଦୀର୍ଘ ୧୪ ବର୍ଷ ପରେ କାମାକ୍ଷାବାବୁଙ୍କ ସହ ମୋର ସାକ୍ଷାତ। ୧୯୬୫ ରୁ ୧୯୭୦ ପର୍ଯ୍ୟନ୍ତ ଢେଙ୍କାନାଳ ଓ ଅନୁଗୁଳ ରହଣି ସମୟରେ ତାଙ୍କ ସହ ଘନିଷ୍ଠ ସମ୍ପର୍କ ଗଢ଼ି ଉଠିଥିଲା। ସେ କହିଲେ, ନାୟକବାବୁ ଆପଣ ଏଠାରେ ଥାଉ ଥାଉ ୨୦୦୦ କୋଟି ଟଙ୍କାର ଡିଫେନ୍ସ ପ୍ରୋଜେକ୍ଟ ଯାହାକୁ ମୁଁ ଏତେ ଚେଷ୍ଟା କରି ଓଡ଼ିଶାକୁ ଆଣିଛି, ମଧ୍ୟପ୍ରଦେଶକୁ ଚାଲିଯିବ? ମୁଁ ତାଙ୍କୁ କହିଲି "ମୁଁ ନିଶ୍ଚୟ ଚେଷ୍ଟା କରିବି। କାରଖାନା ପାଇଁ ଜଳଯୋଗାଣର ବ୍ୟବସ୍ଥା ପାଇଁ ୭ ଦିନ ଭିତରେ ନିଶ୍ଚୟ ଏକ ପ୍ରସ୍ତାବ ପଠାଇବି। ସଙ୍ଗେ ସଙ୍ଗେ ବଲାଙ୍ଗିର ଯାଇ ଟପୋମିଟର କଣ୍ଟୁର ଅନୁସାରେ ଲନ୍ଥର ଗୋଟିଏ ଉପନଦୀ ଉପରେ ଗୋଟିଏ ସ୍ଥାନ ନିରୁପଣ କରି ୪ କୋଟି ଟଙ୍କାର ଏକ ପ୍ରାରମ୍ଭିକ ଯୋଜନା ତାଙ୍କୁ ଦେଲି। ଏହାକୁ ସେଣ୍ଟ୍ରାଲ୍ ୱାଟର

କମିଶନ ଖୁବ୍ ପସନ୍ଦ କରିବା ଫଳରେ କାମାକ୍ଷାବାବୁ ଡିଫେନ୍ସ ବଜେଟ୍‌ରୁ ତୁମେର ବାହାଲ ପ୍ରୋଜେକ୍ଟର ସର୍ଭେ ପାଇଁ ସଙ୍ଗେ ସଙ୍ଗେ ୨ ଲକ୍ଷ ଟଙ୍କା ସେଙ୍କସନ୍ କରିଦେଲେ। ମାତ୍ର ୩ ମାସ ମଧ୍ୟରେ ଏହି ଜଳଯୋଗାଣ ପ୍ରୋଜେକ୍ଟର ସର୍ଭେ କାର୍ଯ୍ୟ ସମ୍ପୂର୍ଣ୍ଣ କରି ୧୯୮୪ ଜୁଲାଇ ସୁଦ୍ଧା ୪ କୋଟି ୫୦ଲକ୍ଷ ଟଙ୍କାର ଯୋଜନା କେନ୍ଦ୍ରର ମଞ୍ଜୁରୀ ପାଇଁ ପଠାଗଲା ଓ ସଙ୍ଗେ ସଙ୍ଗେ ଅର୍ଥର ଯୋଗାଡ଼ ହୋଇଥିଲା। ୧୯୮୭ ଜାନୁୟାରୀ ବେଳକୁ ଶତକଡ଼ା ୮୦ ଭାଗ କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ସମ୍ଭବ ହେଲା। ବଲାଙ୍ଗିର ଟିଟିଲାଗଡ଼ ସଡ଼କରୁ ପ୍ରୋଜେକ୍ଟକୁ ରାସ୍ତା ଓ ଜଳଭଣ୍ଡାରର ମଧ୍ୟ ଭାଗରେ ପାହାଡ଼ ଉପରେ ନିର୍ମିତ ଡାକବଙ୍ଗଳା ଏହାର ଅଂଶବିଶେଷ। ଏହି ଡାକବଙ୍ଗଳା ଏ ଅଞ୍ଚଳ ପାଇଁ ଏକ ପିକ୍‌ନିକ୍ ସ୍ପଟ୍ ହୋଇରହିବ। ଜଳଯୋଗାଣ ଜଳଭଣ୍ଡାରଟି ସମ୍ପୂର୍ଣ୍ଣ ହେବା ସଙ୍ଗେ ସଙ୍ଗେ ଇମ୍ପ୍ଲିମେଣ୍ଟେସନ୍ ଫେକ୍ଟରର ଅଗ୍ରଗତି ସମ୍ଭବ ହୋଇ କାମାକ୍ଷାବାବୁଙ୍କର ଓ ମୋର ସ୍ୱପ୍ନ ସାର୍ଥକ ହୋଇଛି।

ସମ୍ବଲପୁର ଜିଲ୍ଲାରେ ଦେଓଝରଣ, ସାନକୁଣ୍ଡେଶ୍ୱର, କୁଲିଆରି, କରଡ଼ାମୁଣ୍ଡା, କେରାଣ୍ଡିଯୋର, ଲେଭିଡ଼ି, ଖଣ୍ଡି ଝରଣ, ଦୁଗେଇ ଝରଣ, ବିଜେପୁରର କୁରୁକୁଟା, ଝାରସୁଗୁଡ଼ାର ହାତିଆନାଳ, ଜମ୍ବୁନାଳ ଆଦି ଯୋଜନା ଗୁଡ଼ିକର କାର୍ଯ୍ୟ ଅଗ୍ରଗତି ହେବା ଫଳରେ ୧୫ ହଜାର ଅଧିକ ଜମିକୁ ଜଳସେଚନ କରିବା ସମ୍ଭବ ହେଲା। ହାତିଆନାଳ ଯୋଜନା କ୍ଷୁଦ୍ର ଜଳସେଚନ ଯୋଜନା ଭାବେ ମଞ୍ଜୁରି ପାଇଥିଲେ ହେଁ, ପ୍ରକୃତ ପକ୍ଷେ ଏହା ଏକ ମଧ୍ୟମ ଜଳସେଚନ ଯୋଜନା। ଏଥିରେ ଥିବା ସେଣ୍ଟ୍ରାଲ୍ ସ୍ପିଲୱେକୁ ପରିବର୍ତ୍ତନ କରି ୪ଟି ସାଢ଼େ ତିନି ମିଟର ଉଚ୍ଚାର ଓଗି ସ୍ପିଲୱେ ସହିତ ମାଟିବନ୍ଧ ଯୋଜନା କରାଗଲା। ଏହାର ବାମପଟ ମାଟିବନ୍ଧର କଟଅଫ୍‌ରେ ବାଲିପଡ଼ିବାରୁ ଏହା ଘୋଡ଼ାହାଡ଼ ଭଳି ସମସ୍ୟା ସୃଷ୍ଟି କରିପାରେ ଭାବି ପ୍ରଥମଥର ଟ୍ରାଏଲ୍‌ପିଟ୍ ତିଆରି କରି ବାଲିସ୍ତର ବାହାର କରି ମାଟି ଓ ଡିସ୍‌ଇଣ୍ଟିଗ୍ରେଟେଡ୍ ପଥର ସ୍ତରକୁ କଟଅଫ୍ ନିଆଗଲା। ଫଳରେ ଭବିଷ୍ୟତ ପାଇଁ ଡେମ୍ ପାଇଁ ଆଉ ବିପଦ ରହିବ ନାହିଁ। ସାନକୁଣ୍ଡେଶ୍ୱର ଡେମଟି ହୀରାକୁଦ ରିହେବଟେସନ୍ ସଂସ୍ଥା ଜରିଆରେ ହୋଇଥିଲା। ବାମପଟେ ଥିବା ପାହାଡ଼ ସହିତ ଏହାର ସଂଯୋଗ ଠିକ୍ ଭାବେ ହୋଇନଥିଲା। ରୁରକୀରେ ଅଧ୍ୟୟନ ସମୟରେ ରାମଗଙ୍ଗା ଡ଼େମରେ ଯେଉଁ

ହିଲଟ୍ରିଟ୍‌ମେଣ୍ଟ ଦେଖିଥିଲି, ସେହି ଜ୍ଞାନର ସଦୁପଯୋଗ କରି ହରାଇଜେଣ୍ଟାଲ ଫିଲଟର ଓ ସେଣ୍ଡ ଚିମିନିକୁ ସମକୋଣରେ ବିଭକ୍ତ ବେରିଅର ସାହାଯ୍ୟରେ କେତେଗୁଡ଼ିଏ ଭାଗରେ ବିଭକ୍ତ କରାଗଲା। ସେହିପରି କଙ୍କ୍ରିଟ୍ କଟ ଅଫ୍ ଦେଇ ବାମପଟେ ଥିବା ପାହାଡ଼ ସହିତ ଡେମର ସଂଯୋଗ ଖୁବ୍ ସାବଧାନତାର ସହିତ କରାଗଲା। ଡେମ୍ ତିଆରି ସରିଛି କିନ୍ତୁ ତଳେ କଟ ଅଫ୍ ଓ ରକଟୋ ନାହିଁ। ଡେମର ଉପର ପାଖେ କଟଅଫ୍ ତିଆରି କରିସାରିବା ବେଳକୁ ଏପ୍ରିଲ ମାସ। ତା ଉପରେ ମାଟି କାମ କରି ନଦୀ ଗେପ ତଳେ ଆବଶ୍ୟକୀୟ କଟଅଫ୍ ଓ ଫିଲଟର ବେରିଅର ତିଆରି ପରେ ଶେଷରେ ମାଟିକାମ ନିରାପଦ ପତ୍ତନକୁ ନେବା ମେ ମାସ ସୁଦ୍ଧା ସମ୍ଭବ ହେଲାନାହିଁ। ବର୍ଷା ଆରମ୍ଭ ହୋଇଗଲା। ଡେମ୍ ଭାଙ୍ଗିଯିବ, କ'ଣ କରାଯିବ, ଏସ.ଡ଼ି.ଓ ଚୁଡ଼ାମଣି ପଟେଲ ନିତାନ୍ତ ମାନ୍ଧା ଲୋକ। ଉପାୟ ନ ପାଇ ୨ ମିଟର ଉଚ୍ଚାର ୪/୫ ଧାଡ଼ି ବାଲିବସ୍ତା ଓ ତା' ମଝିରେ ମାଟିଦେଇ ଗୋଟିଏ ଅସ୍ଥାୟୀ ବନ୍ଧ ତିଆରି ହେଲା ଓ ଯଦି ହଠାତ୍ ଜଳଭଣ୍ଡାର ପତ୍ତନ ବଢ଼ିଯାଏ, ଗେପ ଅଂଶରେ ଡେମ୍ ଉପରେ ଟରପାଲିନ୍ ଘୋଡ଼ାଇ ଡେମକୁ ରକ୍ଷା କରିବା ଉଦ୍ଦେଶ୍ୟ ନେଇ ଟଲପାଲିନ ଜମାରଖାଗଲା। ଜୁନ୍ ମାସରେ ପ୍ରଥମ ସପ୍ତାହରେ ବନ୍ୟା ଆସିଲେ ମଧ୍ୟ ଡ଼େମଟି ବଞ୍ଚିଗଲା। କହିବା ବାହୁଲ୍ୟ ଯେ ଜୁନ୍ ୧୨ ତାରିଖ ସୁଦ୍ଧା ଜଳଭଣ୍ଡାର ଜଳପତ୍ତନ ଗେପକ୍ଲୋଜିଂ ଅଂଶର ୧୨ଫୁଟ ଉପରକୁ ଉଠିଥିଲା। ୧୯୬୮ ଜୁନ୍ ମାସର ପ୍ରଥମ ସପ୍ତାହରେ ପଦ୍ମପୁର ନାଳ ଡ଼େମର ସ୍ଲୁଇସ୍ ଭାଙ୍ଗିଯିବା ଫଳରେ ଘାଇ ହେବାକୁ ଯାଉଛି ଶୁଣି ତରବରରେ ବାହାରିଲି ପଦ୍ମପୁର। ସାଙ୍ଗରେ ଡ୍ରାଇଭର ବିଶ୍ୱନାଥ ନାୟକ। ସେଦିନର ଅଭିନବ ଅନୁଭୂତି ବର୍ଣ୍ଣନା ନ କରି ରହିବାରୁନି। ସୋହେଲା ଆଉ ଦୁଇ କି.ମି. ବାଟ ଅଛି, ବିଶ୍ୱନାଥ ଗାଡ଼ି ବନ୍ଦ କଲା। ମୁଁ ପଛ କବାଟ ଖୋଲି ପରିସ୍ରା କରିବାକୁ ବାହାରକୁ ଗଲି। ଫେରିବା ବେଳକୁ ଦେଖିଲି ବିଶ୍ୱନାଥ ମୋତେ ଛାଡ଼ିଦେଇ ଗାଡ଼ିନେଇ ଚାଲିଗଲାଣି। ଝିପି ଝିପି ବର୍ଷା ହେଉଛି। ଡେମ ଭାଙ୍ଗିଯିବା ଉପରେ ବୋଲି ଖବର ଆସିଛି। ଉପାୟ କ'ଣ ? ପଦ୍ମପୁର ଅଭିମୁଖେ ଯାତ୍ରା କରୁଥିବା ଗୋଟିଏ ଟ୍ରକ୍‌କୁ ଅନୁରୋଧ କରି ସେଥିରେ ବସି ଚାଲିଲି ପଦ୍ମପୁର। ଭାବିଲି ବିଶ୍ୱନାଥ ଘେଁସ ସେକସନ ଅଫିସ୍ ପାଖରେ ଅଟକିବ ଓ ମୁଁ ରହିଯାଇଛି ବୋଲି ଜାଣିପାରିବ। କିନ୍ତୁ

ସେଠାରେ ବୁଝିଲି ଯେ ସେ ସେଠାରେ ଗାଡ଼ି ଅଟକାଇ ନାହିଁ। ପଦ୍ମପୁର ପହଞ୍ଚିବା ପରେ ଯେତେବେଳେ ସେ ପଚାରିଲା ବଙ୍ଗଳାକୁ ଯିବେ ନା ଅଫିସକୁ ଯିବେ ଓ ପଛଆଡୁ କୌଣସି ଉତ୍ତର ପାଇଲା ନାହିଁ, ସେତେବେଳେ ଯାଇ ତାର ଚେତା ପଶିଲା ଯେ, ମୁଁ ଗାଡ଼ିରେ ନାହିଁ ଭାବିଲା ସାହେବ କେଉଁଠାରେ ଗାଡ଼ିରୁ ପଡ଼ିଯାଇଛନ୍ତି ନିଶ୍ଚୟ। ତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା ଓ ସେ କୌଣସି ଉପାୟ ସ୍ଥିର କରି ନ ପାରି ପୁଣି ଥରେ ସମ୍ବଲପୁର ଅଭିମୁଖେ ଯାତ୍ରା କରିବାକୁ ମନସ୍ଥ କଲା। କିନ୍ତୁ କ'ଣ କରିବ ? ଗାଡ଼ିରେ ପେଟ୍ରୋଲ ନାହିଁ, ଡେମ୍ ଭାଙ୍ଗିବା ଉପରେ। ସମସ୍ତେ ଡେମ୍ ପାଖରେ, ଯା ହେବ ଦେଖାଯିବ ଭାବି ଗାଡ଼ି ଆଗକୁ ବଢ଼ାଇଲା। ପଦ୍ମପୁର ଆଉ ୭/୮ କି.ମି. ଅଛି ମୁଁ ଟ୍ରକ୍‌ରୁ ହାତ ଦେଖାଇ ତାକୁ ଅଟକାଇଲି, ମୋତେ ଦେଖି ସେ କାନ୍ଦି ପକାଇଲା।

ତା'ପରେ ଚାଲିଲୁ ପଦ୍ମପୁରନଳା ଡ଼େମ ପାଖକୁ, ସେହି ଗୋଟିଏ ପ୍ରକାର ଡିଫେକ୍ଟ। ସ୍ଲୁଇସ୍ ଏବଟ୍‌ମେଣ୍ଟରୁ ପଥର ଖସି ବିରାଟ କଣା ହୋଇଯାଇଛି। ମାଟିବନ୍ଧରୁ ଅତଡ଼ା ଉପରେ ଅତଡ଼ା ଖସିବାରେ ଲାଗିଛି। ଷ୍ଟାଫ ଓ ସ୍ଥାନୀୟ କଣ୍ଟ୍ରାକ୍ଟର ରୋସନ ଅଗ୍ରୱାଲାଙ୍କ ସହାୟତାରେ ପାଖରେ ଥିବା ବଡ଼ ବଡ଼ ଗଛକୁ ଡାଳ ସହିତ ବୋହି ଆଣି ମାଟିବନ୍ଧ କଡ଼ରେ ଆଉଯାଇ ଦେବା ଫଳରେ, ମାଟିବନ୍ଧର ଅତଡ଼ା ଖସିବା ବନ୍ଦ ହୋଇଗଲା। ସ୍ପିଲୱେ କାନ୍ଥକୁ ତିନିଫୁଟ ଭାଙ୍ଗିଦେବା ସଙ୍ଗେ ସଙ୍ଗେ ସ୍ଲୁଇସ୍ ଆଗରେ ବାଲିବସ୍ତା ସାହାଯ୍ୟରେ ଏକ ଅସ୍ଥାୟୀ କଫର ଡ଼େମ୍ ନିର୍ମାଣ କରାଗଲା। ଆଶ୍ଚର୍ଯ୍ୟର ବିଷୟ ଡେମ୍ ନ ଭାଙ୍ଗି ରହିଗଲା। ଡେମଟିକୁ କିଭଳି ଧ୍ୱଂସ ମୁଖରୁ ଉଦ୍ଧାର କରିବା ସମ୍ଭବ ହେଲା, ତା' ଭାବିଲେ ମୋତେ ଆଜିବି ଆଶ୍ଚର୍ଯ୍ୟ ଲାଗେ। ବୋଧହୁଏ ଭଗବାନ ମୋତେ ପରୀକ୍ଷା କରୁଥିଲେ ଓ ମୋର ଦୀର୍ଘ ୭୦ କି.ମି. ଟ୍ରକ୍ ଯୋଗେ ଯାତ୍ରା ଓ ଧୈର୍ଯ୍ୟର ସହିତ ୪/୫ ଟି ଗଛ କାଟି, ଟାଣି କରି ଆଣିବା ଦ୍ୱାରା ଭଗବାନ ସନ୍ତୁଷ୍ଟ ହୋଇ ଡେମଟିକ୍ ରକ୍ଷା କରିଦେଲେ। ଦୀର୍ଘ ଦୁଇ ଦିନ ଦୁଇରାତି ଅକ୍ଳାନ୍ତ ପରିଶ୍ରମର ଫଳ ଭଗବାନ ଦେଇଛନ୍ତି ଭାବି ମୁଁ ବିଭୋର ହୋଇପଡ଼ିଲି। ଭୁଲିଗଲି ବିଶ୍ୱନାଥର ମୋତେ ରାସ୍ତାରେ ଛାଡ଼ିଦେଇ ଚାଲିଯିବା, ସାଧାରଣ ପାସେଞ୍ଜର ଭଳି ଟ୍ରକରେ ଯାତ୍ରା।

ଢେଙ୍କାନାଳ ଜିଲ୍ଲାରେ ଜୟଗଡ଼ ଯୋଜନାକୁ ସମ୍ପୂର୍ଣ୍ଣ କରାଗଲା। କିନ୍ତୁ ଏହାକୁ ନାକଟିନାକ ସହିତ ସଂଯୋଗ କରି ଆୟକଟକୁ ୬୦୦ ଏକରରୁ ୧୮୦୦ ଏକର ବୃଦ୍ଧି କରିବା ଉପର ଅଫିସରଙ୍କର ସହଯୋଗ ଅଭାବରୁ ସମ୍ଭବ ହୋଇପାରିଲା ନାହିଁ। କିନ୍ତୁ ମୁଁ ଯେଉଁ ନକ୍ସା ତିଆରି କରି ଦେଇଆସିଥିଲି ପରବର୍ତ୍ତୀ କାଳରେ ତାହା ସମ୍ପୂର୍ଣ୍ଣ ହେବା ସମ୍ଭବ ହେଲା। ବାତ୍ୟା, ବନ୍ୟା, ମରୁଡ଼ି ଓ କର୍ମ ପାଇଁ ଖାଦ୍ୟ ଯୋଜନାର ସଦବ୍ୟବହାର ହୋଇ ତିନି-ମୁହାଣି, ଡମଶାଳା କେନାଲ, ପିଙ୍ଗୁଆ, କୁକୁରପେଟା, ଜଗନ୍ନାଥପୁର, ଟିପିଲେଇ, ବାଉଁଶିଆ, ମଦର, ବିଲେଇ ଖାଇ, ଲାଉ-ପାଲ ଆଦି ଯୋଜନାର ପୁନରୁଦ୍ଧାର ଫଳରେ ଢେଙ୍କାନାଳ ଜିଲାରେ ପ୍ରାୟ ୫୦୦୦ ଏକର ଅଧିକ ଜମିକୁ ଜଳସେଚନ ଯୋଗାଇବା ସମ୍ଭବ ହୋଇପାରିଲା।

ଢେଙ୍କାନାଳ ଜିଲ୍ଲାର ପାଲଲହଡ଼ା ସବଡିଭିଜନର ମାଙ୍କଡ଼ା କ୍ଷୁଦ୍ର ଜଳସେଚନ ଯୋଜନା ସେ ଅଞ୍ଚଳର ଜୀବନନାଟିକା କହିଲେ ଅତ୍ୟୁକ୍ତି ହେବ ନାହିଁ। ମୋର ସମ୍ବଲପୁରରେ ଯୋଗ ଦେବା ପୂର୍ବରୁ ଯୋଜନାଟିର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇସାରିଥିଲା। କିନ୍ତୁ କେନାଲର କ୍ରସ୍ ଡ୍ରେଜେନ କାମଗୁଡ଼ିକ ଅତି ନିମ୍ନମାନର ହୋଇଥିବାରୁ କେନାଲରେ ଯେତେବେଳେ ପାଣିଛଡ଼ା ଗଲା ପାଣି କେନାଲରେ ପ୍ରବାହିତ ନ ହୋଇ ନାଳଗୁଡ଼ିକରେ ପ୍ରବାହିତ ହେବାରେ ଲାଗିଲା। ସବୁ ଷ୍ଟ୍ରକଚରଗୁଡ଼ିକ ଭାଙ୍ଗିଦେଇ ନୂତନ ଷ୍ଟ୍ରକଚର ନିର୍ମାଣ କଲେ ଆହୁରି ୫୦ ଲକ୍ଷ ଟଙ୍କା ଆବଶ୍ୟକ ହେବ। କଲେକ୍ଟରଙ୍କ ଠାରୁ ମରୁଡ଼ି ଯୋଗୁଁ ପ୍ରାପ୍ତ ସାହାଯ୍ୟରେ ଗ୍ରାଣ୍ଟ୍ ସାହାଯ୍ୟରେ ବେରେଲଗୁଡ଼ିକରେ ଭିତର ପଟେ ଆରସିସିର ଗୋଟିଏ ଆର.ସି.ସି. କାନ୍ଥ ଦେଇ ପ୍ରୋଜେକ୍ଟଟିକୁ କାର୍ଯ୍ୟକାରୀ କରାଗଲା।

କେନ୍ଦୁଝର ଜିଲ୍ଲାର କାଳିମାଟି, କୋରେଇ ଯୋଡ଼ି, ଜଗଦଳା, ଜଳଡିହି, ଗଡ଼, ଭାଲୁକା, ସିନ୍ଧେଇ, ରଘୁବେଡ଼ା, ଜାଉଁଶିଆ, ହନୁମନ୍ତିଆ, ଖଜୁରିଆ ଆଦି ୧୧ଟି ପ୍ରୋଜେକ୍ଟର କାମ ଦ୍ରୁତ ଗତିରେ ଚାଲିଥିଲା। ତା' ମଧ୍ୟରୁ ହନୁମନ୍ତିଆ, ଖଜୁରିଆ, ଭାଲୁକା, ଜଳଡ଼ିହି, ରଘୁବେଡ଼ା ପ୍ରୋଜେକ୍ଟର କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ସଂଗେ ସଂଗେ, ବନ୍ୟା ବାତ୍ୟା ପାଣ୍ଠିର ସଦୁପଯୋଗ ହୋଇ, ସିନ୍ଧେଇ କେନାଲ ଏକସ୍‌ଟେନ୍‌ସନ୍, ବାହିଆ, ମଦନପୁର ଓ ଓସ୍ତିଆ ପ୍ରୋଜେକ୍ଟର କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ଫଳରେ

୧୦,୦୦୦ ଅଧିକ ଜମିକୁ ଜଳ ଯୋଗାଇବା ସମ୍ଭବ ହେଲା । ଖଜୁରିଆ ଡେମ୍‌ଟି ତେଲକୋଇ ବ୍ଲକ୍‌ରେ ଅବସ୍ଥିତ । ଏହାର ମାଟିବନ୍ଧ ଦୁଇ/ ତିନୋଟି ମୁଣ୍ଡିଆକୁ ସଂଯୋଗ କରି ନିର୍ମିତ ହୋଇଛି । ମୁଣ୍ଡିଆ ଗୁଡ଼ିକ ମୁରମଦ୍ୱାରା ଗଠିତ । ଡ଼େମ୍ ତିଆରି ସରିଯିବା ପରେ ଦେଖାଗଲା ଯେ ମୁଣ୍ଡିଆରୁ ପାଣି ଝରି ପ୍ରାୟ ୫ କ୍ୟୁସେକ୍ ପାଣି ତଳକୁ ଚାଲିଯାଉଛି । ପାଣି ମୁଣ୍ଡିଆ ଭିତରେ ପଶି ତଳେ ବାହାରିବ, ଏହା କେହି ଭାବି ନଥିଲେ । ୨ଟି ଯାକ ମୁଣ୍ଡିଆର ତଳ ଭାଗରେ ଜଳଭଣ୍ଡାର ପଟେ ଗୋଟିଏ କଟଅଫ୍ ନିର୍ମାଣ କରି ଏହାକୁ ଡ଼େମ୍ କଟଅଫ୍ ସହିତ ସଂଯୋଗ କରାଗଲା । ଫଳରେ ପାଣି ଝରିବା ବନ୍ଦ ହୋଇଗଲା । ହନୁମନ୍ତିଆ, କୋରେଇ ଯୋଡି, ଯାଉଁରିଆ ଯୋଜନାର ମାଟିବନ୍ଧ ମାପରେ କେତେଗୁଡ଼ିଏ ବ୍ୟତିକ୍ରମ ଦେଖିବାକୁ ମିଳିଲା । ଏହାର ପ୍ରତିକାର ସ୍ୱରୂପ ନିର୍ବାହୀ ଯନ୍ତ୍ରୀ, ସହକାରୀ ଯନ୍ତ୍ରୀ ଓ କନିଷ୍ଠଯନ୍ତ୍ରୀଙ୍କୁ ବଦଳି କରିବା ସହିତ ଭବିଷ୍ୟତରେ ଏହାର ପୁନରାବୃତ୍ତି ନ ହେବା ପାଇଁ କାର୍ଯ୍ୟ ଆରମ୍ଭ ପୂର୍ବରୁ ଲେଭଲ ନେଇ ଲେଭଲ୍ ସିଟ୍ ଅଧିକ୍ଷଣ ଯନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇବା ପାଇଁ ଆଦେଶ କରାଗଲା । ଜଗଦଳା କ୍ଷୁଦ୍ର ଜଳ ଭଣ୍ଡାର ନିର୍ମିତ ହେଲେ ଓଡ଼ିଶାର କ୍ଷୁଦ୍ର ଜଳସେଚନ ଜଳଭଣ୍ଡାର ମଧ୍ୟରେ ଏକ ବଡ଼ ଜଳଭଣ୍ଡାର ହେବ । ଏହାର କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ଏକମାତ୍ର ପ୍ରତିବନ୍ଧକ ହେଉଛି ପୁନର୍ବସତି । ଏହାର ରିଜରଭର ମଧ୍ୟରେ ଅନେକ ଆଦିବାସୀ ସରକାରୀ ଜମି ଉପରେ ଘର କରିଛନ୍ତି ଓ ସରକାରୀ ଜମି ଜବରଦଖଲ କରି ଚାଷ କରୁଛନ୍ତି । ସେମାନଙ୍କୁ କ୍ଷତିପୂରଣ ଦେବା ପାଇଁ ଆଇନରେ କୌଣସି ବ୍ୟବସ୍ଥା ନାହିଁ । କେଉଁଝରର କଲେକ୍ଟର ଥାନ୍ତି ଜୟନ୍ତଦେବ । ସେ ଦୁଇଥର ସୁପାରିଶ କରି ଲେଖିଲେ ମଧ୍ୟ କୌଣସି ଫଳ ହେଲା ନାହିଁ । ଫଳରେ କାର୍ଯ୍ୟଟି ଧୀରେ ଧୀରେ ଧୀମେଇ ଗଲା ଓ ଡେମର ରିଭର କ୍ଲୋଜିଂ କାମ ହୋଇପାରିଲା ନାହିଁ । କୋରେଇ ଯୋଡ଼ି, କାଳିମାଟି ଯୋଜନା ଦୁଇଟି ସମ୍ପୂର୍ଣ୍ଣ କରିବା ପାଇଁ ପ୍ରତିବନ୍ଧକ ଥିଲା, ଜଙ୍ଗଲ କାଟିବା ପାଇଁ ଭାରତ ସରକାରଙ୍କ ଅନୁମୋଦନ । ଫରେଷ୍ଟ କ୍ଲିଏରେନସ୍ ଆସି ନଥିବାରୁ ଏ ଦୁଇଟିଯାକ ଯୋଜନାର ମାଟିବନ୍ଧ,ସ୍ପିଲୱେ ଓ କେନାଲ ଯୋଜନାର କାମ ଆଗେଇ ଯାଇଥିଲେ ମଧ୍ୟ ରିଭର କ୍ଲୋଜିଂ କାମ ଧିମେଇ ଗଲା । ଜାଉଁରିଆ ଯୋଜନାଟି ଖଜୁରିଆ ତାଞ୍ଚାରେ ହେବାକୁ ଥିଲା । କିନ୍ତୁ ଖଜୁରିଆର

ଅନୁଭୂତି ପରେ ଆଉ ଦୁଇଟି ପାହାଡ଼ ଯୋଡ଼ି ମାଟିବନ୍ଧ ନିର୍ମାଣ କରିବା ପରିବର୍ତ୍ତେ ପାହାଡ଼ର ଉପର ପାଖରେ ଡେମ ନିର୍ମାଣ କରାଗଲା।

କେନ୍ଦୁଝର ଜିଲ୍ଲାରେ କ୍ଷୁଦ୍ର ଜଳସେଚନ ଯୋଜନା କାମ ସହିତ ଆଉ କେତେଗୁଡ଼ିଏ ଉନ୍ନତିମୂଳକ କାମ ହାତକୁ ନିଆଯାଇଥିଲା। ତା' ମଧ୍ୟରେ ସାନମାଛ କାନ୍ଦନା ମାକ୍ରୋ ଜଳବିଦ୍ୟୁତ୍ ଯୋଜନା ଅନ୍ୟତମ। ବଡ଼ ଘାଗରା ଜଳପ୍ରପାତର ଭୌଗୋଳିକ ପରିସ୍ଥିତିର ସଦୁପଯୋଗ କରି ୪୦ କିଲୋୱାଟ୍ ବିଶିଷ୍ଟ ଏକ ମାକ୍ରୋହାଇଡ଼େଲ ସ୍କିମ୍ ଓରିଡ଼ାର ସହାୟତାରେ ନିର୍ମାଣ କରାଗଲା। ଏହା ଓଡ଼ିଶାର ପ୍ରଥମ ସଫଳ ମାକ୍ରୋ ହାଇଡେଲ ପ୍ରୋଜେକ୍ଟ। ଆନନ୍ଦପୁର ନିକଟରେ ଗୋଟିଏ ସୂର୍ଯ୍ୟଚୁଲା ନିର୍ମାଣ କରି ଗୋଟିଏ ଗ୍ରାମର ପାନୀୟ ଜଳଯୋଗାଣ ସମ୍ଭବ ହେଲା। କେନ୍ଦୁଝର ସହରକୁ ଜଳ ଯୋଗାଣ ଏକ ସମସ୍ୟା ଥିଲା। ସାନ ମାଛ କାନ୍ଦନା ନଦୀର ପାଣି ପମ୍ପ କରି କେନ୍ଦୁଝର ସହରକୁ କେତେ ଘଣ୍ଟା ପାଇଁ ଜଳ ଯୋଗାଣ ସମ୍ଭବ ଥିଲା, କିନ୍ତୁ ମାକ୍ରୋ ହାଇଡ଼େଲ୍ ଯୋଜନା ନିର୍ମାଣ ସମୟରେ ପି.ଏଚ.ଡ଼ି.କୁ ଗୋଟିଏ ସ୍ଲୁଇସ୍ ଦିଆଗଲା ଓ ସେମାନଙ୍କୁ ସିଧା ପାଇପ୍ ଲାଇନ୍ ଜରିଆରେ ଗ୍ରାଭିଟିର ବ୍ୟବହାର କରି ପାଣି ସିଧା କେନ୍ଦୁଝର ଗଡ଼ ସହରକୁ ଆଣିବାକୁ କୁହାଗଲା। ଫଳସ୍ୱରୂପ କେନ୍ଦୁଝରକୁ ସାରାଦିନ ଅବାଧ ପାଣି ଯୋଗାଣ ସମ୍ଭବ ହେଲା। ସାନ ଘାଗରା ଜଳପ୍ରପାତ କେନ୍ଦୁଝରର ଏକ ଦର୍ଶନୀୟ ସ୍ଥାନ। କିନ୍ତୁ ଜଳପ୍ରପାତ ପାଖକୁ ଯିବା ପାଇଁ ରାସ୍ତା ନଥିଲା। କଲେକ୍ଟରଙ୍କ ଠାରୁ ଗ୍ରାଣ୍ଟ ଆଣି ଗୋଟିଏ ରାସ୍ତା ଓ ପାର୍କ ନିର୍ମାଣ କରାଯିବା ଫଳରେ ଏହା ଏକ ଦର୍ଶନୀୟ ସ୍ଥାନରେ ପରିଣତ ହୋଇଛି।

ସମ୍ବଲପୁରରେ ୫ ବର୍ଷ ରହଣି ଉନ୍ନତିମୂଳକ କାର୍ଯ୍ୟ ପାଇଁ ଯେଭଳି ଘଟଣା ବହୁଳ ନିଜ ପରିବାର ପାଇଁ, କର୍ମଚାରୀମାନଙ୍କର ମୋର ସବୁ କାମରେ ସହଯୋଗ, ସେହିପରି ଘଟଣାବହୁଳ। ସମ୍ବଲପୁରର ଏସ.ଡ଼ି.ଓ. ଦିଲିପ ଚକ୍ରବର୍ତ୍ତୀ, ଝାରସୁଗୁଡ଼ା ଏସ.ଡ଼ି.ଓ ରଘୁନାଥ ସାହୁ, ବରଗଡ଼ ଏସ.ଡ଼ି. ଓ ମଧୁସୂଦନ ବିଶ୍ୱାଳ ସମସ୍ତେ ଅତ୍ୟନ୍ତ କର୍ମଠ, କର୍ତ୍ତବ୍ୟନିଷ୍ଠ ଓ ଆମାୟିକ ଓ ସ୍ନେହୀ। ସେମାନଙ୍କର ସ୍ନେହ ଓ ଶ୍ରଦ୍ଧା ଜୀବନରେ ଭୁଲି ହେବନି। ସରକାରୀ କାର୍ଯ୍ୟରେ ସେମାନଙ୍କଠାରୁ ଯେଭଳି ଆନ୍ତରିକ ସହଯୋଗ ମିଳିଥିଲା, ସୁଦୂର ଭୁବନେଶ୍ୱରରେ ଝିଅର ବିଭାଘର ସମୟରେ ସେହିଭଳି

ସହଯୋଗ ମିଳିଥିଲା। ଚକ୍ରବର୍ତ୍ତୀବାବୁଙ୍କ ପରିବାର ସହିତ ଆମର ପରିବାର ଅତ୍ୟନ୍ତ ଘନିଷ୍ଠ ହୋଇ ଯାଇଥିଲୁ। ପରବର୍ତ୍ତୀ କାଳରେ ତାଙ୍କର ଏକମାତ୍ର କନ୍ୟା ଓ ତାଙ୍କର ଆକସ୍ମିକ ରୋଗ ଓ ସର୍ବଶେଷରେ ଇହଧାମ ତ୍ୟାଗ ମୋତେ ଓ ମୋର ପରିବାରକୁ ଅତ୍ୟନ୍ତ ମର୍ମାହତ କରିଥିଲା। ବଲାଙ୍ଗିରର ନିର୍ବାହୀଯନ୍ତ୍ରୀ ରାହାସ ବିହାରୀ ମହାନ୍ତି ଓ ତାଙ୍କର ପରେ ଆସିଥିବା ନିର୍ବାହୀଯନ୍ତ୍ରୀ ଦାମୋଦର ମହାପାତ୍ର ଆମର ପାରିବାରିକ ବନ୍ଧୁ। ଉଭୟ କର୍ମଠ ଓ ସ୍ନେହୀ। ଦାମବାବୁଙ୍କ ଉପରେ ୧୯୮୬ ମସିହା ଏପ୍ରିଲ ମାସରେ ଯେଉଁ ଅଘଟନ ବିପଦ ଆସିଲା ତାହା ମୋତେ କାହିଁକି ସାରା ଜଳସେଚନ ବିଭାଗର ଅଫିସରଙ୍କ ମଧ୍ୟରେ ଆଲୋଡ଼ନ ସୃଷ୍ଟି କରିଦେଲା। ବଲାଙ୍ଗିର ସବ୍‌ଡ଼ିଭିଜନର ଏସ.ଡ଼ି. ଓ ଶ୍ୟାମସୁନ୍ଦର ସାହୁ ଓ ତାଙ୍କର ପରିବାର ଆମର ଅତ୍ୟନ୍ତ ଅନ୍ତରଙ୍ଗ। ପରବର୍ତ୍ତୀ କାଳରେ ତାଙ୍କ ପୁଅକୁ ଚାକିରୀ ପାଇବାରେ ସାହାଯ୍ୟ କରିପାରିଥିବାରୁ ମୁଁ ଅନେକ ଆନନ୍ଦ ଅନୁଭବ କରିଛି। ବଲାଙ୍ଗିରର ତୁମେରବାହାଲ ଯୋଜନାକୁ ପ୍ରକୃତ ରୂପ ଦେବା ପାଇଁ ଶ୍ୟାମ୍ ବାବୁଙ୍କ ଦାନ ଅତୁଳନୀୟ। ସର୍ଭେଠାରୁ ଆରମ୍ଭ କରି ଡିଜାଇନ ପ୍ଲାନିଂ ଓ କାର୍ଯ୍ୟ କରିବା ପର୍ଯ୍ୟନ୍ତ ତାଙ୍କର ସେ ପ୍ରୋଜେକ୍ଟ ପ୍ରତି ଅବଦାନ ଅତୁଳନୀୟ। ପାଟନାଗଡ଼ର ଏସ.ଡ଼ି.ଓ. ନିମେଇ ନାୟକ, ଲକ୍ଷ୍ମୀକାନ୍ତ ଖମାରୀ, ସୋନପୁର ଏସ.ଡ଼ି.ଓ ପାଣିଗ୍ରାହୀବାବୁ ଓ ବଲାଙ୍ଗିର ଏସ.ଡ଼ି.ଓ ନକୁଳ ସାହୁ ଅତ୍ୟନ୍ତ କର୍ମଠ, ସରଳ ଓ ଆମାୟିକ। ଢେଙ୍କାନାଳର ନିର୍ବାହୀଯନ୍ତ୍ରୀ ସୋଲମନ ରାଉତ, ଧନେଶ୍ୱର ସେଠୀ ଓ ଶେଷରେ ଆସିଥିବା ଅମ୍ବିକା ପ୍ରସାଦ୍ ତ୍ରିପାଠୀ ସମସ୍ତେ ସ୍ନେହୀ, କର୍ତ୍ତବ୍ୟପରାୟଣ ଓ କର୍ମଠ। ଅନୁଗୁଳ ଏସ.ଡ଼ି.ଓ ରବିନାୟକ, ଢେଙ୍କାନାଳ ଏସ.ଡ଼ି.ଓ. ଆର. କେ. ପଟ୍ଟନାୟକ, ଭୁବନ ଏସ.ଡ଼ି.ଓ. ପ୍ରଧାନବାବୁ ଯେଭଳି ସ୍ନେହୀ, ସେଭଳି କର୍ମଠ ଓ କର୍ତ୍ତବ୍ୟପରାୟଣ। ଆମ ପରିବାର ପାଇଁ ସେମାନଙ୍କର ସ୍ନେହ ଜୀବନରେ ଭୁଲି ହେବନି। କେନ୍ଦୁଝରର ନିର୍ବାହୀଯନ୍ତ୍ରୀ ରାଜାରାଓ ନିଜେ ଜଣେ ଅନୁଷ୍ଠାନ। ସେଭଳି ସହକର୍ମୀ ଜୀବନରେ ଖୁବ୍ କମ୍ ଲୋକଙ୍କୁ ମିଳେ। କେନ୍ଦୁଝର ଜିଲ୍ଲାର କ୍ଷୁଦ୍ର ଜଳସେଚନ ପାଇଁ ତାଙ୍କର ଦାନ ଅତୁଳନୀୟ। ସେହିପରି ଓଡ଼ିଶାର ପ୍ରଥମ ମାଇକ୍ରୋ-ହାଇଡେଲ୍ ପ୍ରଥମ ସୂର୍ଯ୍ୟଚୁଲା ଦ୍ୱାରା ଜଳଯୋଗାଣ ଆଦି ଯୋଜନା ତାଙ୍କରି ଆନ୍ତରିକତା ଫଳରେ ସମ୍ଭବ ହୋଇଥିଲା। ତାଙ୍କର ଏସ.ଡ଼ି.ଓ ଶାଳିଗ୍ରାମ

ପାଣିଗ୍ରାହୀ, ପ୍ରଫୁଲ ରାୟ, ପ୍ରଫୁଲ୍ଲ ମହାପାତ୍ର, ଆର.ଏନ.ନାୟକ ସମସ୍ତେ କର୍ମଠ ଓ ସ୍ନେହୀ।

ସମ୍ବଲପୁର ରହଣି କାଳ ମଧ୍ୟରେ କେତେ ଜଣ ବିଶିଷ୍ଟ କଣ୍ଟ୍ରାକ୍ଟର ଉତ୍ତର ମଣ୍ଡଳରେ କାମ କରିଥିଲେ। ସାଧାରଣତଃ କଣ୍ଟ୍ରାକ୍ଟରମାନଙ୍କର ଅଫିସର କ୍ଷମତାରେ ଥିବା ପର୍ଯ୍ୟନ୍ତ ସମ୍ପର୍କ ଥାଏ। କିନ୍ତୁ ଏହାର ବ୍ୟତିକ୍ରମ ଦେଖିବାକୁ ପାଇଥିଲି ସମ୍ବଲପୁରରେ। ପଦ୍ମପୁର ଲକ୍ଷ୍ମୀନାରାୟଣ ଅଗ୍ରୱାଲ ଓ ତାଙ୍କ ପୁଅ ରୋସନ, କମଲ ଓ କେବଲ ଜୈନ, କୁଚିଣ୍ଡାର ଭାସ୍କର ପ୍ରଧାନ, ସୁନ୍ଦରଗଡ଼ର ଭେଷଜ ପଟେଲ, କେନ୍ଦୁଝରର ଅକ୍ଷୟ ମିଶ୍ର, ବଳରାମ ସାହୁ ଓ ସୁର ପଟ୍ଟନାୟକ ଥିଲେ ସାଧାରଣ କଣ୍ଟ୍ରାକ୍ଟରଙ୍କ ଠାରୁ ବ୍ୟତିକ୍ରମ। ମୋର ସ୍ୱଭାବ ଥିଲା କାମ ବେଳେ ମୁଁ ପୁରା ଅଧିକ୍ଷଣ ଯନ୍ତ୍ରୀ ଓ କାମ ପରିଦର୍ଶନ ପରେ ମୁଁ ଥିଲି ସହକର୍ମୀ ଓ କଣ୍ଟ୍ରାକ୍ଟର ମାନଙ୍କର ବନ୍ଧୁ। ପ୍ରଥମେ ଜଳସେଚନ ମନ୍ତ୍ରୀ ଥିଲେ ନିରଞ୍ଜନ ପଟ୍ଟନାୟକ ଓ ପରେ ଏହି ବିଭାଗର ଦାୟିତ୍ୱ ନେଲେ ମୋହନ ନାଗ। ଉଭୟ ଅତ୍ୟନ୍ତ ମେଳାପୀ ଓ ମୋ ପାଇଁ ଥିଲେ ଅତ୍ୟନ୍ତ ସହାନୁଭୂତିଶୀଳ।

ପାରିବାରିକ କ୍ଷେତ୍ରରେ ସମ୍ବଲପୁରରେ ରହଣି କାଳ ମଧ୍ୟ ଥିଲା ଘଟଣାବହୁଳ। ବଡ଼ପୁଅ ୧୯୮୩ ମସିହା ଜାନୁୟାରୀରେ ପରୀକ୍ଷାରେ ପାଶ୍ କରି ଆସିବା ସଙ୍ଗେ ସଙ୍ଗେ ଇଲେକ୍ଟ୍ରିକେଲ୍ ଆସିଷ୍ଟାଣ୍ଟ ଇଞ୍ଜିନିୟର ଭାବେ ଅବସ୍ଥାପିତ ହୋଇପାରିଲା। ସାନପୁଅ ୭୨% ମାର୍କ ରଖି ମେଟ୍ରିକ୍ ପାଶ୍ କଲା। ବଡ଼ ଝିଅର ବିଭାଘର ମାହାଙ୍ଗା ତୁଳସୀପୁରର ସ୍ୱର୍ଗତଃ ନିଶାମଣୀ ବେହୁରାଙ୍କ ପୁଅ ରଘୁନାଥ ବେହୁରା ଆଇ.ପି.ଏସ.ଙ୍କ ସହିତ ହୋଇଗଲା ପୋଲିସ୍ ଚାକିରିରେ ଝିଅ ଦେବିନି ବୋଲି ଉମା ପ୍ରଥମେ ଜିଦ୍ ଧରିଥିଲା। କିନ୍ତୁ ଯେଉଁଦିନ ଅନୁଗୁଳ ଡାକବଙ୍ଗଳାରେ ବଡ଼ଜ୍ୱାଇଁ ଟୁଟୁଙ୍କୁ ଦେଖିଲା ଓ ତାର ଆମାୟିକ ବ୍ୟବହାର ଓ ମାତ୍ର ଏକଘଣ୍ଟା ମଧ୍ୟରେ ସମସ୍ତଙ୍କୁ ନିଜର କରି ନେବାର ସନ୍ଧାନ ପାଇଲା, ତାକୁ ଲାଗିଲା ଖୋଜୁଥିବା ଚାନ୍ଦ ସତେ ଯେପରି ତା ହାତରେ ଆସି ପହଞ୍ଚିଛି। ୧୯୮୩ ମସିହା ମେ ୮ ତାରିଖ ଦିନ ବଡ଼ଝିଅ ଇଲାର ବିଭାଘର ଭୁବନେଶ୍ୱରରେ ହୋଇଗଲା। ଏ ବିଭାଘରକୁ କୋରାପୁଟ ଠାରୁ ଆରମ୍ଭ କରି ମୟୁରଭଞ୍ଜ-ସମ୍ବଲପୁରରୁ ଲୋକ ଆସିଥିଲେ। ମୋତେ କିଛି କରିବାକୁ

ପଡ଼ିନାହିଁ। ବରହମପୁର ଓ ସମ୍ବଲପୁର ସର୍କଲରୁ ମୋର ସହକର୍ମୀମାନେ କାମଟିକୁ ଏପରି ଶୃଙ୍ଖଳାର ସହ ଚଳାଇନେଲେ ଯେ, ଯେ ଏ ବିଭାଘରକୁ ଯେ ଆସିଛି, ଶୃଙ୍ଖଳାକୁ ପ୍ରଶଂସା ନ କରି ରହିପାରି ନାହିଁ। ବନ୍ଧୁ ହିସାବରେ କ୍ୱାଇଁଙ୍କର ମା ଓ ଦାଦା ଦୁଇଜଣ ଯାକ ଗୋଟିଏ ଗୋଟିଏ ଆଦର୍ଶ। କଥାବାର୍ତ୍ତା ସରିବା ପରେ ଯେତେବେଳେ କ୍ୱାଇଁର ଦାଦାଙ୍କୁ ଯୌତୁକ ବିଷୟ ପଚାରିଲି, ସେ କହିଲେ ହଁ ମୋର ଗୋଟିଏ ଦାବି ଅଛି। ତାକୁ ଯେତେବେଳେ ୪ ବର୍ଷ ସେତେବେଳେ ତାର ବାପା ମରିଗଲେ। ମୁଁ ସେହିଦିନୁ ତାକୁ ନିଜର ପୁଅ ଭଳି ପାଳି ଆସିଛି। ଆଜିଠାରୁ ଆପଣ ତାର ଦାୟିତ୍ୱ ନିଅନ୍ତୁ। ମୋର ଏତିକି ଯୌତୁକ ଲୋଡ଼ା। କେତେଜଣ ଆଇ.ପି.ଏସ. ଅଫିସର ବରର ଅଭିଭାବକଙ୍କ ମୁଖରୁ ଏଭଳି କଥା ଶୁଣିବାକୁ ମିଳେ ?

ସବୁଦିନ ଭଲରେ ଯାଏନି। ଅନ୍ଧାର ନଥିଲେ ଆଲୁଅ ମହତ୍ତ୍ୱ କେହି ଉପଲବ୍ଧି କରିପାରନ୍ତେ ନାହିଁ। ସମ୍ବଲପୁରରେ ୫ ବର୍ଷ ରହଣିକାଳ ଯେ କେବଳ ସୁଖର ଦିନ ଥିଲା ତା' ନୁହେଁ। ବଡ଼ ଝିଅ ଇଲାର ବିଭାଘର ଦେଢ଼ ବର୍ଷ ପରେ ସାନଝିଅ ପିଲାର ବିଭାଘର ପାଇଁ ଯୋଗାଡ଼ ଚାଲିଲା। ଦୁଇଜଣ ଆଇ.ଏ.ଏସ. ଅଫିସରଙ୍କ ଭିତରୁ କାହାକୁ କରିବାକୁ ଭାବୁଚୁ, ହଠାତ୍ ପରିବାର ଉପରେ ଏକ ଚଡ଼କ ପଡ଼ିଲା। ୧୯୮୫ ମସିହା ଫେବୃୟାରୀ ମାସ ସାନ ଝିଅ ପିଲାର ହଠାତ୍ ଦେହ ଖରାପ ହେଲା। ଗୋଟିଏ ଭୁଲ ମେଡ଼ିସିନ୍‌ର ପ୍ରଭାବରେ ତାର ଅଣ୍ଟା ଦରଜ ହେଲା। ଏହି ଅଣ୍ଟା ଦରଜ ଏଭଳି ଭୟଙ୍କର ଆକାର ଧାରଣ କଲା ଯେ ସେ ଚାଲବୁଲ ମଧ୍ୟ କରି ପାରିଲାନି। ପାଇଖାନାରେ ବସିଛି ହଠାତ୍ ଉଠିବା ବେଳକୁ ଅଣ୍ଟାର ମସଲ ଏଭଳି ଷ୍ଟ୍ରେଚ୍ ହୋଇଗଲା ଯେ ଦୀର୍ଘ ୨ ମାସ ଧରି ସେ ବିଛଣାରୁ ଉଠିନି। ଶେଷରେ ଅଣ୍ଟା ପ୍ଲାଷ୍ଟର ହେବା ପରେ ତାର ଦେହ ଦୁଇ ମାସ ପରେ ଭଲ ହେଲା। ବିଭାଘର ବୟସରେ ଯଦି ଝିଅର ଦେହ ଖରାପ ହୁଏ ତେବେ ତା' ଯେ କି ଆକାର ଧାରଣ କରେ ଅଙ୍ଗେ ନ ଲିଭାଇଲେ ଜାଣି ହେବନି। କିଏ କହିଲା, ଝିଅର ବୋନ୍‌ରେ ଇନ୍‌ଫେକସନ୍ ତ କିଏ କହିଲା ମେରୁଦଣ୍ଡର ଜଏଣ୍ଟରେ ଡିସ୍‌ପ୍ଲେସ୍‌ମେଣ୍ଟ ଦୁଇଟିଯାକ ପ୍ରସ୍ତାବତ ଭାଙ୍ଗିଗଲା। ତା'ପରେ ଯେତେ ପ୍ରସ୍ତାବ ଆସିଲା ସେମାନେ ମଧ୍ୟ ପଛାଇଲେ।

ସାନପୁଅର ମଧ୍ୟ ପରିବର୍ତ୍ତନ ଦେଖାଗଲା। +୨ରେ ତାର କେତେଗୁଡ଼ିଏ ମନ୍ଦପ୍ରକୃତିର ସାଙ୍ଗ ଯୁଟିଲେ। ସାଙ୍ଗମାନଙ୍କ ପ୍ରଭାବରେ ତାର ସେହି ଶାନ୍ତ, ସରଳ ପ୍ରକୃତି ଧିରେ ଧିରେ ବଦଳିଗଲା। ପଢ଼ା ପ୍ରତି ନଜର ନ ଦେଇ ସାଙ୍ଗସାଥି ମେଳରେ ହୋଟେଲରେ ଖାଇବା, କଲେଜକୁ ନ ଯାଇ ବାହାରେ ବୁଲିବା ସିନେମା ଦେଖିବା ଇତ୍ୟାଦି ଯାବତୀୟ ଖରାପ ସ୍ୱଭାବ ତାର ବଢ଼ିବାରେ ଲାଗିଲା। ଫଳରେ ସେ +୨ ପରୀକ୍ଷାରେ ଆଶାନୁରୂପ କୃତିତ୍ୱ ଦେଖାଇ ପାରିଲା ନାହିଁ। କିନ୍ତୁ ଫିଜିକ୍ସ କେମେଷ୍ଟ୍ରି ଓ ମେଥମେଟିକ୍ସରେ ଅପେକ୍ଷାକୃତ ଭଲ ନମ୍ବର ରଖିଥିବାରୁ ତାକୁ ବାଙ୍ଗାଲୋରରେ କମ୍ପ୍ୟୁଟର ଇଞ୍ଜିନିୟରରେ ଏଡ଼ମିସନ୍ କରିଦିଆଗଲା। ସେଠାରେ ମଧ୍ୟ ଦୁଃସଙ୍ଗରେ ଅଭାବ ନାହିଁ। ତା' ସାଙ୍ଗକୁ ବାପା, ମା'ଙ୍କର କଣ୍ଟ୍ରୋଲ କମିଗଲା। ସେଠାକାର ସିନିୟର ଓଡ଼ିଆ ପିଲାମାନେ ନୂତନ ଭାବେ କଲେଜରେ ଯୋଗ ଦେଇଥିବା ପିଲାଙ୍କ ଗାଇଡ଼େନ୍ସ ଦେବେ କ'ଣ, ୭/୮ ମାସ ଧରି ରେଗିଂ କରି ତାର ପଢ଼ାରେ ଆହୁରି ବ୍ୟାଘାତ ଜନ୍ମାଇଲେ। ପିଲାଦିନୁ ଦେଖିଛି ହଠାତ୍ ରାଗିଗଲେ ତାର ଫିଟସ୍ ବାହାରି ପଡ଼େ। ଏଭଳି ପରିସ୍ଥିତିରେ ସିନିୟର ଓଡ଼ିଆ ପିଲାମାନଙ୍କର ରେଗିଂ କଥା ଶୁଣି ମୁଁ ନିଜକୁ ସମ୍ଭାଳି ପାରିଲିନି। ପ୍ରିନ୍ସିପାଲଙ୍କ ପାଖକୁ ସବୁ ବିଷୟ ବର୍ଣ୍ଣନା କରି ଚିଠି ଲେଖିଦେବାରୁ ସେ ର୍ୟାଗିଂ କରୁଥିବା ପିଲାମାନଙ୍କର ଏଡ଼ମିଟ୍ କାର୍ଡ଼ ବନ୍ଦ କରିଦେଲେ। ତାଙ୍କର ଅଭିଭାବକମାନେ ଆସି ଅଣ୍ଡରଟେକିଂ ଦେବା ପରେ ଯାଇ ସେ ପିଲାମାନଙ୍କର ଏଡ଼ମିଟ୍‌କାର୍ଡ଼ ରିଲିଜ୍ ହେଲା। ଏଥିପାଇଁ ଅବଶ୍ୟ ମୋତେ ବହୁତ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଚି। ରେଗିଂ କରିଥିବା ଜଣେ ପିଲାର ବାପାଙ୍କ ଜଣେ ଅନ୍ତରଙ୍ଗ ଯେକି ଜଣେ ରାଜନୈତିକ ବ୍ୟକ୍ତି ତାଙ୍କ ଉପରେ ପ୍ରଭାବ ପକାଇ ମୋତେ ହଇରାଣ କରିବାକୁ ଚେଷ୍ଟା ମଧ୍ୟ କଲେ। ସାନ୍‌ପୁଅ ସମ୍ବିତ୍‌କୁ ମଧ୍ୟ ପିଲାମାନେ ଥରେ ଦୁଇଥର ଆକ୍ରମଣ କରିବାକୁ ଭୁଲିଲେନି। ଶେଷରେ ବାଙ୍ଗାଲୋର ପୋଲିସ୍ ଷ୍ଟେସନ୍‌ରେ ଏଫ.ଆଇ.ଆର. ଦିଆଯିବାରୁ ଦୁଇଜଣ ପିଲା ଜେଲରେ ରହିବାରୁ ସେମାନଙ୍କର ନିଦ ଭାଙ୍ଗିଲା ଓ ସମସ୍ତେ ଦୋଷ କ୍ଷମା ମାଗିବାରୁ ଜେଲରେ ଥିବା ପିଲାମାନଙ୍କୁ ମୁକୁଳାଗଲା। ବିଦେଶରେ ଥିବା ଓଡ଼ିଆ ପିଲାଏ ନିଜ ନିଜ ଭିତରେ ସଂଘତି ନରଖି ଏଭଳି ଉତ୍ପାତ ହୋଇପାରନ୍ତି ଏହା ଥିଲା ମୋର କଳ୍ପନାର ବାହାରେ। କିନ୍ତୁ ଅଙ୍ଗେ ଲିଭାଇଲା ପରେ ଜାଣିଲି, ଆମ ଯୁଗ ଆଉ ନାହିଁ। ଯୁଗ ବଦଳି ଯାଇଛି।

ଭାବିଥିଲି ପ୍ରମୋଶନ ହେବା ପର୍ଯ୍ୟନ୍ତ ସମ୍ବଲପୁରରେ କଟାଇଦେବି । କିନ୍ତୁ ତାହା ହେଲାନି । ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ୧୯୮୬ ମସିହାରେ ଏକ ବିପ୍ଳବ ଦେଖାଗଲା । ୫୨ ଜଣ ଏମ.ଏଲ.ଏ. ମିଳିତ ଭାବେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ହଟାଇବାକୁ ଚାହିଁଲେ । ଜାନକୀବାବୁ ମଧ୍ୟ ତାଙ୍କର ସଂଗଠନ ଦୃଢ଼ କରିବାକୁ ଚାହିଁଲେ । ସମ୍ବଲପୁରର ୫ ଜଣ ଏମ.ଏଲ.ଏ. ଜାନକୀବାବୁଙ୍କ ଗ୍ରୁପ୍‌କୁ ଚାଲି ଆସିଲେ । ଏହି ୫ ଜଣ ଏମ.ଏଲ.ଏ.ଙ୍କ ମଧ୍ୟରୁ ଜଣେ ଏମ.ଏଲ.ଏଙ୍କର ଜଣେ ସମ୍ପର୍କୀୟ ସମ୍ବଲପୁରରେ ଏସ.ଇ ହେବାକୁ ଚାହୁଁଥିଲେ । ଏହି ସୁଯୋଗରେ ସେ ମାଇନର ଇରିଗେସନ୍ ସର୍କଲକୁ ଆସିବାକୁ ଚାହିଁଲେ । ମୋର ମଧ୍ୟ ସମ୍ବଲପୁରରେ ରହଣି ସାଢ଼େ ଚାରିବର୍ଷ ହୋଇଯାଇଥିଲା । ତେଣୁ ପ୍ରତିବାଦ ନ କରି ୪ ମାସ ପାଇଁ ଭୁବନେଶ୍ୱରକୁ ଚାଲିଆସିଲି । ଭୁବନେଶ୍ୱର ଡ଼ି.ଏମ.ପି. ସର୍କଲରେ ମାତ୍ର ୩ ମାସ ରହିଛି କି ନାହିଁ ପୋଷ୍ଟିଂ ହେଲା ସୁବର୍ଣ୍ଣରେଖା ଜଳସେଚନ ଯୋଜନାର ମୁଖ୍ୟନିର୍ମାଣଯନ୍ତ୍ରୀ ହିସାବରେ ବାରିପଦାରେ ।



## ଏକବିଂଶ ପରିଚ୍ଛେଦ

# ମୟୂରଭଞ୍ଜର ସୁବର୍ଣ୍ଣଯୁଗ ଆରମ୍ଭ

ସୁବର୍ଣ୍ଣରେଖା ଜଳସେଚନ ଯୋଜନା ହୀରାକୁଦ, ରେଙ୍ଗାଲି, ଅପର କୋଲାବ, ଇନ୍ଦ୍ରାବତୀ ବା ବାଲିମେଳା ଭଳି ବୃହତ ଜଳସେଚନ ଯୋଜନା ଠାରୁ ଭିନ୍ନ। ଏହାର ପାର୍ବତ୍ୟ ଶଯ୍ୟା ବିହାରରେ ଅବସ୍ଥିତ। ଓଡ଼ିଶାରେ ଏ ନଦୀ ପ୍ରବେଶ କରିବା ବେଳକୁ ଏହାର ଅବବାହିକା ଅପେକ୍ଷାକୃତ ସମତଳ ଅଞ୍ଚଳ। ତେଣୁ ଓଡ଼ିଶାରେ ଏ ନଦୀ ଉପରେ ବନ୍ଧ ବାନ୍ଧି ବୃହତ୍ ଜଳଭଣ୍ଡାର ସୃଷ୍ଟି କରିବା ପାଇଁ ଉପଯୁକ୍ତ ସ୍ଥାନ ନାହିଁ। ସୁବର୍ଣ୍ଣରେଖା ନଦୀ ବିହାର ରାଜ୍ୟର ଛୋଟନାଗପୁର ମାଳ ଅଞ୍ଚଳରୁ ବାହାରିଛି, କିନ୍ତୁ ଏହାର ପ୍ରଧାନ ଉପନଦୀ ଖଡ଼କେଇ ଓଡ଼ିଶାର ଶିମିଳିପାଳ ପର୍ବତରୁ ବାହାରି ଟାଟାନଗର ସହର ନିକଟରେ ମିଳିତ ହୋଇଛି। ଖଡ଼କେଇ ଓ ତାର ଉପନଦୀ ଉପରେ ଖଡ଼କେଇ, ନେଶା ଓ ବାଙ୍କବାହାଲ ଭଳି ୩ଟି ମିଡ଼ିୟମ୍ ଯୋଜନା ଓ ଅନେକ ଗୁଡ଼ିଏ କ୍ଷୁଦ୍ର ଜଳସେଚନ ଯୋଜନା ନିର୍ମିତ ହୋଇଛି। ଉପର ମୁଣ୍ଡରେ ଏହି ନଦୀ ଜଳର ସଦ୍‌ବ୍ୟବହାର ପାଇଁ କ୍ଷେତ୍ର କମ୍। ସୁବର୍ଣ୍ଣରେଖା ନଦୀ ବିହାର-ଓଡ଼ିଶା ଓ ପଶ୍ଚିମବଙ୍ଗ ମଧ୍ୟଦେଇ ପ୍ରବାହିତ ହେଉଥିବାରୁ ଏହାର ଜଳସମ୍ପଦ ଉପରେ ୩ଟି ଯାକ ରାଜ୍ୟର ଅଧିକାର ରହିଛି। ନଦୀର ଜଳବଣ୍ଟନ ପାଇଁ ବହୁଦିନ ଧରି ବିବାଦ ଲାଗିରହିଥିଲା। ଶେଷରେ ୧୯୭୮ ମସିହାରେ ତତ୍କାଳୀନ ବିହାରର ମୁଖ୍ୟମନ୍ତ୍ରୀ କର୍ପୁରୀ ଠାକୁର ଓଡ଼ିଶାର ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ଓ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ଜ୍ୟୋତିବସୁଙ୍କ ମଧ୍ୟରେ ଏକ ତ୍ରିପାକ୍ଷିକ ରାଜିନାମା ସ୍ୱାକ୍ଷରିତ ହେଲା। ଏହି ରାଜିନାମା ଅନୁସାରେ ଗାଲୁଡ଼ିଠାରେ ନଦୀ ଜଳ ଉପରେ ବିହାରର ଦାବି ୨୫%, ଓଡ଼ିଶାର ୯୫% ଓ ପଶ୍ଚିମବଙ୍ଗର ୨.୫ ବୋଲି ସ୍ଥିର ହେଲା। ବିହାରର ରାନ୍ଦିଲଠାରେ ଏକ ଜଳଭଣ୍ଡାର ନିର୍ମାଣ ହେବ, ଯାହାର ଜଳଧାରଣ କ୍ଷମତା ୧୬୧୧ ମିଲିୟନ୍ କ୍ୟୁବିକ୍ ମିଟର ହେବ। ଏହି ଜଳଭଣ୍ଡାର ସଦୁପଯୋଗ କରି ବିହାର ୯୦ ହଜାର ହେକ୍ଟର ଜମିରେ ଜଳସେଚନ କରିବ ଏବଂ ଏହାର ସମୁଦାୟ

ଖର୍ଚ୍ଚ ବିହାର ରାଜ୍ୟ ବହନ କରିବ। କିନ୍ତୁ ଜଳଭଣ୍ଡାରରେ ୩ ମିଟର ବନ୍ୟାଜଳ ୪୬୩ ମଲିଅନ କ୍ୟୁବିକମିଟର ଧାରଣ ଶକ୍ତି ରହିବ ଓ ଏହାର ଖର୍ଚ୍ଚ ବହନ କରିବାକୁ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରାଯିବ। ଖଡ଼କେଇ ନଦୀ ଉପରେ ଘଙ୍ଗବସା ନିକଟବର୍ତ୍ତୀ ଇଛା ଠାରେ ଗୋଟିଏ ଜଳଭଣ୍ଡାର ନିର୍ମାଣ କରିବ ଯାହାର ଜଳଧାରଣ ଶକ୍ତି ୮୭୯ ମିଲିୟନ୍ କ୍ୟୁବିକ୍ ମିଟର। ସେଥିରୁ ୬୨୦ ଲକ୍ଷ ମିଲିୟନ କ୍ୟୁବିକ୍ ଫି ମିଟର ଅର୍ଥାତ୍ ୭୪% ଖର୍ଚ୍ଚ ବିହାର ରାଜ୍ୟ ବହନ କରିବ ଓ ୨୫ ହଜାର ହେକ୍ଟର ଜମି ଜଳସେଚିତ ହେବ ଓ ୨୨୦ ଲକ୍ଷ ମିଲିୟନ କ୍ୟୁବିକ୍ ଫୁଟର ବା ୨୬% ଖର୍ଚ୍ଚ ଓଡ଼ିଶା ବହନ କରିବ। ପ୍ରତ୍ୟେକ ରାଜ୍ୟ ତାଙ୍କ ଅଂଶ ଜଳକୁ ନିଜର ଇଚ୍ଛା ଅନୁଯାୟୀ ଖରିଫ ଓ ରବି ଋତୁରେ ବ୍ୟବହାର କରିପାରିବେ। ଗାଲୁଡ଼ିଠାରେ ଗୋଟିଏ ବେରେଜ୍ ତିଆରି ହେବ ଓ ସେଠାରୁ ବାହାରୁଥିବା ୬୦ କି.ମି. ଲିଙ୍କ କେନାଲ ବିହାର ସରକାରଙ୍କ ତତ୍ତ୍ୱାବଧାନରେ ନିର୍ମିତ ହେବ। ଏହାର ହାରାହାରି ଖର୍ଚ୍ଚର ଶତକଡ଼ା ୯୦ ଭାଗ ଓଡ଼ିଶା ସରକାର ଓ ୧୦% ଖର୍ଚ୍ଚ ବିହାର ସରକାର ବହନ କରିବେ। ଇଛାବନ୍ଧ ନିର୍ମାଣ ହେବା ପର୍ଯ୍ୟନ୍ତ ବିହାର ସରକାର ଓଡ଼ିଶାର ଅଂଶ ବାବଦ ଜଳ ଚାନ୍ଦିଲି ଜଳଭଣ୍ଡାରରୁ ଯୋଗାଇ ଦେବେ। ଓଡ଼ିଶା ତାର ଅଂଶ ବାବଦ ଜଳ ଖାଲୁଡ଼ିଠାରୁ ଲିଙ୍କ କେନାଲ ଜରିଆରେ ଡ୍ର କରି, ନିଜ ସୀମା ମଧ୍ୟରେ ହଳଦିଆ, ବାଉରା ଓ ଜମ୍ବିରା ଠାରେ ୩ଟି କମାଣ୍ଡ ଏରିଆ ଜଳଭଣ୍ଡାରରେ ସଞ୍ଚୟ କରିବ। ଇଛା ହଳଦିଆ, ଜମ୍ବିରା ଓ ବାଉରା ଜଳଭଣ୍ଡାର ଜଳର ସମନ୍ୱିତ ସଦୁପଯୋଗ ଦ୍ୱାରା ଓଡ଼ିଶାରେ ଖରିପ୍ ଋତୁରେ ଏକ ଲକ୍ଷ ହେକ୍ଟର ଓ ରବି ଋତୁରେ ୮୦ ହଜାର ହେକ୍ଟର ଜମିରେ ଜଳସେଚନ ସମ୍ଭବ ହେବ। ଏହି ଏକ ଲକ୍ଷ ହେକ୍ଟର ଜମିରୁ ୯୦ ହଜାର ହେକ୍ଟର ଜମି ମୟୂରଭଞ୍ଜ ଜିଲ୍ଲା ଅନ୍ତର୍ଗତ ଓ ବାକି ୧୦ ହଜାର ହେକ୍ଟର ବାଲେଶ୍ୱର ଜିଲ୍ଲାରେ ଅବସ୍ଥିତ। ୧୯୮୨ ମସିହାରେ ପ୍ରଥମ ପର୍ଯ୍ୟାୟରେ ଇଛାବନ୍ଧ, ଚାନ୍ଦିଲିବନ୍ଧ, ଗାଲୁଡ଼ି ବେରେଜ,ଗାଲୁଡ଼ି ରାଇଟ୍ ବେଙ୍କ ଲିଙ୍କ କେନାଲ ଓ ଇଛା କେନାଲ ସିଷ୍ଟମ୍ ନିର୍ମାଣ ପାଇଁ ବିଶ୍ୱବ୍ୟାଙ୍କ ସହିତ ଚୁକ୍ତି ସ୍ୱାକ୍ଷରିତ ହେଲା ଓ ପରେ ପରେ କାର୍ଯ୍ୟ ଆରମ୍ଭ ହେଲା। ୧୯୮୬ ମସିହା ବେଳକୁ ଗାଲୁଡ଼ି ବେରେଜ, ଗାଲୁଡ଼ି ରାଇଟବେଙ୍କ ଲିଙ୍କ କେନାଲ ଚାନ୍ଦିଲି, ଡ଼େମ୍ ନିର୍ମାଣ କାର୍ଯ୍ୟରେ ବିଶ୍ୱବ୍ୟାଙ୍କ ସହାୟତାରେ ପ୍ରଭୂତ ଉନ୍ନତି ସମ୍ଭବ ହେଲା।

୧୯୮୬ ଡିସେମ୍ବର ମାସରେ ଆସିଡ଼ାନାଲ ଡେଭେଲପମେଣ୍ଟ କମିଶନର ଓ ଇଞ୍ଜିନିୟର-ଇନ୍-ଚିଫ୍ ଗାଲୁଡ଼ି ପରିଦର୍ଶନରେ ଯାଇଥିଲେ। ସେ ପର୍ଯ୍ୟନ୍ତ ଓଡ଼ିଶା ଅନ୍ତର୍ଗତ ସୁବର୍ଣ୍ଣରେଖା ପ୍ରକଳ୍ପ ବିଷୟ କେହି ଚିନ୍ତା କରିନାହାନ୍ତି। ୧୯୯୧ ସୁଦ୍ଧା ଯେତେବେଳେ କେନାଲ ପାଣି ଆସି ଓଡ଼ିଶା ସୀମାରେ ପହଞ୍ଚିବ, ସେତେବେଳେ ଓଡ଼ିଶାରେ ଏହାର ସଦୁପଯୋଗ ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇନଥିବ। ତେଣୁ ୬୦ କି.ମି. ଦୈର୍ଘ୍ୟ କେନାଲରେ ଆସୁଥିବା ଜଳକୋଡ଼ିଆ ନାଳ ବାଟଦେଇ ସୁବର୍ଣ୍ଣରେଖା ନଦୀକୁ ଫେରିଯିବ। ବହୁତ ଡେରିରେ ହେଲେବି ଓଡ଼ିଶା ସରକାର ସୁବର୍ଣ୍ଣରେଖା ପ୍ରକଳ୍ପର ଉପଯୋଗିତା ଅନୁଭବ କରି ଏହାକୁ କାର୍ଯ୍ୟକାରୀ କରିବାର ପ୍ରଥମ ପଦକ୍ଷେପ ସ୍ୱରୂପ ମୁଖ୍ୟ ନର୍ମାଣଯନ୍ତ୍ରୀ ପଦ ସୃଷ୍ଟି କଲେ ୧୯୮୭ ମସିହା ଏପ୍ରିଲ ମାସରେ। ମୁଖ୍ୟ ନିର୍ମାଣଯନ୍ତ୍ରୀ, ୩ଟି ଅଧିକ ନିମାଣଯନ୍ତ୍ରୀ ପଦ ସୃଷ୍ଟି ସଙ୍ଗେ ସଙ୍ଗେ ବ୍ୟୟ ବରାଦ ପାଇଁ ୧୦ କୋଟି ଟଙ୍କା ମଧ୍ୟ ରଖାଗଲା, କିନ୍ତୁ କେନାଲ ବା ଡେମର ଏଲାଇନ୍‌ମେଣ୍ଟ ହେବା ପୂର୍ବରୁ, ଲେଣ୍ଡଏକ୍ୟୁଜିସନ୍ ନ ହୋଇ ଟଙ୍କା ଖର୍ଚ୍ଚ ଯେ କିଭଳି ସମ୍ଭବ ତାହା କେହି ହୃଦୟଙ୍ଗମ କଲେନି। ଏହି ମୁଖ୍ୟ ନିମାଣଯନ୍ତ୍ରୀ ପଦବୀ ୨/୩ ବର୍ଷ ପୂର୍ବରୁ ସୃଷ୍ଟି ହୋଇ ସର୍ଭେ ଡିଜାଇନ୍ କାମକୁ ତ୍ୱରାନ୍ୱିତ କରି ପ୍ରୋଜେକ୍ଟକୁ ଏକ ଶୃଙ୍ଖଳିତ ମାର୍ଗରେ ପରିଚାଳିତ କରିବା ପରେ ନିର୍ମାଣ ବାବଦ ବ୍ୟୟ ବରାଦ କରିବା ଉଚିତ୍ ବୋଲି କେହି ହୃଦୟଙ୍ଗମ କଲେ ନାହିଁ। କାର୍ଯ୍ୟ ଆରମ୍ଭ ପୂର୍ବରୁ ପ୍ରୋଜେକ୍ଟ ପାଇଁ ଜିପ୍, ଟ୍ରକ୍, ଅନ୍ୟାନ୍ୟ ଯନ୍ତ୍ରପାତି, ଷ୍ଟୋର ସରଞ୍ଜାମ ଆଦିର ଯେଉଁ ଆବଶ୍ୟକତା ରହିଛି ତାହା ଖୁବ୍ ଅଳ୍ପ ସ୍ଥାନରେ ହୃଦୟଙ୍ଗମ କରନ୍ତି।

୧୯୮୭ ମସିହା ମେ ୨୩ ତାରିଖ ଦିନ ମୁଖ୍ୟ ନିର୍ମାଣଯନ୍ତ୍ରୀ ଭାବେ ଯେତେବେଳେ ସୁବର୍ଣ୍ଣରେଖା ପ୍ରୋଜେକ୍ଟରେ ଯୋଗଦାନ କଲି ପ୍ରଥମେ ଅତ୍ୟନ୍ତ ହତୋତ୍ସାହ ହୋଇ ପଡ଼ିଲି। ଅଫିସ୍ ଓ ବାସଗୃହ ନାହିଁ। ସୁପରିଟେଣ୍ଡେଣ୍ଟିଂ ଇଞ୍ଜିନିୟର ନାହାନ୍ତି। ଏକଜିକ୍ୟୁଟିଭ୍ ଇଞ୍ଜିନିୟର, ଆସିଷ୍ଟାଣ୍ଟ ଇଞ୍ଜିନିୟର, ଜୁନିୟର ଇଞ୍ଜିନିୟର, କିରାଣୀ, ପିଅନ, ଡ୍ରାଇଭର ଗାଡ଼ି କିଛି ନାହିଁ। ବାରିପଦା ସର୍କଲରୁ ଗୋଟିଏ ଡିଭିଜନ ଯାହାକି ସୁବର୍ଣ୍ଣରେଖାର ସର୍ଭେ କରୁଥିଲା ତାହାକୁ ପ୍ରଥମେ ଅଣାଗଲା। ବାରିପଦା ସର୍କଲ ଅଫିସରୁ ଗୋଟିଏ ରୁମ୍ ନେଇ ଗୋଟିଏ ଏନ.ଏମ.ଆର. ଟାଇପିଷ୍ଟ ନେଇ ଅଫିସ୍ ଆରମ୍ଭ କଲି। ଗୋଟିଏ ପୁରୁଣା ଗଳ୍ପ ମନେ ପଡ଼ିଲା।

ବ୍ରହ୍ମା ପ୍ରାଣୀଜଗତର ଶ୍ରେଷ୍ଠ ଜୀବ ରୂପେ ମନୁଷ୍ୟମାନଙ୍କୁ ସୃଷ୍ଟି କଲେ, ସେମାନଙ୍କୁ ମର୍ତ୍ତ୍ୟରେ ବିଭିନ୍ନ କର୍ମ କରିବା ପାଇଁ ଆଦେଶ ଦେଲେ। ସେତେବେଳର ପୃଥିବୀ ଆଜିପରି ସୁଖଦାୟକ ନଥିଲା। ଏହା ସ୍ୱର୍ଗ ଭଳି ଭୋଗବିଳାସର ସ୍ଥାନ ନ ହୋଇ ଏକ କର୍ମଭୂମି ଥିଲା। ବ୍ରହ୍ମାଙ୍କର ଇଚ୍ଛା ମର୍ତ୍ତ୍ୟ ସ୍ୱର୍ଗ ଭଳି ଏକ ସର୍ବାଙ୍ଗ ସୁନ୍ଦର ସ୍ଥାନରେ ପରିଣତ ହେବ। ସେଥିପାଇଁ ସେ ବିଭିନ୍ନ ବୃତ୍ତି କରିପାରିବା ଭଳି ମନୁଷ୍ୟ ସମାଜ ସୃଷ୍ଟି କଲେ। ସେଥିରେ ଥିଲେ ବେଦ କର୍ମକାଣ୍ଡ ଜ୍ଞାନୀବ୍ରାହ୍ମଣ, କୃଷିଜୀବି, ହଳଧର, ଶିକ୍ଷାଦାନକାରୀ ଆଚାର୍ଯ୍ୟ, ବୈଦ୍ୟରାଜ, କର୍ମକୁଶଳୀ ଯନ୍ତ୍ରୀ, ହିସାବ ରକ୍ଷକ, ରୋଗୀ ଚିକିତ୍ସା ପାଇଁ ବୈଦ୍ୟରାଜ, ଶାନ୍ତିଶୃଙ୍ଖଳା ରକ୍ଷାକାରୀ ପୋଲିସ୍ ଓ ଏପରି ଆହୁରି ବହୁ ବୃତ୍ତିଧାରି ବିଶାରଦ। ଯେତେବେଳେ ମନୁଷ୍ୟମାନେ ବ୍ରହ୍ମାଙ୍କ ପାଖରେ ଆପତ୍ତି କଲେ ଯେ, ମର୍ତ୍ତ୍ୟରେ ସେମାନଙ୍କର ଲୀଳାଖେଳା ସରିବା ପରେ ତାଙ୍କର ଆତ୍ମାର ଅବସ୍ଥାନ ପାଇଁ ସ୍ୱର୍ଗରେ ଯେପରି ସ୍ଥାନ ସଂରକ୍ଷଣ କରାଯାଏ। ଏଥିରେ ବ୍ରହ୍ମା ଏକମତ ହେଲେ। ମନୁଷ୍ୟମାନେ ନିଜର ବୁଦ୍ଧି ଓ ସାମର୍ଥ୍ୟ ଅନୁଯାୟୀ ମର୍ତ୍ତ୍ୟରେ ବିଭିନ୍ନ କର୍ମ କରିବା ପାଇଁ ତତ୍କ୍ଷଣାତ୍ ସ୍ୱର୍ଗରୁ ମର୍ତ୍ତ୍ୟକୁ ଓହ୍ଲାଇ ଆସିଲେ। କୃଷକ ଚାଷ କାମ କଲା, ବଢ଼େଇ କାଷ୍ଠରେ ଆସବାବପତ୍ର ଓ ଘର ତିଆରିରେ ଲାଗିଲା, କମାର ଲୁହାରେ କୃଷି ଓ ଗୃହ ସାରଞ୍ଜାମ ତିଆରି କଲା। ଶିକ୍ଷକ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାଦାନ କଲା, ଓକିଲ ନିଜର ବୁଦ୍ଧିର ସଦ୍‌ବ୍ୟବହାର କରି କୋର୍ଟରେ କେସ୍ ଲଢ଼ିଲା, ବୈଦ୍ୟରାଜ ରୋଗୀ ସେବାରେ ମନ ଦେଲା, ପୋଲିସ୍ ଶାନ୍ତିଶୃଙ୍ଖଳା ରକ୍ଷା କରିବା ସଙ୍ଗେ ସଙ୍ଗେ ଅପରାଧ ରୋକିଲା; ପ୍ରଶାସନିକ ଶାସନ କାର୍ଯ୍ୟରେ ଲାଗିଲା, ଭିକାରୀ ଭିକ୍ଷା କଲା, ବଣିକ ବ୍ୟବସାୟ କରି ଦେଶରେ ଧନ ବଢ଼ାଇଲା, ଶୁଦ୍ରମାନେ ଉଚ୍ଚ ଜାତିର ଲୋକଙ୍କର ସେବା କଲେ, ଇଞ୍ଜିନିୟର ମାନେ ଜଳସେଚନ ଯୋଜନା, କୋଠା ଓ ରାସ୍ତା ନିର୍ମାଣ, ପୋଲ ନିର୍ମାଣ, କାରଖାନା ପ୍ରତିଷ୍ଠା କାର୍ଯ୍ୟରେ ଲାଗିଗଲେ। ସେହିପରି ଆହୁରି କେତେକ ସମ୍ପ୍ରଦାୟର ଲୋକ ବିଭିନ୍ନ ଧନ୍ଦାରେ ଲାଗିଲେ। ନିଜର ଧନ୍ଦା ସରିବା ପରେ ବିଭିନ୍ନ ଗୋଷ୍ଠୀର ଲୋକଙ୍କର ଆତ୍ମା ଦଳ ଦଳ ହୋଇ ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ। ବ୍ରହ୍ମା ମଧ୍ୟ ନିଜର ପ୍ରତିଶ୍ରୁତି ରକ୍ଷା କରି ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ନିଜର ଆତ୍ମାର ରହଣି ପାଇଁ ଆବଶ୍ୟକୀୟ ଜମି ସ୍ୱର୍ଗରେ ଯୋଗାଇ ଦେଲେ। ସେମାନେ ନିଜ ନିଜ ଜମିରେ ଗୃହ ରାସ୍ତାଘାଟ ଆଦି ନିର୍ମାଣ କରି ଶାନ୍ତିରେ ରହିଲେ।

ଇଞ୍ଜିନିୟରମାନଙ୍କର ଏକ ଅଭ୍ୟାସ ଦୋଷ, ଯେଉଁ କାର୍ଯ୍ୟରେ ଲାଗିଥିବେ ତାହା ନ ସରିବା ପର୍ଯ୍ୟନ୍ତ ଛାଡ଼ିବେନି। ବଡ଼ ବଡ଼ ଜଳସେଚନ ଯୋଜନା, ପୋଲ, ରାସ୍ତା, କାରଖାନା, ବିଦ୍ୟୁତ୍ ଉତ୍ପାଦନ, ରେଲ ଓ ଗାଡ଼ି ନିର୍ମାଣ କାମ ଧରିପକାଉଛନ୍ତି, ତାହା ସରୁଛି କେଉଁଠୁ? ଯାହା ଧରିବେ ତ ଛାଡ଼ିବେ ନାହିଁ। କାମ ସାରି ଡେରିରେ ପହଞ୍ଚି ଆତ୍ମାମାନଙ୍କର ରହଣି ପାଇଁ ବ୍ରହ୍ମାଙ୍କୁ ସ୍ଥାନଟିଏ ମାଗିଲେ। ବ୍ରହ୍ମା କହିଲେ ତୁମକୁ ଶୀଘ୍ର କାମ ସାରି ଆସିବାକୁ କହିଥିଲି, ଏତେ ଡେରି କଲ, ଆଉ ଯାଗା ମିଳିବ କେଉଁଠୁ? ମୁଁ ତ ସବୁ ଯାଗା ବାଣ୍ଟି ସାରିଲିଣି। ଆଉ ଯାଗା କେଉଁଠୁ ଅଛି ଯେ ତୁମକୁ ଦେବି? ଇଞ୍ଜିନିୟରମାନଙ୍କ ଆତ୍ମାମାନେ ବହୁତ କାକୁତି ମିନତି କରିବାରୁ ବ୍ରହ୍ମା କହିଲେ ଆଚ୍ଛା ତୁମକୁ ନର୍କ ପାଖରେ ସ୍ଥାନ ଖଣ୍ଡିଏ ଦିଆଗଲା। ଏଥିରେ ଇଞ୍ଜିନିୟରମାନଙ୍କ ଆତ୍ମାମାନେ ଅତ୍ୟନ୍ତ କ୍ଷୁବ୍ଧ ହେଲେ। କହିଲେ କଠୋର ପରିଶ୍ରମ ଓ ଦେଶ ନିର୍ମାଣର କ'ଣ ଏହି ପ୍ରତିଦାନ? ଆମେ ବେଶି ସମୟ ମର୍ତ୍ତ୍ୟରେ ରହି ସୃଷ୍ଟିର ସୁଖ ପାଇଁ ଏତେ କାମ କଲୁ ଓ ଶେଷରେ ସ୍ଥାନ ପାଇଲୁ ନର୍କ ନିକଟରେ। ମନକଷ୍ଟରେ ଫେରି ଆରମ୍ଭ କରିଦେଲେ ତାଙ୍କର ଅଭିଯାନ। ନର୍କର ସୀମାରେ ଗଢ଼ାଗଲା ଏକ ମେଘନାଦ ପାଚେରୀ। ସବୁ ମଇଳା ସଫା କରି ଖୋଳି ତଳୁ ଫାଉଣ୍ଡେସନ୍ ପକାଇ ତିଆରି ହେଲା ରହଣି ପାଇଁ ଗୃହ। ନର୍କର ମଇଳାକୁ ବ୍ୟବହାର କରି ନିର୍ମାଣ ହେଲା ଉଦ୍ୟାନ, କ୍ରୀଡ଼ା ଗୃହ, ମଇଳାରୁ ବାହାରିଲା ଜାଳେଣି ପାଇଁ ଗ୍ୟାସ। କିଛିଦିନ ପରେ ବୈଦ୍ୟରାଜ, ପୋଲିସ୍, ପ୍ରଶାସନିକ ଅଫିସର, କୃଷକ, ଶ୍ରମିକ, ବଣିକ, ଶିକ୍ଷକ ଆଦି ଗୋଷ୍ଠୀର ଆତ୍ମାମାନେ ପରସ୍ପର ରହଣି ସ୍ଥାନ ପରିବର୍ତ୍ତନ କରିବାକୁ ବାହାରିଲେ। ସେମାନେ ଯେତେବେଳେ ଇଞ୍ଜିନିୟରମାନଙ୍କର ରହଣି ସ୍ଥଳରେ ପହଞ୍ଚିଲେ ଦେଖିଲେ ନର୍କରେ ସୃଷ୍ଟି ହୋଇଛି ପାରିଜାତ ଉଦ୍ୟାନ। ସୁନ୍ଦର ଘର, ବଗିଚା ପନିପରିବା, ଫଳ ପୁଷ୍ପରେ ଭରପୁର, ବିଦ୍ୟୁତ୍ ଆଲୋକରେ ସ୍ଥାନଟି ଉଦ୍ଭାସିତ। ବ୍ରହ୍ମାଙ୍କ ପାଖରେ ଆପତ୍ତି କଲେ ଯେ ତାଙ୍କୁ କାହିଁକି ନର୍କ ପାଖରେ ସ୍ଥାନ ଦିଆଗଲା ନାହିଁ? ବ୍ରହ୍ମା କହିଲେ, ଇଞ୍ଜିନିୟରମାନେ ନିଜର ଅଧ୍ୟବସାୟ ବଳରେ ନର୍କକୁ ଆଜି ସ୍ୱର୍ଗରେ ପରିଣତ କରିଛନ୍ତି। ତୁମର ସେ ଚେଷ୍ଟା ନାହିଁ ତୁମେ ଫଳ ପାଇବ କେଉଁଠୁ? କର୍ଣ୍ଣ ଗହ୍ୱରରେ ବାରମ୍ବାର ପ୍ରତିଧ୍ୱନିତ ହେଲା, ମହାଭାରତରେ

ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କର ଅମରବାଣୀ। ଜଉଘର ଧ୍ୱଂସ ପରେ ପାଣ୍ଡବମାନେ ବହୁବର୍ଷ ଧରି ଅଜ୍ଞାତବାସ କରି ଯେତେବେଳେ ଦ୍ରୌପଦୀଙ୍କୁ ବିବାହ କରି ଘରକୁ ଫେରିଲେ ହସ୍ତିନାପୁରର ଯୁବରାଜ ପଦ ପାଇଁ ବିବାଦ ଉପୁଜିଲା। ଭୀଷ୍ମଙ୍କ ପରାମର୍ଶ ଅନୁସାରେ ରାଜ୍ୟକୁ ଦୁଇଭାଗ କରାଗଲା। କୌରବଙ୍କ ଭାଗ ପଡ଼ିଲା ହସ୍ତିନାପୁର ଓ ପାଣ୍ଡବଙ୍କ ଭାଗ ପଡ଼ିଲା ଆରାବଲୀର ଖାଣ୍ଡବ ପ୍ରସ୍ଥ। ଏହି ବନ୍ଧୁର ମରୁଭୂମି ଦେଖି ଯେତେବେଳେ ଭୀମ ଓ ଅର୍ଜୁନ କ୍ରୋଧାନ୍ୱିତ ହେଲେ, ଶ୍ରୀକୃଷ୍ଣ ତାଙ୍କୁ ଆଶ୍ୱାସନା ଦେଇ କହିଥିଲେ, ପିତାମହ ଭୀଷ୍ମ ତୁମକୁ ଏହି କର୍ମଭୂମି ଦେଇଛନ୍ତି। ନିଜର କର୍ମ ବଳରେ ପାଣ୍ଡବମାନେ ଖାଣ୍ଡବ ପ୍ରସ୍ଥକୁ ଇନ୍ଦ୍ରପ୍ରସ୍ଥକୁ ବା ଆଧୁନିକ ଦିଲ୍ଲୀ ନଗରୀ ଭଳି ସୁରମ୍ୟ ନଗରୀରେ ପରିଣତ କରିପାରିଥିଲେ।

ଭାବିଲି, ବରହମପୁର ଓ ସମ୍ବଲପୁରରେ କ୍ଷୁଦ୍ର ଜଳସେଚନ ମଣ୍ଡଳରେ କାମ କଲାପରେ ମୋତେ ନର୍କ ଭଳି ଷ୍ଟାଫ, ଘର ଗାଡ଼ି ନଥିବା ପ୍ରୋଜେକ୍ଟରେ ପୋଷ୍ଟିଂ କରିଛନ୍ତି। ଏହି ନର୍କକୁ ମୋତେ ସ୍ୱର୍ଗରେ ପରିଣତ କରିବାକୁ ପଡ଼ିବ। ସେଥିପାଇଁ ମୋତେ କଠିନ ପରିଶ୍ରମ କରିବାକୁ ପଡ଼ିବ ଓ ଦୁନିଆକୁ ଦେଖାଇବାକୁ ହେବ ଜଣେ ଇଞ୍ଜିନିୟର ତା'ର ବୁଦ୍ଧି କର୍ମକୁଶଳତା ଅଧ୍ୟବସାୟ ଓ ସର୍ବୋପରି ଇଞ୍ଜିନିୟର କଲେଜରେ ଆହରଣ କରିଥିବା ଜ୍ଞାନର ସଦୁପଯୋଗ ଦ୍ୱାରା କିଭଳି ଅସାଧ୍ୟ ସାଧନ କରିପାରେ। ଗୋବର ଗାଡ଼ିଆରେ ପଦ୍ମଫୁଲ ନିଜର ଶୋଭା ବିକାଶ କଲାଭଳି ଜଣେ କର୍ମଠ ଇଞ୍ଜିନିୟର ଯେ କୌଣସି ପରିସ୍ଥିତିରେ ନିଜର ବିକାଶ କରିପାରିବ। ଯୋଗ ଦେବାର ଦୁଇ ଦିନ ପରେ ପଡ଼ିଲା ମୁଖ୍ୟମନ୍ତ୍ରୀଙ୍କ ଭୂମିପୂଜା ଓ ଚିଫ୍ ଇଞ୍ଜିନିୟରଙ୍କ ଅଫିସ୍ ଗୃହର ଶୁଭଦାନ ଉତ୍ସବ। ଦିନରାତି ପରିଶ୍ରମ କରି ଏ ଉତ୍ସବଟିର ଏକ ସଫଳ ରୂପାୟନ କରାଗଲା। ଏଡ଼ିସିନାଲ ଡେଭେଲପମେଣ୍ଟ କମିଶନର ରମାକାନ୍ତ ରଥ ଏ ଉତ୍ସବଟିକୁ ଆସିଥିଲେ। ତାଙ୍କୁ ପ୍ରୋଜେକ୍ଟର ଅଭାବ ଅସୁବିଧା କହିବାରୁ ସଙ୍ଗେ ସଙ୍ଗେ ୪ଟି ଡିଭିଜନ ଓ ୧୧ଟି ଗାଡ଼ି ଜିପ୍ କିଣାଗଲା। ହୀରାକୁଦରୁ ୩ଟି ପୁରୁଣା ଜିପ୍‌କୁ ଆଣି ମରାମତି କରାଗଲା। ଧୀରେ ଧୀରେ ଇନ୍ଦ୍ରାବତୀ, କୋଲାବ ଓ ରେଙ୍ଗାଲି ପ୍ରୋଜେକ୍ଟରୁ ଲୋକ ଆସି ଜଏନ୍ କଲେ। କେନାଲର ଏଲାଇନମେଣ୍ଟ ଠାରୁ ଆରମ୍ଭ କରି ଲେଣ୍ଡ ଏକ୍ୟୁଜିସନ୍, ଏଷ୍ଟିମେଟ୍, ଟେଣ୍ଡର ପର୍ଯ୍ୟନ୍ତ ମାତ୍ର ୬/୮ ମାସ ଭିତରେ

ହୋଇଗଲା । ୧୯୮୮ ମାର୍ଚ୍ଚ ବେଳକୁ ଟେଣ୍ଡର ହୋଇ ୨୦ କି.ମି. କେନାଲ ଖୋଳା କାମ ଆରମ୍ଭ ହୋଇଗଲା । ଡିଭିଜନ ଅଫିସ୍ ପାଇଁ ଝାରପୋଖରିଆ, ହଳଦିଆ ଓ ଦେଉଳି ଠାରେ ଅଫିସ୍ ଓ କ୍ୱାର୍ଟର ପାଇଁ ୨୦୦ ଘର ତିଆରି ଆରମ୍ଭ ହୋଇଗଲା । ହେଡ୍ଅଫିସର ଅଫିସ୍ ଓ କ୍ୱାର୍ଟର ପାଇଁ ଏକାଥରକେ ୩୦୦ ଘରର କାର୍ଯ୍ୟ ଆରମ୍ଭ ହୋଇଗଲା । ରିଭାଇଜ୍ ଏଷ୍ଟିମେଟ୍ ତିଆରି କରି ସରକାରଙ୍କ ଜରିଆରେ ସି.ଡ୍ବ୍ଲୁ.ସି.ରୁ ଅନୁମୋଦନ ପାଇଁ ପଠାଗଲା ।

୧୯୮୦ ମସିହାରେ ପ୍ରବର୍ତ୍ତିତ ଫରେଷ୍ଟ କଞ୍ଜରଭେସନ୍ ଏକ୍ଟ ଯୋଗୁ ସବୁ ଜଳସେଚନ ଯୋଜନାର କାର୍ଯ୍ୟ ମନ୍ଥର ହୋଇଯାଇଛି । ସୁବର୍ଣ୍ଣରେଖାର ଜଳଭଣ୍ଡାର ଓ କେନାଲ ପାଇଁ ୧୧୬୬ ହେକ୍ଟର ଜଙ୍ଗଲ ଜମି ଆବଶ୍ୟକ । ନୋଡ଼ାଲ ଅଫିସର ବସନ୍ତ କୁମାର ମିଶ୍ର ମୋର ଅନ୍ତରଙ୍ଗ ବନ୍ଧୁ ହୋଇଥିବାରୁ ତାଙ୍କ ସାହାଯ୍ୟରେ ଫରେଷ୍ଟ କ୍ଲିଏରେନ୍ସ ନକସା ପ୍ରସ୍ତୁତ କରାଇଲି । ବୁଡ଼ି ଅଞ୍ଚଳରେ ଲୋକଗଣନା କରି ତାଙ୍କ ପାଇଁ ରିହାବିଲିଟେସନ୍ ନକ୍ସା ପ୍ରସ୍ତୁତ କରି ଓଡ଼ିଶା ଜଙ୍ଗଲ ବିଭାଗ ଜରିଆରେ ଫରେଷ୍ଟ କ୍ଲିଏରେନସ୍ ପାଇଁ ଭାରତ ସରକାରଙ୍କ ଜଙ୍ଗଲ ବିଭାଗକୁ ପଠାଗଲା । କିନ୍ତୁ ଏ ପ୍ରସ୍ତାବ ଉପରେ ବାରମ୍ବାର ଅବଜେକ୍ସନ ହେବାରୁ ମୁଖ୍ୟମନ୍ତ୍ରୀଙ୍କ ଜରିଆରେ କେନ୍ଦ୍ରମନ୍ତ୍ରୀଙ୍କୁ ଅନୁରୋଧ କରାଗଲା । କିନ୍ତୁ ଜଙ୍ଗଲ ଜମି ବଦଳରେ ଜଙ୍ଗଲ ସୃଷ୍ଟି ପାଇଁ ସରକାରୀ ଜମି ଯୋଗାଇ ନ ପାରିଲେ ଫରେଷ୍ଟ କ୍ଲିୟରେନସ୍ ମିଳିବ ନାହିଁ ବୋଲି ଜଣାପଡ଼ିବାରୁ, କେନାଲ କଡ଼ ଜମି ଜଙ୍ଗଲ ପାଇଁ ଛାଡ଼ି ଦିଆଯିବ ବୋଲି ପ୍ରସ୍ତାବ କରି, ଜଙ୍ଗଲ ବିଭାଗର ଅନୁମୋଦନ ପାଇଁ ପଠାଗଲା । ବହୁ କଷ୍ଟରେ ଭାରତ ସରକାରଙ୍କ ଜଙ୍ଗଲ ବିଭାଗ ଏଥିରେ ରାଜିହେଲେ ।

ଲେଣ୍ଡ ଏକ୍ୟୁଜିସନ୍ ଓ ବୁଡ଼ି ଅଞ୍ଚଳ ଲୋକଙ୍କର ଥଇଥାନ ହୋଇ ନ ପାରିଲେ ପ୍ରୋଜେକ୍ଟର କାର୍ଯ୍ୟ ଆଗେଇ ପାରିବ ନାହିଁ । ସେଥିପାଇଁ ଲେଣ୍ଡ ଏକ୍ୟୁଜିସନ୍କୁ ପ୍ରଥମ ଅଗ୍ରାଧିକାର ଦିଆଗଲା । ଏଥିରେ ମୋତେ କଲେକ୍ଟର ଗୋକୁଳ ପତି ଓ ତାଙ୍କ ଉତ୍ତରାଧିକାରୀ ନରୋତ୍ତମ ସାହୁ ବହୁତ ସାହାଯ୍ୟ କରିଛନ୍ତି । ପ୍ରଥମାବସ୍ଥାରେ ଲେଣ୍ଡ ଏକ୍ୟୁଜିସନ୍ ଅଫିସର ନଥିବାରୁ ମିଡ଼ିୟମ୍ ପ୍ରୋଜେକ୍ଟର ସ୍ପେଶାଲ ଲେଣ୍ଡ ଏକ୍ୟୁଜିସନ ଅଫିସରଙ୍କୁ ଦୁଇଜଣ ଜୋନ୍ ଅଫିସର ଦିଆଯାଇ ଲେଣ୍ଡ ଏକ୍ୟୁଜିସନ କାମକୁ ତ୍ୱରାନ୍ୱିତ

କରାଗଲା । ଷ୍ଟେଟ୍ ଲେଭଲ ଲେଣ୍ଡ ଏକ୍ୟୁଜିସନ ମିଟିଂରେ ଯେତେବେଳେ ଅନ୍ୟ ପ୍ରୋଜେକ୍ଟର ଚିଫ୍ ଇଞ୍ଜିନିୟର ଓ ଲେଣ୍ଡ୍ ଇକ୍ୟୁଜିସନ୍ ଅଫିସର୍ଙ୍କ ମଧ୍ୟରେ ବାଦାନୁବାଦ ଚାଲିଥାଏ, ଆମ ଷ୍ଟାଫ୍ ଏ ଦୃଶ୍ୟ ଦେଖି ମୁରୁକି ମୁରୁକି ହସୁଥାନ୍ତି । ଲେଣ୍ଡ ଏକ୍ୟୁଜିସନ ଦାୟିତ୍ୱରେ ଥିବା ରେଭିନ୍ୟୁ ଅଫିସର ଓ ଇଞ୍ଜିନିୟରଙ୍କ ମଧ୍ୟରେ ସୁନ୍ଦର ସମନ୍ୱୟ ରକ୍ଷା କରି କିଭଳି ଆଠ ମାସରେ ଭୂ-ଅର୍ଜନ ସମ୍ଭବ, ତାହା କାର୍ଯ୍ୟକ୍ଷେତ୍ରରେ ଦେଖାଇ ଦେଇପାରିଥିଲେ ସୁବର୍ଣ୍ଣରେଖା ଜଳସେଚନ ଯୋଜନା ଦାୟିତ୍ୱରେ ଥିବା ଲେଣ୍ଡ ଏକ୍ୟୁଜିସନ୍ ଅଫିସର ବୃନ୍ଦ ଓ ସୁବର୍ଣ୍ଣରେଖାର ମୋର ଇଞ୍ଜିନିୟର ସହକର୍ମୀବୃନ୍ଦ । ଭୁବନେଶ୍ୱରରେ ଜଣେ ଲିଆସନ ଅଫିସର ରଖି ଅନ୍ୟକାମ ସହ ଲେଣ୍ଡ ଏକ୍ୟୁଜିସନ୍ ତ୍ୱରାନ୍ୱିତ କରି ୬ ମାସରୁ ୮ ମାସ ଭିତରେ ଲେଣ୍ଡ ଏକ୍ୟୁଜିସନର ସମସ୍ତ ଆନୁସଂଗିକ କାର୍ଯ୍ୟ ସାରି ଜମି ହସ୍ତାନ୍ତର କେବଳ ସୁବର୍ଣ୍ଣରେଖା ପ୍ରୋଜେକ୍ଟରେ ସମ୍ଭବ ବୋଲି ଜଳସେଚନ ବିଭାଗର ସେକ୍ରେଟେରୀ ପ୍ରସଙ୍ଗକ୍ରମେ ଅନେକଥର କହିଛନ୍ତି । ସେହିପରି ବୁଡ଼ି ଅଞ୍ଚଳରେ ଲୋକଙ୍କର ଥଇଥାନ ପାଇଁ ଜମି ନିରୂପଣ ପାଇଁ କେବଳ ଯେ ଆମ କର୍ମଚାରୀମାନେ ତତ୍ପର ଥିଲେ ତା' ନୁହେଁ କଲେକ୍ଟର ଓ ତତ୍କାଳିନ ସ୍ପିକର (ବାଚସ୍ପତି) ପ୍ରସନ୍ନ କୁମାର ଦାଶଙ୍କ ନିଷ୍ଠା ଓ ଆନ୍ତରିକତା ଯୋଗୁଁ ବାରିପଦା, ବେତନଟି ଓ ମୋରାଡ଼ା ତହସିଲର ତହସିଲଦାରମାନେ ଆପ୍ରାଣ ଚେଷ୍ଟା କରି ପ୍ରାୟ ୫୦୦୦ ଏକର ସରକାରୀ ଜମି ଠାବ କରିବାକୁ ସକ୍ଷମ ହୋଇଥିଲେ । ବୁଡ଼ି ଅଞ୍ଚଳର ଲୋକଙ୍କୁ ଥଇଥାନ କାର୍ଯ୍ୟ ସହିତ ସଂଶ୍ଳିଷ୍ଟ କରି ପୁର୍ନବସତି କାର୍ଯ୍ୟକୁ ମାତ୍ର ୨ ବର୍ଷ ଭିତରେ ଏକ ବାସ୍ତବ ରୂପ ଦେବା କେବଳ ସୁବର୍ଣ୍ଣ ରେଖାରେ ହିଁ ସମ୍ଭବ ହୋଇଥିଲା ।

ପ୍ରୋଜେକ୍ଟ ଷ୍ଟାଫ୍ଙ୍କ ଘର ଯୋଗାଇଦେଇ ନ ପାରିଲେ କୌଣସି ଯୋଜନାର କାର୍ଯ୍ୟରେ ଅଗ୍ରଗତି ସମ୍ଭବ ନୁହେଁ । ଏହି ଆଭିମୁଖ୍ୟ ନେଇ ଗୃହ ନିର୍ମାଣ କାର୍ଯ୍ୟକୁ ଅଗ୍ରାଧିକାର ଦିଆଯାଇଥିଲା ଗୃହର ସିଭିଲ କାର୍ଯ୍ୟ ସହିତ ପାଇଖାନା, ଜଳଯୋଗାଣ ଓ ବିଦ୍ୟୁତ୍ ଯୋଗାଣ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଇଲେକ୍ଟ୍ରିସିଟ୍ ବୋର୍ଡ଼ର ନୂଆ ନିୟମ ଅନୁସାରେ ସବ୍ଷ୍ଟେସନ୍ ଠାରୁ ପ୍ରୋଜେକ୍ଟ ପର୍ଯ୍ୟନ୍ତ ଲାଇନ୍ ଟାଣିବା ଓ ଘରର ଆଭ୍ୟନ୍ତରିଣ ତାର ବସାଇବା ପ୍ରୋଜେକ୍ଟର ଦାୟିତ୍ୱ । ଏ କାର୍ଯ୍ୟ କେବେ ଜୀବନରେ

କରିନି। କିନ୍ତୁ ଏ କାର୍ଯ୍ୟଟିକୁ ତ୍ୱରାନ୍ୱିତ କରିପାରିଲି ପ୍ରୋଜେକ୍ଟର ମେକାନିକାଲ ନିର୍ବାହୀଯନ୍ତ୍ରୀ କାଶୀନାଥ ବାରିକ ଓ ଇଲେକ୍ଟ୍ରିକାଲ ସହକାରୀଯନ୍ତ୍ରୀ ଶୁଭେନ୍ଦୁ କୁମାର ନାୟକଙ୍କ ସହାୟତାରେ ।

୧୯୮୮ ଜୁନ୍ ମାସ ସୁଦ୍ଧା ସମୁଦାୟ ସୁବର୍ଣ୍ଣରେଖା ମେନ୍ କେନାଲ ଏଲାଇନ୍‌ମେଣ୍ଟ ସରିଗଲା। ଭୂ-ଅର୍ଜନ କାର୍ଯ୍ୟକୁ ତ୍ୱରାନ୍ୱିତ କରି ୦ କି.ମି. ଠାରୁ ୪୬ କି.ମି. ପର୍ଯ୍ୟନ୍ତ କେନାଲ ଟେଣ୍ଡର ଡକାଗଲା। ସେହିପରି ଜମ୍ବିରା ଡେମର ଟେଣ୍ଡର ଡକାଯାଇ ପାରିଲା। ଟେଣ୍ଡରଗୁଡ଼ିକରେ କେତେ ଜଣ କଣ୍ଟ୍ରାକ୍ଟର ବହୁତ ସ୍ପେକୁଲେଟିଭ୍ ରେଟ୍ ଦେଲେ। ଜଣେ କଣ୍ଟ୍ରାକ୍ଟର ମାଟି କାମ କ୍ୟୁବିକ୍ ମିଟରକୁ ୧୫ ଟଙ୍କା କୋଟ କରିବା ସମୟରେ ପଥର କାଟିବା ପାଇଁ କ୍ୟୁବିକ ମିଟରକୁ ୫ ଟଙ୍କା କୋଟ୍ କଲେ। ଏହି ଟେଣ୍ଡରଗୁଡ଼ିକୁ କଣ୍ଟ୍ରାକ୍ଟ କମିଟିର ମତ ନେଇ କେନସଲ କରିଦିଆଗଲା। ସେଥିପାଇଁ କେତେଜ କଣ୍ଟ୍ରାକ୍ଟର କ୍ଷୁବ୍ଧ ହୋଇ ମୋ ବିରୁଦ୍ଧରେ ପ୍ରଚର ଆରମ୍ଭ କରିଦେଲେ ଓ ପରବର୍ତ୍ତୀ କାଳରେ ଏହା ମୋର ସୁବର୍ଣ୍ଣରେଖା ଯୋଜନାରୁ ବଦଳିର କାରଣ ମଧ୍ୟ ହେଲା। କିନ୍ତୁ ମୁଁ ମୋର ସୁପାରିଶରେ ଦୃଢ଼ ଥିଲି ଏବଂ ପ୍ରୋଜେକ୍ଟର ସ୍ୱାର୍ଥ ଦୃଷ୍ଟିରୁ ଏହା ଆବଶ୍ୟକ ବୋଲି ଦୃଢ଼ ଭାବରେ ମତବ୍ୟକ୍ତ କରିଥିଲି। ମୋର ଏହି ମତକୁ ଇଞ୍ଜିନିୟର-ଇନ୍-ଚିଫ ଦିବାକର ମିଶ୍ର, ଇରିଗେସନ୍ ଡିପାର୍ଟମେଣ୍ଟର ସେକ୍ରେଟେରୀ ଓ.ଏଫ.ଏ. ତଥା ଫାଇନାନ୍‌ସ ଓ.ଲ.ଡିପାର୍ଟମେଣ୍ଟର ଜଏଣ୍ଟ ସେକ୍ରେଟେରୀ, ଡେପୁଟି ସେକ୍ରେଟେରୀ ଦ୍ୱୟ ସମର୍ଥନ କରିଥିଲେ। ମୋର ଏହି ଦୃଢ଼ ପଦକ୍ଷେପ ଫଳରେ ମାତ୍ର ୨ ବର୍ଷ ଭିତରେ ସୁବର୍ଣ୍ଣରେଖା ଜଳସେଚନ ଯୋଜନାର କାମରେ ପ୍ରଭୁତ ଅଗ୍ରଗତି ଦେଖା ଦେଇଥିଲା। ବିହାରରେ ସୁବର୍ଣ୍ଣରେଖା ପ୍ରୋଜେକ୍ଟର କାମ ବିଶ୍ୱବ୍ୟାଙ୍କ ସହାୟତାରେ ୧୯୮୨ ମସିହାରେ ଆରମ୍ଭ ହୋଇଥିଲା। ଓଡ଼ିଶାରେ ତା'ର ୫ ବର୍ଷ ପରେ କାମ ଆରମ୍ଭ ହୋଇ ମାତ୍ର ୨/୩ ବର୍ଷ ମଧ୍ୟରେ କାମ ତାଙ୍କ ଠାରୁ ଆଗେଇଗଲା। ସେହିପରି ଇନ୍ଦ୍ରାବତୀ, ରେଙ୍ଗାଲି, କୋଲାବ ଓ ପୋଟେରୁ ପ୍ରୋଜେକ୍ଟର କାମ ୧୦/୧୨ ବର୍ଷ ଆଗରୁ ଆରମ୍ଭ ହୋଇଥିଲେ ମଧ୍ୟ ସୁବର୍ଣ୍ଣରେଖା କେନାଲର କାମ ମାତ୍ର ୨/୩ ବର୍ଷ ମଧ୍ୟରେ ସେମାନଙ୍କର ସହିତ ତାଳ ଦେବାକୁ ସକ୍ଷମ ହୋଇଥିଲା। ଖାଲି ସେତିକି ନୁହେଁ,

କେନାଲ ଏଲାଇନ୍‌ମେଣ୍ଟ ତଥା ମାଟି କାମର ପ୍ଲାନିଂ ଏଭଳି ନିର୍ଭୁଲ ଭାବେ ହୋଇଛି ଯେ, ଅନ୍ୟାନ୍ୟ ପ୍ରୋଜେକ୍ଟରେ ଦେଖାଦେଇଥିବା ସ୍ୱଏଲ ମାଟି ବା ସ୍ଲୋପ୍ ଫେଲିଓର ପ୍ରୋବ୍ଲେମ୍ ଏଥିରେ ଆଦୌ ନାହିଁ। ଯେ କୌଣସି ଯୋଜନା ଆରମ୍ଭ ସମୟରେ ଯେଉଁଭଳି ବାଧାବିଘ୍ନ ପରିସ୍ଥିତିର ଆହ୍ୱାନ, ସଙ୍କଟଜନକ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥାଏ, ତାର ମୂଲ୍ୟାଙ୍କନ ପରବର୍ତ୍ତୀକାଳରେ ଯୋଜନା ଏକ ନିର୍ଦ୍ଦିଷ୍ଟ ରୂପ ନେଇସାରିଥବା ପରେ କାର୍ଯ୍ୟର ଆକଳନ ସମ୍ଭବ ନୁହେଁ। ସୁବର୍ଣ୍ଣରେଖା ଜଳସେଚନ ଯୋଜନା ଏଥିରୁ ବାଦ ଯାଇ ନଥିଲା।

ପ୍ରଥମ ପରିସ୍ଥିତିରେ ଆହ୍ୱାନ ଆସିଥିଲା, ସୁବର୍ଣ୍ଣରେଖା ମେନ୍ କେନାଲର ଏଲାଇନ୍‌ମେଣ୍ଟରେ ୪୦୦୦ କ୍ୟୁସେକ୍ ବା ୧୨୦ କ୍ୟୁମେକ୍ ଜଳ ବହନ କରୁଥିବା ଏହି କେନାଲରେ କମାଣ୍ଡ ନ କମାଇବା ଲକ୍ଷ୍ୟରେ କେନାଲ ସାଇଫନର ନିର୍ମାଣକୁ ଏଡ଼େଇ ଦିଆଗଲା। ଡ୍ରେନେଜ୍ ସାଇଫନ ପାଇଁ ଆବଶ୍ୟକୀୟ ହେଡ୍‌ରୁମ୍ ଦରକାର। ତା' ନ ହେଲେ ଲମ୍ବା ଟେଲ୍ କେନାଲ ଖୋଳିବାକୁ ପଡ଼ିବ। ବିଶେଷ କରି ୨୭ କି.ମି.ରୁ ୩୧ କି.ମି. ପର୍ଯ୍ୟନ୍ତ କେନାଲର ଏ ଲାଇନ୍‌ମେଣ୍ଟକୁ ଅତି ସାବଧାନତାର ସହିତ କରାଯାଇ ନେସନାଲ୍ ହାଇୱେ ଓ ରେଲ ଲାଇନ୍‌ରେ ଥିବା ପୋଲର ବେଡ୍ ଲେଭେଲ୍ ସହିତ ସମନ୍ୱୟ ରକ୍ଷା କରି ଡ୍ରେନେଜ୍ ସାଇଫନ ବଦଳରେ ଡ୍ରେନେଜ୍ ସୁପର ପେସେଜ୍ ଦେବାକୁ ପଡ଼ିଲା। ୨୩ କି.ମି. ଓ ୨୬ କି.ମି. ମଧ୍ୟରେ ମେନ୍ କେନାଲ୍ ସୁବର୍ଣ୍ଣରେଖା ଅବବାହିକା ଅତିକ୍ରମ କରି ବୁଢ଼ାବଳଙ୍ଗ ଅବବାହିକାରେ ପ୍ରବେଶ କରିଛି। ଏଠାରେ ସର୍ବାଧିକ କଟିଂ ହେଉଛି ୨୨ ମିଟର। ଏଠାରେ କେନାଲକୁ ଟନେଲ୍, କଟ ଏଣ୍ଡ କଭର ବା ଓପନ କଟରେ ନେବାକୁ ପଡ଼ିବ। ବିସ୍ତୃତ ଡ୍ରିଲିଂ କରି ୩ଟି ଯାକ ସମ୍ଭାବ୍ୟର ଟେକନିକାଲ ଓ ଅର୍ଥନୈତିକ ସମ୍ଭାବନାର ବିଶ୍ଳେଷଣ ପରେ ଓପନ କଟ ସବୁ ଦିଗରୁ ଉପଯୁକ୍ତ ମନେ କରାଯିବାରୁ ଏହି କାର୍ଯ୍ୟଟି ଶୀଘ୍ର ହାତକୁ ନିଆଯାଇ ୧୯୮୮ ଡିସେମ୍ବର ସୁଦ୍ଧା କାର୍ଯ୍ୟ ଆରମ୍ଭ କରାଗଲା କାରଣ ଏ କାର୍ଯ୍ୟଟିକୁ ସମ୍ପୂର୍ଣ୍ଣ କରିବାକୁ ୨ ବର୍ଷରୁ ଅଧିକ ସମୟ ଲାଗିବ। କେନାଲ ଏଲାଇନ୍‌ମେଣ୍ଟର ଅନ୍ୟ ଏକ ପ୍ରତିବନ୍ଧକ ଥିଲା ୫ କି.ମି.ରେ ନାଳ କ୍ରସିଂ ଓ ୩୭ କି.ମିରେ ଚିପଟ୍‌ନାଳ କ୍ରସିଂ। ଏକୁଇଡ଼କ୍ଟ ଦୁଇଟିର ଏପ୍ରୋଚ ଏଲାଇନ୍‌ମେଣ୍ଟ ଠିକ୍

ଭାବେ ହୋଇ ନପାରିଲେ ଏହା ଏକ ବ୍ୟୟବହୁଳ ଓ ହୀରାକୁଦର ଦନ୍ତା ଏକୁଇଡ଼୍‌କୁ ଭଳି ସମସ୍ୟା ସୃଷ୍ଟି କରିବ। ତେଣୁ ଯେତେଦୂର ସମ୍ଭବ ଅଚ୍ଛ ଫିଲିଂରେ ଏକୁଇଡ଼୍‌କୁ ଏପ୍ରୋଚ ଏଲାଇନ୍‌ମେଣ୍ଟ କରାଗଲା।

ଦ୍ୱିତୀୟ ଋଲେଞ୍ଜ ଆସିଲା ଜମ୍ବିରା ଡେମ୍ ଓ ହଳଦିଆ ତିଆରିରେ। ବାରିପଦାର ଆସ ପାଶ ଅଞ୍ଚଳରେ ୧ରୁ ୨ ମିଟର ତଳେ ଏକ ପ୍ରକାର ହଳଦିଆ ମାଟି ଦେଖିବାକୁ ମିଳେ। ତା' ଉପରେ ନିର୍ମିତ ଘରରେ ଅଧିକାଂଶ ସମୟରେ ଫାଟ ଦେଖାଯାଏ। ସର୍ଭେରୁ ଜଣାପଡ଼ିଲା ଯେ ଜମ୍ବିରା ଡ଼େମ୍‌ର ୫ରୁ ୬ ମିଟର ତଳେ ଏହି କେଓଲିନ୍ ମାଟି ରହିଛି। ତା' ଉପରେ ଲେଟ୍‌ରାଇଟ୍ ଓ ମୁରମର ସ୍ତର ଅଛି। କେଓଲିନ୍ ମାଟିର ଲେବୋରେଟୋରୀ ଗୁଣ ଅନୁସାରେ ଏହା ଇମ୍ପାରଭିଅସ୍, ତେଣୁ କେଓଲିନ୍ ଭିତରକୁ ୧ ମିଟର ଖୋଳି କଟଅଫ୍ ଟ୍ରେଞ୍ଚ ନିର୍ମାଣ କରାଗଲା। କିନ୍ତୁ ତେନୁଘାଟ ଭଳି ଏହି ମାଟିର କନସୋଲିଡ଼େସନ୍ ପାଇଁ ସେଣ୍ଡ ପାଇଲ ତିଆରି କରିବା ପାଇଁ ଡିଜାଇନ୍ ଚିଫ୍ ଇଞ୍ଜିନିୟର ଦୃଢ଼ମତ ପୋଷଣ କଲେ। ଏହି ବନ୍ଧର ଅନ୍ୟ ଏକ ସମସ୍ୟା ହେଉଛି ନିକଟରେ ପଥର ଓ ମେଟାଲର ଅଭାବ। ତେଣୁ ସାଣ୍ଡ ଚିମିନି ଓ ହରାଇଜଣ୍ଟାଲ ଫିଲଟରରେ ଉଭୟ ବାଲି ଓ ମେଟାଲ ବ୍ୟବହାର ନ କରି କେବଳ ବାଲିରେ ନିର୍ମାଣ ପାଇଁ ପ୍ରସ୍ତାବ କରାଗଲା। ହଳଦିଆ ଡ଼େମର ସମସ୍ୟା ହେଲା, ୧୦୦ ବର୍ଷ ପୂର୍ବର ୧୨ ମିଟର ଉଚ୍ଚା ଡ଼େମର ସମ୍ପ୍ରସାରଣ କରି ଏହାକୁ ୨୧ ମିଟର ଡେମରେ ପରିଣତ କରିବା। ପୁରୁଣା ଡେମର କଟଅଫ୍ ଅଛି କି ନାହିଁ ସନ୍ଦେହ। ମାଟି କମ୍ପେକସନ୍ ହୋଇନାହିଁ। ରକଟୋ ନିୟମିତ ଭାବେ ତିଆରି ହୋଇନାହିଁ। ଡେମଟି ଅଙ୍କାବଙ୍କା। କିନ୍ତୁ ପୁରୁଣା ଡେମଟିର ସଦୁପଯୋଗ ନ ହୋଇପାରିଲେ ଖର୍ଚ୍ଚ ୭/୮ କୋଟି ଟଙ୍କା ବଢ଼ିଯିବ। ତେଣୁ ପୁରୁଣା ଡେମର ଅନଡ଼ିଷ୍ଟର୍ବଡ଼ ସେମ୍ପଲ ଓ ବରୋ ଏରିଆର ଡ଼ିଷ୍ଟବର୍ଡ଼ ସେମ୍ପଲ ଆଣି, ଡ୍ରିଲିଂ ଦ୍ୱାରା ଭୂମିତଳର ସ୍ତର ନିରୂପଣ କରି ପୁରୁଣା ଡେମକୁ ଉପର ଅଂଶରେ ରଖି ଡ଼େମ୍ ଡିଜାଇନ୍ କରାଗଲା। ଏହାର ସ୍ପିଲଓ୍ୱେ ପୁରାତନ ପଦ୍ଧତିରେ ନିର୍ମିତ। ପୁଣି ପଥର ଚଟାଣ ନଥିବାରୁ ୧୬ ମିଟର ଉଚ୍ଚ ସେଣ୍ଟାଲ ସ୍ପିଲଓ୍ୱେ ଅର୍ଥନୈତିକ ଦୃଷ୍ଟିରୁ ଗ୍ରହଣଯୋଗ୍ୟ ନୁହେଁ। ଡାହାଣପଟ ପାହାଡ଼ରେ ସ୍ପିଲଓ୍ୱେ ନିର୍ମାଣ ପାଇଁ ଉପଯୁକ୍ତ ସେଡ଼ଲ ରହିଛି। କିନ୍ତୁ ସ୍ପିଲ ଚେନାଇ ନିର୍ମାଣ ପାଇଁ ଜମି ଦଖଲ ଓ ହଳଦିଆ ଗ୍ରାମର

ପୁନର୍ବସତିର ଆବଶ୍ୟକତା ଥିବା ଦୃଷ୍ଟିରୁ ଏହା ସୋସିଓ ଇକୋନୋମିକ୍ ଦୃଷ୍ଟିରୁ ଆଦୌ ଗ୍ରହଣଯୋଗ୍ୟ ନୁହେଁ। ତେଣୁ ବାମ ଫ୍ଲାଙ୍କରେ ଷ୍ଟେପଟ୍‌ଫଲ୍ ଟାଇପ୍ ସ୍ପିଲଓ୍ୱେ ସର୍ବୋତ୍କୃଷ୍ଟ। ପୁଣି ସମୁଦାୟ ଅବବାହିକାର ଶତକଡ଼ା ୫୦ ଭାଗ ଏହି ଜଳଭଣ୍ଡାର ଦ୍ୱାରା ବୁଡ଼ିଯାଉ ଥିବାରୁ ଓ ସ୍ପିଲଓ୍ୱେରେ ଗେଟ୍ ଲାଗୁ ନଥିବାରୁ ଏହାର ସ୍ପିଲଓ୍ୱେ ବାଟ ଦେଇ ଖୁବ୍ କମ ପାଣି ପାଶ୍ କରିବ। ଅଧିକାଂଶ ଉଦ୍‌ବୃତ୍ତ ପାଣି ଜଳଭଣ୍ଡାର ଦ୍ୱାରା ରାଉଟିଂ ହୋଇଯିବ। ବାଉରା ଡ୍ୟାମ କାମକୁ ଦ୍ୱିତୀୟ ପର୍ଯ୍ୟାୟରେ ନିର୍ମାଣ ପାଇଁ ସ୍ଥଗିତ ରଖାଗଲା।

ମେନ୍ କେନାଲ ଓ ଡେମ୍ ତିଆରି ସହିତ ମେକ୍ରୋ ଓ ମାଇକ୍ରୋ କେନାଲ ଅର୍ଥାତ୍ ଡିଷ୍ଟ୍ରିବ୍ୟୁଟେରୀ କେନାଲ ଓ ୱାଟରକୋର୍ସ ସର୍ଭେ ମଧ୍ୟ ହାତକୁ ନିଆଗଲା। ମାତ୍ର ୮ ମାସ ଭିତରେ ୭ ହଜାର ହେକ୍ଟର ଜମି ପାଇଁ ମେକ୍ରୋ ଓ ମାଇକ୍ରୋ ସର୍ଭେ ସରିଗଲା। ଏହି ସର୍ଭେର ଉଦ୍ଦେଶ୍ୟ ହେଉଛି ଗାଲୁଡ଼ି ବେରେଜରୁ ପାଣି ଆସିବା ସଙ୍ଗେ ସଙ୍ଗେ ଯେପରି ଜଳସେଚନ ପାଇଁ କେନାଲ ତିଆରି ହୋଇସାରିଥିବ।

ଚତୁର୍ଥ ଓ ସବୁଠାରୁ ବଡ଼ ସମସ୍ୟା ହେଉଛି ବାସଚ୍ୟୁତ ଲୋକଙ୍କର ଥଇଥାନ ସମସ୍ୟା। ଏହି ଯୋଜନା ପାଇଁ ପ୍ରାକୃତିକ ଜଳଭଣ୍ଡାର ନିର୍ମାଣ ପାଇଁ ଉପଯୁକ୍ତ ସ୍ଥାନ ନାହିଁ। କିନ୍ତୁ ଓଡ଼ିଶାର ଅଂଶ ଜଳକୁ ଆଣି ମୟୂରଭଞ୍ଜ ଜିଲ୍ଲାର ଏକ ଶୁଷ୍କ ଅଞ୍ଚଳକୁ ଜଳସେଚିତ କରିବାକୁ ପଡ଼ିବ। ହଳଦିଆ, ଜମ୍ବିରା ଓ ବାଉର। ଏ ତିନୋଟି ଜଳଭଣ୍ଡାର ନିର୍ମାଣ ପାଇଁ ୨୫୦୦ ହେକ୍ଟର ଜମି ଜଳମଗ୍ନ କରି ୮୦ଟି ଗ୍ରାମର ୫୦୦୦ ପରିବାରକୁ ବାସଚ୍ୟୁତ କରିବା ଆବଶ୍ୟକ। ତେଣୁ ସୁବର୍ଣ୍ଣରେଖା ଯୋଜନାର ପ୍ରଧାନ ସମସ୍ୟା ହେଉଛି, ବାସଚ୍ୟୁତ ଲୋକଙ୍କର ଥଇଥାନ ସମସ୍ୟା। ସରକାରୀ ନିୟମ ଅନୁସାରେ ୪ ଏକର ଅଣ ଜଳସେଚିତ ବା ୨ ଏକର ଜଳସେଚିତ ଜମି ପ୍ରତ୍ୟେକ ପରିବାରକୁ ଦେବାକୁ ହେବ। ୧୯୮୦ ମସିହାର ଜଙ୍ଗଲ ସଂରକ୍ଷଣ ନିୟମ ବଳରେ ବାସଚ୍ୟୁତଙ୍କ ପାଇଁ ଜଙ୍ଗଲ ଜମି ନିଆଯାଇପାରିବ ନାହିଁ। ମୟୂରଭଞ୍ଜ ଜିଲ୍ଲାରେ ଅଣ ଜଙ୍ଗଲ ସରକାରୀ ଜମିର ଅଭାବ। ଯାହାବା ଅଛି ସବୁତକ ଲୋକମାନଙ୍କର ଜବର ଦଖଲରେ। ବେଦଖଲ ଉପଯୋଗୀ ଅନ୍ତତଃ ୧୦,୦୦୦ ଏକର ଜମି ପାଇବା ଅସମ୍ଭବ ହୋଇପଡ଼ିଲା। ଏଣେ ବିଶ୍ୱବ୍ୟାଙ୍କର ତାଗିଦା ଯେ, ବାସଚ୍ୟୁତ ଲୋକମାନଙ୍କୁ ଜମି ଦେଇ ଥଇଥାନ ନ କରି ପାରିଲେ ବିଶ୍ୱବ୍ୟାଙ୍କ ଋଣ

ମିଳିବ ନାହିଁ। ସବୁ ବାସଚ୍ୟୁତ ପରିବାର ଚାକିରୀ ଦାବି କରୁଛନ୍ତି, ସରକାରୀ ଚାକିରୀ ଏତେ କାହିଁ? ଶେଷରେ ସ୍ଥିର ହେଲା ଯେ ପ୍ରତି ବାସଚ୍ୟୁତ ପରିବାରକୁ ଘର ତିଆରି ପାଇଁ ଜମି, ଗୋଟିଏ ଫାୟାର ପ୍ରୁଫ୍ ଘର, ଏକ ଏକର ଜଳସେଚିତ ଜମି ଦିଆଯିବ। ସମୁଦାୟ ଚାକିରୀର ଶତକଡ଼ା ୫୦ ଭାଗ ସ୍ଥାନ ବାସଚ୍ୟୁତଙ୍କ ପାଇଁ ସଂରକ୍ଷିତ ହୋଇରହିବ। ପ୍ରତି ଗାଁରେ ମିଟିଂ କରି ଲୋକମାନଙ୍କୁ ସରକାରୀ ନୀତି ଓ ଆଭିମୁଖ୍ୟ ବୁଝାଇବା ପରେ ଯାଇ ସେମାନେ କେନାଲ ଓ ବନ୍ଧକାମ କରିବାକୁ ସହଯୋଗ କଲେ।

ପିଲାଦିନରୁ କାଂଶବାଂଶ ନଦୀ ବନ୍ୟାର ଭୟାବହତା ସ୍ୱଚକ୍ଷୁରେ ଦେଖି ଆସିଛି। ୬ଷ୍ଠ ଶ୍ରେଣୀରେ ଅନନ୍ତପୁରରେ ପଢୁଥିବା ସମୟରେ ୪ କି.ମି. ବାଟ ବନ୍ୟା ଜଳରେ ପହଁରି ପହଁରି ସ୍କୁଲ ଯାଇଛି। ବାଲ୍ୟକାଳରୁ ମନ ଭିତରେ ସଦାବେଳେ ଗୋଟିଏ ପ୍ରଶ୍ନ ଉଙ୍କିମାରେ, ଏ ବନ୍ୟା ସମସ୍ୟାର କ'ଣ ସମାଧାନ ନାହିଁ? ଏ ଅଞ୍ଚଳରେ ଲୋକେ କ'ଣ ସବୁଦିନ ବନ୍ୟା ଦାଉରେ ସଢୁଥିବେ? କେବେ ଏ ସମସ୍ୟାର ସମାଧାନ ହେବ? କେବେ ଏ ଅଞ୍ଚଳର ଲୋକଙ୍କ ମୁହଁରେ ହସ ଫୁଟିବ? ଇଞ୍ଜିନିୟର ହେବା ପରେ ବହୁବାର ଏ ସମସ୍ୟା ସମାଧାନ ପାଇଁ ପଦକ୍ଷେପ ପାଇଁ ଚିନ୍ତା କରିଛି। କିନ୍ତୁ ସମସ୍ୟାର ସ୍ଥାୟୀ ପ୍ରତିକାର ପାଇଁ ସମସ୍ୟାର ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ଆବଶ୍ୟକ। ଦୀର୍ଘ ୩୦ ବର୍ଷ ଧରି ଓଡ଼ିଶାର ବିଭିନ୍ନ ଜିଲ୍ଲା ମୋର କର୍ମକ୍ଷେତ୍ର ହୋଇଥିଲେ ହେଁ ବାଲେଶ୍ୱର ଜିଲ୍ଲାର ଉନ୍ନତିମୂଳକ କାର୍ଯ୍ୟ ସହିତ ନିଜକୁ ଜଡ଼ିତ କରିବାର ସୁଯୋଗ ମିଳି ନଥିଲା। ଭାବିଲି ଚାକିରିରୁ ଅବସର ନେବା ପୂର୍ବରୁ ଅଞ୍ଚଳରେ ସେବା କରିବା ପାଇଁ ଭଗବାନ ବୋଧହୁଏ ମୋତେ ଶେଷଥର ପାଇଁ ସୁବିଧା ଦେଉଛନ୍ତି।

ସୁବର୍ଣ୍ଣରେଖା ପ୍ରୋଜେକ୍ଟ ଅଧୀନରେ ବାଲେଶ୍ୱରଠାରେ ଗୋଟିଏ ବନ୍ୟା ଅନୁସନ୍ଧାନ ଡିଭିଜନ ରହିଛି। ବାଲେଶ୍ୱର ଜିଲ୍ଲାର ବନ୍ୟା ସମସ୍ୟା ଅନୁଧ୍ୟାନ କରିବା ଏହାର ଦାୟିତ୍ୱ। କାଂଶବାଂଶ ନଦୀ ବାଲେଶ୍ୱର ଜିଲ୍ଲାର ମଧ୍ୟଭାଗରେ ପ୍ରବାହିତ ହୋଇ ୫ ନମ୍ବର ଜାତୀୟ ରାଜପଥ ତଳେ କାଂଶବାଂଶ ଓ ଗମେଇ ଏଭଳି ଦୁଇଟି ଶାଖାରେ ବିଭକ୍ତ ହୋଇ ବଙ୍ଗୋପସାଗରରେ ପଡ଼ିଛି। ମାତ୍ର ୭୦୦ ବର୍ଗ କି.ମି. ଅବବାହିକା

ବିଶିଷ୍ଟ ନଦୀ କାହିଁକି ଏଭଳି ପ୍ରଳୟଙ୍କରୀ ବନ୍ୟା ସୃଷ୍ଟି କରୁଛି ? ତା'ର ଅନୁସନ୍ଧାନ ପାଇଁ କାଂଶବାଂଶ, ଗମେଇ ନଦୀ ଦ୍ୱୟର ଅବବାହିକାକୁ ସର୍ଭେ କରି କଣ୍ଟୁର ନକ୍ସା ତିଆରି ହେଲା। ଉଭୟ ନଦୀ ଓ ରିକେଟ୍ କେନାଲର ନଦୀ ଶଯ୍ୟାର ଲେଭେଲ ନିଆଯାଇ ନକ୍ସା ପ୍ରସ୍ତୁତ କରାଗଲା। ଦୀର୍ଘ ୧ ଶତାବ୍ଦୀ ଧରି ଏ ଦୁଇଟି ନଦୀର ଅବବାହିକାରେ ନିର୍ମାଣ ହୋଇଥିବା ବନ୍ଧ, ସ୍ଲୁଇସ୍ ଓ ସ୍କିଲ୍ ଚେନାଲର ଇତିହାସ ସଂଗ୍ରହ କରିବାରୁ ବନ୍ୟା ସମସ୍ୟାର କାରଣ ନିମ୍ନମତେ ନିର୍ଦ୍ଧାରଣ କରାଗଲା।

୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷ ବ୍ରିଟିଶ ସରକାରଙ୍କୁ ଏକ ବଡ଼ ଧକ୍କା ଦେଇଥିଲା। ଗମନାଗମନର ସୁବିଧା ନଥିବାରୁ ଓଡ଼ିଶା ବାହାରୁ ଯଥେଷ୍ଟ ଖାଦ୍ୟଶସ୍ୟ ଓଡ଼ିଶାକୁ ଆସି ପାରିଲାନି। ତା' ଫଳରେ ଲୋକମାନେ ପୋକ ମାଛି ଭଳି ମରିଗଲେ। କଲିକତାରୁ ଚାନ୍ଦବାଲି ବନ୍ଦରକୁ ମାଲ୍ ଆଣି ସେଠାରୁ ବୈତରଣୀ ଓ ମତେଇ ବାଟ ଦେଇ ସୁବର୍ଣ୍ଣରେଖା ପର୍ଯ୍ୟନ୍ତ ଜିନିଷପତ୍ରର ପରିବହନ ପାଇଁ ୧୮୮୬ ମସିହାରେ ଓଡ଼ିଶା କୋଷ୍ଟ କେନାଲ ନାମକ ଏକ କେନାଲ ଖୋଳାଗଲା। ଷ୍ଟିମର ଓ ନୌକା ଚଳନା ପାଇଁ ଏହି କେନାଲରେ ନିର୍ଦ୍ଦିଷ୍ଟ ଗଭୀରତାର ପାଣି ବର୍ଷ ସାରା ରହିବା ଆବଶ୍ୟକ। ତେଣୁ କାଂଶବାଂଶ ଓ ଗମେଇ ନଦୀ ଦୁଇଟିର ମୁହାଣକୁ ପୋତି ଦିଆଗଲା। କାଂଶବାଂଶ ଓ ଗମେଇ ନଦୀର ପାଣିକୁ ବୈତରଣୀ ଓ ବୁଢ଼ାବଳଙ୍ଗ ନଦୀ ବାଟ ଦେଇ ବଙ୍ଗୋପସାଗରରେ ନିଷ୍କାସନର ଯୋଜନା ରହିଲା। ଉଦ୍‌ବୃତ୍ତ ପାଣି ନିଷ୍କାସନ ପାଇଁ ଗମେଇ ଠାରୁ ମତେଇ ପର୍ଯ୍ୟନ୍ତ ରିକେଟ୍ କେନାଲ ନାମକ ୩୦୦ ଫୁଟ୍ ଓସାରର ଏକ ସ୍କିଲ୍ କେନାଲ ଖେଳାଗଲା। କାଳକ୍ରମେ ଏହି ରିକେଟ୍ କେନାଲ ଏକ ନଦୀରେ ପରିଣତ ହୋଇ ନୂଆ ନଈ ନାମଧାରଣ କଲା। କେନାଲ କାମ ୧୮୯୬ରୁ ୧୯୯୦ ଭିତରେ ସମ୍ପୂର୍ଣ୍ଣ ହୋଇ ୧୯୩୦ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ରହିଲା। ୧୯୩୧ ମସିହାରେ କୋଷ୍ଟ କେନାଲରେ ନୌଚଳନ ସୁବିଧାକୁ ବାତିଲ କରାଗଲା। ଫଳରେ କାଂଶବାଂଶ ଓ ଗମେଇ ଉଭୟ ନଦୀ ସମୁଦ୍ରକୁ ପୁନର୍ବାର ସିଧା ପ୍ରବାହିତ ହେଲେ। ଗମେଇ ନଦୀର ପତନ ରିକେଟ୍ କେନାଲ ପର୍ଯ୍ୟନ୍ତ ପରିଷ୍କାର ଥିବାରୁ ଏହା ସହଜରେ ସମୁଦ୍ରକୁ ବାଟ ଫିଟାଇ ପାରିଲା। କିନ୍ତୁ ତାର ଉପରମୁଣ୍ଡରେ ପଡ଼ିଥିବା ମାଟି ସେହିପରି ଜମା ହୋଇ ରହିଲା। ଗମେଇ ନଦୀ ଏକ ଅଣଓସାରିଆ

ନାଳରେ ପରିଣତ ହୋଇଗଲା। କାଂଶବାଂଶ ନଦୀ କୋଷ୍ଟ କେନାଲ ଠାରୁ ୧୦ କି.ମି. ଉପର ମୁଣ୍ଡ ପର୍ଯ୍ୟନ୍ତ ପୋତି ହୋଇପଡ଼ିଥିଲା। ଏଠାରେ ଉଲ୍ଲେଖଯୋଗ୍ୟ ଯେ, କାଂଶବାଂଶ ନଦୀର ଗର୍ଭରେ ବାଲୁକା କିମ୍ବା ପୁଟମାଟି ଦେଖିବାକୁ ମିଳେ ନାହିଁ। କଟକ ବା ପୁରୀ ଜିଲ୍ଲା ଭଳି ବାଲେଶ୍ୱର ଜିଲ୍ଲା ପଟୁମାଟି ଦ୍ୱାରା ଗଠିତ ନୁହେଁ। ଏହା ଆଗ୍ନେୟ ଶିଳା ଦ୍ୱାରା ଗଠିତ ହୋଇଥିବାରୁ, ନଦୀ ଶଯ୍ୟା କୃଷ୍ଣ କାର୍ପାସା ମୃର୍ତ୍ତିକା ଦ୍ୱାରା ଗଠିତ। ତେଣୁ ନଦୀ ଗର୍ଭରେ ଜମା ଥିବା ମାଟି ସମୁଦ୍ରକୁ ପ୍ରବାହିତ ନ ହୋଇ ଜଳ ନିଷ୍କାସନର ପଥରୁଦ୍ଧ କଲା। ଗୋଟିଏ ଉଦାହରଣ ଦେଲେ ଏହି ଡିପୋଜିଟର ଭୟାବହତା ସହଜରେ ଅନୁମେୟ ହେବ। ବାଲିଛନ୍ଦା ଘାଟ ପାଖରେ ନଦୀର ନିମ୍ନ ଶଯ୍ୟାଠାରୁ ୮ କି.ମି. ତଳେ ଅବସ୍ଥିତ ପୁରୁଣା ପାଢ଼ୀବନ୍ଧ ଠାରେ ନଦୀର ନିମ୍ନଶଯ୍ୟା ଅଢ଼େଇ ମିଟର ଉଚ୍ଚରେ ଅବସ୍ଥିତ। ତେଣୁ ସାମାନ୍ୟ ବର୍ଷାରେ ନଦୀ ପତ୍ତନ ବୃଦ୍ଧି ପାଇ ୨୦,୦୦୦ ଏକର ଜମିକୁ ୧୦ ଦିନରୁ ୧୫ ଦିନ ପର୍ଯ୍ୟନ୍ତ ଜଳ ପ୍ଲାବିତ କରି ରଖେ। ୧୯୫୫ ମସିହାରେ ଋନ୍ଦବାଲି ଏମ.ଏ.ଏ. ଚକ୍ରଧର ବେହେରାଙ୍କ ଋପ ଫଳରେ ରିକେଟ୍ କେନାଲ୍‌ର ମୁହଁକୁ ବନ୍ଧ ଦ୍ୱାରା ବନ୍ଦ କରିଦିଆଗଲା। ଏହାର ଫଳସ୍ୱରୂପ ୧୯୫୫ ମସିହା ଠାରୁ ଆଜି ପର୍ଯ୍ୟନ୍ତ କାଂଶବାଂଶ ନଦୀର ଅବବାହିକାରେ ଥିବା, ୨୦,୦୦୦ ଏକର ଜମିରେ ଫସଲ ଉତ୍ପାଦନ ବନ୍ୟାଦ୍ୱାରା କ୍ଷତିଗ୍ରସ୍ତ ହେଉଛି। ଏହା ଏକ ଜନବହୁଳ ଅଞ୍ଚଳ ହୋଇଥିବାରୁ ଋଷୀମାନେ କାଂଶବାଂଶ ଓ ଗମେଇ ଉପରେ କ୍ରସ ବନ୍ଧ କରି ସାଳନ୍ଦୀ କେନାଲର ରି-ଜେନେରେସନ୍ ପାଣି ସାହାଯ୍ୟରେ ରବି ଋଷ କରି କୌଣସି ମତେ ବଞ୍ଚି ରହିଛନ୍ତି। କ୍ରସ୍‌ବନ୍ଧଗୁଡ଼ିକ କଟା ନ ହେବା ଫଳରେ ଏହା ବନ୍ୟା ସମସ୍ୟାକୁ ଅଧିକ ତୀବ୍ରତର କରୁଛି। ବାସୁଦେବପୁରଠାରୁ ଅନନ୍ତରପୁର ପର୍ଯ୍ୟନ୍ତ ଲମ୍ବିଥିବା ୧୧ କି.ମି. ସଡ଼କରେ ବହୁତ ଘାଇଥିଲା। ଏହି ଘାଇ ଗୁଡ଼ିକ ଜରିଆରେ ନଦୀର ବନ୍ୟାଜଳ ନିଷ୍କାସିତ ହେଉଥିଲା। ଲୋକଙ୍କର ସୁବିଧା ପାଇଁ ଘାଇ ଗୁଡ଼ିକ ବନ୍ଦ କରିଦେଇ ଯଥେଷ୍ଟ ପୋଲ ବା କଜୱେ ନ ଦେଇ ସଡ଼କଟିକୁ ଉଚ୍ଚା କରିଦିଆଗଲା। ଫଳରେ ବନ୍ୟାଜଳ ନିଷ୍କାସନ ନ ହୋଇ ଆହୁରି ଅବରୁଦ୍ଧ ହୋଇପଡ଼ିଲା। ୧୯୭୮ ମସିହାରେ ଶାଶୁବୋହୂ ଘାଟ ପାଖରେ ଗମେଇ ନଦୀ ଉପରେ ୪୫ ମିଟର ଚଉଡ଼ା ବିଶିଷ୍ଟ ଗୋଟିଏ ପୋଲ ହେଲା, ଯଦିଓ ଦୁଇପାଖ ଆଡ଼ିବନ୍ଧ ମଧ୍ୟରେ ଦୂରତା ୬୦୦ ମିଟର, ଜଳନିଷ୍କାସନ ଦ୍ୱାରକୁ ସଙ୍କୁଚିତ

କରିବା ଫଳରେ ବନ୍ୟାଜଳ ନିଷ୍କାସନ ପାଇଁ ଥିବା ଏକମାତ୍ର ଉନ୍ମୁକ୍ତ ଦ୍ୱାର ସବୁଦିନ ପାଇଁ ଅବରୋଧ ହୋଇପଡ଼ିଲା। ନନ୍ଦପୁର ପାଖରେ ବାସୁଦେବପୁର ବ୍ଲକ୍ ତରଫରୁ ହୋଇଥିବା ଫିସେରି ବନ୍ଧଟିରେ ସ୍ପିଲୱେ ଅଣଚଉଡ଼ା ହୋଇଥିବାରୁ ଏହା ଗୋଟିଏ ଅଞ୍ଚଳରେ ବନ୍ୟା ସମସ୍ୟା ସୃଷ୍ଟି କରୁଛି।

ବହୁତ ଦିନ ଧରି ବନ୍ୟାର କାରଣ ନିର୍ଦ୍ଧାରଣ ପାଇଁ ମନରେ ଯେଉଁ ଦ୍ୱନ୍ଦ୍ୱ ଉପୁଜିଥିଲା, ତାର କାରଣ ନିରୁପଣ କରିପାରିଥିବାରୁ ଆନନ୍ଦରେ ବିଭୋର ହୋଇପଡ଼ିଲି। ସଂଗେ ସଂଗେ ଓଡ଼ିଶାର ଫ୍ଲଡ୍ ଟେକନିକାଲ ଏଡଭାଇଜରି କମିଟିରେ ଏ ସମସ୍ୟାଟି ଉତ୍‌ଥାପନ କରାଯାଇ ପ୍ରତିକାରର ପନ୍ଥା ନିର୍ଦ୍ଧାରଣ କରାଗଲା। ବନ୍ୟା ନିୟନ୍ତ୍ରଣ ପାଇଁ ୭ଟି ପ୍ରତିକାର ପନ୍ଥା ନିର୍ଣ୍ଣୟ କରାଗଲା।

୧) କାଂଶବାଂଶ ନଦୀର ଶଯ୍ୟାକୁ ଖୋଳି ତା'ର ପୂର୍ବାବସ୍ଥାକୁ ଫେରାଇ ଆଣିବା ପାଇଁ ପାଇଁ ପ୍ରାୟ ଦୁଇ କୋଟି ଟଙ୍କା ଆବଶ୍ୟକ। କିନ୍ତୁ ପ୍ରଥମ ପର୍ଯ୍ୟାୟରେ ୫୫ ଫୁଟ୍ ଚଉଡ଼ାରେ ସବୁଠାରୁ ଅଧିକ ପୋତି ହୋଇପଡ଼ିଥିବା ବାଲିଛନ୍ଦା ଘାଟ ଓ ପାଟୀବନ୍ଧ ଠାରେ ୩ କି.ମି. ଲମ୍ବର ନଦୀ ଶଯ୍ୟାକୁ ୧.୨ରୁ ୧.୫ ମିଟର ଗଭୀରରେ ଖୋଳା କାର୍ଯ୍ୟ ଆରମ୍ଭ କରାଗଲା।

୨) ନିମିକ ସଡ଼କରେ ବାସୁଦେବପୁର ଓ ଅନନ୍ତପୁର ମଝିରେ ୩ଟି କଜୱେ ନିର୍ମିତ ହୋଇଥିଲା। ରାସ୍ତା ଓ କୋଠାବାଡ଼ି ବିଭାଗ ସହିତ ସମନ୍ୱୟ ରକ୍ଷା କରି ଆଉ ୫/୬ଟି କଜୱେ ନିର୍ମାଣ ପାଇଁ ଯୋଜନା କରାଗଲା। ପ୍ରଥମ ପର୍ଯ୍ୟାୟରେ ୩ଟି କଜୱେ ନିର୍ମାଣ କାର୍ଯ୍ୟ ହାତକୁ ନିଆଗଲା। ଏ କାର୍ଯ୍ୟ ପାଇଁ ତତ୍କାଳୀନ ବାସୁଦେବପୁର ବିଭାଗର ଏସ.ଡ଼ି.ଓ ଚନ୍ଦ୍ରଶେଖର ପଣ୍ଡାଙ୍କ ସହଯୋଗ ଅତୁଳନୀୟ।

୩) ଶାଶୁବୋହୂ ଘାଟ ପାଖରେ ଗମେଇ ନଦୀ ପୋଲର ଏପ୍ରୋଚରେ ଗୋଟିଏ ୧୦୦ ଫୁଟ୍ ଓସାରର କଜୱେ ଥିଲା। ଏହି କଜୱେକୁ ୫୦୦ ଫୁଟ୍ ଓସାର କରିବା ପାଇଁ ଯୋଜନା କରାଗଲା। ପ୍ରଥମ ପର୍ଯ୍ୟାୟରେ ୨୦୦ ଫୁଟ୍ ଓସାରର କଜୱେ ହାତକୁ ନିଆଗଲା।

୪) ନନ୍ଦପୁର ଠାରେ ତିଆରି ହୋଇଥିବା ସ୍ପିଲୱେକୁ ୧୦୦ ଫୁଟ ଚଉଡ଼ା ବନ୍ୟା ନିୟନ୍ତ୍ରଣର ପାଇଁ ଅନ୍ୟ ଏକ ଯୋଜନା।

୫) ରିକେଟ୍ କେନାଲର ପୁନରୁଦ୍ଧାର କରିବା ପାଇଁ ମୁହଁରେ ଗୋଟିଏ ସ୍ଲୁଇସ୍ ନିର୍ମାଣ କରିବା ଏହାର ବନ୍ୟା ନିୟନ୍ତ୍ରଣ ପାଇଁ ଅନ୍ୟ ଗୋଟିଏ ସୁଦୃଢ଼ ପଦକ୍ଷେପ। କିନ୍ତୁ ଏହା ବ୍ୟୟସାପେକ୍ଷ ହୋଇଥିବାରୁ ଏହାକୁ ଦ୍ୱିତୀୟ ପର୍ଯ୍ୟାୟରେ ଆରମ୍ଭ କରାଯିବ।

୬) ଗମେଇ ନଦୀକୁ ୧୦୦ ଫୁଟ ଚଉଡ଼ା ଓ ୧୦ ଫୁଟ୍ ଗଭୀରରେ କାଂଶବାଂଶ ଓ ଗମେଇର ସଙ୍ଗମଠାରୁ ଶାଶୁବୋହୂ ଘାଟ ପର୍ଯ୍ୟନ୍ତ ଖୋଳେଇ। ଏହି କାର୍ଯ୍ୟ ବହୁ ବିଳମ୍ବରେ ୨୦୦୮/୨୦୦୯ ମସିହାରେ ହାତକୁ ନିଆଯାଇଛି।

ପ୍ରଥମ ୪ଟି କାର୍ଯ୍ୟ ମୋର ବହୁ ଚେଷ୍ଟା ଫଳରେ ସରକାର ହାତକୁ ନେଇଥିବାରୁ ଅଞ୍ଚଳଟି ବନ୍ୟ ଦାଉରୁ ରକ୍ଷା ପାଇବ ବୋଲି ମୋର ଦୃଢ଼ ବିଶ୍ୱାସ। କାଂଶବାଂଶରେ ବନ୍ୟାକୁ ଋଷୀକୂଳ ଡରନ୍ତି ନାହିଁ, ବରଂ ବନ୍ୟାଜଳ ବୋହି ଆଣିଥିବା ପଟୁମାଟି ଜମିକୁ ଉର୍ବର ଓ ଶସ୍ୟ ଶ୍ୟାମଳା କରି ଗଢ଼ିଛି। କିନ୍ତୁ ବନ୍ୟାଜଳ ୫/୬ ଦିନ ପର୍ଯ୍ୟନ୍ତ ରହିଲେ ଲୋକେ ବନ୍ୟା ନିଷେଧକ ଧାନଋଷ କରି ନିଜର ଜୀବିକା ନିର୍ବାହ କରିପାରିବେ। ମୋର ବହୁବର୍ଷର ସାଧନା ଫଳରେ ନଦୀ ଶଯ୍ୟା ଖନନ, ନିମିକ ସଡ଼କ ଓ ସହୀଦ ସଡ଼କରେ କଜୱେ କାର୍ଯ୍ୟ ଗୁଡ଼ିକ ଆରମ୍ଭ ହୋଇଯାଇଛି। ନନ୍ଦପୁର ବନ୍ଧ ସ୍ପିଲୱେର ସମ୍ପ୍ରସାରଣ ପ୍ରସ୍ତାବିତ ଶାଶୁ ବୋହୂ ପୋଲର ସମ୍ପ୍ରସାରଣ ଓ ରିକେଟ୍ କେନାଲ ମୁହଁରେ ସ୍ଲୁଇସ୍ କାମ ଆରମ୍ଭ ହୋଇନାହିଁ। କିନ୍ତୁ ଅଳ୍ପ କେତୋଟି ପଦକ୍ଷେପ ଫଳରେ ଅଞ୍ଚଳଟି ୧୯୯୧ ମସିହାରେ ବନ୍ୟା ଦାଉରୁ ରକ୍ଷା ପାଇଛି। ୩୦,୦୦୦ ଏକର ଜମିରେ ଫଳିଥିବା ସବୁଜକ୍ଷେତ୍ର ଦୃଶ୍ୟ ଓ ଋଷୀକୂଳର ମୁହଁରେ ଫୁଟି ଉଠିଥିବା ହସ ମୋର ଅବସର ଗ୍ରହଣ ପୂର୍ବରୁ ଦେଖିପାରିଲି। ଏହା ମୋର ପରମ ସୌଭାଗ୍ୟ।

ପାରିବାରିକ ଜୀବନରେ ବାରିପଦାରେ ରହଣି କାଳରେ ଅନେକ ସଫଳତା ମିଳିଛି। ସାନଝିଅ ପାଇଁ ଅନେକ ଯାଗାରେ ପ୍ରସ୍ତାବ ପଡ଼ି ବିନା କାରଣରେ ଭାଙ୍ଗିଯାଉଥାଏ। ୧୯୮୫ ମସିହାରେ ହୋଇଥିବା ସାମାନ୍ୟ ରୋଗ ଏଭଳି ଭାବରେ ପ୍ରସାରିତ ହୋଇଥାଏ ଯେ ମନେ ହେଉଥାଏ ସତେ ଯେପରି ତା'ର ବିଭାଘର ହୋଇପାରିବନି। ଝିଅମାନଙ୍କର ସାମାନ୍ୟ ରୋଗ ଯେ ତାଙ୍କର ବିଭାଘରରେ କିଭଳି ପ୍ରତିବନ୍ଧକ ସୃଷ୍ଟି କରେ, ତାହା ମର୍ମେ ମର୍ମେ ଅନୁଭବ କରିଛି। କିନ୍ତୁ ସୌଭାଗ୍ୟକୁ

୧୯୮୮ ମସିହା ଫେବୃୟାରୀ ମାସରେ କଷ୍ଟମ ଓ ସେଣ୍ଟ୍ରାଲ୍ ଏକ୍ସାଇଜ୍ ଅଫିସର ପୀୟୁଷ ପଟ୍ଟନାୟକଙ୍କ ସହିତ ତାର ବିଭାଘର ସୁରୁଖୁରୁରେ ହୋଇଗଲା । ପିଲାମାନେ ବୁଦ୍ଧି ଖଟାଇ ସାଧାରଣ ଡେ଼କୋରେସନ୍‌କୁ ଏଭଳି ମନମୁଗ୍ଧକର କରିଥିଲେ ଯେ ସେଥିପାଇଁ ଗୋଟିଏ ଇନ୍‌କମଟେକ୍ସ ଇନ୍‌କୁୟାରୀ ମଧ୍ୟ ହୋଇଗଲା । ଅବଶ୍ୟ ଏହା ମୋତେ ଗୋଟିଏ ଦୃଷ୍ଟିରୁ ସାହାଯ୍ୟ କଲା, ଯେ ମୁଁ ମୋର ୩୦ ବର୍ଷର ରୋଜଗାର ଓ ଖର୍ଚ୍ଚର ଏକ ବେଲେନ୍ସ ସିଟ୍ କରିପାରିଲି । ସାନପୁଅ ମଧ୍ୟ ତା'ର ଚଞ୍ଚଳ ମନକୁ କିଛି ଅଂଶରେ ସ୍ଥିର କରି ପଢ଼ାରେ ମନଦେଲା । ବଡ଼ ପୁଅ ଯେ କି ସବୁ ପିଲାଙ୍କ ମଧ୍ୟରେ ଦାୟିତ୍ୱବାନ ତା'ର ଏମ.ଇ. ଡିଗ୍ରୀ ସାରି ସୁବର୍ଣ୍ଣରେଖା ପ୍ରୋଜେକ୍ଟରେ ଆସିଷ୍ଟାଣ୍ଟ ଇଞ୍ଜିନିୟର ଭାବେ ଯୋଗଦେଲା । ସାଲେପୁର କଲେଜର ପ୍ରିନ୍ସିପାଲ କୃଷ୍ଣ ଚନ୍ଦ୍ର ସିଂହଙ୍କ ଝିଅ ଶିଖା ସହିତ ତାର ବିଭାଘର ୧୯୯୦ ଡିସେମ୍ବର ମାସରେ ସମାହିତ ହୋଇଗଲା । ଦୁଇଟି କନ୍ୟାଙ୍କର ବିବାହ ପରେ ଘରଟି ଖାଲି ଖାଲି ଲାଗୁଥିଲା । ସୁନ୍ଦର ଗୁଲଗୁଲିଆ ବୋହୁଟିଏ ଆସିବା ଫଳରେ ଘର ପୁରି ଉଠିଲା । ସାନ ଭାଇ ପ୍ରଭାକରର ପିଲା ଦୁଇଜଣ ଡିପ୍ଲୋମା ପାଠପଢ଼ି ପ୍ରାଇଭେଟ୍ ଫାର୍ମରେ ଚାକିରୀ କରି ରୋଜଗାରକ୍ଷମ ହୋଇପଡ଼ିଲେ । ଗାଁରେ ଥିବା ଜମି ୪ ପୁରୁଷ ଧରି ଭାଗ ନ ହୋଇ ରହିଥିଲା । ବାରିପଦା ରହଣି କାଳ ମଧ୍ୟରେ ଜମିବାଡ଼ିର ଏକ ବଣ୍ଟୁଆରା ହୋଇଗଲା । ତେଣୁ ଅନେକ ପାରିବାରିକ ସମସ୍ୟାର ସମାଧାନ କ ବାରିପଦାରେ ୩ ବର୍ଷ ରହଣିକାଳ ମଧ୍ୟରେ ସମ୍ଭବ ହେଲା ।

ବାରିପଦାର ସବୁଠାରୁ ବଡ଼ ଆକର୍ଷଣ ହେଉଛି ମୋର ବଡ଼ ଭାଇ ସଦୃଶ ବନ୍ଧୁ ହରିଶଚନ୍ଦ୍ର ମହାନ୍ତିଙ୍କ ଅବସ୍ଥାନ । ସେ ଏହା ଭିତରେ ବାରିପଦାକୁ ନିଜର ସ୍ଥାୟୀ ବାସଗୃହ ଭାବେ ଗ୍ରହଣ କରିସାରିଛନ୍ତି । ଭାଇ ଯେପରି ସ୍ନେହୀ ଭାଉଜ ତଦ୍ରୂପ । ସମସ୍ୟାବହୁଳ ପରିସ୍ଥିତିରେ ଟିକିଏ ସମୟ ପାଇଲେ ଛୁଟିଯାଏଁ ତାଙ୍କ ପାଖକୁ । ଭାଇ ଭାଉଜଙ୍କର ଆଦର ଓ ସ୍ନେହ ପାଖରେ ଭୁଲିଯାଏ ଦୁନିଆକୁ । ମନେପଡ଼ିଯାଏ ମୋର ସେହି ପିଲାଦିନର ତାଙ୍କର ସ୍ନେହ । ମାଇନର ସ୍କୁଲରେ ପଢୁଥିବା ସମୟରେ ଯେଭଳି ଦୁହେଁ ଯୋଡ଼ି ଯାଉଁଳି ହୋଇ ରହିଥିଲୁ ଆଜି ମଧ୍ୟ ସେହିଭଳି ରହିଛୁ । ସବୁଠାରୁ ଆଶ୍ଚର୍ଯ୍ୟ କଥା ଆମ ଦୁହିଁଙ୍କର ସ୍ନେହ, ଉମା ଓ ଭାଉଜଙ୍କୁ ସଂକ୍ରମିତ ହୋଇ, ସେ ଦୁଇଜଣ ଦୁଇ ଭଉଣୀ ହୋଇଗଲେ । ଏକ ମା'ପେଟରୁ ଜନ୍ମ ନ ହୋଇ ମନର

ମିଳନରେ କିଭଳି ଦୁଇଟି ପରିବାର ଭାତୃ ବନ୍ଧନରେ ବାନ୍ଧି ହୋଇପଡ଼ନ୍ତି, ତାହା ଆମ ପରିବାର ଦୁଇଟିରେ ପ୍ରତିଫଳିତ ହୋଇଥିଲା।

ଅଳ୍ପ ସମୟ ମଧ୍ୟରେ ସୁବର୍ଣ୍ଣରେଖା ପ୍ରୋଜେକ୍ଟକୁ ରୂପରେଖ ଦେବା ପାଇଁ ମୋତେ ଯେଉଁ ଇଞ୍ଜିନିୟର ବନ୍ଧୁମାନେ ସାହାଯ୍ୟ କରିଛନ୍ତି ତାଙ୍କର ନାମ ଉଲ୍ଲେଖ ନ କଲେ ଏ ଲେଖା ଅପୂର୍ଣ୍ଣ ରହିଯିବ। ସେମାନଙ୍କ ମଧ୍ୟରେ ଏକଜିକ୍ୟୁଟିଭ୍ ଇଞ୍ଜିନିୟର ସୁଶୀଳ କୁମାର ସୁବୁଦ୍ଧି, ପୂର୍ଣ୍ଣଚନ୍ଦ୍ର ବେହେରା ଓ ବିଜୟ ବହିଦାର, ଆସିଷ୍ଟାଣ୍ଟ ଇଞ୍ଜିନିୟର ସୁବ୍ରତ ରଥ, ଅମ୍ବିକା ରଥ, ଆର.କେ. ପଟ୍ଟନାୟକ, ଅନୀଲ ଷଡ଼ଙ୍ଗୀ, ଚିନ୍ତାମଣି ଘୋଷାଲ, ଆର. କେ. ମହାପାତ୍ର, ଅଶୋକ ଦାସ, ଶୁଭେନ୍ଦୁ କୁମାର ନାୟକ, ବିଶ୍ୱଜିତ୍ ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ। ସେମାନଙ୍କର ଅକ୍ଳାନ୍ତ ପରିଶ୍ରମ ବିନା ଏତେ ଅଳ୍ପ ସମୟରେ ଏ ପ୍ରୋଜେକ୍ଟ ଏଭଳି ରୂପରେଖ ନେଇପାରିନଥାନ୍ତା।

ବାରିପଦାରେ ରହଣି ସମୟରେ ଆଉ ଗୋଟିଏ ବିଶେଷ ଘଟଣା ଘଟିଥିଲା ଇଞ୍ଜିନିୟରମାନଙ୍କ ବନ୍ଧୁମିଳନ। ମାସେ ଦୁଇମାସ ଅନ୍ତରରେ ଗୋଟିଏ ଲେଖାଏଁ ବନ୍ଧୁମିଳନ ହୁଏ। ଏଥିରେ ବିଶେଷ ଭାବେ ସହଯୋଗ କରିଥିଲେ, ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଗୋବିନ୍ଦ ସାହୁ, ଶରତ ମିଶ୍ର, ଆସିଷ୍ଟାଣ୍ଟ ଇଞ୍ଜିନିୟର ଉଦ୍ଧବ ବିଶ୍ୱାଳ। ଏହି ବନ୍ଧୁ ମିଳନ ମୋର ଓ ମୋର ବନ୍ଧୁମାନଙ୍କ ମନରେ ବହୁଦିନ ଧରି ଏକ ଅଭୁଲା ସ୍ମୃତି ହୋଇ ରହିଯାଇଟି। ଚାକିରୀ ଜୀବନରେ ଏଭଳି ସୁଯୋଗ ମିଳିଥିଲା, ଅନୁଗୁଳରେ ଓ ବ୍ରହ୍ମପୁରରେ, ୩ୟ ସୁଯୋଗ ମିଳିଲା ବାରିପଦାରେ।

୧୯୮୭ ମସିହାରେ ଓଡ଼ିଶାର ପ୍ରୋଜେକ୍ଟଗୁଡ଼ିକ ପାଇଁ ମିଳୁଥିବା ଅନୁଦାନ ହଠାତ୍ ଏକ ଦୁର୍ଭାଗ୍ୟଜନକ ପରିସ୍ଥିତିରେ ବନ୍ଦ ହୋଇଗଲା। ଇନ୍ଦ୍ରାବତୀ ପ୍ରୋଜେକ୍ଟ ବ୍ୟତୀତ ଓଡ଼ିଶାର ଅନ୍ୟ କୌଣସି ପ୍ରୋଜେକ୍ଟ ପାଇଁ ବିଶ୍ୱବ୍ୟାଙ୍କ ପ୍ରୋଜେକ୍ଟର ସଂଖ୍ୟା କମିଗଲା। ଏଭଳି ଏକ ପରିସ୍ଥିତିରେ ବଡ଼ ଲୋୟାରଙ୍କ ନେତୃତ୍ୱରେ ୧୯୮୯ ମସିହା ଜୁଲାଇ ମାସରେ ଏକ ବିଶ୍ୱବ୍ୟାଙ୍କ ଟିମ୍ ସୁବର୍ଣ୍ଣରେଖା ପ୍ରୋଜେକ୍ଟ ପରିଦର୍ଶନରେ ଆସିଲେ। ସେମାନେ ପ୍ରୋଜେକ୍ଟର କାମରେ ଅଗ୍ରଗତି ଦେଖି ଆନନ୍ଦ ପ୍ରକାଶ କରିବା ସଂଗେ ସଂଗେ କେତେଗୁଡ଼ିଏ ଷ୍ଟଡ଼ି ଯଥା ସେଟେଲାଇଟ୍ ଜରିଆରେ ସଏଲ୍ ସର୍ଭେ, ମେଥମେଟିକେଲ୍ ମଡ଼େଲ ଦ୍ୱାରା ଗ୍ରାଉଣ୍ଡ ୱାଟର ଷ୍ଟଡ଼ି, ଏନଭାଇରନ୍‌ମେଣ୍ଟ ଓ ସୋସିଏଲ ଇକୋନୋମିକ୍ ଷ୍ଟଡ଼ି ଚାହିଁଲେ। ଏଥିପାଇଁ ସେମାନେ ଏନ୍.ଡ଼ବ୍ଲୁ. ଏମ୍.ପି.

ଜରିଆରେ ଖର୍ଚ୍ଚ ବହନ କରିବାକୁ ରାଜି ହେଲେ। ସେହିଦିନଠାରୁ ପ୍ରାୟ ଏକ ବର୍ଷ ପର୍ଯ୍ୟନ୍ତ ବିଭିନ୍ନ ଷ୍ଟଡ଼ି ଜରିଆରେ ତାଙ୍କୁ ଅଗ୍ରାଧିକାର ଭିତ୍ତିରେ ତଥ୍ୟ ଯୋଗାଇ ଦିଆଗଲା ଓ ୧୯୯୦ ଜୁଲାଇ ସୁଦ୍ଧା ପ୍ରିଏପ୍ରେଜାଲ ଟିମ୍ ଓ ଅକ୍ଟୋବର ସୁଦ୍ଧା ଫାଇନାଲ ଏପ୍ରେଜାଲ ଟିମ୍ ଆସି ୧୯୯୧ ମାର୍ଚ୍ଚ ସୁଦ୍ଧା ବିଶ୍ୱବ୍ୟାଙ୍କ ଅନୁଦାନ ଦେବା ପାଇଁ ଏକ ପ୍ରକାର ନିର୍ଭର ପ୍ରତିଶ୍ରୁତି ଦେଲେ। ଖାଲି ସେତିକି ନୁହେଁ ୧୯୯୦ ମେ ମାସରେ ଇଜିପ୍ଟ, ମରୋକୋ ଓ ଫ୍ରାନ୍ସକୁ ଏକ ୧୦ ଜଣିଆ ଟିମ୍ ଯିବା ପାଇଁ ଯୋଜନା ମଧ୍ୟ ହୋଇଗଲା। ଏହା ମୋର ପ୍ରଥମ ବିଦେଶ ଗସ୍ତ ଭାବି ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି। ମେ ୧୧ ତାରିଖ ଦିନ ବିଶ୍ୱବ୍ୟାଙ୍କର ଚିଠି ମଧ୍ୟ ଆସିଗଲା। କିନ୍ତୁ ବିଦେଶ ଗସ୍ତ ଯଦି ଭାଗ୍ୟରେ ନାହିଁ ତାହା କିଭଳି ସମ୍ଭବ ହେବ? ମନରେ କେତେ ଆଶା ଆକାଂକ୍ଷା ଓ ଅଭିଳାଷ ନେଇ ମୁଁ ଦିନରାତି ସୁବର୍ଣ୍ଣରେଖା ପ୍ରୋଜେକ୍ଟ କାମରେ ଲାଗି ନଥିଲି? ଶୂନ୍ୟ ଅବସ୍ଥାରୁ ଏହାକୁ ଉଠାଇ ଏକ ପୂର୍ଣ୍ଣାଙ୍ଗ ପ୍ରୋଜେକ୍ଟରେ ପରିଣତ କରିପାରିଥିଲି। କିନ୍ତୁ ହଠାତ୍ ମୋର କଳ୍ପନାର ସୌଧ ମୁହୂର୍ତ୍ତକ ମଧ୍ୟରେ ଭୁଷୁଡ଼ି ପଡ଼ିଲା।

୧୯୮୯ ନଭେମ୍ବର ମାସ ପାର୍ଲାମେଣ୍ଟ ନିର୍ବାଚନରେ କଂଗ୍ରେସର ଶୋଚନୀୟ ପରାଜୟ ଘଟିଲା। ତା ପ୍ରଭାବରେ ୧୯୯୦ ଫେବୃୟାରୀ ଆସେମ୍ବ୍ଲି ନିର୍ବାଚନରେ ଜନତା ଦଳ ଓ ତାର ସହଯୋଗୀ ଦଳ ଶତକଡ଼ା ନବେ ଭାଗ ଆସନ ଅଧିକାର କରି ଓଡ଼ିଶାରେ ନିରଙ୍କୁଶ ସଂଖ୍ୟାଗରିଷ୍ଠ ଦଳ ଭାବେ ଶାସନ କରିବାର କ୍ଷମତା ପାଇଲେ। ଜନତା ଦଳର ନେତା ବିଜୁ ପଟ୍ଟନାୟକଙ୍କ ପ୍ରଗତିଶୀଳ ମନୋଭାବ, ଦୁଃସାହସିକତା, ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ବ୍ୟଗ୍ରତା, କଠିନ ପରିଶ୍ରମ ଓ ସର୍ବୋପରି କର୍ମଠ, ସାହାସୀ, ଉତ୍ସାହୀ ସରକାରୀ କର୍ମଚାରୀମାନଙ୍କୁ ଆଗକୁ ଅଗ୍ରସର ହେବା ପାଇଁ ଉତ୍ସାହ ଦେବାର ପରିଚୟ ତାଙ୍କର ୧୯୬୧-୬୪ ଶାସନ କାଳ ମଧ୍ୟରେ ମୁଁ ଓ ମୋ ପରି ଅଧିକାଂଶ ଓଡ଼ିଶାବାସୀ ପାଇଥିଲେ। ବିଜୁବାବୁ ଆସିଲେ ଓଡ଼ିଶାରେ ଶିକ୍ଷ ତଥା ଯୋଜନା କ୍ଷେତ୍ରରେ ପ୍ରଭୂତ ଉନ୍ନତି ଘଟିବ, ଦ୍ୱିତୀୟ ଇସ୍ପାତ କାରଖାନା ସହିତ ବହୁ ଯୋଜନା କାର୍ଯ୍ୟକାରୀ ହେବ, ଓଡ଼ିଶାରେ ଆଉ ଅଣସେଚିତ ଜମି ରହିବ ନାହିଁ, କାର୍ଯ୍ୟକାରୀ ହେଉଥିବା ଜଳସେଚନ ଓ ଜଳ ବିଦ୍ୟୁତ ଯୋଜନା

ବ୍ୟତିକ, ମଣିଭଦ୍ରା, ଭୀମକୁଣ୍ଡ, ଅଙ୍ଗ, ଇବ୍ କାନପୁର ଲୋଅର ମୁକତେଲ, ଲୋଅର କୋଲାବ ଭଳି ବଡ଼ ବଡ଼ ଯୋଜନା କାର୍ଯ୍ୟକାରୀ ହେବ। ଓଡ଼ିଶାର ଆଉ ୫/୬ଟି ରାସ୍ତାକୁ ଜାତୀୟ ରାଜପଥରେ ପରିଣତ କରାଯିବ। ପ୍ରତି ଗାଁକୁ ପାଣିକଳ ଯୋଗାଇ ଦିଆଯିବ ଆଦି କେତେ ସ୍ୱପ୍ନ ଓଡ଼ିଶାବାସୀ ଦେଖୁଥିଲେ। ସେ ମଧ ତାଙ୍କ ନିର୍ବାଚନ ପ୍ରଚାରରେ କହୁଥିଲେ ଯେ ମୁଁ ମରିବା ପୂର୍ବରୁ ଦ୍ୱିତୀୟ ଇସ୍ପାତ୍ କାରଖାନା ଚିମିନିରୁ ଧୂଆଁ ଦେଖିବାର ସୁଯୋଗ ମୋତେ ଦିଅ। ତାଙ୍କୁ ବିଶ୍ୱାସ କରି ସରଳ ଓଡ଼ିଆ ଜାତି ଭାସିଯାଇ ତାଙ୍କ ଭୋଟ ବାକ୍ସ ଭରିଦେଲେ। କିନ୍ତୁ ଫଳ ହେଲା କ'ଣ ? ସେ କ୍ଷମତାକୁ ଆସିବା ସଙ୍ଗେ ସଙ୍ଗେ ଏକ ଚାଟୁକାର ଦଳ ତାଙ୍କୁ ଘେରିଯାଇ ତାଙ୍କ ଲୋକପ୍ରିୟତାକୁ ନିଜର ସ୍ୱାର୍ଥସିଦ୍ଧି ପାଇ ବ୍ୟବହାର କଲେ।

ଶାସନ ଭାର ଗ୍ରହଣ କରିବାର ମାସକ ମଧ୍ୟରେ ଓଡ଼ିଶାର ଜନତା ସରକାର ମଧ୍ୟବିତ୍ତ କୃଷକ, ବଣିକ ତଥା ଶିଳ୍ପପତିଙ୍କୁ ପ୍ରଥମ ଆଘାତ ଦେଲେ, ଯେତେବେଳେ ଆସେମ୍ବ୍ଲିରେ ସର୍ବନିମ୍ନ ମଜୁରୀକୁ ୧୧ ଟଙ୍କାରୁ ୨୫ ଟଙ୍କା ବଢ଼ାଇଦେଲେ। ପିଲାଦିନୁ ଦେଖିଆସିଛି ଅଢ଼େଇ କେଜି ଚାଉଳର ଦାମ ଯାହା ଜଣେ ଶ୍ରମିକର ମଜୁରୀ ତାହା। ଚାଷୀ ଯଦି ଚାଉଳ କେ.ଜି ୪/୫ ଟଙ୍କାରେ ବିକିବ ସେ ମୁଲିଆକୁ ୨୫ ଟଙ୍କା ମଜୁରି ଦେବ କିପରି ? ସେହିପରି କ୍ଷୁଦ୍ର ଶିଳ୍ପର ମାଲିକ ଆଉ ତା'ର ଉତ୍ପନ୍ନ ଦ୍ରବ୍ୟର ମୂଲ୍ୟକୁ ଦୁଇଗୁଣ ବଢ଼ାଇଦେଇ ପାରିବନି। ସେ କିପରି ୨୫ ଟଙ୍କା ମଜୁରୀ ଦେବ। ଯେଉଁ କଣ୍ଟ୍ରାକ୍ଟର ୧୧ ଟଙ୍କା ଶ୍ରମିକ ମଜୁରୀ ହିସାବରେ ଟେଣ୍ଡେର ନେଇଛି ସେ କିପରି ୨୫ ଟଙ୍କା ମଜୁରୀ ଦେଇ କାମ କରିବ ? ଏ ସବୁ କଥାକୁ ବିଚାରକୁ ନ ନେଇ ଯେତେବେଳେ ସର୍ବନିମ୍ନ ମଜୁରୀକୁ ୨୫ ଟଙ୍କା କରିଦିଆଗଲା, ସାରା ଓଡ଼ିଶାରେ ଏକ ହତାଶାର ବାତାବରଣ ସୃଷ୍ଟି ହେଲା।

ସରକାରଙ୍କ ଦ୍ୱିତୀୟ ପଦକ୍ଷେପ ହେଲା କଂଗ୍ରେସ ସରକାରଙ୍କ ଅମଳରେ ଯେଉଁ ଅଫିସରମାନେ ନିଜର କାର୍ଯ୍ୟ ଦକ୍ଷତା ବଳରେ ଭଲ ଭଲ ପ୍ରୋଜେକ୍ଟରେ କାମ କରିବାର ସୁବିଧା ପାଇଥିଲେ ତାଙ୍କୁ ସ୍ଥାନାନ୍ତରିତ କରିବା। ଅନେକ ଅଫିସରଙ୍କ ସହିତ ମୁଁ ମଧ ଏହି ସର୍ପଦାହ ଯଜ୍ଞରେ ଶିକାର ହେଲି। ବହୁବାର ମନ୍ତ୍ରୀ ମହୋଦୟଙ୍କୁ ପଚାରିଛି ମୋର ବିରୁଦ୍ଧରେ ଅଭିଯୋଗ କ'ଣ ? ଏହାର ଉତ୍ତର କିଛି ପାଇ ପାରିନି।

ସଦାବେଳେ ସେ ନୀରବ ରହିଛନ୍ତି। ବାହାରୁ ଯାହା ଖବର ସଂଗ୍ରହ କରିଛି ବା ହେଉଛି ମୁଁ କାହିଁକି ୧୯୮୮ ମସିହାରେ ସର୍ବନିମ୍ନ ଟେଣ୍ଡେରକୁ ସୁପାରିଶ ନ କରି ଅଧିକ ରେଟ୍ ଦେଇଥିବ ଟେଣ୍ଡର ସୁପାରିଶ କଲି। ମୋର ସୁପାରିଶ ଫଳରେ ମନ୍ତ୍ରୀଙ୍କ ଅଞ୍ଚଳରେ କେତେଜଣ କଣ୍ଟ୍ରାକ୍ଟର ଯେକି ପଥର କାଟିବାକୁ କ୍ୟୁବିକ୍ ମିଟରକୁ ୫ ଟଙ୍କା ଓ ମାଟି କ୍ୟୁବିକ୍ ମିଟରକୁ ୧୫ ଟଙ୍କା ଦେଇଥିଲେ, ସେ କାମରୁ ବଞ୍ଚିତ ହେଲେ। ଯେଉଁ କଣ୍ଟ୍ରାକ୍ଟର ପଥର କ୍ୟୁବିକ୍ ମିଟର କାଟିବାକୁ ୫ ଟଙ୍କା ରେଟ୍‌ଦେଇଛି ସେ କିଭଳି କାମ କରିବ ମୁଁ ବୁଝିପାରୁନି। ସେ ନିଶ୍ଚୟ ପଥର କାଟିବା କାମଟିକୁ କୌଣସି ଆଳରେ ଛାଡ଼ି ଦେଇ ରାଜନୈତିକ ଚାପ ଦ୍ୱାରା ପେନାଲଟିରୁ ରକ୍ଷା ପାଇଯାଇଥାନ୍ତା। ସମୁଦାୟ କାମ କରି ଲକ୍ଷ ଲକ୍ଷ ଟଙ୍କାର କ୍ଷତି ସହି ନଥାନ୍ତେ। ତା'ପରେ ଏଭଳି ସ୍ପେକୁଲେଟିଭ୍ ରେଟ୍‌କୁ ମୁଁ ତ ଖାଲି ନାକଚ କରିନଥିଲି, କଣ୍ଟ୍ରାକ୍ଟ କମିଟିରେ ଯେଉଁମାନେ ଥିଲେ ଫାଇନାନସ୍ ଜଏଣ୍ଟ ସେକ୍ରେଟେରୀ ଲ ଡେ଼ପୁଟି ସେକ୍ରେଟେରୀ, ଇରିଗେସନ୍ ସେକ୍ରେଟେରୀ ଓ ଇରିଗେସନ୍ ଏଫ.ଏ. ତଥା ଇଞ୍ଜିନିୟର ଇନ୍ ଚିଫ୍ ସମସ୍ତେ ଏକ ସ୍ୱରରେ ନାକଚ କରିଛନ୍ତି। ମୋତେ କିନ୍ତୁ ଏଥିପାଇଁ ଦାୟୀ କରାଗଲା ଓ ମନ୍ତ୍ରୀଙ୍କ ଲୋକ କାମ ପାଇନଥିବାରୁ ସେ ବିରୋଧୀ ଦଳରେ ଥିବାବେଳୁ ଶପଥ ନେଇଥିଲେ ଯେ ଶାସନକୁ ଆସିଲେ ମୋ ବିରୁଦ୍ଧରେ ପ୍ରତିଶୋଧ ନେବେ ଓ ତାହା ମଧ କଲେ। ଦୀର୍ଘ ୩୩ ବର୍ଷ ଧରି କର୍ମ ମୁଖର ଜୀବନ ଅତିବାହିତ କଲା ପରେ ଶେଷ ଦେଢ଼ ବର୍ଷ ମୋତେ ଡିଜାଇନ୍ ଓ ରିସାର୍ଚ୍ଚରେ ଅତିବାହିତ କରିବାକୁ ପଡ଼ିଲା।



## ଦ୍ୱାବିଂଶ ପରିଚ୍ଛେଦ

# ଡିଜାଇନ୍ ଓ ରିସାର୍ଚ୍ଚ ସଂସ୍ଥାରେ ଦେଢ଼ବର୍ଷ ଓ ଅବସର ଗ୍ରହଣ

ଜନତା ସରକାରଙ୍କ ତୃତୀୟ ପଦକ୍ଷେପ ହେଲା ନିଜର ଘର ଥିଲେ ସରକାରୀ କର୍ମଚାରୀଙ୍କୁ ସରକାରୀ ଘର ଛାଡ଼ିବାକୁ ପଡ଼ିବ। ବିଶେଷ କରି ଭୁବନେଶ୍ୱରରେ ସରକାରୀ କର୍ମଚାରୀ ବ୍ୟାଙ୍କଲୋନ୍ ନେଇ ଘରଖଣ୍ଡିଏ କରି ଭଡ଼ାରେ ଲୋନ ସୁଝୁଛନ୍ତି। ସେମାନଙ୍କୁ ଘର ଛାଡ଼ିବାକୁ କହିବାରୁ ସେମାନେ ଟ୍ରିବ୍ୟୁନାଲ ଓ କୋର୍ଟର ଆଶ୍ରୟ ନେଇ ଘରଛାଡ଼ିବା ନୋଟିସ୍‌କୁ ଷ୍ଟେ କରିଦେଲେ। କିନ୍ତୁ ଯେଉଁମାନଙ୍କର ଭୁବନେଶ୍ୱରରେ ନୂଆ ପୋଷ୍ଟିଂ ତାଙ୍କୁ ଆଉ ଘର ମିଳିଲା ନାହିଁ। ମୁଁ ହେଲି ଏହି ଆଦେଶର ଗୋଟିଏ ଶିକାର। ଘର ଭଡ଼ା ଲାଗିଛି। ବାଧ ହୋଇ ଭଡ଼ା ଘରଟିଏ ନେଇ ରହିଲି।

ସରକାରଙ୍କ ଚତୁର୍ଥ ପଦକ୍ଷେପ ହେଲା ସପ୍ତାହରେ ଦୁଇ ଦିନ ଗାଡ଼ି ବନ୍ଦ। ନିଜେ ମୁଖ୍ୟମନ୍ତ୍ରୀ ରିକ୍ସାରେ ଅଫିସ୍ ଆସିଲେ। ଏହାର ଭିଡ଼ିଓ ଟିଭିରେ ପ୍ରଚାର ହେଲା। ରାଜନୈତିକ ଦୃଷ୍ଟିକୋଣରୁ ଏହାର ପ୍ରଚାର ଦ୍ୱାରା ଲୋକଙ୍କ ଠାରୁ ବାହାବା ମିଳିଲା। କିନ୍ତୁ ଦୁଇ ଦିନ ପାଇଁ ଚାରିଆଡ଼େ କାମ ବନ୍ଦ ହେବା ଫଳରେ ରାଜ୍ୟର ବିକାଶରେ ଯେଉଁ କ୍ଷତି ଘଟିଲା ତାହା ଅବର୍ଣ୍ଣନୀୟ। କୌଣସି ସରକାରୀ କର୍ମଚାରୀଙ୍କ ପିଲାମାନେ ଗାଡ଼ିରେ ବସିଥିବାର ଦେଖିଲେ କନଷ୍ଟେବଲ୍‌ଟିଏ ଗାଡ଼ି ଅଟକାଇ ଅଫିସରଙ୍କୁ ଥାନାରେ ପୁରାଇ ଦେଇପାରିଲା। ଫଳରେ ଚାରିଆଡ଼େ କୋକୁଆଭୟ ସୃଷ୍ଟି ହୋଇଗଲା।

ସରକାରଙ୍କ ପଞ୍ଚମ ପଦକ୍ଷେପ ହେଲା ସ୍ପେସାଲ କୋର୍ଟ। ଏହି ଆଇନର ସ୍ୱତନ୍ତତା ହେଲା ଯେଉଁମାନଙ୍କର ଘର ଖାନତଲାସ ହୋଇ ଆୟ ବହିର୍ଭୂତ ସମ୍ପତ୍ତି ବାହାରିଲା ତାକୁ କୋର୍ଟ ଆଦେଶ ପୂର୍ବରୁ ବାଜ୍ୟାପ୍ତି କରି ଦିଆଯିବ। ଯାହାର ଘରଟିଏ

ବା ଜମି ଖଣ୍ଡେ ଥିବ ତାକୁ ବାଜ୍ୟାପ୍ତି କରି ଦେଇ, ବିକ୍ରି କରି ଦେଇ ଟଙ୍କାତକ ସରକାରୀ ତହବିଲକୁ ନେଇ ନିଆଯିବ। ଯଦି ଅଫିସର ବା ମନ୍ତ୍ରୀ ଜଣକ ନିଜ ଘରେ ରହୁଥିବେ ତେବେ ତାଙ୍କୁ ଘରଭଡ଼ା ଦେବାକୁ ପଡ଼ିବ। ଏହାକୁ କନଫିସକେସନ୍ ଆଇନ କୁହାଗଲା। ଏହି କନଫସ୍‌କେସନ କୋର୍ଟରେ କେଶ ବିଚାର ଶେଷ ହେବା ପୂର୍ବରୁ କରାଯିବ। ଦୁର୍ନୀତି ନିବାରଣ ବିଭାଗ ସରକାରଙ୍କ ଏକ ଅଂଶବିଶେଷ। ସିନିୟର ଅଫିସର ଓ ମନ୍ତ୍ରୀଙ୍କ ଘର ଖାନତଲାସ କରିବା ପୂର୍ବରୁ ଗୋପନରେ ତାଙ୍କ ଆୟବ୍ୟୟ, ସେ ତିଆରି କରିଥିବା ଘର କିଣିଥିବା ଗାଡ଼ି ଓ ଆସବାବପତ୍ରର ଏକ ଗୁପ୍ତ ଅନୁସନ୍ଧାନ ହୁଏ। ଯେଉଁମାନଙ୍କର ଅତ୍ୟଧିକ ଆୟବର୍ହିଭୂତ ସମ୍ପତ୍ତିର ସନ୍ଧାନ ମିଳେ, ସେହିମାନଙ୍କର ଘର ଖାନତଲାସ ହୁଏ। ଚାକିରି ଜୀବନରେ ତ ଅଫିସରଙ୍କ ବହୁ ଶତ୍ରୁ ବାହାରନ୍ତି। ବିଶେଷ କରି ଇଞ୍ଜିନିୟରିଂ ଡିପାର୍ଟମେଣ୍ଟର ବହୁ ବନ୍ଧୁ ତାଙ୍କ ପ୍ରତି ଈର୍ଷାନ୍ୱିତ। ଯେଉଁ କଣ୍ଟ୍ରାକ୍ଟର ବିଶେଷ ସୁବିଧାରୁ ବଞ୍ଚିତ ସେ ହୋଇଯାଏ ଶତ୍ରୁ। ୧୯୯୦ ମସିହାରେ ମାର୍ଚ୍ଚଠାରୁ ଅଗଷ୍ଟ ପର୍ଯ୍ୟନ୍ତ ଚାଲିଲା, ବ୍ୟାପକ ଘର ଖାନତଲାସ। ମାର୍ଚ୍ଚରୁ ଅଗଷ୍ଟ ଭିତରେ ୪୦ ଜଣ ଉଚ୍ଚ ପଦସ୍ଥ ଅଫିସର ଓ ୧୫ ଜଣ ମନ୍ତ୍ରୀଙ୍କ ଘର ଖାନତଲାସ ହେଲା। ଜନତା ସରକାର ଭାବିଲେ ସ୍ପେଶାଲ୍ କୋର୍ଟ ଆଇନ ବଳରେ ଘର ଖାନତଲାସ ହୋଇଥିବା ଅଫିସର ଓ ମନ୍ତ୍ରୀଙ୍କ ସମ୍ପତ୍ତିକୁ ବାଜ୍ୟାପ୍ତ କରିଦେଲେ ମିଳିଯିବ ୨୦୦୦ କୋଟି ଟଙ୍କା ଓ ଏଥିରେ ତିଆରି ହୋଇପାରିବ ଓଡ଼ିଶାର ୨ୟ ଇସ୍ପାତ୍ କାରଖାନା। ଦୁର୍ଭାଗ୍ୟର ବିଷୟ ଯେଉଁମାନେ ଏହି ନାଟକର ମୁଖ୍ୟ ଭୂମିକା ଗ୍ରହଣ କଲେ ତାଙ୍କର ଓଡ଼ିଶାର ବଜେଟ୍ ବିଷୟରେ ସମ୍ୟକ ଧାରଣା ନାହିଁ। କାହିଁ ଷ୍ଟିଲ୍‌ପ୍ଲାଣ୍ଟ ଖର୍ଚ୍ଚ ୨୦୦୦ କୋଟି ଟଙ୍କା, କାହିଁ ସମୁଦାୟ ଆୟ ବର୍ହିଭୂତ ସମ୍ପତ୍ତି କୋଟିଏ କି ୨କୋଟି । ୧୯୯୦ରୁ ୧୯୯୫ ଭିତରେ ସ୍ପେସାଲ କୋର୍ଟ ମାତ୍ର ଗୋଟିଏ କେସ୍ ଫଇସଲା କରିପାରିଲା। ସମ୍ପତ୍ତି ବାଜ୍ୟାପ୍ତ କାହାରି ହୋଇପାରିନି । କିନ୍ତୁ ବାଘ କାମୁଡ଼ାଠୁ ଘୋସରା ବଡ଼। ଯେଉଁ କେତେଜଣ ଅଫିସର ଏହି ରାଜନୈତିକ ଖାନତଲାସର ଶିକାର ହେଲେ ତା ଭିତରେ ମୁଁ ଜଣେ ହେବା ସ୍ୱାଭାବିକ, କାରଣ ମୁଁ ମନ୍ତ୍ରୀଙ୍କର ବିଷଦୃଷ୍ଟିରେ ଥିଲି। ପୁଣି ମୁଖ୍ୟଯନ୍ତ୍ରୀ ପ୍ରମୋଶନ ବେଳେ ଯେଉଁ ଘଟଣା ଘଟିଲା ତା ଫଳରେ ମୁଁ ଡିପାର୍ଟମେଣ୍ଟର କେତେଜଣ

ଅଫିସରଙ୍କ ବଡ଼ ଶତ୍ରୁ ହୋଇଗଲି। ୧୯୮୭ ମସିହାରେ ୪ଟି ମୁଖ୍ୟଯନ୍ତ୍ରୀ ପଦବୀ ଖାଲି ହେଲା। ସେଥିପାଇଁ ୧୬ ଜଣଙ୍କ ନାମ ପବ୍ଲିକ୍ ସର୍ଭିସ୍ କମିଶନ ପାଖକୁ ପଠାଗଲା। ମୋର କ୍ରମିକ ନମ୍ବର ଥିଲା ୭। ଯେଉଁ ୪ ଜଣଙ୍କୁ ବାଛିଲେ ସେଥିରେ ମୋ ନାମ ୪ର୍ଥରେ ରହିଲା। ମୋ ଉପର ୩ ଜଣଙ୍କୁ ପ୍ରମୋଶନ ପାଇଁ କମିଶନ ଯୋଗ୍ୟ ନୁହଁନ୍ତି ବୋଲି ଘୋଷଣା କରିବାରୁ ଏଥିରେ କ୍ଷତିଗ୍ରସ୍ତ ହୋଇଥିବା ଇଞ୍ଜିନିୟର ମୋ ନାମରେ ମିଥ୍ୟା ପିଟିସନ ଦେଲେ। ସେମାନେ କାରସାଦି କରି ମୋ ଉପରେ ଅନ୍ୟାୟ ଆଦେଶ ବଳରେ ରହିଲେ। ନୂଆମନ୍ତ୍ରୀ ମଣ୍ଡଳ ଆସିବାରୁ ମୋର ନାମରେ ନାନା କୁତ୍ସା ରଚନା କରି ମୋର ଘର ସାର୍ଚ୍ଚ କରିବା ସହିତ ମୋତେ ଇଞ୍ଜିନିୟର ଇନ୍ ଚିଫ୍ କରାଇ ଦେଲେନି। ଅବଶ୍ୟ ପରବର୍ତ୍ତୀ କାଳରେ ଦୀର୍ଘ ୨୦ ବର୍ଷ ଲଢ଼େଇ ପରେ ମୁଁ ଉଭୟ ଭିଜିଲେନ୍ସ କେଶ ଓ ପ୍ରମୋସନ କେଶରେ ଜିତିଲି। କିନ୍ତୁ ଦୀର୍ଘ ୨୦ ବର୍ଷର ମାନସିକ ଯନ୍ତ୍ରଣା ଓ ଅର୍ଥକ୍ଷୟ ମୋର ଶାରୀରିକ ଓ ମାନସିକ ଭାରସାମ୍ୟକୁ ଦୋହଲାଇ ଦେଲା।

## ଭାରତର ତତ୍କାଳୀନ ରାଜନୈତିକ ପରିସ୍ଥିତି

୧୯୮୯ ମସିହାରେ କେନ୍ଦ୍ରରେ କଂଗ୍ରେସ ସରକାରର ପତନ ଘଟିଲା। ବୋଫର୍ସ ଦୁର୍ନୀତିକୁ କେନ୍ଦ୍ର କରି ଏକ ହାଓ୍ୱା ସୃଷ୍ଟି ହୋଇ କଂଗ୍ରେସ ପାର୍ଟିର ପତନ ଘଟି ବିଶ୍ୱନାଥ ପ୍ରତାପ ସିଂହଙ୍କ ନେତୃତ୍ୱରେ ଗଠିତ ହେଲା କେନ୍ଦ୍ରରେ ମିଳିତ ମନ୍ତ୍ରିମଣ୍ଡଳ। ବିଭିନ୍ନ ମତବାଦୀ ଦଳଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରି ମନ୍ତ୍ରୀମଣ୍ଡଳ ଚଳାଇବା ଏକ କାଠିକର ବ୍ୟାପାର। ତେଣୁ ସରକାର ଚାହିଁଲେ ଗୋଟିଏ ଇସ୍ୟୁ। ୧୯୩୧ ମସିହା ଜନଗଣନା ଉପରେ ପର୍ଯ୍ୟବସିତ ମଣ୍ଡଳ କମିଶନଙ୍କ ସୁପାରିଶକୁ କାର୍ଯ୍ୟକାରୀ କରିବାକୁ ସ୍ଥିର କଲେ। ଭାରତରେ ଜାତିଭେଦ ପ୍ରଥା ବହୁ ଦିନରୁ ପ୍ରଚଳିତ। ମହାତ୍ମା ଗାନ୍ଧୀ ସାରାଜୀବନ ଏହି ଜାତିଭେଦ ପ୍ରଥା ବିରୁଦ୍ଧରେ ସଂଗ୍ରାମ କରିଛନ୍ତି। ଧୀରେ ଧୀରେ ଜାତିଭେଦ ପ୍ରଥା ଉଠିବାକୁ ବସିଥିଲା। ସମାଜର ଅଧିକାଂଶ ଲୋକ ଆଉ ଜାତିଭେଦରେ ବିଶ୍ୱାସ ନକରି କାର୍ଯ୍ୟଦକ୍ଷତା ଉପରେ ବିଶ୍ୱାସ କରୁଛନ୍ତି। କୌଣସି ଉନ୍ନତ ଦେଶରେ ଜାତିପ୍ରଥା ଭିତିରେ ଶିକ୍ଷାନୁଷ୍ଠାନରେ କିମ୍ବା ଚାକିରି କ୍ଷେତ୍ରରେ ସଂରକ୍ଷଣ ହୁଏନାହିଁ। କିନ୍ତୁ ଭୋଟବେଙ୍କ ପାଇଁ ଜନତା ସରକାର ମଣ୍ଡଳ କମିଶନଙ୍କ ସୁପାରିଶକୁ କାର୍ଯ୍ୟକାରୀ

କରିବାକୁ ସ୍ଥିର କଲେ । ଏଥିରେ  ପ୍ରଧାନମନ୍ତ୍ରୀଙ୍କୁ ସାହାଯ୍ୟ କଲେ ମୁଲାୟମ୍ ସିଂ ଯାଦବ, ଲାଲୁ ଯାଦବ । ଏଣେ ଭାରତୀୟ ଜନତାପାର୍ଟି ଚାହିଁଥିଲେ ଗୋଟିଏ ପାର୍ଟି ଇସ୍ତାହାର । ସେମାନେ ମଧ୍ୟ ରାମଜନ୍ମଭୂମିକୁ ଆଧାର କରି ତାଙ୍କର ରାଜନୀତି ଚଳାଇଲେ । ଫଳରେ ଛାତ୍ର ଅଶାନ୍ତି, ଜନଅଶାନ୍ତି, ଜାତି ଜାତି ଭିତରେ କନ୍ଦଳ ଏକ ଉଗ୍ର ରୂପ ଧାରଣ କଲା । ଏହାର ଫଳସ୍ୱରୂପ ୧୯୯୧ ମସିହାରେ କେନ୍ଦ୍ର ସରକାର ଭାଙ୍ଗିଗଲା ଓ ମେ ମାସରେ ପାର୍ଲାମେଣ୍ଟ ନିର୍ବାଚନ ହେଲା । ଏହି ନିର୍ବାଚନ ମଝିରେ ଆତତାୟୀ ଦ୍ୱାରା ରାଜୀବ ଗାନ୍ଧୀଙ୍କ ହତ୍ୟା ଭାରତ ଇତିହାସରେ ଏକ କଳଙ୍କିତ ଘଟଣା । ମଣ୍ଡଳ କମିଶନ ଇସ୍ୟୁକୁ ନେଇ ଜନତା ସରକାର ୧୯୯୧ ନିର୍ବାଚନ ଲଢିଲା । ଏହାକୁ ସାରା ଦେଶ ପ୍ରତ୍ୟାଖ୍ୟାନ କରିବା ଫଳରେ ୧୯୯୧ ନିର୍ବାଚନରେ ଜନତା ପାର୍ଟିର ଶୋଚନୀୟ ପରାଜୟ ଘଟିଲା । କେନ୍ଦ୍ରରେ କଂଗ୍ରେସ ସରକାର ପ୍ରତିଷ୍ଠିତ ହେଲା ।

ଓଡ଼ିଶାରେ ଜନତା ଦଳର ୬ଷ୍ଠ କାର୍ଯ୍ୟ  ହେଲା, ଜନତାକୁ ଡାକରା । ସମସ୍ତଙ୍କୁ ଉପଦେଶ, ଯେଉଁ ଅଫିସର ତୁମ କାମ କରୁନାହିଁ, ତାକୁ ମାଡ଼ ଦିଅ । ମାଡ଼କୁ ମହାଦେବଙ୍କର ଡ଼ର । ଜନତା ମାଡ଼ ମାରିସାରିବା ପରେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଗୋଟିଏ ଟେଲିଗ୍ରାମ କରିବେ । ତାକୁ ସୁରକ୍ଷା ଦେବା ଦାୟିତ୍ୱ ସରକାରଙ୍କର । ସେଥିପାଇଁ ଜଣେ ମନ୍ତ୍ରୀ ରହିଲେ ଓ ଗୋଟିଏ ଦପ୍ତର ମଧ୍ୟ ଖୋଲାଗଲା । ଏହାର କି ସୁଫଳ ମିଳିଛି ତାର ବିଚାର ଜନତା କରିବେ ।

ସପ୍ତମ କାର୍ଯ୍ୟକ୍ରମ ୧୯୯୧ ନିର୍ବାଚନ ସମୟରେ ଏକ ପ୍ରଚାର ହେଲା ଓଡ଼ିଶାର ଉନ୍ନତିରେ କେନ୍ଦ୍ରର ସହଯୋଗର ଅଭାବ । ଓଡ଼ିଶା ଖଣିଜ ସଂପଦରେ ଭରପୁର ସତ୍ତ୍ୱେ ଏଠାରେ କେନ୍ଦ୍ରର ଅସହଯୋଗ ଫଳରେ ୨ୟ ଇସ୍ପାତ୍ କାରଖାନା ବସିପାରୁନାହିଁ । ଓଡ଼ିଶାକୁ କେନ୍ଦ୍ରରୁ ବିଚ୍ଛିନ୍ନ କରିଦେଇ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରିବାକୁ ଜନତାକୁ ଆହ୍ୱାନ ଦିଆଗଲା । ଏହା ଏକ ଦେଶଦ୍ରୋହୀ ଆହ୍ୱାନ, କେନ୍ଦ୍ରରୁ ଚେତାବନୀ ଆସିବା ସହିତ ଏହା ବନ୍ଦ ରହିଲା । କେନ୍ଦ୍ର ସହିତ ଝଗଡ଼ା କରି କେନ୍ଦ୍ର ଅର୍ଥମନ୍ତ୍ରୀଙ୍କ ସହ ଅସହଯୋଗ କଲେ କେନ୍ଦ୍ର ସାହାଯ୍ୟ ମିଳିବ କେଉଁଠୁ ? ଫଳ ହେଲା ଓଡ଼ିଶା ଉନ୍ନତି ପଥରେ ଅଗ୍ରସର ହେବା ପରିବର୍ତ୍ତେ ପଛକୁ ଫେରିଲା । ୧୯୮୯ ନିର୍ବାଚନରେ ଜନତା ପାର୍ଟିର ସାଂସଦଙ୍କ ସଂଖ୍ୟା ୨୦ରୁ ୧୯୯୧ ନିର୍ବାଚନରେ ୬କୁ କମି ଆସିଲା ।

ନିର୍ବାଚନରେ ଶୋଚନୀୟ ପରାଜୟ ପରେ ଓଡ଼ିଶାର ଜନତା ସରକାର ନିଜର ଲୋକପ୍ରିୟତା ବଢାଇବା ପାଇଁ ନୂତନ ଯୋଜନା ପ୍ରସ୍ତୁତ କଲେ । ୧୯୬୦ ମସିହାରେ ଭୂସଂସ୍କାର ଆଇନ ପ୍ରଚଳିତ ହୋଇ ଜମି ମାଲିକ ଓ ଭାଗଚାଷୀଙ୍କ ମଧ୍ୟରେ ଏକ ପ୍ରକାର ସ୍ଥିତାବସ୍ଥା ଆସିଯାଇଥିଲା । କିନ୍ତୁ ସରକାର ଭୂସଂସ୍କାର ଆଇନ୍ ପ୍ରଚଳନ କରି ପଶ୍ଚିମ ବଙ୍ଗର ଢାଞ୍ଚାରେ ସଂଗଠନ କରିବାକୁ ଚାହିଁଲେ । ଜନତା ସରକାରର ଆହ୍ୱାନ ଲଙ୍ଗଳ ଯାର ଜମି ତାର । ଯେଉଁ ବ୍ୟକ୍ତି ୫ କିମି ଦୂରରେ ଅଛନ୍ତି, ତାଙ୍କ ଜମି ଚାଷ କରୁଥିବା ବ୍ୟକ୍ତି ତାଙ୍କୁ ଭାଗ ଦେବନି । ଏ ଜମି ଭାଗଚାଷୀର ହୋଇଯିବ । କୌଣସି ସରକାରୀ କର୍ମଚାରୀ ଜମି ରଖିପାରିବେ ନାହିଁ । ଏହାର ଭୟବହତାକୁ ହୃଦୟଙ୍ଗମ କରି ପାର୍ଟି କର୍ମୀମାନେ ସମୂହ ଭାବେ ଆନ୍ଦୋଳନ ଆରମ୍ଭ କରିବାରୁ ଏହି ଉଦ୍ଭଟ ଯୋଜନା ବନ୍ଦ ରହିଲା ।

ସୁବର୍ଣ୍ଣରେଖା ପ୍ରୋଜେକ୍ଟରୁ ବଦଳି ହେବାର ପାଞ୍ଚ ଦିନ ପରେ ବିଦେଶ ଗସ୍ତ ପାଇଁ ବିଶ୍ୱବେଙ୍କର ପ୍ରୋଗ୍ରାମ ଆସିଲା । କିନ୍ତୁ ମୋତେ ଏହି ସୁଯୋଗ ନ ମିଳି ମିଳିଲା ୫ ଦିନ ଆଗରୁ ଯୋଗ ଦେଇଥିବା ନୂତନ ମୁଖ୍ୟଯନ୍ତ୍ରୀଙ୍କୁ । ଡ଼ିଜାଇନରେ ଯୋଗଦେବାର ମାସକ ପରେ ଘର ଖାନ ତଲାସ ଦୀର୍ଘ ୩୪ ବର୍ଷର କାର୍ଯ୍ୟ ଦକ୍ଷତା ଓ ସବୁ ମୁଖ୍ୟ ଇଞ୍ଜିନିୟରଙ୍କ ଠାରୁ ଦକ୍ଷ ଇଞ୍ଜିନିୟରର ପ୍ରଶଂସା ପାଣିର ଗାର ଭଳି ମନେ ହେଲା । କାମ କରିବା ପାଇଁ ମନବଳ ଭାଙ୍ଗି ପଡ଼ିଲା । ୨/୩ ଦିନ ପରେ ମନକୁ ବୁଝାଇ ଦେଲି ମୁଁ ତ ଆଖିଦୃଶିଆ ସମ୍ପତ୍ତି ଠୁଳ କରିନି । ମାତ୍ର ଗୋଟିଏ ଘର ସହିଦନଗରରେ ତିଆରି ହୋଇଛି । ଏ ଘର ପାଇଁ ସରକାରଙ୍କ ଠାରୁ ଅଢ଼େଇ ଗୁଣ୍ଠ ଜମି ମାତ୍ର ୬୯୨ ଟଙ୍କାରେ ମିଳିଥିଲା । ଶସ୍ତାରେ ନୟାଗଡ଼ରୁ ସଂଗୃହିତ କବାଟ, ଝରକା ଓ ବନ୍ଧ ସେଣ୍ଟେରିଂ ସାହାଯ୍ୟରେ ଓ କୋପରେଟିଭ୍ ଲୋନରେ ତିଆରି ହୋଇଛି ଘର । ତା ସାଙ୍ଗକୁ ୧୯୮୮ ମସିହାରେ ମୋର ୩୦ ବର୍ଷ ଚାକିରିର ଆୟ ବ୍ୟୟର ଏକ ତାଲିକା ପ୍ରସ୍ତୁତ କରିଥିଲି । ଇନ୍‌କମ୍ ଟ୍ୟାକ୍ସ ଡ଼ିପାର୍ଟମେଣ୍ଟ ସେଥିରେ ମୋର ଆୟବ୍ୟୟର ଏକ ସମୀକରଣ କରି ମୋତେ କ୍ଲିନ୍‌ଚିଟ୍ ଦେଇଛନ୍ତି । ଏହି କେଶର ଏକ ନକଲ ଭିଜିଲେନ୍ସକୁ ଦେଇ କାର୍ଯ୍ୟରେ ମନୋନିବେଶ କରିବାକୁ ସ୍ଥିର କଲି । ମନେପଡ଼ିଲା, କିଶୋରୀବାବୁଙ୍କ ଅଭୟବାଣୀ । ବିପଦରେ ଅଧୀର ହେବ ନାହିଁ । ନିଜର ବିବେକ ଅନୁସାରେ କାମ କରିଥିଲେ ବିପଦ ତୁମର କିଛି କ୍ଷତି କରିପାରିବନି ।

ଡିଜାଇନ୍ ଚିଫ୍ ଇଞ୍ଜିନିୟରଙ୍କ କାମ ପ୍ରୋଜେକ୍ଟ ଚିଫ୍ ଇଞ୍ଜିନିୟରଙ୍କ କାମଠାରୁ ସ୍ୱତନ୍ତ୍ର । ବହୁତ ସମସ୍ୟା ବହୁଳ ପ୍ରୋଜେକ୍ଟରେ କାମ କରିବା ପରେ ହୁଏତ ଇଞ୍ଜିନିୟରିଂ ବିଦ୍ୟାର ଏହି ଶାଖାରେ ମୋର କାର୍ଯ୍ୟ ଦକ୍ଷତାକୁ ପରୀକ୍ଷା କରିବାକୁ ଭଗବାନ ଚାହୁଁଥିଲେ। ଅଫିସ୍‌ରେ ଦେଖିଲି ଡ଼ିଜାଇନ୍ କାମ ପ୍ରତି ଅଧିକାଂଶ ଇଞ୍ଜିନିୟରଙ୍କ ସ୍ପୃହାବହୁତ କମ । ତେଣୁ ଡ଼ିଜାଇନ୍ ଦପ୍ତରରେ କେତେକ ପରିବର୍ତ୍ତନ ଆବଶ୍ୟକ । ଡାଇରେକ୍ଟରଙ୍କ ସଂଖ୍ୟା ୧ରୁ ୨କୁ ବୃଦ୍ଧି କରି ଜଣକୁ ଡ଼େମ ଓ ଆନିକଟ ଦାୟିତ୍ୱରେ ଓ ଅନ୍ୟ ଜଣଙ୍କୁ କେନାଲ ଦାୟିତ୍ୱରେ ରଖାଗଲା । ଡେପୁଟି ଡାଇରେକ୍ଟରଙ୍କ ସଂଖ୍ୟା ୮ରୁ ୧୨କୁ ବୃଦ୍ଧି କରିବା ସହିତ ଆସିଷ୍ଟାଣ୍ଟ ଡାଇରେକ୍ଟଙ୍କ ସଂଖ୍ୟା ୭୫ରୁ ୫୦କୁ କମାଇ ଦିଆଗଲା । ୧୯୮୯ ପର୍ଯ୍ୟନ୍ତ ତିଆରି ହେଉଥିବା ବାର୍ଷିକ ଡ୍ରଇଂ ସଂଖ୍ୟା ଥିଲା ୯୦। ୧୯୯୦-୯୧ ବେଳକୁ ଏହି ଡ୍ରଇଂ ସଂଖ୍ୟା ହେଲା ୩୦୦ । ତା ବ୍ୟତୀତ ଓଡ଼ିଶାର ମଧ୍ୟମ ଓ କ୍ଷୁଦ୍ର ଜଳଭଣ୍ଡାର ୨୦ଟି, ଡ଼େମକୁ ଡ଼େମ୍ ସେଫ୍‌ଟି ଯୋଜନା ଅନ୍ତର୍ଭୁକ୍ତ କରାଗଲା । ହୀରାକୁଦ କଟକ ବରହମପୁର ଭବାନୀପାଟଣାରେ ଥିବା ରିସାର୍ଚ୍ଚ ଷ୍ଟେସନ ଗୁଡ଼ିକ ସ୍ଥାଣୁ ଅବସ୍ଥାକୁ ଆସି ଯାଇଥିଲା । ଡ଼େମ୍ କନ୍‌ଷ୍ଟ୍ରକ୍‌ସନ ଦାୟିତ୍ୱରେ ଥିବା ଇଞ୍ଜିନିୟର ମାନେ କ୍ୱାଲିଟି କଣ୍ଟ୍ରୋଲ୍‌କୁ ଗୁରୁତ୍ୱ ଦେଉନଥିଲେ । ଏଗୁଡ଼ିକର ମାନବୃଦ୍ଧି କରି ସାରା ଓଡ଼ିଶାରେ ମାଟିବନ୍ଧ ଓ କଂକ୍ରିଟ୍ ବନ୍ଧର କ୍ୱାଲିଟି କଣ୍ଟ୍ରୋଲ ଉପରେ ଗୁରୁତ୍ୱ ଦିଆଗଲା । ଚିଫ୍ ଇଞ୍ଜିନିୟର ଅଫିସକୁ ହେଡ୍ ଅଫ୍ ଡ଼ିପାର୍ଟମେଣ୍ଟର ମାନ୍ୟତା ଆଣିବା ଫଳରେ ଅଫିସ୍‌ରେ ଥିବା କିରାଣୀମାନେ ପ୍ରମୋସନର ସୁବିଧା ପାଇଲେ । ବହୁତ ଗୁଡ଼ିଏ ଡ଼ିଜାଇନ୍ ହେବା ଫଳରେ ଅନେକ ଦକ୍ଷ ଡିଜାଇନ୍ ଇଞ୍ଜିନିୟର ଡ଼ିଜାଇନରେ କାମ କରିବାକୁ ମନ ବଳାଇଲେ । ଥରେ ସେକ୍ରେଟାରୀ ଓ ମୁଁ ଦିଲ୍ଲୀରୁ ପ୍ଲେନରେ ଫେରୁଥିଲୁଁ । ସେ କଥା ପ୍ରସଙ୍ଗରେ କହି ପକାଇଲେ ଯେ ତାଙ୍କର ଧାରଣା ଥିଲା ଯେଉଁ ଇଞ୍ଜିନିୟରମାନେ କନ୍‌ଷ୍ଟ୍ରକ୍‌ସନରେ ପାରଙ୍ଗମ ସେମାନେ ଡ଼ିଜାଇନ୍ ପାଇଁ ଅନୁପଯୁକ୍ତ । କିନ୍ତୁ ସୁବର୍ଣ୍ଣରେଖାରେ ମୋର କନଷ୍ଟ୍ରକସନ୍ କାମ ଓ ଡିଜାଇନ୍ ଅଫିସ୍‌ରେ ବର୍ଷକର ଡିଜାଇନ୍ ଦେଖି ତାଙ୍କର ଧାରଣା ବଦଳି ଯାଉଛି । ସେ ବର୍ତ୍ତମାନ ଜାଣି ପାରିଛନ୍ତି ଯେ ଦକ୍ଷ ଇଞ୍ଜିନିୟରମାନେ ଉଭୟ ଡିଜାଇନ୍ ଓ କନଷ୍ଟ୍ରକସନ୍‌ରେ ପାରଙ୍ଗମ।

୧୯୯୦ ମସିହା ଫେବୃୟାରୀ ମାସରେ ବଡ଼ଲେୟାରଙ୍କ ନେତୃତ୍ୱରେ ଆସିଥିବା କମିଟି ସ୍ଥିର ବାରିସାଥିଲେ ଯେ ଜୁଲାଇ ମାସରେ ଫାଇନାଲ୍ ଏପ୍ରଭାଲ୍ କମିଟି ଆସିବ। ତାଙ୍କୁ ଡେମ୍ ଡିଜାଇନ୍ ସଏଲ ସର୍ଭେ, ରିହେବିଲିଟେସନ୍ ରିପୋର୍ଟ ଓ ଜଳବଣ୍ଟନ ଚୁକ୍ତିର ବିଶେଷ ବିବରଣୀ ଥାଇ ରିପୋର୍ଟ ଦିଆଯିବ। ୧୯୯୦ ମସିହା ମେ ମାସରେ ମୋର ବଦଳି ହୋଇଗଲା। ଦୀର୍ଘ ୩ ବର୍ଷ ଧରି ବିଭିନ୍ନ ସର୍ଭେ ରିପୋର୍ଟ ମୁଁ ୪/୫ ଆସିଷ୍ଟାଣ୍ଟ ଇଞ୍ଜିନିୟରଙ୍କ ସହାୟତାରେ ତିଆରି କରିଥିଲି। ସୁପରିଟେଣ୍ଡିଂ ଇଞ୍ଜିନିୟର କିମ୍ବା ଦକ୍ଷ ଏକଜିକ୍ୟୁଟିଭ୍ ଇଞ୍ଜିନିୟର କେହି ନ ଥିଲେ। ଯେତେବେଳେ ଏପ୍ରେଜାଲ କମିଟି ଆସିଲେ ସେଥିରେ ସଏଲ ସର୍ଭେ, ବାସଚ୍ୟୁତ ସମସ୍ୟା ଓ ଜଳବଣ୍ଟନ ଏକ୍ସପାର୍ଟ ଥିଲେ। କମିଟିକୁ ନୂତନ ମୁଖ୍ୟଯନ୍ତ୍ରୀ ସମ୍ମୁଖୀନ ହୋଇପାରିଲେ ନାହିଁ । କେବଳ ୱାପକୋସର ଚିଫ୍ଇଞ୍ଜିନିୟର ଯାହା କିଛି ଉତ୍ତର ଦେଲେ। ଏଥିରେ କ୍ଷୁବ୍ଧ ହୋଇ କମିଟି ଏହାକୁ ପ୍ରିଏପିଜାଲ ରିପୋର୍ଟ ବୋଲି ଆଖ୍ୟା ଦେଲେ। ଭାରତରେ ବିଶ୍ୱବ୍ୟାଙ୍କ ସହାୟତା ପ୍ରାୟତଃ ତାଲିକାରେ ସୁବର୍ଣ୍ଣରେଖା ୧ ନମ୍ବର ପ୍ରୋଜେକ୍ଟଟିର ଏ ଅବସ୍ଥା ଦେଖି ମୁଖ୍ୟ ବଡ଼ଲୋୟାର୍ ବହୁତ ଦୁଃଖିତ ହେଲେ।

୧୯୯୧ ମସିହା ଫେବୃୟାରୀ ମାସରେ ବିଶ୍ୱବ୍ୟାଙ୍କ କମିଟିର ଭୁବନେଶ୍ୱର ଗସ୍ତ ସମୟରେ ମୋତେ ଓବରାଇ ହୋଟେଲକୁ ବିଶ୍ୱବ୍ୟାଙ୍କ ଟିମ୍ ଲିଡ଼ର ବଡ଼-ଲେୟାର ଡକାଇଲେ। ସେ କହିଲେ ମିଷ୍ଟର୍ ନାୟକ ସୁବର୍ଣ୍ଣରେଖା ପ୍ରୋଜେକ୍ଟ ପାଇଁ ମୁଁ ବହୁତ କିଛି ଆଶା କରିଥିଲି। ତୁମେ ପ୍ରୋଜେକ୍ଟ ଛାଡ଼ିବା ପରେ ଏହା ସ୍ଥାଣୁ ଅବସ୍ଥାକୁ ଆସିଯାଇଛି। ତୁମ୍ଭର ସେଠାକୁ ପୋଷ୍ଟିଂ ହେବାର କୌଣସି କ୍ଷୀଣ ସୁଯୋଗ ଅଛିକି ? ମୁଁ କହିଲି ହଁ ଗୋଟିଏମାତ୍ର ସୁଯୋଗ ଅଛି। ଆପଣ ଯଦି ସୁବର୍ଣ୍ଣରେଖା ପ୍ରୋଜେକ୍ଟ ପାଇଁ ଜଣେ ଇଞ୍ଜିନିୟର ଇନ୍ ଚିଫ୍ ପୋଷ୍ଟ ସୃଷ୍ଟି କରି ତାଙ୍କ ଅଧୀନରେ ୨ ଜଣ ଚିଫ୍ ଇଞ୍ଜିନିୟର ରଖିବେ ଓ ନୂତନ ଇଞ୍ଜିନିୟର ଚିଫ୍ଙ୍କର ଖୁବ୍ କମ୍‌ରେ ୩ ବର୍ଷ ମେଜର ପ୍ରୋଜେକ୍ଟ ଅଭିଜ୍ଞତା ରହିଁବେ ସରକାର ମୋତେ ସେଠାରେ ପୋଷ୍ଟିଂ କରିବାକୁ ବାଧ ହେବେ, କାରଣ ମୋର ସିରିଏଲ ୨ରେ ଅଛି ଓ ମୋ ଉପରେ ଥିବା ବି.ଏସ୍.ଏନ ମୂର୍ତ୍ତିଙ୍କର ମେଜର ପ୍ରୋଜେକ୍ଟ ଏକ୍ସପିରିଏନ୍ସ ନାହିଁ। ସେ ସଙ୍ଗେ ସଙ୍ଗେ କହି ପକାଇଲେ ଏହା ଅଲବତ୍ ହେବ। ସେ ୱାସିଂଟନ୍ ଫେରିଯାଇ ସେକ୍ରେଟେରିଙ୍କୁ ଫୋନ୍ କଲେ,

ସୁବର୍ଣ୍ଣରେଖା ପ୍ରୋଜେକ୍ଟ ପାଇଁ ଗୋଟିଏ ଇଞ୍ଜିନିୟର ଇନ୍ ଚିଫ୍ ପୋଷ୍ଟ ସୃଷ୍ଟି କରି ସେଥିରେ ୩ ବର୍ଷ ମେଜର ପ୍ରୋଜେକ୍ଟ ଏକ୍ସପିରେଏନ୍ସର ଇଞ୍ଜିନିୟର ପୋଷ୍ଟିଂ କରନ୍ତୁ ନଚେତ ଆପଣ ବିଶ୍ୱବ୍ୟାଙ୍କର ସାହାଯ୍ୟ ଭୁଲି ଯାଆନ୍ତୁ। ବିଜୁଳି ବେଗରେ ଫାଇଲ୍ ଗତି କରି ମାତ୍ର ୨ ମାସ ମଧ୍ୟରେ ସର୍ବୋଚ୍ଚ ଯନ୍ତ୍ରୀ ପଦ ସୃଷ୍ଟି ହେଲା। ମନ୍ତ୍ରୀ ମହୋଦୟ ସେକ୍ରେଟେରୀଙ୍କୁ ଡକାଇ ଉପଦେଶ ଦେଲେ ଭାସ୍କର ଚନ୍ଦ୍ର ନାୟକଙ୍କ ଉପରେ ଥିବା ଇଞ୍ଜିନିୟର ବି.ଏସ.ଏନ. ମୂର୍ତ୍ତିଙ୍କୁ ଓ୍ୱାଲିମିଲେ ସର୍ବୋଚ୍ଚ ମନ୍ତ୍ରୀ ପଦକୁ ପ୍ରମୋଶନ ଦେଇ ଦିଅନ୍ତୁ। ଭାସ୍କର ଚନ୍ଦ୍ର ନାୟକଙ୍କର ଚାକିରି ଆଉ ୪ ମାସ ଥିବାରୁ ତାଙ୍କୁ ପଦୋନ୍ନତି ନ ଦେଇ ତାଙ୍କ ତଳେ ଥିବା ଇଞ୍ଜିନିୟରଙ୍କୁ ପ୍ରମୋଶନ ପାଇଁ ସୁପାରିଶ କରି ମୋ ପାଖକୁ ପଠାନ୍ତୁ। ମୁଁ ତାଙ୍କୁ ସୁପାରସିଡ୍ କରି ତାଙ୍କ ତଳେ ଥିବା ଇଞ୍ଜିନିୟରଙ୍କୁ ପ୍ରମୋଶନ ଦେବି। ସକ୍ରେଟେରୀ ନିଜ ଇଚ୍ଛା ବିରୁଦ୍ଧରେ ଗୋଟିଏ ଦସ୍ତଖତ କରି ଫାଇଲଟି ଡେଭଲପମେଣ୍ଟ କମିଶନର (ଚିଫ୍ ସେକ୍ରେଟେରୀଙ୍କ କ୍ଷମତାପ୍ରାପ୍ତ) ସୁନ୍ଦରରାଜନଙ୍କ ପାଖକୁ ପଠାଇ ଦେଲେ। ସଦାବେଳେ ଦେଖିଛି ମୋ ଉପରେ ଯେତେବେଳେ ବିପଦ ଆସିଛି ନିଜେ ଭଗବାନ କାହା ରୂପରେ ଆବିର୍ଭାବ ହୋଇ ମୋର ସହାୟ ହୋଇଛନ୍ତି। ସତକୁ ସତ ସେ ସୁନ୍ଦରରାଜନଙ୍କ କଣ୍ଠରେ ବିଜେ ହୋଇଗଲେ। ସେ ଏହି ଅନ୍ୟାୟ ବିରୁଦ୍ଧରେ ମତ ଦେଇ ମୋର ପ୍ରମୋଶନ୍ ପାଇଁ ସୁପାରିଶ କରି ଫାଇଲଟି ମନ୍ତ୍ରୀଙ୍କ ପାଖକୁ ପଠାଇ ଦେଲେ। ମୁଖ୍ୟମନ୍ତ୍ରୀ ଏକ ଚକ୍ରବ୍ୟୁହ ମଧ୍ୟରେ ଗତି କରୁଥିଲେ ମଧ୍ୟ ସେ ସଦାବେଳେ ଚିଫ୍ ସେକ୍ରେଟେରୀଙ୍କ ମନ୍ତବ୍ୟକୁ ଗୁରୁତ୍ୱ ଦିଅନ୍ତି। ତେଣୁ ବହୁ ଚେଷ୍ଟା କରି ମଧ୍ୟ ଜଳସେଚନ ମନ୍ତ୍ରୀ ତାଙ୍କର ପିପାସା ମେଣ୍ଟାଇ ପାରିଲେ ନାହିଁ। ଫାଇଲଟି ୪ ମାସ ପକାଇ ରଖି ମୋର ଅବସର ଗ୍ରହଣ ପରେ ଲେଖିଦେଲେ ଯେ ଏ ପ୍ରମୋଶନ ପରେ ବିଚାର ହେବ। ବାସ ସେତିକିରେ ସୁବର୍ଣ୍ଣରେଖା ଯୋଜନାର ଅଗ୍ରଗତି କ୍ଷେତ୍ରରେ ଆସିଲା ଏକ ପୂର୍ଣ୍ଣଚ୍ଛେଦ। ଦୀର୍ଘ ୨୦ ବର୍ଷ ଅତିବାହିତ ହୋଇଯାଇଥିଲେ ବି ସୁବର୍ଣ୍ଣରେଖା ପ୍ରୋଜେକ୍ଟର ଅଗ୍ରଗତି କଚ୍ଛପ ଗତିରୁ ଶଶାଙ୍କ ଗତିରେ ପହଞ୍ଚିପାରିନି।

ଇନ୍ଦ୍ରାବତୀ ଜଳ ବିଦ୍ୟୁତ ଯୋଜନା ଓଡ଼ିଶାର ଏକ ବୃହତ୍ ବହୁମୁଖୀ ପ୍ରକଳ୍ପ। ଏହାର ୫ଟି ଜଳଭଣ୍ଡାର ପାଇଁ ନିର୍ମିତ ୫ଟି ଡେମ୍ ଏକ ସଳରରେଖାରେ ଅବସ୍ଥିତ।

୫ଟି ଯାକ ଜଳଭଣ୍ଡାରରେ ଉପର ଜଳ ପତନ (ଏଫଆରଏଲ) ମଧ୍ୟ ସମାନ। ୫ଟି ଯାକ ଜଳଭଣ୍ଡାର ଲିଙ୍କ କେନାଲ ଦ୍ୱାରା ପରସ୍ପର ସହିତ ସଂଯୁକ୍ତ। ଜଳଭଣ୍ଡାର ଗୁଡ଼ିକ କୋରାପୁଟ ଜିଲ୍ଲାରେ ଅବସ୍ଥିତ। ଇନ୍ଦ୍ରାବତୀ ନଦୀଟି ଗୋଦାବରୀ ନଦୀର ଏକ ଉପନଦୀ। ଜଳଭଣ୍ଡାରର ପାଣିକୁ ଏକ ୩ କି.ମି. ଲମ୍ବ ସୁଡ଼ଙ୍ଗଦ୍ୱାରା କଳାହାଣ୍ଡି ଜିଲାକୁ ସ୍ଥାନାନ୍ତର କରି ପ୍ରେସର ପାଇପ୍ ଦ୍ୱାରା ମୁଖିଗୁଡ଼ା ଠାରେ ପାୱାର ହାଉସ୍‌କୁ ପଠାଯାଉଛି। ୧୯୯୧ ମସିହା ଜୁନମାସରେ ଜଳସେଚନ ମନ୍ତ୍ରୀଙ୍କ ପରିଦର୍ଶନ ସମୟରେ ଏକ ଅଦ୍ଭୁତ ଚିନ୍ତାଧାରା ସମସ୍ତଙ୍କ ମନକୁ ଛୁଇଁଲା। ଜଳଭଣ୍ଡାର ଠାରୁ ଆରମ୍ଭ ହୋଇଥିବା ସୁଡ଼ଙ୍ଗ ମଧ୍ୟରେ ଦୀର୍ଘ ୩ କି.ମି ବାଟ ମନ୍ତ୍ରୀ କିପରେ ଯିବାକୁ ଚାହିଁଲେ। ସୁଡ଼ଙ୍ଗର ଖୋଳାଇ କାର୍ଯ୍ୟ ସରି ଯାଇଥାଏ। ତେଣୁ ମନ୍ତ୍ରୀ ମହୋଦୟ ପୁରା ସୁଡ଼ଙ୍ଗ ପଥ ଅତିକ୍ରମ କରି ବୀର ଦର୍ପରେ ବାହାରି ଆସିଲେ। ଫଟୋ ଉଠାଗଲା, ଲୋକେ ବାହାବା କଲେ। କିନ୍ତୁ ଜଳଭଣ୍ଡାର ପାଖ ସୁଡ଼ଙ୍ଗର ମୁହଁରେ କବାଟ ଲାଗିନାହିଁ, ଜଳପତନ ବଢିଲେ ସାମାନ୍ୟ ମାଟିରେ ନିର୍ମିତ କଫର ଡେମ ଯଦି ଭାଙ୍ଗିଯାଏ ତେବେ ସୁଡ଼ଙ୍ଗ ଓ ତାପରେ ଥିବା ପେନଷ୍ଟକ୍ ସ୍ଲୋପ ଓ ସର୍ବୋପରି ୧୦୦୦ ଫୁଟ ତଳେ ଥିବା ପାୱାର ହାଉସର ଉପରକୁ କି ବିପଦ ଆସିବ ତାହା କେହି ଭାବିଲେ ନାହିଁ। ମନ୍ତ୍ରୀ ମଣ୍ଡଳରେ ପ୍ରବଳ ପ୍ରତାପୀ ଜଳସେଚନ ମନ୍ତ୍ରୀଙ୍କୁ ସନ୍ତୁଷ୍ଟ କରିପାରିଥିବାରୁ ପ୍ରୋଜେକ୍ଟର ସବୁ ଇଞ୍ଜିନିୟର ଖୁସି। ଏହି ପରିପ୍ରେକ୍ଷୀରେ ଅଗଷ୍ଟ ମାସରେ ଇନ୍ଦ୍ରାବତୀ ନଦୀରେ ଆସିଲା ପ୍ରବଳ ବନ୍ୟା। ବନ୍ୟା ଜଳ ଦ୍ରୁତ ଗତିରେ ବଢିବାକୁ ଲାଗିଲା ଓ କଫର ଡ଼େମ ଭାଙ୍ଗି ପାଣି ଦ୍ରୁତ ଗତିରେ ସୁଡ଼ଙ୍ଗ ମଧ୍ୟରେ ପ୍ରବେଶ କରି ତା ତଳେ ଥିବା ପାହାଡ଼ରେ ଥିବା ପଥର ଗୁଡ଼ିକୁ ଉଡାଇନେଇ ମୁଖିପଡ଼ା ଠାରେ ଥିବା ପାୱାର ହାଉସ ଉପରେ ୮୦ ଫୁଟ ଉଚ୍ଚର ଏକ ପାହାଡ଼ ସୃଷ୍ଟି କରି ଦେଲା। ସୁଡ଼ଙ୍ଗ ଭିତରେ କାର୍ଯ୍ୟରତ ୬ଟି ମୂଲ୍ୟବାନ ଜୀବନର ଅବସାନ ଘଟିଲା। କଳାହାଣ୍ଡି ଜିଲ୍ଲାରେ ପ୍ରବଳ ଜନ ଅସନ୍ତୋଷ, ଆନ୍ଦୋଳନ ସରକାରଙ୍କ ମାନଦଣ୍ଡ ଦୋହଲାଇ ଦେଲା। ସରକାର ସୁଡ଼ଙ୍ଗ ପ୍ରେସର ପାଇପ୍ ଲାଇନର ସ୍ଲୋପ ଓ ପାୱାରହାଉସର ପୁନରୁଦ୍ଧାର ଯୁଦ୍ଧକାଳୀନ ଭିତିରେ ସମାପ୍ତ କରିବାକୁ ଚାହିଁଲେ। ଇନ୍ଦ୍ରାବତୀ ପ୍ରୋଜେକ୍ଟରେ ଆରମ୍ଭରୁ କାର୍ଯ୍ୟ କରି ଅଳ୍ପଦିନ ପୂର୍ବେ ଅବସର ଗ୍ରହଣ କରିଥିବା ମୁଖ୍ୟମନ୍ତ୍ରୀ ଦାମୋଦର ସାହୁ ଓ ଆଉ ଦୁଇଜଣ ଅବସରପ୍ରାପ୍ତ

ଇଲେକ୍ଟ୍ରିକେଲ୍ ସୁନାମଧନ୍ୟ ମୁଖ୍ୟଯନ୍ତ୍ରୀଙ୍କୁ ନେଇ ଗଠିତ ହେଲା ଟାସ୍କ ଫୋର୍ସ । ଦାମବାବୁ ଜଣେ ଅଭିଜ୍ଞ କର୍ମଠ ଓ ଉଦ୍ୟୋଗୀ ଯନ୍ତ୍ରୀ ହିସାବରେ ଜଳସେଚନ ବିଭାଗରେ ଆଦୃତ । ସେ ଯେତେବେଳେ ମୁଖିପଡ଼ା ଯାଇ ପାୱାର ହାଉସ୍ ପାଖରେ ବସି ପଡ଼ି ପ୍ରୋଜେକ୍ଟର ଏହି ଦୁର୍ଦ୍ଦଶା ଦେଖିଲେ ନିଜକୁ ସମ୍ଭାଳିପାରିଲେ ନାହିଁ । ତାଙ୍କର ହୃଦ୍‌ଘାତ ରୋଗ ବାହାରି ପଡ଼ିଲା । ତାଙ୍କୁ ଜୟପୁର ଓ ପରେ ଭୁବନେଶ୍ୱରକୁ ଅଣାଯାଇ ଚିକିତ୍ସା କରାଗଲା । କିନ୍ତୁ ସେ ଆଉ ଆରୋଗ୍ୟ ଲାଭ କଲେ ନାହିଁ । ଅଳ୍ପ ଦିନ ମଧ୍ୟରେ ତାଙ୍କର ଦେହାନ୍ତ ହୋଇଗଲା । ଦାମବାବୁଙ୍କ ପରେ ଇନ୍ଦ୍ରାବତୀର ଏହି ପୁନରୁଦ୍ଧାର ଦାୟିତ୍ୱରେ କାହାକୁ ରଖାଯିବ ଏହି ଚିନ୍ତା ପଡ଼ିଲା । ହଠାତ୍ ମୋର ନାମ ଏହି ଟାସ୍କଫୋର୍ସ ପରିସରକୁ ଆସିଲା ଓ ଚାକିରି ଶେଷ ହେବାର ଏକମାସ ଆଗରୁ ମୋତେ ଟାସ୍କଫୋର୍ସର ମେମ୍ବର କରି ଦିଆଗଲା । ଟାସ୍କଫୋର୍ସର ଦାୟିତ୍ୱ ପୁନରୁଦ୍ଧାର ପାଇଁ ଡିଜାଇନ ଟେଣ୍ଡର ସମୀକ୍ଷା କରି ଯୁଦ୍ଧକାଳୀନ ଗତିରେ ପୁନରୁଦ୍ଧାର କାର୍ଯ୍ୟକୁ ତ୍ୱରାନ୍ୱିତ କରିବା । ସୁଖର ବିଷୟ ବର୍ଷେ ଭିତରେ ପୁନରୁଦ୍ଧାର କାର୍ଯ୍ୟ ସମାପ୍ତ ହୋଇ ବିଦ୍ୟୁତ ଉତ୍ପାଦନ ନିର୍ଦ୍ଦିଷ୍ଟ ତାରିଖରେ ସମ୍ଭବ ହୋଇପାରିଲା ।

ଚାକିରି କାଳ ସମାପ୍ତ ହୋଇବାକୁ ବସିଲାଣି । ଅବସର ଗ୍ରହଣ ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭ କରିବାକୁ ପଡ଼ିବ । ସରକାରୀ ଚାକିରିରେ ୪ଟି ବିଶେଷ ସୁବିଧା ରହିଛି । ୧ମଟି ହୋଇଛି ସରକାରୀ ବାସଗୃହ । ସରକାରୀ ବାସଗୃହ ଓ ସଂଲଗ୍ନ ବଗିଚା ଥାଇ ଘରଟିଏ ନେଲେ ତାହା ସରକାରୀ ଭଡ଼ାର ୪/୫ ଗୁଣ ହେବ । ନିଜର ଘର ତିଆରି ହୋଇଥିବାରୁ ରହିବାର ସମସ୍ୟା ନାହିଁ ।

୨ୟ ବିଶେଷ ସୁବିଧା ହେଉଛି ସରକାରୀ ଫୋନ୍ । ଏହା ଭିତରେ ନିଜର ଫୋନ୍ ସଂଯୋଗ ହୋଇସାରିଛି ଓ ଭୁବନେଶ୍ୱର ଆସିବା ପରେ ସରକାରୀ ଫୋନ୍ ନିୟନ୍ତ୍ରଣ ଯୋଗୁ ପରବର୍ତ୍ତୀ ଅବସ୍ଥା ସହିତ ପରିବାର ମୋଟା ମୋଟି ଖାପ୍ ଖାଇ ସାରିଛନ୍ତି ।

୩ୟ ସୁବିଧା ହେଉଛି ସରକାରୀ ଗାଡ଼ି । ସରକାରୀ କାମ ସହିତ ପିଲାମାନେ ବିଭିନ୍ନ ସ୍ଥାନ ପରିଭ୍ରମଣ କରିପାରନ୍ତି । ପୁଅ ଝିଅମାନଙ୍କର ବିଭାଘର ସରିଗଲାଣି । ପୁଣି ଜନତା ସରକାର ଅମଳରେ ସରକାରୀ ଗାଡ଼ି ଉପରେ ପୋଲିସ୍‌ର ସନ୍ଦିଗ୍ଧ ଦୃଷ୍ଟି ଯୋଗୁଁ ନିଜ କାମ ପାଇଁ ସରକାରୀ ଗାଡ଼ିର ବ୍ୟବହାର ପ୍ରାୟ ବନ୍ଦ ହୋଇଯାଇଥିଲା ।

୪ର୍ଥ ସୁବିଧା ହେଉଛି ୪ର୍ଥ ଶ୍ରେଣୀ କର୍ମଚାରୀଙ୍କର ସହଯୋଗ। ଏହି ସୁବିଧା କେବଳ ଜିଲା ମହକୁମାରେ ମିଳିଥାଏ। ଭୁବନେଶ୍ୱର ଆସିବା ପରେ ୪ର୍ଥ ଶ୍ରେଣୀ କର୍ମଚାରୀଙ୍କ ସହଯୋଗ ଏକାବେଳେକେ ବନ୍ଦ ହୋଇଯାଇଥାଏ। ଘରୋଇ ପୂଜାରି ଓ ଠିକା ଚାକରାଣୀଙ୍କ ସାହାଯ୍ୟରେ ଘର ଦେଢ଼ ବର୍ଷ ହେଲା ଚଳୁଥିବାରୁ ପରିବାର ଲୋକେ ସେଥିରେ ଅଭ୍ୟସ୍ତ। ତେଣୁ ଚାକିରିରୁ ଅବସର ଗ୍ରହଣ ପରେ ମୋତେ କିଛି ହରାଇଲା ପରି ଲାଗିଲା ନାହିଁ।

ଦୀର୍ଘ ୩୫ ବର୍ଷର କର୍ମମୟ ଜୀବନ ଶେଷ ହୋଇଆସିବା ବେଳକୁ ଏହି ସମୟ ମଧ୍ୟରେ ଘନିଷ୍ଠ ସମ୍ପର୍କରେ ଆସିଥିବା ବନ୍ଧୁ ଓ ଶୁଭାକାଂକ୍ଷୀ ମାନଙ୍କ ବିଷୟ ଅନ୍ତରରେ ବାରମ୍ବାର ପ୍ରତିଧ୍ୱନିତ ହେଉଛି। ଚାକିରି ଆରମ୍ଭରେ ଅତି ନିକଟ ସଂସ୍ପର୍ଶରେ ଆସିଥିବା ବନ୍ଧୁମାନେ ହେଲେ ଗଞ୍ଜାମ ବିଞ୍ଚଣା ଗ୍ରାମର ଦୟାନିଧି ନାୟକ। ବୁଢ଼ାବୁଢ଼ୀଆଣୀ ପ୍ରୋଜେକ୍ଟରେ ଏକତ୍ର ଏସ.ଡ଼ି.ଓ. ଥିବାବେଳେ ଯେଉଁ ସମ୍ପର୍କ ଗଢ଼ି ଉଠିଥିଲା, ତାହା ସାରା ଜୀବନରେ ମଧୁର ସମ୍ପର୍କ ହୋଇରହିଗଲା। ପରସ୍ପର ପାରିବାରିକ ବିବାହ ଆଦି ଉତ୍ସବରେ ଯୋଗଦାନ ଓ ସୁଖଦୁଃଖରେ ଭାଗୀଦାର ହେବା ଓ ଦୁଇ ଘର ମଧ୍ୟରେ ସମ୍ପର୍କ ନିଜର ବନ୍ଧୁବାନ୍ଧବଙ୍କ ଠାରୁ ବଳିଯାଇଛି। ପ୍ରାଣକୃଷ୍ଣ ଆଚାର୍ଯ୍ୟ, ଜଗନ୍ନାଥ ତ୍ରିପାଠୀ, ସଚ୍ଚିଦାନନ୍ଦ ପାଣିଗ୍ରାହୀ, ଅଜିତ୍ ରାୟ, ଗୋପୀନାଥ ପାଢ଼ୀ ଓ ବିଷ୍ଣୁ ଦାସଙ୍କ ସହ ଚାକିରି ଆରମ୍ଭରେ ଯେଉଁ ପାରିବାରିକ ସମ୍ପର୍କ ପ୍ରତିଷ୍ଠା ହୋଇଥିଲା, ତାହା ସାରା ଜୀବନ ପାଇଁ ନିଜର ବନ୍ଧୁବାନ୍ଧବଙ୍କ ସମ୍ପର୍କଠାରୁ ଅଧିକ ଘନିଷ୍ଠ ହୋଇଗଲା। ନର୍ମଦା ପାଣିଗ୍ରାହୀ ଓ ସୁଷମା ତ୍ରିପାଠୀ, ବିଷ୍ଣୁପ୍ରିୟା ଆଚାର୍ଯ୍ୟ, ଶକୁନ୍ତଳା ରାୟ ଓ ସୁଧାଂଶୁବାଳା ଦାସ, ଜ୍ୟୋସ୍ନା ପାଢ଼ୀଙ୍କ ଅନାବିଳ ସ୍ନେହ ଜୀବନରେ ଭୁଲିହେବନି। ସେ ୬ ଜଣକୁ ମୁଁ ଯେତିକି ସମ୍ମାନ ଦେଇଛ, ପାଇଛି ତା'ଠାରୁ ଅଧିକ। ଶ୍ରୀମତୀ ଆଚାର୍ଯ୍ୟ ତ ମୋତେ ବହୁଦିନ ଧରି ଲୁଚୁଥିଲେ। ତାଙ୍କ ବଡ଼ ଝିଅ ବିଭାଘର ଦିନ ପ୍ରଥମ ଥର ପାଇଁ କଥାବାର୍ତ୍ତା ହେଲେ। ଅଜିତର ସ୍ତ୍ରୀଙ୍କୁ ମୁଁ ମନ ଖୋଲି ଥଟ୍ଟା କରେ। ଗୋପୀ ପାଢ଼ୀଙ୍କ ପରିବାର ସହ ଦେଢ଼ ବର୍ଷ ଗୁରଂକୀରେ ରହିବାର ସୁଯୋଗ ମିଳିଥିଲା। ବିଷ୍ଣୁ ଦାସଙ୍କ ପିଲାମାନେ ଓ ଆମ ପିଲାମାନେ ଏତେ ବେଶି ମିଶିଯାଇଥିଲେ ଯେ ସେମାନଙ୍କର ପରସ୍ପର ପ୍ରତି ସ୍ନେହ ଆମ୍ଭମାନଙ୍କୁ ବାନ୍ଧି ରଖିଥିଲା ଓ ୬ଟି ଯାକ ପରିବାରର ପିଲାମାନେ ସେମାନେ

ଆମକୁ ଖାଲି ମଉସା ମାଉସୀର ସମ୍ମାନ ଦେଇ ନଥିଲେ ଆମର ଏହି ପରିବାରର ପିଲାମାନେ ସତେ ଯେପରି ଗୋଟିଏ ବାପ ମାର ସନ୍ତାନ। ସେହିପରି ମୋର ଚିରହିତୈଷୀ ମାଧବ ପାଣି, ଜନାର୍ଦ୍ଦନ ତ୍ରିପାଠୀ, ରାମଚନ୍ଦ୍ର ପାତ୍ର, ନିମାଇ ପାଣି, ପ୍ରଶାନ୍ତ ପାତ୍ର ଓ ଦିବାକର ମିଶ୍ର, ସଚ୍ଚିଦାନନ୍ଦ ସିହ୍ନା ସବୁଦିନ ପାଇଁ ମୋର ବଡ଼ ଭାଇର ଆସନ ଗ୍ରହଣ କରି ରହିଗଲେ। ଅନେକ ସମୟରେ ଦେଖିଛି ବିପଦ ଅପାଦରେ ନିମାଇଁବାବୁ ମୋ ପଛରେ ଏକ ସୁଦୃଢ଼ ସ୍ତମ୍ଭ ଭଳି ବିରାଜମାନ ହୋଇଛନ୍ତି। ପାରିବାରିକ ସମସ୍ୟା ଠାରୁ ଆରମ୍ଭ କରି ଚାକିରି ଜନିତ ସମସ୍ୟା ତଥା ବାହ୍ୟ ସମସ୍ୟା ନେଇ ଯେତେବେଳେ ତାଙ୍କ ପାଖକୁ ଯାଇଛି କେବେ ନିରାଶ ହୋଇ ଫେରିନି। ତାଙ୍କ ସ୍ତ୍ରୀଙ୍କୁ ମୁଁ ନିଜର ଭାଉଜଠାରୁ ଅଧିକ ଉଚ୍ଚ ଆସନ ଦେଇ ଆସିଛି। ଆଉ ଜଣେ ଶୁଭକାଂକ୍ଷୀ ହେଲେ ବୀରେନ୍ ପଟ୍ଟନାୟକ। ବହୁତ ଡେରିରେ ତାଙ୍କ ପାଖରେ କାର୍ଯ୍ୟ କରିବାର ସୁଯୋଗ ମିଳିଲା ସତ, କିନ୍ତୁ ତାଙ୍କର ହୃଦୟ କି ଉଦାର, ମୋର କାହିଁକି, ଡପାର୍ଟମେଣ୍ଟ ଭିତରେ ଯେ କେହି ଭୁଲ୍ କରିଥାଉନା କାହିଁକି ତାଙ୍କର ଶରଣାପନ୍ନ ହେଲେ ସେ ଆପ୍ରାଣ ଚେଷ୍ଟା କରି ତାକୁ ସାହାଯ୍ୟ କରିବେ। ଥରେ ଜଣେ ଅଫିସରଙ୍କର ସସ୍‌ପେଣ୍ଡ ହେବାର ଥାଏ, ମୁଁ ଓ ମୋର ଜଣେ ବନ୍ଧୁ ତାଙ୍କୁ କହିଲୁ ଯେ ସାରା ଡିପାର୍ଟମେଣ୍ଟ ତ ଆପଣଙ୍କୁ ଭରସା କରି ରହିଛି, ଆପଣ ଅଫିସର ଜଣଙ୍କୁ ରକ୍ଷା ନ କଲେ ଆଉ କରିବ କିଏ ? ବାସ୍ ଏତିକି ମୁଖ୍ୟମନ୍ତ୍ରୀଙ୍କ ଠାରୁ ସସ୍‌ପେନସନ୍ ଆଦେଶ ଫାଇଲ୍‌ରେ ରହିଗଲା। ସେ ମୁଖ୍ୟଯନ୍ତ୍ରୀ ଭାବେ ପ୍ରମୋଶନ ପାଇ ଅବସର ଗ୍ରହଣ କଲେ। ରାମଚନ୍ଦ୍ର ପାତ୍ର ତାଙ୍କର ଅବସର ଗ୍ରହଣ ପରେ ବାଚରାମ ସ୍ୱାମୀଙ୍କୁ କହି ମୋତେ ବରହମପୁରରେ ରଖାଇ ମୋର ପରିବାରଟିକୁ ଉଦ୍ଧାର କରିଛନ୍ତି ତାହା କେବେ ମୁଁ ଜୀବନରେ ଭୁଲି ପାରିବିନି। ଆଉ ପ୍ରଶାନ୍ତ ପାତ୍ର। ସେ ତ ଜଣେ ପ୍ରଶାନ୍ତ ହୃଦୟ ବ୍ୟକ୍ତି। ତା'ଙ୍କ ସ୍ତ୍ରୀଙ୍କ ସଂସ୍ପର୍ଶରେ ଯେ ଆସିଛି ସେ ତାଙ୍କୁ କେବେ ଜୀବନରେ ଭୁଲିପାରିବିନି। ଏତେ ସ୍ନେହଶୀଳା ମହିଳା କ୍ୱଚିତ୍ ଦେଖିବାକୁ ମିଳନ୍ତି। କେ. ରାଜରାଓ, ଅମ୍ବିକା ତ୍ରିପାଠୀ, ସୁଶିଲ କୁମାର ସୁବୁଦ୍ଧି, ଆନନ୍ଦ ସୁବୁଦ୍ଧି, ଶଙ୍କର ନାରାୟଣ ସୁବୁଦ୍ଧି, ଜନ୍ ଜର୍ଜ, ନକୁଳ ସାହୁ, ପ୍ରଫୁଲ୍ଲ ପଟ୍ଟନାୟକ, ଦିଲିପ ଚକ୍ରବର୍ତ୍ତୀ, ରଘୁନାଥ ସାହୁ, ରବି ନାୟକ, ଆର.କେ ପଟ୍ଟନାୟକ, ଶ୍ୟାମ ସୁନ୍ଦର ସାହୁ, ପି.କେ. ପଟ୍ଟନାୟକ, ଅଶୋକ ଦାସ, ଅନୀଲ ଷଡ଼ଙ୍ଗୀ, ପି.କେ. ଷଡ଼ଙ୍ଗୀ, ମାଧବ ଖଟେଇ, ମହାଦେବ ମିଶ୍ର, ଗୋରା ଦାସ ଓ କଣ୍ଟ୍ରାକ୍ଟର ସୀମାଞ୍ଚଳ ଦାସ, ଅକ୍ଷୟ ମିଶ୍ର,

ନେମ୍‌ଚନ୍ଦ ଜୈନ, ରୋସନ ଅଗ୍ରୱାଲ୍, ବୈଜ୍ଜୁ ଅଗ୍ରୱାଲ, ଜଗଦେଶ ବୁଦ୍ଧିରାଜ, ଉଦୟନାଥ ଚୌଧୁରୀ ଓ ଜ୍ଞାନ ଦାସଙ୍କ ନାମ ଉଲ୍ଲେଖଯୋଗ୍ୟ। ସେମାନେ ଆମ ପରିବାର ସହିତ ଏଭଳି ସଂଶ୍ଳିଷ୍ଟ ହୋଇଯାଇଥିଲେ ଯେ ସେମାନଙ୍କୁ କେବେ ଜୀବନରେ ଭୁଲି ହେବନି। ବିଶେଷ କରି ଶଙ୍କର ନାରାୟଣ ଓ ଶ୍ୟାମ ସୁନ୍ଦର ସାହୁ ଓ ଦିଲ୍ଲିପ ଚକ୍ରବର୍ତ୍ତୀ ଆମ ପରିବାରର ଅଙ୍ଗ ବିଶେଷ ହୋଇଯାଇଛନ୍ତି। ସେହିପରି ରମାନାଥ ଜେନା, ବଟ କିଶୋର ଲେଙ୍କା, ରଜନୀକାନ୍ତ ବିଶ୍ୱାଳ, ଲକ୍ଷ୍ମଣ ମିଶ୍ର, ଗିବି ନାୟକ ଓ ଆର.କେ. ପଟ୍ଟନାୟକଙ୍କର ସ୍ନେହ କେବେ ଭୁଲି ହେବନି।

ଆମ ଡିପାର୍ଟମେଣ୍ଟ ବାହାରେ ଯେଉଁମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ଗଢ଼ି ଉଠିଥିଲା ସେମାନେ ହେଲେ ଚିଫ୍ କନ୍‌ଜରଭେଟର ଗୋପାଳ କୃଷ୍ଣ ଦାସ ଓ ତାଙ୍କ ଭାଇ ଗୌର ଗୋବିନ୍ଦ ଦାସ, ଅନୁଗୁଳ କଲେଜ ପ୍ରିନ୍‌ସପାଲ୍ ଫଣୀ ଭୂଷଣ ଚଟାର୍ଜୀ, କଞ୍ଜରଭେଟର ବିଶ୍ୱେଶ୍ୱର ଦାସ ଓ ପ୍ରଭାକର ପାଣି, ଅମ୍ବିକା ମହାନ୍ତି ପ୍ରତ୍ୟେକ ପରସ୍ପରର ସୁଖ ଦୁଃଖରେ ଭାଗୀ ହୋଇ ଆସିଛନ୍ତି। ମମତାଜ ଅଲ୍ଲୀଙ୍କ ଭିଣୋଇ ସୌକତ ଅଲ୍ଲୀ, ସମ୍ବଲପୁରର ଭବାନୀ ମିଶ୍ର ଆଉ ଦୁଇଜଣ ବନ୍ଧୁ ଯେଉଁମାନଙ୍କର ପରିବାର ସହ ସମ୍ପର୍କ ଅତ୍ୟନ୍ତ ମଧୁର। ଏକିରି ଜୀବନରେ ବହୁ ବିଶିଷ୍ଟ ରାଜନୈତିକ ବ୍ୟକ୍ତିଙ୍କର ସଂସ୍ପର୍ଶରେ ଆସିଛି। କିନ୍ତୁ ଯେଉଁ ୬ଜଣ ମୋର ଆଜୀବନ ବନ୍ଧୁ ହୋଇ ରହିଗଲେ ସେମାନେ ହେଲେ ଗଞ୍ଜାମ ଗୌରବ ବୃନ୍ଦାବନ ନାୟକ, ଚିକିଟିର ରାଜା ସାହେବ ସଚ୍ଚିଦାନନ୍ଦ ଦେଓ, ବାସୁଦେବପୁରର ଜଗବନ୍ଧୁ ଦାସ, ଅନୁଗୁଳର ଅଦୈତ ପ୍ରସାଦ ସିଂ, ବଲାଙ୍ଗିରର ଅଇଁଠୁ ସାହୁ ଓ କେନ୍ଦୁଝରର ନିରଞ୍ଜନ ପଟ୍ଟନାୟକ, ଚିକିଟି ଡିଭିଜନରୁ ବଦଳି ସମୟରେ ଯେତେବେଳେ ସୁରେଶ ତ୍ରିପାଠୀ ମୋତେ ରସାତଳକୁ ପେଲି ଦେବାକୁ ସଂକଳ୍ପବଦ୍ଧ, ଚିକିଟି ରାଜା ଓ ଜଗବନ୍ଧୁ ଦାସ ମୋ ପଛରେ ସଦୃଢ଼ ସ୍ତମ୍ଭ ଭଳି ଛିଡ଼ା ହୋଇଥିଲେ। ସେହିପରି ଯେତେବେଳେ ବଲାଙ୍ଗିରରେ ବିବେକ ମେହେର, ସହରାଇ ଓରାମଙ୍କ ସହଯୋଗରେ ମୋର ସର୍ବନାଶ କରିବାକୁ ଋହୁଁଥିଲେ ସେତେବେଳରୁ ବଲାଙ୍ଗିରର ଏମ.ପି. ଅଇଁଠୁ ବାବୁ ଏକାକି ଏହାର ପ୍ରତିବାଦ କରି ମୋର ସମ୍ମାନ ରକ୍ଷା କରିପାରିଥିଲେ। ସେହିପରି ମୋର ଅଧିକ୍ଷଣ ଯନ୍ତ୍ରୀ ପଦବୀକୁ ପ୍ରମୋଶନ ସମୟରେ ବୈରାଗୀ ଜେନାଙ୍କ କୁଚକ୍ରାନ୍ତ ଫଳରେ ମୁଁ ଯେତେବେଳେ ଶାଳପଦାରେ ଯୋଗଦେଇପାରିଲିନି, ସେତେବେଳେ ଅଦ୍ୱୈତ ସିଂ ଓ ବରହମପୁରର ବୃନ୍ଦାବନ

ନାୟକ ତଥା ପୋଡ଼ାମାରି ରଜା ଉଦୟ ନାରାୟଣ ଦେଓଙ୍କ ଅକୁଣ୍ଠିତ ସାହାଯ୍ୟ ପାଖରେ ମୁଁ ଚିର ଋଣୀ। ସର୍ବୋପରି ବରହମପୁର ଓ ସମ୍ବଲପୁରରେ ଥିବା ସମୟରେ ନିରଞ୍ଜନ ବାବୁଙ୍କ ସାହାଯ୍ୟ କେବେ ଭୁଲି ହେବନି। ବାରିପଦାରେ ଅବସ୍ଥାନ ସମୟରେ ବାଚସ୍ପତି ପ୍ରସନ୍ନ ଦାଶଙ୍କ ସଂସ୍ପର୍ଶରେ ଆସି ଦେଖିଥିଲି ମୟୂରଭଞ୍ଜ ଜିଲ୍ଲାର ଉନ୍ନତି ପାଇଁ ତାଙ୍କର ଆନ୍ତରିକତା। ଆଉ ବାରିପଦାରେ ଅବସ୍ଥାନ କରୁଥିବା ମୋର ବଡ଼ଭାଇଠୁ ଅଧିକ ହରିଶ ଚନ୍ଦ୍ର ମହାନ୍ତି ତ ମୋର ପିଲାଦିନରୁ ବଡ଼ଭାଇ ହୋଇ ରହିଯାଇଛନ୍ତି। ତାଙ୍କ ସ୍ତ୍ରୀଙ୍କଠୁ ପାଇଛି ଭାଉଜର ସ୍ନେହ ଓ ଆଦର, ବନ୍ଧୁମାନଙ୍କ ବିଷୟରେ ଲେଖିବସିଲେ ଏ କ୍ଷୁଦ୍ର ଆତ୍ମ ଜୀବନରେ ସ୍ଥାନ ମିଳିବନି।

ଚାକିରି ଜୀବନରେ ଶେଷ ଦେଢ଼ ବର୍ଷ ଥିଲା ଏକ ସଙ୍କଟମୟ ଅଧ୍ୟାୟ। ଦୀର୍ଘ ୩୩ ବର୍ଷ ଧରି ଜଣେ ଡାଇନାମିକ୍ ଇଞ୍ଜିନିୟର ହିସାବରେ ନାମ ଅର୍ଜନ କରି ଆସିଛି। ଇଞ୍ଜିନିୟର ଡିପାର୍ଟମେଣ୍ଟଠାରୁ ଆରମ୍ଭ କରି ସେକ୍ରେଟେରୀଏଟ୍ ତଥା ମନ୍ତ୍ରୀ ମହଲରେ ମୋର କର୍ମକୁଶଳତାର ଭୂରି ଭୂରି ପ୍ରଶଂସା ଶୁଣିବାକୁ ପାଇଛି। ହଠାତ୍ ଯେଉଁଭଳି ପରିସ୍ଥିତିରେ ଜଳସେଚନ ମନ୍ତ୍ରୀ ମୋତେ ବଦଳି କଲେ ଓ ସବୁ ମହଲରେ ମୋର ଶୁଭାକାଂକ୍ଷୀ ବନ୍ଧୁ ଥାଇ ମଧ୍ୟ ପ୍ରତିବାଦ କରିପାରିଲେନି ତାହା ମୋତେ ପ୍ରଥମ ଆଘାତ ଦେଇଥିଲା। ଦ୍ୱିତୀୟ ଆଘାତ ମିଳିଲା, ଯେତେବେଳେ ବିନା ପ୍ରାଥମିକ ଇନ୍‌କ୍ୟୁରିରେ ହଠାତ୍ ମୋର ଘର ସର୍ଚ୍ଚ କରି ବଦନାମ କଲେ। ତୃତୀୟ ଆଘାତ ମିଳିଲା, ଯେତେବେଳେ ଅନ୍ୟାୟ ଭାବରେ ମନ୍ତ୍ରୀ ମୋର ପ୍ରମୋଶନ ଫାଇଲଟିକୁ ଚାପିରଖିଲେ ଓ ମୁଖ୍ୟମନ୍ତ୍ରୀଙ୍କ ଉପରେ ତାଙ୍କର ଏତେ ପ୍ରଭାବ ଯେ କୌଣସି ମନ୍ତ୍ରୀ ତାଙ୍କ ବିରୁଦ୍ଧରେ ପ୍ରତିବାଦ କରିବାକୁ ସାହସ କଲେ ନାହିଁ। ମାତ୍ର ଦେଢ଼ବର୍ଷ ମଧ୍ୟରେ ଏଭଳି ୩ଟି ଆଘାତରେ ହୁଏତ ଅନ୍ୟ କେହି ହୋଇଥିଲେ ଭାଙ୍ଗି ପଡ଼ିଥାନ୍ତେ, କିନ୍ତୁ ମୋର ଈଶ୍ୱର ବିଶ୍ୱାସ ଓ ଆତ୍ମବଳ ମୋତେ ଭାଙ୍ଗି ନ ପଡ଼ି ସାହସର ସହିତ ପରିସ୍ଥିତିର ମୁକାବିଲା କରିବା ପାଇଁ ସାହସ ଦେଲା। ଏହି ସମୟ ମଧ୍ୟରେ ମୋର ବନ୍ଧୁମାନେ ମୋତେ କମ୍ ସାହସ ଓ ପ୍ରେରଣା ଦେଇ ନାହାନ୍ତି। ବିଶେଷ କରି ମୋର ବଡ଼ ଭାଇ ସଦୃଶ ନିମାଇ ଚରଣ ପାଣି ଓ ବନ୍ଧୁ ଜଗନ୍ନାଥ ତ୍ରିପାଠୀ, ଅଜିତ ରାୟ ଓ ଗୋପୀନାଥ ପାଢ଼ୀଙ୍କ ପ୍ରେରଣା କେବେ ଭୁଲିହେବନି।

ଜୀବନରେ ଏଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ୧୯୯୦ ମସିହା ଅଗଷ୍ଟ ୧୦ ତାରିଖ ଦିନ ବଡ଼ ପୁଅର ଗୋଟିଏ ପୁତ୍ର ସନ୍ତାନ ଘରର ଶୋଭାବର୍ଦ୍ଧନ କଲା। ବହୁ ଦିନ ପରେ ଘରକୁ ଶିଶୁଟିଏ ଆସି ସମସ୍ତଙ୍କ ମୁହଁରେ ହସ ଫୁଟାଇଲା। ଖାଲି ସେତିକି ନୁହେଁ ଦୀର୍ଘ ୩ ବର୍ଷର ବିବାହିତ ଜୀବନ କଟାଇବା ପରେ ସାନ ଝିଅ ମଧ୍ୟ ଗୋଟିଏ କନ୍ୟା ସନ୍ତାନର ଜନନୀ ହେଲା। ପୁଅଟିର ନାମ ରଖାଗଲା (ସୋନୁ) ଓ କନ୍ୟାଟିର ନାମ ରହିଲା ଦିଶା। ସମସ୍ୟାବହୁଳ ସଙ୍କଟାପନ୍ନ ଶେଷ ଦେଢ଼ବର୍ଷ ଏହି ଦୁଇଟି ଶିଶୁଙ୍କର ସାନ୍ନିଧ ମୋର ସବୁଠାରୁ ଆନନ୍ଦର ସମୟ ଥିଲା।

କିନ୍ତୁ ଦୁଃଖ ଓ ସନ୍ତାପର ଦିନ ଚିରସ୍ଥାୟୀ ନୁହେଁ। ରାତି ପରେ ଦିନ ଆସିବ। ଅନ୍ଧାର ନଥିଲେ ଆଲୁଅର ମହତ୍ତ୍ୱ କେହି ହୃଦୟଙ୍ଗମ କରିପାରନ୍ତେ ନାହିଁ। ଇଂରାଜୀରେ ଗୋଟିଏ ପ୍ରବାଦ ଅଛି, "Sincerity never goes unrewarded" ଭଗବାନଙ୍କ ସବୁ କାମ ପଛରେ କିଛିନା କିଛି ଉଦ୍ଦେଶ୍ୟ ଥାଏ। ଏକ ସରକାରୀ କାମରେ ଦିଲ୍ଲୀ ଯାଇଥିଲି। ଆଶ୍ଚର୍ଯ୍ୟ ହେଲି ବହୁତ ଗୁଡ଼ିଏ କନସଲ୍‌ଟେନ୍ସି ଫାର୍ମ ମୋର ଅବସର ଗ୍ରହଣ ସଙ୍ଗେ ସଙ୍ଗେ ମୋତେ ତାଙ୍କ ଫାର୍ମରେ ନିଯୁକ୍ତି ଦେବା ପାଇଁ ଆଗ୍ରହର ସହିତ ଅପେକ୍ଷା କରିଛନ୍ତି । C.C. Patel & Associates, Hoque consultant, Wapcos ଓ ଓଡ଼ିଶାର GMS Construction ସମସ୍ତଙ୍କର ଇଚ୍ଛା ମୁଁ ତାଙ୍କ ଫାର୍ମରେ ଯୋଗଦିଏ। ମୁଁ WAPCOSର ମେନେଜିଂ ଡାଇରେକ୍ଟରଙ୍କ ମୁହଁରୁ ଶୁଣି ଆଶ୍ଚର୍ଯ୍ୟ ହେଲି WAPCOS will never like to loose an Engineer like you. ଖାଲି consultancy firm ନୁହଁନ୍ତି ଦିଲ୍ଲୀର ଦୁଇଟି construction firm ମଧ୍ୟ ତାଙ୍କ କମ୍ପାନୀରେ ମୋତେ ଦିଲ୍ଲୀରେ ଘର ସହ ପୁରା ଦରମା ଦେଇ ତାଙ୍କ ଫାର୍ମରେ ଚିଫ୍ ଇଞ୍ଜିନିୟର କରିବାକୁ ଆଗ୍ରହୀ। ମୁଁ ନିଜେ ନିଜକୁ ବିଶ୍ୱାସ କରିପାରିଲି ନାହିଁ। ମୁଁ ଦିଲ୍ଲୀ ମହଲରେ ଏତେ ଲୋକପ୍ରିୟ ହେଲି କିପରି ? ଶୁଣିଲି ସେମାନେ ମୋର ଉଭୟ ଡିଜାଇନ୍ ଓ କଷ୍ଟ୍ରେକସନ୍‌ରେ ଦକ୍ଷତା ବିଷୟରେ ବହୁ ପ୍ରଶଂସା ଶୁଣିଛନ୍ତି ଓ ଉଭୟ କନଷ୍ଟ୍ରକସନ୍ ଓ ଡିଜାଓନ୍ ଦକ୍ଷତା ଥିବା ଜଣେ ଇଞ୍ଜିନିୟରଙ୍କୁ ପାଇଲେ ତାଙ୍କର ଫାର୍ମର ପ୍ରଭୂତ ଉନ୍ନତି ହେବ ଭାବି ମୋତେ ବାଛିଛନ୍ତି। ଦୀର୍ଘ ଦେଢ଼ ବର୍ଷର ମନସ୍ତାପ ପରେ ମୋର ନିଜର ଅଜାଣତରେ ନିଜକୁ ଏଭଳି ପ୍ରତିଷ୍ଠା କରିପାରିଥିବାରୁ କିଞ୍ଚିତ ଆତ୍ମସନ୍ତୋଷ

ଲାଭ କଲି । ଅବସର ଗ୍ରହଣ ପରଦିନ ଭାରତ ସରକାରଙ୍କ କରପୋରେସନ୍ WAPCOS ରେ ଯୋଗଦେବା ପାଇଁ ଅର୍ଡ଼ର ପାଇ ୧୯୯୧ ନଭେମ୍ବର ପହିଲା ଦିନ ସେଥିରେ ଯୋଗ ଦେବା ପାଇଁ ସ୍ଥିର କଲି ।

ଅବଶେଷରେ ବହୁ ଅପେକ୍ଷିତ ୧୯୯୧ ମସିହାର ଅକ୍ଟୋବରରୁ ୩୧ ତାରିଖ ଆସି ପହଞ୍ଚିଲା ଓ ମୁଁ ଦୀର୍ଘ ୩୫ ବର୍ଷର ଓଡ଼ିଶା ସରକାରଙ୍କ ଅଧୀନରେ କରିଥିବା ଚାକିରିରୁ ଅବସର ଗ୍ରହଣ କଲି । ମୋତେ ଯେଉଁ ବିଦାୟ ସମ୍ବର୍ଦ୍ଧନା ଦିଆଯାଇଥିଲା ତାହା ଏତେ ଚିତ୍ତାକର୍ଷକ ହୋଇଥିଲା ଯେ ଅନେକଙ୍କ ମୁହଁରୁ ଶୁଣିଛି ବହୁଦିନ ପରେ ଜଣେ ଦକ୍ଷ ଇଞ୍ଜିନିୟରଙ୍କୁ ଏତେ ହୃଦୟସ୍ପର୍ଶୀ ବିଦାୟ ସମ୍ବର୍ଦ୍ଧାନ ଦିଆଗଲା । ଏ ଖବର ଜଳସେଚନ ମନ୍ତ୍ରୀ ଅବଶ୍ୟ ପାଇଥିବେ । ତାଙ୍କ ବିଚାର ଯେ ଉପରେ କେହି କରୁଛି ଏବଂ ରାୟ ଦିନେ ବାହାରିବ, ଏହି ସଚେତନତା ତାଙ୍କର ଯେତେ ଶୀଘ୍ର ହେବ, ତାଙ୍କ ପାଇଁ ଓ ସାରା ଦେଶ ପାଇଁ ମଙ୍ଗଳକର ।



## ତ୍ରୟୋବିଂଶ ପରିଚ୍ଛେଦ

# ଅବସର ପରବର୍ତ୍ତୀ ଜୀବନ ସଂଗ୍ରାମ

ଅବସର ଗ୍ରହଣ ବେଳକୁ ବଡ଼ ପୁଅ ଓ ଦୁଇଝିଅଙ୍କର ବିଭାଘର ହୋଇସାରିଥାଏ। ବଡ଼ ଝିଅର ଗୋଟିଏ ପୁଅ ସାନ ଝିଅର ଗୋଟିଏ ଝିଅ ଓ ବଡ଼ ପୁଅର ଦୁଇଟି ପୁଅ ଜନ୍ମ ହୋଇସାରିଥାନ୍ତି। ୧୯୯୮ ମସିହାରେ ସାନପୁଅର ବିଭାଘର ଭୁବନେଶ୍ୱର ବାସୀ ପୂର୍ଣ୍ଣଚନ୍ଦ୍ର ଦାସଙ୍କ ଝିଅ ସଙ୍ଗେ ହୋଇଥିଲା। କାଳକ୍ରମେ ବଡ଼ ଜ୍ୱାଇଁ ପଦୋନ୍ନତି ପାଇ ପୋଲିସ୍ ବିଭାଗର ଡିଆଇଜି ଓ ଆଡ଼ିସିନାଲ୍ ଡିଜି ପଦ ପାଇଲା। ସାନ ଜ୍ୱାଇଁ ମଧ୍ୟ ଡେପୁଟି କମିଶନର, ଜଏଣ୍ଟ କମିଶନର ଓ କମିସନ୍‌ର ପଦବୀ ପାଇଲା। ସାନ ପୁଅ ପ୍ରଥମ ଅବସ୍ଥାରେ ଋକିରି ନ କରି ଭୁବନେଶ୍ୱରରେ ନିଜର ଗୋଟିଏ କମ୍ପ୍ୟୁଟର ସଂସ୍ଥା ସୃଷ୍ଟି କରିବାକୁ ଋହିଁଲା। ତାର ସ୍ତ୍ରୀ ଏମ.ବି.ଏ. କରିଥିବାରୁ ଦୁଇ ଜଣ ମିଶି କମ୍ପ୍ୟୁଟର ଟ୍ରେନିଂ ସେଣ୍ଟର ଓ ସଫଟଓ୍ୱେୟାର୍ ସଂସ୍ଥା ଗଢ଼ିଲେ। ପରିବର୍ତ୍ତିକାଳରେ ସାନପୁଅ ହିନ୍ଦୁସ୍ତାନ କମ୍ପ୍ୟୁଟରରେ ଜିଜିଏମ ପଦକୁ ଉତ୍ତୀର୍ଣ୍ଣ ହେଲା। ଗାଁର ଭାଇମାନେ ମଧ୍ୟ ସ୍ୱଚ୍ଛଳ ଅବସ୍ଥାକୁ ଆସିଗଲେ। ମଝିଆ ଭାଇ ପ୍ରଭାକରର ପିଲାମାନେ ପାଠପଢ଼ି ଆୟୁରବେର୍ଦିକ ଡାକ୍ତର ଆଉ ଦୁଇପୁଅ ସିଭିଲ ଓ ମେକାନିକେଲ୍ ଓଭରସିଅର ଭାବେ କାର୍ଯ୍ୟରତ ହେଲେ। ସେମାନଙ୍କର ଝିଅର ବିଭାଘର ମଧ୍ୟ ହୋଇଗଲା। ଗ୍ରାମରେ ପ୍ରତିଷ୍ଠିତ ଜୁଲିଆ ହାଇସ୍କୁଲଟି ସରକାରୀ ବିଦ୍ୟାଳୟର ମାନ୍ୟତା ପାଇ ସେ ଅଞ୍ଚଳରେ ଏକ ପ୍ରତିଷ୍ଠିତ ଆଦର୍ଶ ବିଦ୍ୟାଳୟ ମାନ୍ୟତା ପାଇପାରିଲା। ସ୍କୁଲର ଗାତ୍ର ସଂଖ୍ୟା ବୃଦ୍ଧି ପାଇ ୩ଟି ଶ୍ରେଣୀର ଛାତ୍ର ସଂଖ୍ୟା ୩୦୦କୁ ଅତିକ୍ରମ କରିବାକୁ ସକ୍ଷମ ହେଲା। ପ୍ରତିବର୍ଷ ସ୍କୁଲରୁ ଅନ୍ତତଃ ୧୦ ଜଣ ଛାତ୍ର ୧ମ ଶ୍ରେଣୀରେ ପାଶ୍ କରିବାକୁ ଲାଗିଲେ। ଏଭଳି ଭାବରେ ସଂସାରଟିକର ସୁଖର ସମୟ ଆସିଥିବା ସମୟରେ ହଠାତ୍ ପରିବାର ଉପରେ ଏକ ପ୍ରଚଣ୍ଡ ଚଡ଼କ ପଡ଼ିଲା।

### ବଡ଼ ବୋହୂର ଦେହାନ୍ତ

ବଡ଼ ପୁଅ ତାର ପରିବାରକୁ ନେଇ ପୁରୀରେ ସୁଖର ସଂସାର ଚଳାଉଥିବା ବେଳେ ହଠାତ୍ ପରିବାର ପ୍ରତି ଏକ ଅଋନକ ଚଡ଼କ ପଡ଼ିଲା। କିଛି ଲକ୍ଷଣ ଜଣାପଡ଼ିଲା ନାହିଁ। ହଠାତ୍ ବଡ଼ ବୋହୂ ଧୀରେ ଧୀରେ ଦୁର୍ବଳ ହୋଇପଡୁଛି। ତାଙ୍କୁ ଶୁଖିଲା କାଶ

ହେଉଛି ଓ ପରୀକ୍ଷାରୁ କିଛି ଜଣାପଡୁନି । ଡାକ୍ତରଙ୍କ ପରାମର୍ଶରେ ଯେତେବେଳେ ପୁରା ଦେହ ସ୍କେନିଂ ହେଲା ଜଣାପଡ଼ିଲା ହୃତପିଣ୍ଡ ପାଖରେ ଏକ ମାଂସପିଣ୍ଡୁଳା ବଢୁଛି । କଟକ ଓ ଭୁବନେଶ୍ୱରର ଡାକ୍ତର ମାନେ କହିଲେ ଏହା ହାର୍ଟ ପ୍ରୋବ୍ଲମ୍ । ତେଣୁ ବାଙ୍ଗାଲୋର ଯାଇ ଆମେ ଅପରେସନ୍ କରିବାକୁ ପ୍ରସ୍ତୁତ ହୋଇସାରିଥିଲୁ । ଏହି ସମୟରେ ପି.ଏଚ.ଡ଼ି ଡିପାର୍ଟମେଣ୍ଟର ଅବସରପ୍ରାପ୍ତ ଚିଫ୍ ଇଞ୍ଜିନିୟର ବିଶ୍ୱନାଥ ମିଶ୍ରଙ୍କ ଜ୍ୱାଇଁ ଯେ କି ବାଙ୍ଗାଲୋରରେ ଜଣେ ହାର୍ଟ ସ୍ପେସାଲିଷ୍ଟ ଭୁବନେଶ୍ୱର ଆସିଥିଲେ ସେ କହିଲେ, ଏହା କେନ୍‌ସର ଲକ୍ଷଣ । ତୁମେ ହାର୍ଟଅପରେସନ୍ ପାଇଁ ବାଙ୍ଗାଲୋର କାହିଁକି ଯିବ ? କଟକରେ ଏଫ.ଏନ.ସି. କରିଦିଅ । କଟକର ସବୁ ପେଥୋଲୋଜିଷ୍ଟ ଏଫ.ଏନ.ସି କରିବାକୁ ଡରିଲେ କାରଣ ଟ୍ୟୁମରଟି ହାର୍ଟ ଆର୍ଟେରୀରେ ଗୁଡ଼ାଇ ହୋଇରହି । ସମସ୍ତଙ୍କ ମତାମତ ନେଇ ଟାଟା ମେମୋରିଆଲରେ ଚିକିତ୍ସା ପାଇ ଆମେ ଚାଲିଲୁ ବମ୍ବେ । ସାଙ୍ଗରେ ଗଲେ ଶିଖାର ମା’ ଓ ବଡ଼ ପୁଅ ଶୁଭେନ୍ଦୁ । ୧୫ ଦିନ ପର୍ଯ୍ୟନ୍ତ ଟାଟା ମେମୋରିଆଲ୍ ହସ୍‌ପିଟାଲ୍‌ରେ କିଛି ରୋଗ ନିୟନ୍ତ୍ରଣ ହୋଇପାରିଲା ନାହିଁ । ବ୍ରିଚକାଣ୍ଡି ହସପିଟାଲରେ ଫୁସ୍‌ଫସର ସ୍କେନିଂ ଓ ବୋନମାରୋ ପରୀକ୍ଷା ହେଲା ତା ବ୍ୟତୀତ ଟାଟା ମେମୋରିଆଲ ବହୁତ ପରୀକ୍ଷା ହେଲା, କିଛି ଫଳ ହେଲାନି, କାରଣ ଟ୍ୟୁମରଟି ଆଟେରି ଓ ଭେନକୁ ଗୁଡ଼ାଇ ରଖିଥିବାର ସେଠାରୁ ସେମ୍ପଲ ନେବାକୁ କୌଣସି ଡାକ୍ତର ସାହସ କରୁ ନ ଥାନ୍ତି । ୧୯୯୯ ଡିସେମ୍ବର ୩୧ ତାରିଖ ଦିନ ଡ଼ାଃ.ସଞ୍ଜୟ ଶର୍ମା ସାହସ କରି ସେମ୍ପଲ ନେଲେ ଓ ଅଧ ଘଣ୍ଟାଏ ଭିତରେ କେନସର ସେଲର ରିପୋର୍ଟ ଦେଲେ । ସେ ଦିନଟିଥିଲା ଆମ ପାଇଁ ଏକ ଦୁଃଖଦ ଦିବସ । ସବୁ ଡାକ୍ତର ବସି ସିଦ୍ଧାନ୍ତ କଲେ ଯେ ଟ୍ୟୁମରଟି ଅପେରସନ୍ ବାହାରେ ଓ କୋମାଥେରାପି ଏକମାତ୍ର ପ୍ରତିକାର । ଦୁଇଟି କୋମାଥେରାପି ଦେଇ ବାକିତକ ଓଡ଼ିଶାରେ ନେବା ପାଇଁ ପରାମର୍ଶ ଦେଇ ଆମକୁ ଏକମାସ ପରେ ଓଡ଼ିଶା ଫେରାଇ ଦେଲେ । ରୋଗ ଟିଟେକସନ୍ ପରେ ପୁଅର ଯାହା ଅବସ୍ଥା ଦେଖିଲି ଭାବିଲି ମୁଁ ଅଧୈର୍ଯ୍ୟ ହେଲେ ତାକୁ ସାନ୍ତ୍ୱନା ଦେବ କିଏ ? ଗୋଟିଏ ପୁଅକୁ ୯ ବର୍ଷ ଓ ଅନ୍ୟଟିକୁ ୪ ବର୍ଷ । ସେ ଦୁଇ ଜଣ ତାଙ୍କର ଜେଜେମାଙ୍କ ତତ୍ତ୍ୱାବଧାନରେ ଭୁବନେଶ୍ୱରରେ ରହିଥାନ୍ତି । ପୁଅକୁ ଚାରିଦିଗ ଅନ୍ଧାର ଦିଶିଲା । ତାର ସଂସାର ଉଜୁଡ଼ି ଗଲାପରି ଲାଗିଲା ।

ପୁରୀରେ ରହି ସେ ବାଇଶଦିନ ଅନ୍ତରରେ ଶିଖାକୁ କଟକରେ ଡ଼ାଃ. ଅଗ୍ରୱାଲାଙ୍କ ତତ୍ତ୍ୱାବଧାନରେ କେମୋଥେରାପି ଦିଆଯାଉଥିଲା। ସେପ୍ଟେମ୍ବର ମାସକୁ ତାର ସ୍ୱାସ୍ଥ୍ୟରେ ବହୁତ ଉନ୍ନତି ଆସିଲା। ଏହି ସମୟରେ ଡ଼ାଃ. ଶର୍ମା ଗୋଟିଏ ସେମିନାର ପାଇଁ ପୁରୀ ଆସିଲେ। ସେ ଶିଖାର ସ୍ୱାସ୍ଥ୍ୟର ଉନ୍ନତି ଦେଖି ବହୁତ ଖୁସି ହୋଇ ଅପରେସନ୍ ପାଇଁ ବମ୍ବେ ଯିବାକୁ ପରାମର୍ଶ ଦେଲେ। ସେହି ଅନୁସାରେ ଆମେ ଅକ୍ଟୋବର ମାସରେ ବମ୍ବେ ଗଲୁ ଓ ଶିଖାର ଅପରେସନ୍ ମଧ୍ୟ ହେଲା। ଅପରେସନ୍ ପରେ ଡ଼ା. ଶର୍ମା ଆମକୁ କହିଲେ ଯେ ଶିଖା ବହୁତ ଅନ୍‌ଲକି। ତାର କେନସର ରୋଗ ଦେହର ଅନ୍ୟ କୌଣସି ଅଂଶକୁ ବିସ୍ତାର ଲାଭ କରିନାହିଁ। କିନ୍ତୁ ଟ୍ୟୁମରଟିର ଉତ୍ପତ୍ତିସ୍ଥଳ ହେଉଛି ଶ୍ୱାସନଳୀ ଓ ବାମ ବ୍ରୋଙ୍କସର ମିଳନ ସନ୍ଧିରେ। ଅପରେସନ୍ କଲେ ଟେବୁଲ ଉପରେ ସେ ଶେଷନିଃଶ୍ୱାସ ତ୍ୟାଗ କରିବାର ସମ୍ଭାବନା ଥିବାରୁ ଅପରେସନ୍ ନ କରିବାକୁ ସ୍ଥିର କଲେ। ଦୁଇ ମାସ ଚିକିତ୍ସା ପରେ ତାଙ୍କ ପରାମର୍ଶ ଅନୁସାରେ ସେ ଓଡ଼ିଶା ଫେରି ଆସିଲା। କିନ୍ତୁ ଦୁର୍ଭାଗ୍ୟକୁ ମାତ୍ର ଏକ ମାସ ପରେ ଟ୍ୟୁମରଟି ହଠାତ୍ ବଢ଼ି ଛୋଟ ଫୁଟବଲ୍ ଆକାର ଧାରଣ କଲା। କଳିଙ୍ଗ ହସ୍‌ପିଟାଲରେ ତାକୁ ୧୫ ଦିନ ଚିକିତ୍ସା ପାଇଁ ରଖାଗଲା। ଶେଷରେ ଫେବୃୟାରୀ ୧୧ ତାରିଖ ଦିନ ସେ ଆମର ସୁଖର ସଂସାରକୁ ଭସାଇ ଦେଇ ଚାଲିଗଲା ଆରପାରିକୁ। ଆମେ ଦୁଇଜଣ ପିଲାଙ୍କୁ ସମ୍ଭାଳିବୁ ନା ପୁଅକୁ ସମ୍ଭାଳିବୁ। ଶିଖା ଥିଲା, ଆମ ପରିବାର ବଗିଚାର ଗୋଲାପ ଫୁଲ। ସେ ଦେଖିବାକୁ ଯେପରି ସୁନ୍ଦର ଗୁଣ ମଧ୍ୟ ସେହିପରି। କାହାରିକୁ ପଦିଏ କଟୁକଥା କହିବା କେହି ଶୁଣି ନାହାନ୍ତି। ତାର ସାନପୁଅଟି ଅବିକଳ ତା ଭଳି, ତାକୁ ଦେଖି ଅବଶ୍ୟ କିଛି ଅଂଶରେ ତାର ଅଭାବ ସହି ଯାଉଛୁ। ତା ଘର ବାପା ମା'ଙ୍କ ଅବସ୍ଥା କଥା ବର୍ଣ୍ଣନାତୀତ। ସେ ଥିଲା ବାପା ମାଙ୍କର ଏକମାତ୍ର କନ୍ୟା। ଦୁଇ ଭାଇଙ୍କ ପରେ ତାର ଜନ୍ମ। ତେଣୁ ସେ ଥିଲା ବାପା, ମା ଓ ଭାଇମାନଙ୍କର ଅତି ଆଦରଣୀୟା। ଦିଅର ଓ ନଣନ୍ଦଙ୍କର ଆଦରର ଭାଉଜ। ଭାଣିଜୀ ଯାହାର ବୟସ ସେତେବେଳକୁ ୮/୯ ବର୍ଷ ସେ ଏ ପର୍ଯ୍ୟନ୍ତ ଶିଖା ମାଇଁଙ୍କୁ ଝୁରି ହେଉଛି। ଭଣଜା ଗିଟିକୁ ବୟସ ୧୬ ବର୍ଷ। ସେ ମଧ୍ୟ ମାଇଁର ସ୍ନେହକୁ ଭୁଲିପାରନି। ଅନେକ ସମୟରେ ସେ କହେ ମୋର ଶିଖା ମାଇଁ କେତେ ଭଲ ଥିଲେ। ଆମକୁ କେତେ ଆଦର କରୁଥିଲେ ଭଗବାନ ଏତେ ନିର୍ଦ୍ଦୟ ତାଙ୍କୁ ଆମଠାରୁ ଛଡ଼ାଇ ନେଇଗଲେ। ସାନପୁଅ ଏ ପର୍ଯ୍ୟନ୍ତ କିଛି ବୁଝିପାରୁନି। କିନ୍ତୁ ତାର ବଡ଼ ପୁଅ କିଛି କିଛି ବୁଝୁଥିଲା ଓ ସେ ସବୁ ଦିନ ପାଇଁ ହଜାଉ ଥିବା ତାର ମା'କ ଭୁଲିପାରୁନି।

# ଅନ୍ତିମ ସଂଗ୍ରାମ

## ୧. ପ୍ରଥମ ମହାସମର

ଅବସର ଗ୍ରହଣ ପରେ WAPCOS କାମ ଓ ଟାସ୍କ ଫୋର୍ସରେ ବହୁତ ବ୍ୟସ୍ତ ରହିବା ସତ୍ତ୍ୱେ ଦୁଇଟି କେଶ୍ ପାଇଁ ପ୍ରସ୍ତୁତ ହେବାରେ ଲାଗିଥିଲି । ପ୍ରଥମ କେଶ୍‌ଟି ହେଉଛି ଭିଜିଲାନ୍ସ କରିଥିବା ଆୟ ବହିର୍ଭୂତ ସମ୍ପତ୍ତି । ଭିଜିଲେନସ୍ ଡ଼ି.ଏସ.ପି.ଙ୍କର ପ୍ରଥମ ନଜର ପଡ଼ିଲା ୧୯୬୪ରୁ ୧୯୬୮ ମଧ୍ୟରେ ତିଆରି ହୋଇଥିବା ସହିଦ ନଗରରେ ୬୯୭ ପ୍ଲଟରେ ଥିବା ଘର ଉପରେ । ମୋର ଉପସ୍ଥିତିରେ ଘରର ମାପ ନିଆଗଲା । ଘର ନିର୍ମାଣ ବର୍ଷ ଜାଣିବା ପାଇଁ ଆବଶ୍ୟକ ତଥ୍ୟ ଯଥା ଇଲେକ୍ଟ୍ରି ବିଲ୍, ପାଣି ବିଲ୍, ହୋଲଡ଼ିଂ ଟେକ୍ସ ଭଡ଼ା ଲାଗିଥିବା ରସିଦ ଓ ପାଶ୍‌ବୁକ୍ ତଥା ଇନ୍‌କମ୍ ଟ୍ୟାକ୍ସ କାଗଜ ଯୋଗାଇ ଦିଆଗଲା । କିନ୍ତୁ ସବୁ ତଥ୍ୟ ଗୋଟିଏ ଆଡ଼େ ଡି.ଏସ.ପି. ମତ ଦେଲେ ଯେ ପ୍ରଥମ ତାଲା ୧୯୬୫ ମସିହାରେ ତିଆରି ୨ୟ ତାହାର ଅଧା ଅଂଶ ୧୯୬୯ ରେ ତିଆରି ଓ ବାକି ଅଂଶ ୧୯୮୬ ମସିହାରେ ତିଆରି । ମୁଁ ଏ ଖବର ପାଇ ତାଙ୍କୁ ପଚାରିବାରୁ ସେ କହିଲେ ମୁଁ କ'ଣ କରିବି ? ଉପରୁ ନିର୍ଦ୍ଦେଶ, ଘରର ମୂଲ୍ୟାଙ୍କନ ହେଲା ୨ ଲକ୍ଷ ୮୨ ହଜାର ଟଙ୍କା । ଏହା ଶୁଣି ମୁଁ ଭିଜିଲାନସ୍ ଆଇ.ଜି ଙ୍କୁ ଦେଖା କରି ପ୍ରଶ୍ନ କଲି ମୋର ଘରର ଉପରତାଲାରୁ ଭଡ଼ା ଇନ୍‌କମ୍ ଟେକ୍ସ ରିଟର୍ଣ୍ଣ ଓ ଭାଉଚର ଅନୁସାରେ ୧୯୬୮ରୁ ହିସାବ ହୋଇଥିବା ବେଳେ ଘରର ନିର୍ମାଣ ବର୍ଷ ୧୯୮୭ କିପରି ହେବ ? ମୋତେ କୌଣସି ଅଫିସିଆଲ୍ ରେକର୍ଡ଼ ମାଗିବାରୁ ୧୯୭୮ ମସିହାରେ P.W.D କରିଥିବା ଭେଲୁଏସନ୍ ବିଷୟ ଦର୍ଶାଇବାରୁ ସେ ଡି.ଏସ.ପି.ଙ୍କୁ ନିର୍ଦ୍ଦେଶ ଦେଲେ ଯେ କେପିଟାଲ କନଷ୍ଟ୍ରକସନ୍ ଡିଭିଜନର ଫାଇଲ୍ ସିଜ୍ କରି ପୁନଃ ଭେଲୁଏସନ୍ କର । ସେହି ଅନୁସାରେ ଭିଜିଲାନ୍ସ ଅଧିକ୍ଷଣଯନ୍ତ୍ରୀ. ଡ଼ି.ଏସ.ପି. ଓ ମୋର ଉପସ୍ଥିତିରେ ପୁନଃ ଭେଲୁଏସନ୍ କଲେ ଓ ଘରର ଭେଲୁଏସନ୍ ୨ ଲକ୍ଷ ୮୨ ହଜାରରୁ ଏକ ଲକ୍ଷ ୭୦ ହଜାରକୁ କମି ଆସିଲା । କିନ୍ତୁ ମୋ ପଛରେ ଲାଗିଥିବା ମନ୍ତ୍ରୀ ଭାବିଲେ ମୁରଗା ଖସିଗଲା ଓ କୌଣସି ଉପାୟରେ ଏହି ଭେଲୁଏସନ୍ ବଢାଇ ବାକୁ ପଡ଼ିବ । ତତ୍‌କାଳିନ ଭିଜିଲେନ୍ସ ଏଡ଼ିସିନାଲ୍ ଏସ.ପି. ଗୋଟିଏ ଅଭିନବ

ଉପାୟ ବାହାର କଲେ। ତଳ ଓ ଉପର ତାଲାର ୨ ବଖରା ଘର, ପାଇଖାନା ଓ ରୋଷାଇ ଘରକୁ ମୁଁ ନିଜ ପାଇଁ ରଖିଥିଲି। ଦୂର ଦୂରାନ୍ତ ସ୍ଥାନମାନଙ୍କରୁ ଭୁବନେଶ୍ୱର ଆସିଲେ ମୁଁ ସେଠାରେ ରହେଁ। ଏହି ଅଂଶ ଭଡ଼ା ଲାଗି ନ ଥିବାରୁ ତାକୁ ୧୯୮୭ ମସିହାରେ ତିଆରି ଦେଖାଇବା ଫଳରେ ତାର ମୂଲ୍ୟ ୧୦ ଗୁଣ ବଢ଼ି ଗଲା। ଘରର ଦାମ୍ ୭୦ ହଜାର ଟଙ୍କା ବଢ଼ିଗଲା। ପରବର୍ତ୍ତୀ କାଳରେ ମାନ୍ୟବର ଭିଜିଲାନ୍ସ ଜଜ ଏହା ଉପରେ ଭିଜିଲେନ୍ସର ଏଭଳି ମନମୁଖୀ ଆକଳନ ଉପରେ ଏକ କଟୁ ମନ୍ତବ୍ୟ ଦେଇଛନ୍ତି।

୧୯୫୯ ମସିହାରେ ବିଭାଘର ସମୟରେ ଶ୍ରୀମତୀ ୪୦୦୦ ଟଙ୍କା ଯୌତୁକ ଆକାରରେ ଆଣିଥିଲେ। ଅଳ୍ପଦିନ ଆଗରୁ ଜମିଦାରୀ ଉଚ୍ଛେଦ ହୋଇଥାଏ। ଜମିଦାରମାନେ କିଛି ଜମି ଘରୋଇ ଠାକୁର ଘରର ହଳିଆଙ୍କ ନାମରେ ରଖି ଦେଇଥାନ୍ତି। ଏହି ଜମିକୁ ସେମାନେ ଖୁବ୍ କମ୍ ଦାମରେ ବିକ୍ରି କରି ଦେଉଥାଆନ୍ତି। ବାପା କହିଲେ ଟଙ୍କାକୁ ଅନ୍ୟ ଆଡ଼େ ଖର୍ଚ୍ଚ ନ କରି ଇରମ ଓ ଅନନ୍ତପୁର ଜମିଦାରଙ୍କ ଠାରୁ ସାଢ଼େ ଆଠ ଏକର ଜମି କିଣିଦେଲେ ଘରର ପରିସ୍ଥିତି ସୁଧୁରି ଯିବ। ପରବର୍ତ୍ତୀ କାଳରେ ଏହା ଏକ ଆୟର ପନ୍ଥା ପାଲଟିଯିବ। ମୁଁ କିନ୍ତୁ ଭାବିଲି ନୂଆ ଚାକିରୀ। କିଏ କାଲେ ଭାବିବ ଏତେ ଅଳ୍ପଦାମରେ ଜମି କିପରି କିଣାଗଲା ? ସେଥିପାଇଁ ୧୯୬୦ ପ୍ରୋପଟି ଷ୍ଟେଟ୍‌ମେଣ୍ଟରେ ଏ ଜମିରୁ ମୋଟ ୧ ଏକର ଉନ୍ନତ ଓ ବାକି ସବୁ ଅନୁନ୍ନତ ଜମି ବୋଲି ଦେଖାଇ ଦେଲି। ତା ବ୍ୟତୀତ ପରବର୍ତ୍ତୀ ସମୟରେ ବାପା ୩ ଭାଇଙ୍କର ରୋଜଗାରରେ ୧୨ ଏକର ଜମି ଯେଉଁଥିରୁ ମୋର ଭାଗ ୪ ଏକର କିଣିଥିଲେ। କିନ୍ତୁ ତା'ର ପଟା କରାଇ ପାରି ନଥିଲେ। ତେଣୁ ଦୀର୍ଘ ସାଢ଼େ ୧୨ ଏକର ଜମିରୁ ସାଢ଼େ ୧୧ ଏକର ଜମିର ୩୦ ବର୍ଷର ଆୟକୁ ମୋର ଆୟ ପରିସରଭୁକ୍ତ କଲେ ନାହିଁ। ସାଢ଼େ ବାର ଏକର ଜମିର ୩୦ ବର୍ଷର ଆୟ ଦେଖାଇଲେ ୮୩ ହଜାର ଟଙ୍କା। କହିବା ବାହୁଲ୍ୟ ଯେ ପରବର୍ତ୍ତୀ କାଳରେ ସରକାରଙ୍କ ରେଟ୍‌ରେ ସାଢ଼େ ୪ ଲକ୍ଷ ବୋଲି ପ୍ରମାଣିତ ହେଲା। ମାନ୍ୟବର ଜଜ୍ ଏ ବିଷୟରେ କଟୁ ମନ୍ତବ୍ୟ ଦେଇ ଦର୍ଶାଇଛନ୍ତି ଯେ ଜମିର ଆୟ ROR ହିସାବରେ ହେବା କଥା। ଏହା ପ୍ରପଟି ଷ୍ଟେଟ୍‌ମେଣ୍ଟର ରେକର୍ଡ଼ ବା କୌଣସି ଆନୁମାନିକ ରେକର୍ଡ଼ ହିସାବରେ ହେବା କଥା

ନୁହେଁ। ଯେତେବେଳେ ଭାସ୍କର ଚନ୍ଦ୍ର ନାୟକଙ୍କ ପରିବାର ନାମରେ ROR ରେ ଉଲ୍ଲେଖ ଅଛି ଯେ ଜମିଗୁଡ଼ିକ ଶାରଦ -୧ କିମ୍ବା ଶାରଦ-୨ ଏଥିରୁ ଉତ୍ପନ୍ନ ଶସ୍ୟର ମୂଲ୍ୟ ହିସାବକୁ ନ ଯିବାର କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ।

୧୯୮୮ ମସିହାରେ ଇନ୍‌କମ୍ ଟେକ୍ସ ତରଫରୁ ମୋର ଚାକିରି ଜୀବନର ବାର୍ଷିକ ଆୟବ୍ୟୟର ଏକ ହିସାବ ମଗାଯାଇଥିଲା। ମୁଁ ମୋ ୩୦ ବର୍ଷ ଚାକିରିର ଆୟବ୍ୟୟ ହିସାବର ଏକ ବିସ୍ତୃତ ବିବରଣୀ ଏଥିରେ ଉପସ୍ଥାପନ କରିଥିଲି। ଇନ୍‌କମ୍ ଟେକ୍ସ ଡିପାର୍ଟମେଣ୍ଟ ଏ ବିଷୟରେ ଅନୁସନ୍ଧାନ କରି ସନ୍ତୁଷ୍ଟ ହୋଇ କେଶଟିକୁ ଡ୍ରପ୍ କରି ଦେଇଥିଲେ। ଏହି ରିପୋର୍ଟ ଭିଜିଲେନ୍ସ ଡ଼ି.ଏସ.ପି. ସଂଗ୍ରହ କରିଥିଲେ ମଧ ଏହାକୁ ବିଚାରକୁ ନ ନେଇ ତାଙ୍କର ନିଜର ହିସାବ ଅନୁସାରେ କୋର୍ଟକୁ କେଶ୍ ଦେଇଦେଲେ। ଚାକିରୀ ଜୀବନରେ ଭିନ୍ନ ଭିନ୍ନ ସମୟରେ ଦରମା ଓ ଘରଭଡ଼ାର ଟଙ୍କା ମୁଁ ଫିକ୍ସଡ଼୍ ଡ଼ିପୋଜିଟ୍‌ରେ ରଖିଥିଲି। ତେଣୁ ସେଥିରୁ ପାଇଥିବା ସୁଧର ହିସାବ ମୋର ଆୟକୁ ଆସିବା କଥା। ଏହା ଇନ୍‌କମ୍ ଟେକ୍ସ ଡିପାର୍ଟମେଣ୍ଟକୁ ଦେଖାଯାଇଥିବା Cash Flow ରେ ରହିଛି। କିନ୍ତୁ ଭିଜିଲେନ୍ସ ଏଥିରୁ ୮୫ ହଜାର ଟଙ୍କା ହିସାବକୁ ନେଇ ନଥିଲେ। ବ୍ୟାଙ୍କଗୁଡ଼ିକର ରିପୋର୍ଟ ଅନୁସାରେ ଏହାକୁ କୋର୍ଟ ଗ୍ରହଣ କଲା। ପୋଖରୀରୁ ମିଳିଥିବା ମାଛର ଆୟ, ଗାଈ ଓ ଘରେ ଥିବା କ୍ଷୀରରୁ ଆୟ ମଧ କୋର୍ଟ ଗ୍ରହଣ କଲା।

ଘର ସର୍ଚ୍ଚ ବେଳେ ଲୁଗା, କୋର୍ଟ, ଉଲେନ୍ ସୁଏଟର ଓ କମ୍ବଳ ଲୁଗାଜାତୀୟ ପଦାର୍ଥର ଅନ୍ତର୍ଭୁକ୍ତ ହେବା କଥା। ନେସନାଲ୍ ସେମ୍ପଲ୍ ସର୍ଭେ ଅନୁସାରେ ଖାଦ୍ୟ, ବସ୍ତ୍ର ଫୁଏଲ ଓ ଯୋତାର ମୂଲ୍ୟ ନିରୁପଣ ହେବା ସମୟରେ ଭିଜିଲେନ୍ସ ଗରମ ଲୁଗା ପାଇଁ ଅଲଗା ହିସାବ କରି ୧୧ ହଜାର ଟଙ୍କାର ଆର୍ଥିକ ଖର୍ଚ୍ଚ ଆକଳନ କରିଛି। ଜଣେ ଅଫିସରଙ୍କ ଆୟ ଅନୁସାରେ ଲୁଗାର ଆକଳନ ବେଳେ ଗରମ ଲୁଗା କିପରି ବର୍ହିଭୂତ ହେବ ତାହା ପାଠକ ମାନେ ବିଚାର କରନ୍ତୁ।

ଜଣେ ଅଫିସର୍, ଗାଡ଼ି କିଣି ଟୁର୍ କରିବ। ମିଳୁଥିବା ଟଙ୍କାରୁ ତାକୁ କୌଣସି ଆୟ ଦିଆଯିବ ନାହିଁ। କିନ୍ତୁ ଗାଡ଼ିର ମରାମତି ଖର୍ଚ୍ଚ ବାବଦ ଟଙ୍କା ତାକୁ ହାତରୁ ଦେବାକୁ ପଡ଼ିବ। ଏହା ଭିଜିଲାନ୍ସ ବିଭାଗର ଏକ ଅଦ୍ଭୁତ ବିଚାର।

ନୂତନ ସରକାର ଆସିବା ମାତ୍ରେ ଭିଜିଲେନ୍ସ କେଶଗୁଡ଼ିକର ବିଚାର ପାଇଁ ସ୍ପେଶାଲ୍ କୋର୍ଟ ଆଇନ ପ୍ରଣୟନ ହେଲା । ହାଇକୋର୍ଟର ଜଣେ ବିଚାରପତି ଏହାର ବିଚାର କରିବେ, ବଡ଼ ବଡ଼ ଅଫିସର୍ ଓ ମନ୍ତ୍ରୀଙ୍କ କେଶ୍ ସେ ବିଚାର କରିବେ । ଆଉ ଜଣେ ଜଜ୍ । ଭିଜିଲେନସ୍‌ର ରିପୋର୍ଟ ଅନୁସାରେ ଯାହାର ଯେତେ ଟଙ୍କା ଆୟ ବର୍ହିଭୂତ ହୋଇଥିବ, ସେତିକି ମୂଲ୍ୟର ସମ୍ପତ୍ତି ବିଶେଷ କରି ଘର ଓ ଜମିକୁ ସରକାର କନଫିସ୍‌କେସନ୍ ନିୟମ ଅନୁସାରେ ନିଜ ଦଖଲକୁ ନେଇ, ନିଲାମ କରିଦେବେ । କେଶ୍ ଜିତଲେ ସେ ବିକ୍ରି ମୂଲ୍ୟ ଓ ଶତକଡ଼ା ୧୨ ହାରରେ ସୁଧ ପାଇବେ । ଯଦି ସେ ନିଜେ ସେ ଘରେ ରହୁଥିବେ ତେବେ ତାଙ୍କୁ ମାସିକ ଭଡ଼ା ଦେବାକୁ ପଡ଼ିବ । ଅବଶ୍ୟ ଆଜି ପର୍ଯ୍ୟନ୍ତ କୌଣସି ଗୋଟିଏ ଘର ବା ଜମି କନ୍‌ଫିକ୍‌ସେନ୍ ହୋଇନାହିଁ । ୧୯୯୫ ମସିହାରେ ଓଡ଼ିଶାର ଯେତେବେଳେ ନୂତନ ମନ୍ତ୍ରୀମଣ୍ଡଳ ଗଠନ ହେଲା ଏହି ସ୍ପେଶାଲ କୋର୍ଟ ଆଇନ୍‌କୁ ଉଠାଇ ଦିଆଗଲା । ପୁଣିଥରେ ଭିଜିଲେନ୍ସ, ଜଜଙ୍କୁ ଏହି କେଶ୍ ବିଚାର କରିବାକୁ ଦିଆଗଲା । ସେହି ଅନୁସାରେ ମୋର କେଶ୍ ମଧ୍ୟ ଭିଜିଲାନ୍ସ କୋର୍ଟ ଭୁବନେଶ୍ୱରକୁ ବିଚାର ପାଇଁ ହାଇକୋର୍ଟରୁ ଟ୍ରାନ୍ସଫର ହୋଇ ଆସିଲା । ୧୯୯୬ଠାରୁ ୨୦୦୮ ପର୍ଯ୍ୟନ୍ତ ସାକ୍ଷୀମାନଙ୍କ ବୟାନକୁ ଭିତ୍ତି କରି ୨୦୦୮ ଡିସେମ୍ବର ମାସରେ କୋର୍ଟରେ ଜଜ୍‌ମେଣ୍ଟ ବାହାରିଲା । ଭିଜିଲେନ୍ସ ରିପୋର୍ଟ ଅନୁସାରେ ମୋର ଆୟ ବହିର୍ଭୂତ ସମ୍ପତ୍ତି ୩ ଲକ୍ଷ ଟଙ୍କା କିନ୍ତୁ କୋର୍ଟ ଆଦେଶ ଅନୁସାରେ ମୋର ଆୟ ବର୍ହିଭୂତ ସମ୍ପତ୍ତି କିଛି ନାହିଁ । ବରଂ ଆୟ ବ୍ୟୟ ହିସାବ ଅନୁସାରେ ମୋର ପାଖରେ ଏକ ଲକ୍ଷ ଦଶହଜାର ଟଙ୍କା ଅଧିକ ଅଛି । ଦୀର୍ଘ ଏକ ଅଧ୍ୟାୟର ପରିସମାପ୍ତି ଘଟିଲା । ପରେ ଜଳସେଚନ ବିଭାଗ ଭିଜିଲେନ୍ସ ଡି.ଜିଙ୍କ ମତାମତ ଚାହିଁବାରୁ ସେ ଜଜ୍‌ମେଣ୍ଟଟିକୁ ତାଙ୍କର ଆଇନ ପରାମର୍ଶଦାତାଙ୍କ ମତ ନେଇ ଆଉ ଉପର କୋର୍ଟକୁ ଅପିଲ କରାଯିବ ନାହିଁ ବୋଲି ମତ ଦେଲେ । ୨୦୦୯ ମସିହା ଅକ୍ଟୋବର ମାସରେ ଏହି ଅଧ୍ୟାୟର ପରିସମାପ୍ତି ଘଟିଲା ।

୧୯୯୧ ଅକ୍ଟୋବର ମାସରେ ଚାକିରୀରୁ ଅବସର ଗ୍ରହଣ କରିଥିଲେ ହେଁ ଭିଜିଲେନ୍ସ ଡିପାର୍ଟମେଣ୍ଟର କ୍ଲିଏରେନ୍ସ ଆସି ନଥିବାରୁ ମୋତେ ପ୍ରୋଭିଜନାଲ ପେନସନ୍ ମିଳୁଥିଲା । କୋର୍ଟର ଆଦେଶ ଓ ଭିଜିଲେନ୍ସ ଡି.ଜି.ଙ୍କ ମତ ଅନୁସାରେ ମୋର ପେନସନ୍ ପ୍ରୋସେସିଂ ହୋଇ ୨୦୧୦ରେ ଫାଇନାଲ୍ ହେଲା । ଏହିପରି ଭାବରେ ୧୯୯୦

ମସିହାଠାରୁ ୨୦୧୦ ପର୍ଯ୍ୟନ୍ତ ଏକ ମହତ୍ତ୍ୱପୂର୍ଣ୍ଣ ସଂଗ୍ରାମର ପରିସମାପ୍ତି ଘଟିଲା। ଏହା ମୋର ଜୀବନର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଲଢ଼େଇ। ଏହି ଲଢ଼େଇ ପାଇଁ ପ୍ରସ୍ତୁତ କରିଥିବା ଆବଶ୍ୟକୀୟ ଡକ୍ୟୁମେଣ୍ଟ ଦେଖି ମୋର ସାଙ୍ଗମାନେ ଓ ମୋର ଓକିଲ ପ୍ରମୋଦ କୁମାର ମହାନ୍ତି ମୋର ଧୈର୍ଯ୍ୟ ଓ ସଂଗ୍ରାମୀ ମନୋଭାବକୁ ଭୁରି ଭୁରି ପ୍ରଶଂସା କରିବାକୁ ଭୁଲି ନଥିଲେ। ମୁଁ ସମସ୍ତଙ୍କୁ ଗୋଟିଏ କଥା କହେ ମୋର ଜୀବନ ଏକ ସଂଗ୍ରାମର ସମାହାର। ମୋ ପ୍ରତି ହୋଇଥିବା ଏତେ ବଡ଼ ଅନ୍ୟାୟ ବିରୁଦ୍ଧରେ ମୁଁ ରଣଭୂମିରୁ କିପରି ପଛଘୁଞ୍ଚା ଦେଇଥାନ୍ତି ? ତା ହୋଇଥିଲେ ମୋର ସଂଗ୍ରାମୀ ଜୀବନର ଏକ ଅଧ୍ୟାୟ ଅପୂର୍ଣ୍ଣ ରହି ଯାଉଥାନ୍ତା।

## ୨. ଦ୍ୱିତୀୟ ମହାସମର

ଏହା ଚାକିରିର ଶେଷ ଭାଗରେ ହୋଇଥିବା ମୋ ପ୍ରତି ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ । ୧୯୫୮ ମସିହାରେ ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିଶନ ସୁପାରିଶ ମତେ ମୁଁ ପ୍ରଥମ ସ୍ଥାନ ଅଧିକାର କରି, ୧୯୮୭ ମସିହା ପର୍ଯ୍ୟନ୍ତ ଆମ ବେଚର ଇଞ୍ଜିନିୟରମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନରେ ବିଭିନ୍ନ ପଦ ପଦବୀରେ ରହି ଆସିଛି। ୧୯୮୬ରେ ମୁଖ୍ୟଯନ୍ତ୍ରୀ ପଦ ପାଇଁ ୪ଟି ଭେକେନ୍‌ସି ହେଲା। ସେଥିପାଇଁ ଡିପିସି: ୧) ଗିରିଜା ଶଙ୍କର ପାଣିଗ୍ରାହୀ (୧୯୫୫), ୨) ବିଶ୍ୱନାଥ ନାୟକ, (୧୯୫୬) ୩) ଭାଗବତ ସାହୁ, ୪) ତପନ କୁମାର ବୋଷ (୧୯୫୭), ୫) ବେଣୁଧର ସେନାପତି (୧୯୫୭), ୬) ବି.ଏସ.ଏନ. ମୂର୍ତ୍ତି (୧୯୫୭), ୭) ଭାସ୍କର ଚନ୍ଦ୍ର ନାୟକ (୧୯୫୮), ୮) ଗୋପୀନାଥ ପାଢ଼ୀ, (୧୯୫୮), ୯) ପ୍ରାଣକୃଷ୍ଣ ଆଚାର୍ଯ୍ୟ, (୧୯୫୮), ୧୦) ବାମଦେବ ମହାପାତ୍ର, (୧୯୫୮), ୧୧) ଅଜିତ କୁମାର ରାୟ, (୧୯୫୮), ୧୨) ବିଷ୍ଣୁ ପ୍ରସାଦ ଦାସ, (୧୯୫୯), ୧୩) ଅକ୍ଷୟ ବନ୍ଧୁ ପଟ୍ଟନାୟକ, (୧୯୫୯), ୧୪) ରମେଶ ଚନ୍ଦ୍ର ରଥ, (୧୯୫୯), ୧୫) କୃଷ୍ଣ ମୋହନ ପଟ୍ଟନାୟକ, (୧୯୫୯), ୧୬) ଜଗନ୍ନାଥ ତ୍ରିପାଠୀ (୧୯୬୦)। ଏହି ଷୋହଳ ଜଣଙ୍କ ନାମ ସୁପାରିଶ କଲେ। ସେ ତାଲିକାରେ ମୋର କ୍ରମିକ ନମ୍ବର ଥିଲା ୭ (ସାତ)। ୧୯୮୭ ମସିହା ଜୁଲାଇ ମାସରେ ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିଶନଙ୍କର ସୁପାରିଶ ଆସିଲା। ୧) ଗିରିଜା ଶଙ୍କର ପାଣିଗ୍ରାହୀ (୧୯୫୫ ବେଚ୍), ୨) ବିଶ୍ୱନାଥ

ନାୟକ, (୧୯୫୬ ବ୍ୟାଚ), ୩) ତପନ ବୋଷ (୧୯୫୭ ବେଚ), ୪) ଭାସ୍କର ଚନ୍ଦ୍ର ନାୟକ (୧୯୫୮ ବେଚ) ମୁଖ୍ୟଯନ୍ତ୍ରୀ ପଦ ପାଇଁ ସୁପାରିଶ କରାଗଲା। ଜଳସେଚନ ବିଭାଗ ପଠାଇଥିବା ତାଲିକାରେ ଥିବା ଭାଗବତ ସାହୁ (୧୯୫୬ ବେଚ୍) ବେଣୁଧର ସେନାପତି (୧୯୫୭ ବେଚ୍) ଓ ବି.ଏସ. ଏନ. ମୂର୍ତ୍ତି (୧୯୫୭ ବେଚ୍)ଙ୍କ ନାମ ନାହିଁ। ଖାଲି ସେତିକି ନୁହେଁ। ଉପରୋକ୍ତ ୩ ଜଣ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ବର୍ତ୍ତମାନ ପାଇଁ ମୁଖ୍ୟଯନ୍ତ୍ରୀ ହେବା ପାଇଁ ଯୋଗ୍ୟ ନୁହଁନ୍ତି ବୋଲି ପବ୍ଲିକ୍ ସର୍ଭିସ୍ କମିଶନ ମତ ଦେଲେ। କିନ୍ତୁ ୧୯୮୭ ଜୁଲାଇ ବେଳକୁ ବେଣୁଧର ସେନାପତିଙ୍କୁ ଏଡ଼୍‌ହକ୍ ଚିଫ୍ ଇଞ୍ଜିନିୟର ଭାବେ ପ୍ରମୋଶନ ଦିଆସରି ଥାଏ। ଏଭଳି ପରିସ୍ଥିତିରେ ସରକାରଙ୍କ ପାଇଁ ୨ଟି ପଥ ଉନ୍ମୁକ୍ତ। ପ୍ରଥମଟି ହେଉଛି ବେଣୁଧର ସେନାପତିଙ୍କୁ ତଳ ପାହ୍ୟା ସୁପରିଟେଣ୍ଡିଂ ଇଞ୍ଜିନିୟର ପଦକୁ ଖସାଇ ଦେଇ ମୋତେ ଚିଫ୍ ଇଞ୍ଜିନିୟର ପଦବୀକୁ ପ୍ରମୋଶନ ଦେବା, ୨ୟ ପନ୍ଥା ହେଉଛି କେବିଟେନ୍ ଓ ଆସେମ୍ବ୍ଲିର ଅନୁମୋଦନ ନେଇ ତାକୁ ଚିଫ୍‌ଇଞ୍ଜିନିୟର କାର୍ଯ୍ୟ କରିବାକୁ ଅନୁମତି ଦେବା। ବେଣୁଧର ସେନାପତି ମୁଖ୍ୟମନ୍ତ୍ରୀ ହେବା ପାଇଁ ଅନୁପଯୁକ୍ତ ବୋଲି ପବ୍ଲିକ୍ ସର୍ଭିସ୍ କମିଶନ ଦେଇଥିବା ମନ୍ତବ୍ୟ ସରକାରଙ୍କୁ ଏକ ଅଡୁଆ ପରିସ୍ଥିତିରେ ପକାଇଲା। ଏଣେ ବେଣୁଧର ସେନାପତି ଭୁବନେଶ୍ୱରରେ ଅବସ୍ଥାନ କରୁଥିବାରୁ ବିଭିନ୍ନ ଉପାୟରେ ସରକାରଙ୍କ ଉପରେ ଚାପ ପକାଉଥାନ୍ତି। ମୁଁ ସେତେବେଳେ ସୁବର୍ଣ୍ଣରେଖା ପ୍ରୋଜେକ୍ଟରେ କାମ କରୁଥାଏ। କାର୍ଯ୍ୟବ୍ୟସ୍ତତା ଯୋଗୁଁ ବାରମ୍ବାର ଭୁବନେଶ୍ୱର ଆସିବା ମୋ ପକ୍ଷେ ସମ୍ଭବ ହେଉ ନଥାଏ। ଏହି ସମୟରେ ଇରିଗେସନ୍‌ରେ ଥିବା ଡେପୁଟି ସେକ୍ରେଟେରୀ ଏକ ଅଭିନବ ଉପାୟ ବାହାର କଲେ। ପବ୍ଲିକ୍ ସର୍ଭିସ୍ କମିଶନଙ୍କ କଟୁମନ୍ତବ୍ୟ ପରେ ବେଣୁଧର ସେନାପତିଙ୍କୁ ଚିଫ୍ ଇଞ୍ଜିନିୟର ପଦବୀରେ ରଖିବାକୁ ହେଲେ ମନ୍ତ୍ରୀମଣ୍ଡଳର ସୁପାରିଶ ପାଇଁ ପଠାଇଲେ ପୁରା କେବିନେଟ୍‌ର ମତ ମିଳିବା ସମ୍ଭବ ନୁହେଁ ଭାବି, ଜେନେରେଲ୍ ଏଡ଼୍‌ମିନ୍‌ଷ୍ଟ୍ରେସନ୍ ବିଭାଗର ମତାମତ ଦେବାକୁ ଫାଇଲଟିକୁ ପଠାଇ ଦେଲେ। ସେତେବେଳେ ଜଳସେଚନ ବିଭାଗର ସେକ୍ରେଟେରୀ ଥାଆନ୍ତି ଦକ୍ଷିଣ ଭାରତର ଜଣେ ଆଇ.ଏସ୍ ଅଫିସର। ବି.ଏସ.ଏନ. ମୂର୍ତ୍ତି ହେଉଛନ୍ତି ଦକ୍ଷିଣ ଭାରତର ଲୋକ। ତାକୁ ମଧ୍ୟ ଚିଫ୍‌ଇଞ୍ଜିନିୟର ପଦବୀ ପାଇଁ ଅନୁପଯୁକ୍ତ ବୋଲି ପବ୍ଲିକ୍ ସର୍ଭିସ୍ କମିଶନ ମତ

ଦେଇସାରିଥାନ୍ତି । ଛଡ଼ା ତେଲକୁ ମେଣ୍ଢାବାଳ । ବେଣୁଧର ସେନାପତି ଓ ଡେପୁଟି ସେକ୍ରେଟୋରୀଙ୍କ ପ୍ରଚେଷ୍ଟା ଓ ବି.ଏସ.ଏନ. ମୂର୍ତ୍ତି ପ୍ରତି ସେକ୍ରେଟେରୀଙ୍କ ଅନୁକମ୍ପା । ମୋ ବିରୁଦ୍ଧରେ ଏକ ପ୍ରାଚୀର ସୃଷ୍ଟି କଲା । ଜେନେରାଲ ଏଡ଼ମିଡ଼ଷ୍ଟ୍ରେସନ୍ Rules of Business ରେ ଥିବା Rule-3 ର ଉପଯୁକ୍ତ ବ୍ୟାଖ୍ୟା ନ କରି ପବ୍ଲିକ୍ ସଭିସେସ୍ କମିଶନଙ୍କ ସୁପାରିଶକୁ ପୁନର୍ବିଚାର କରିବାକୁ ଲେଖିଦେଲେ ।

ଡେପୁଟି ସେକ୍ରେଟେରୀଙ୍କୁ ମିଳିଗଲା ଗୋଟିଏ ଅସ୍ତ୍ର । ସେ ଗୋଟି ଚଳାଇବା ଆରମ୍ଭ କରିଦେଲେ । ବେଣୁଧର ସେନାପତି ଓ ବି.ଏସ.ଏନ. ମୂର୍ତ୍ତୀଙ୍କ ମେମୋରିଏଲ୍ ଯାହାକି ନିୟମ ଅନୁସାରେ ପବ୍ଲିକ୍ ସର୍ଭିସ୍ କମିଶନଙ୍କ ସୁପାରିଶ ପରେ ଗ୍ରହଣଯୋଗ୍ୟ ନୁହେଁ ତାକୁ ଗ୍ରହଣ କରି ଦୁଇଜଣଙ୍କ ଗୁପ୍ତ ଚରିତ୍ର ପଞ୍ଜରେ ଥିବା ଏଡ଼ଭାରସ୍ ରିମାର୍କକୁ ଏକ୍ସପଞ୍ଜ କରିବାକୁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଲେ । ଆଗରୁ ଏହା ଥରେ ରିଜେକ୍ଟ ହୋଇଥିଲା । ତାଙ୍କର ଚାକିରୀ ଆହୁରି ୫ ବର୍ଷ ଅଛି ଓ କମ୍ପାସୋନେଟ୍ ଗ୍ରାଉଣ୍ଡରେ ଏହାକୁ ଏକ୍ସପଞ୍ଜ କରାଯାଉ ବୋଲି ସୁପାରିଶ ପଠାଇଲେ । ଏତକ କରାଇଦେବା ପରେ ବେଣୁଧର ସେନାପତିଙ୍କୁ ଆଉ ୫ ଜଣଙ୍କ ସହିତ ଆଡ଼୍‌ହକ୍ ପ୍ରମୋଶନ ସହିତ ମୋର ରେଗୁଲାର ପ୍ରମୋଶନର ଅର୍ଡ଼ର ସହିତ ୧୯୮୮ ଜାନୁୟାରୀ ମାସରେ ଇସ୍ୟୁ କରାଇଲା, ତା'ପରେ ଯେତେବେଳେ ଅନ୍ୟ ୫ ଜଣଙ୍କ ସହ ବେଣୁଧର ସେନାପତି ଓ ବି.ଏସ.ଏନ. ମୂର୍ତ୍ତିଙ୍କ ସୁପାରିଶ ୧୯୮୮ ଅଗଷ୍ଟ ମାସରେ ଆସିଲା ସେତେବେଳେ ତାଙ୍କୁ ରେଗୁଲାର ପ୍ରମୋଶନ ଦିଆଗଲା । ମୁଁ ଭାବିଲି ମୋର ୧୯୮୭ ଡିସେମ୍ବର ମାସରୁ ରେଗୁଲାର ପ୍ରମୋଶନ ହୋଇଛି ଓ ବେଣୁଧର ସେନାପତି ଓ ବି.ଏସ.ଏନ. ମୂର୍ତ୍ତିଙ୍କର ୧୯୮୮ ଅଗଷ୍ଟ ମାସରେ ରେଗୁଲାର ପ୍ରମୋଶନ ହୋଇଛି ସେମାନେ କିପରି ମୋ ଠାରୁ ସିନିୟର ହେବେ ? ଏହି ସମୟରେ ଡେପୁଟି ସେକ୍ରେଟାରି ତାଙ୍କର ୨ୟ ଗୋଟି ଚାଳନା ଆରମ୍ଭ କଲେ । ଜଣେ ଅଫିସ୍‌ର ଯଦି ଆଗରୁ ଆଡ଼୍‌ହକ୍ ପ୍ରମୋଶନ୍ ପାଇଥାନ୍ତି ଓ ତାହା ଯଦି ପବ୍ଲିକ୍ ସର୍ଭିସ୍ କମିଶନଙ୍କ ସୁପାରିଶ ଆସିବା ପର୍ଯ୍ୟନ୍ତ ବଳବତ୍ତର ଥାଏ ତେବେ ତାଙ୍କର ସିନିଅରଟି ରହିବ । କିନ୍ତୁ ଏଥିରେ ଗୋଟିଏ ଧାଡ଼ି ଲେଖାକୁ ସେ ଜାଣି ଜାଣି ଚାପିଦେଲେ । ସିନିୟରଟି ରହିବ ଯଦି ଏହା ନିୟମ ଅନୁସାରେ ହୋଇଥାଏ । ଏହି କାର୍ଯ୍ୟ ଯେ ବେନିୟମ ଭାବେ ହୋଇଛି ଏହା ସେ ଲେଖିଲେ

ନାହିଁ। ଆହୁରି ମଧ ଭାରତର ସମ୍ବିଧାନରେ ଲେଖାଅଛି, ପବ୍ଲିକ୍ ସର୍ଭିସ୍ କମିଶନ ନିଯୁକ୍ତି ଓ ପଦୋନ୍ନତି ପାଇଁ ପରୀକ୍ଷା ସାକ୍ଷାତ୍କାର ଓ ଗୁପ୍ତ ଚରିତ୍ର ପତ୍ରକୁ ପରୀକ୍ଷା କରିବ ଓ ସେହି ଅନୁସାରେ ପଦୋନ୍ନତି ବା ନିଯୁକ୍ତି ପାଇଁ ସରକାରଙ୍କୁ ସୁପାରିଶ କରିବ। ଏହିଠାରେ ପବ୍ଲିକ୍ ସର୍ଭିସ୍ କମିଶନଙ୍କ କାର୍ଯ୍ୟ ଶେଷ। ସିନିୟରଟି ସ୍ଥିର କରିବା ପାଇଁ ସମ୍ବିଧାନ ପବ୍ଲିକ୍ ସର୍ଭିସ କମିଶନଙ୍କୁ କ୍ଷମତା ଦେଇନାହିଁ। କିନ୍ତୁ ଡେପୁଟି ସେକ୍ରେଟେରୀଙ୍କ ଚକ୍ରାନ୍ତ ଫଳରେ ପବ୍ଲିକ୍ ସର୍ଭିସ କମିଶନଙ୍କୁ ଗ୍ରେଡ଼େସନ୍ ଲିଷ୍ଟ କରିବାକୁ ଯେଉଁ ସୁପାରିଶ ଗଲା ଓ ତାଙ୍କ ଠାରୁ ଯେଉଁ ଗ୍ରେଡ଼େସନ୍ ତାଲିକା ଆସିଲା ସେଥିରେ ମୋତେ ବେଣୁଧର ସେନାପତି ଓ ବି.ଏସ.ଏନ. ମୂର୍ତ୍ତିଙ୍କ ତଳ ପାହ୍ୟା ଦିଆଗଲା। ପରେ ଶୁଣିଲି ଭାରତ ସରକାରଙ୍କ ଜଣେ ଦକ୍ଷିଣଭାରତୀୟ ଉଚ୍ଚପଦସ୍ଥ ଅଫିସର ୩ ଦିନ ପାଇଁ ଓଡ଼ିଶା ଗସ୍ତରେ ଆସି ଏ କାର୍ଯ୍ୟ ପାଇ ପବ୍ଲିକ୍ ସର୍ଭିସ୍ କମିଶନ ଉପରେ ଚାପ ପକାଇ ଗ୍ରେଡ଼େସନ୍ ତାଲିକା କରାଇଲେ। ଏଭଳି ଏକ ଅନ୍ୟାୟ ଉପାୟରେ ଓଡ଼ିଶା ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରି ବେଣୁଧର ସେନାପତି ଓ ବି.ଏସ.ଏନ. ମୂର୍ତ୍ତି ମୁଖ୍ୟଯନ୍ତ୍ରୀ ପଦ ପାଇ ପବ୍ଲିକ୍ ସର୍ଭିସ୍ କମିଶନଙ୍କ ଦ୍ୱାରା ଅନୁପଯୁକ୍ତ ବ୍ୟକ୍ତିଙ୍କୁ ମୋ ଉପରେ ରଖାଗଲା। ସେହି ଗ୍ରେଡ଼େସନ୍ ତାଲିକା ଅନୁସାରେ ପରବର୍ତ୍ତୀ କାଳରେ ବେଣୁଧର ସେନାପତି ଓ ବି.ଏସ.ଏନ. ମୂର୍ତ୍ତି ଜଳସେଚନ ବିଭାଗରେ ସର୍ବୋଚ୍ଚ ଯନ୍ତ୍ରୀ ହେବାର ସୌଭାଗ୍ୟ ପାଇଲେ, କିନ୍ତୁ ମୁଁ ଏକ କୁଚକ୍ରାନ୍ତ ଗୋଷ୍ଠୀର ଶିକାର ହୋଇ ମୁଖ୍ୟଯନ୍ତ୍ରୀ ଭାବେ ଅବସର ଗ୍ରହଣ କଲି। ୧୯୯୦ ମସିହାରେ ମୁଁ ସର୍ଭିସ୍ ଟ୍ରିବୁନାଲର ଦ୍ୱାରସ୍ଥ ହେଲି। ଏହି କେଶର ବିଚାର ଚାଲିଲା ୧୯୯୮ ମସିହା ପର୍ଯ୍ୟନ୍ତ ଓ ୧୯୯୮ ମସିହାରେ Argument ସରିଗଲା ବୋଲି କହି ମାନ୍ୟବର ବିଚାରପତି ଜଜମେଣ୍ଟକୁ ରିଜର୍ଭ ରଖିଲେ। ବର୍ଷେ ଗଲା, ୨ ବର୍ଷ ଗଲା ଅଢ଼େଇ ବର୍ଷ ପରେ ୨ ଜଣ ଯାକ ଟ୍ରିବୁନାଲ ବିଚାରପତି ଅବସର ଗ୍ରହଣ କଲେ ସୁଦ୍ଧା ଜଜ୍‌ମେଣ୍ଟ ବାହାରିଲା ନାହିଁ। ହଠାତ୍ ଦିନେ ଟ୍ରିବୁନାଲର ଚେୟାରମ୍ୟାନ୍ ଏକ ଘଣ୍ଟା ମଧରେ ଜଜ୍‌ମେଣ୍ଟ ଦେଲେ ଯେ ବି.ଏସ.ଏନ. ମୂର୍ତ୍ତି ଯେହେତୁ ଆଗରୁ ପ୍ରମୋଶନ୍ ପାଇନାହାନ୍ତି ସେ ମୋ ଠାରୁ ଜୁନିୟର ହେବେ ଓ ବେଣୁଧର ସେନାପତି ଆଗରୁ ଏଡ୍‌ହକ ପ୍ରମୋଶନ ପାଇଥିବାରୁ ମୋଠାରୁ ସିନିୟର ହେବେ। କିନ୍ତୁ ବି.ଏସ.ଏନ. ମୂର୍ତ୍ତିଙ୍କର ସର୍ବୋଚ୍ଚ

ଯନ୍ତ୍ରୀ ପଦବୀକୁ ପ୍ରମୋଶନ ହେବା ପୂର୍ବରୁ ମୁଁ ଅବସର ଗ୍ରହଣ କରି ସାରିଥିଲି । ତେଣୁ ଏହି ଜଜ୍‌ମେଣ୍ଟରେ ମୋତେ କୌଣସି ଲାଭ ମିଳିଲାନି । ଏହା ବିରୁଦ୍ଧରେ ୨୦୦୨ ମସିହାରେ ମୁଁ ମାନ୍ୟବର ହାଇକୋର୍ଟର ଦ୍ୱାରସ୍ଥ ହେଲି । ହାଇକୋର୍ଟରେ ହଜାର ହଜାର କେଶ୍ ପେଣ୍ଡିଂ । ୨୦୦୨ ମସିହାର କେଶ୍ ପଡୁଛି କେଉଁଠି ? ବର୍ଷେ ଦୁଇବର୍ଷ ଏପରି ୬ ବର୍ଷ ବିତିଗଲା । କେଶ୍ ପଡ଼ିବାର ଆଶା ଛାଡ଼ି ଦେଇଥିଲି । ୨୦୦୮ ମସିହା ଅଗଷ୍ଟ ମାସରେ ଦିଲ୍ଲୀରେ ଝିଅ ଘରେ ଅବସ୍ଥାନ ସମୟରେ ସୁପ୍ରିମ୍‌କୋର୍ଟର ଜଣେ ଯୁବ ଓକିଲ ଅଜୟ ରୋହତକ ସହ ହଠାତ୍ ଦେଖାଗଲା । ତାଙ୍କୁ ଏହି କେଶ୍ ବିଷୟ କହିବାରୁ ସେ ଗୋଟିଏ ପନ୍ଥା ବାହାର କଲେ । କହିଲେ ଆପଣଙ୍କ ବୟସ ୭୫ । ଆପଣ ଜଣେ ସିନିୟର ନାଗରିକ । ଭାରତ ସ୍ୱରକାରଙ୍କ ଓ ଆଇନ ବିଭାଗର ସିନିୟର ନାଗରିକଙ୍କ ପାଇଁ ବିଶେଷ ସୁବିଧା ରହିଛି । ଆପଣ ଓଡ଼ିଶା ହାଇକୋର୍ଟରେ ଏକ ମିସ୍‌କେଶ୍ କରନ୍ତୁ । ସିନିୟର ସିଟିଜେନ୍‌ଙ୍କ କେଶ୍ ନିଶ୍ଚୟ ପ୍ରାୟରିଟି ବେସିସ୍‌ରେ ଆଗ ବିଚାର ହେବ । ସେହି ଅନୁସାରେ ମୋର ଓକିଲ ବଳରାମ ରାଉତ ମିସ୍‌କେଶ୍ କରିବାରୁ ୨୦୦୯ ମସିହାରେ ଏହି କେଶ୍ ବିଚାର ପାଇଁ ଲିଷ୍ଟରେ ଆସିଲା । କେଶ୍ ବିଚାରବେଳେ ମୁଁ ୪ ଦିନ ଯାକ କୋର୍ଟରେ ଉପସ୍ଥିତ ଥିଲି । କେଶ୍‌ଟିକୁ ଶୁଣାଣିବେଳେ ମାନ୍ୟବର ବିଚାରପତିଙ୍କ ମନ୍ତବ୍ୟ ଥିଲା, ଏହା କିପରି ସମ୍ଭବ ହେଲା ? ସରକାରଙ୍କ ଅଫିସରମାନେ କ'ଣ ସମ୍ବିଧାନ ପଢୁ ନାହାନ୍ତି ? ରୁଲ୍ ଅଫ୍ ବିଜ୍‌ନେସ୍‌ର ପ୍ରତି ସ୍ତରରେ କ'ଣ କରିବାକୁ ହେବ, ପରିଷ୍କାର ଭାବେ ଲେଖାଯାଉଛି । ଯେତେବେଳେ ପବ୍ଲିକ୍ ସର୍ଭିସ କମିଶନର ସୁପାରିଶ ଆସିଲା ଓ ସେଥିରେ ଲେଖାଥିଲା ଯେ ୩ ଜଣ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ମୁଖ୍ୟଯନ୍ତ୍ରୀ ହେବା ପାଇଁ ଯୋଗ୍ୟ ନୁହଁନ୍ତି ସେତେବେଳେ ଯେଉଁ ମାନେ ଏଡ଼ହକ୍ ଚିଫ୍ ଇଞ୍ଜିନିୟର ହୋଇଛନ୍ତି ତାଙ୍କୁ ସଙ୍ଗେ ସଙ୍ଗେ ତଳପାହ୍ୟାକୁ ଖସାଇ ଦେଇ ପବ୍ଲିକ୍ କମିଶନ ଅନୁମୋଦନ କରିଥିବା ଅଫିସରଙ୍କୁ ପ୍ରମୋଶନ ଦେବା କଥା । ନତୁବା ପବ୍ଲିକ୍ ସର୍ଭିସ୍ କମିଶନର ରିପୋର୍ଟକୁ କେବିନେଟ୍ ମିଟିଂ ଓ ଆସେମ୍ବ୍ଲିର ଉପସ୍ଥାପନ କରି ତାଙ୍କ ମତ ନେବା ଆବଶ୍ୟକ । ଜେନେରାଲ ଏଡ଼ମିନ୍‌ଷ୍ଟେସନ୍ ବିଭାଗର ମତ ଦେଇ ପବ୍ଲିକ୍ ସର୍ଭିସ କମିଶନର ଅନୁମୋଦନ ସହିତ ଖେଳିବାକୁ ଅଫିସରମାନଙ୍କର ସାହସ କେଉଁଠୁ ଆସିଲା । ରୁଲସ୍ ଅଫ୍ ବିଜନେସ୍‌ରେ ଏଭଳି

ପରିସ୍ଥିତିରେ କଣ କରିବାକୁ ହେବ ତାହା ବିଷଦ ଭାବରେ ବର୍ଣ୍ଣିତ ହୋଇଛି। ସମ୍ବିଧାନରେ ପବ୍ଲିକ୍ ସର୍ଭସେସ୍ କମିଶନରଙ୍କ କାର୍ଯ୍ୟ ଓ କ୍ଷମତା ମଧ୍ୟ କନଷ୍ଟିଚ୍ୟୁସନରେ ପରିଷ୍କାର ଲେଖାଅଛି। ଗ୍ରେଡ଼େସନ୍ ଲିଷ୍ଟ ତିଆରି କରିବା ତାଙ୍କର ଦାୟିତ୍ୱ ବୋଲି କୌଣସି ଠାରେ ଲେଖାଯାଇନାହିଁ। ଏଭଳି ପଛଦ୍ୱାର ବାଟେ ଜଣେ ଚିଫ୍ ଇଞ୍ଜିନିୟରଙ୍କ ଏଡ୍‌ହକ ପ୍ରମୋଶନକୁ ଦେଢ଼ବର୍ଷ ପର୍ଯ୍ୟନ୍ତ କେବିନେଟ୍ ବା ଆସେମ୍ବ୍ଲିର ଅନୁମୋଦନ ବିନା ବଢ଼ାଇବାର କ୍ଷମତା ଅଫିସରମାନଙ୍କୁ ଦେଲା କିଏ ? ରୁଲସ୍ ଅଫ୍ ବିଜ୍‌ନେସ୍‌ରେ ଜେନେରାଲ ଏଡ୍‌ମିନ୍‌ଷ୍ଟ୍ରେସନ୍ ବିଭାଗର ମତ ନେଇ ଜଣେ ଚିଫ୍ ଇଞ୍ଜିନିୟରଙ୍କୁ ଅନୈତିକ ଉପାୟରେ ଦୀର୍ଘ ଦେଢ଼ବର୍ଷ ଋକିରୀରେ ରଖି ପୁଣି ପବ୍ଲିକ କମିଶନରଙ୍କ କ୍ଷମତା ବହିର୍ଭୂତ ପ୍ରେମୋଶନ ଲିଷ୍ଟ କରି ବେଣୁଧର ସେନାପତି ଓ ବି.ଏସ.ଏନ. ମୂର୍ତ୍ତିଙ୍କୁ ସିନିୟରଟି ଦେଖାଇ ପ୍ରମୋଶନ କରିବା ଅନୈତିକ କାର୍ଯ୍ୟ।

କିନ୍ତୁ ଦୁର୍ଭାଗ୍ୟର ବିଷୟ ସବୁତକ ଅଫିସର ଦୀର୍ଘ ୨୦ ବର୍ଷ ହେଲା ଅବସର ଗ୍ରହଣ କଲେଣି। ଏ ପରିପ୍ରେକ୍ଷୀରେ ହାଇକୋର୍ଟର ନିର୍ଦ୍ଦେଶ ଭାସ୍କର ଚନ୍ଦ୍ର ନାୟକଙ୍କୁ ବେଣୁଧର ସେନାପତି ପାଇଥିବା ପ୍ରୋମୋଶନ୍ ପାଇବା ଦିନ ଠାରୁ ଅର୍ଥାତ୍ ୧୯୯୦ ମସିହା ଡିସେମ୍ବର ପହିଲା ତାରିଖରୁ ଇଞ୍ଜିନିୟର ଇନ୍ ଚିଫ୍ ପଦକୁ ନୋସନାଲ ପ୍ରେମୋଶନ ଦେଇ ତାଙ୍କର ପେନସନ୍ ସ୍ଥିର କରାଯାଉ। ତାଙ୍କର ବାକେୟା ପେନସନ୍ ଦିଆଯାଉ। ହାଇକୋର୍ଟର ଏହା ଥିଲା ଏକ ଐତିହାସିକ ବିଋର। କହିବା ବାହୁଲ୍ୟ ଯେ ଏଭଳି ୫/୬ଟି କେଶ୍ ହାଇକୋର୍ଟର ବିଋର ପାଇଁ ବହୁତ ଦିନରୁ ପଡ଼ିରହିଥିଲା। ଏହି ବିଋରକୁ ଆଧାର କରି ମାସେ ଭିତରେ ୫/୬ଟି କେଶ୍ ଫଇସଲା ହୋଇଯିବା ଫଳରେ ମୋ ଭଳି ଅନେକ ଅଫିସର ନ୍ୟାୟ ପାଇବା ପାଇଁ ସକ୍ଷମ ହେଲେ। ଏହି ଜଜ୍‌ମେଣ୍ଟ ବାହାରିଲା ୨୦୦୯ ଜୁଲାଇ ମାସ ୨୯ ତାରିଖରେ।

ବଡ଼ ବୋହୂର ଦେହାନ୍ତ ପରେ ମୁଁ ଓ ଉମା ଆମ ଜୀବନରେ ୪୦ ବର୍ଷ ପଛକୁ ଫେରିଗଲୁ। ନାତି ଦୁଇଟିକୁ ମଣିଷ କରିବା ପାଇଁ ଦିନରାତି ପରିଶ୍ରମ କରିବାକୁ ପଡ଼ିଲା। ମୁଁ ବଡ଼ ନାତିର ପଢ଼ା ଦାୟିତ୍ୱ ନେବା ବେଳେ ସେ ସାନ ନାତିର ପଢ଼ା ଓ ଅନ୍ୟାନ୍ୟ ଦାୟିତ୍ୱ ସମ୍ଭାଳିଲା।

ସ୍ତ୍ରୀ ବିୟୋଗ, ଚାକିରିରେ ଅନିଶ୍ଚିତ ପରିସ୍ଥିତି ୨ଟି ପିଲାଙ୍କ ଭବିଷ୍ୟତ ନେଇ ବଡ଼ ପୁଅ ବୁଲୁ ଅତ୍ୟନ୍ତ ହତୋତ୍ସାହ ହୋଇପଡ଼ିଲା। ଆମେ ଦୁଇଜଣ ତାକୁ ଯେତେ ସାହସ ଦେଉଥିଲେ ହେଁ ବା ମନ ବୁଝୁ ନଥାଏ। ଏଭଳି ପରିସ୍ଥିତିରେ ୨୦୦୨ ସେପ୍ଟେମ୍ବର ୫ରେ ହଠାତ୍ ଉମାର ଦେହ ଖରାପ ହେଲା। ବାଥ୍‌ରୁମ୍ ପାଖରେ ତାର ଗୋଡ଼ ଖସିଯିବାରୁ ମେରୁଦଣ୍ଡରେ ଏଲୱାନ୍ ଓ ଏଲ ଟୁ ଦୁଇଟି ବୋନ୍‌ରେ ଫ୍ରେକ୍‌ଚର ହୋଇଗଲା। ଏହି ଦରଜ ମେରୁଦଣ୍ଡରେ ନ ହୋଇ ଅଣ୍ଟାରେ ହେବା ଫଳରେ ଡାକ୍ତରମାନଙ୍କ ମଧ୍ୟରେ ଦ୍ୱିମତ ଦେଖାଦେଲା। ଅସ୍ଥିଶଲ୍ୟ ଡାକ୍ତର ତେଜେଶ୍ୱର ରାଓଙ୍କ ମତରେ ଏହି ଅର୍ଥୋପେଡ଼ିକ ସମସ୍ୟା କିନ୍ତୁ ନିଓରୋଲୋଜି ଡାକ୍ତର ମାୟା ଗନ୍ତାୟତଙ୍କ ମତରେ ଏହା ନିଓରୋ ପ୍ରୋବ୍ଲମ୍। ଉଭୟଙ୍କ ମତ ଏହା ଏମଆରଆଇ ପରେ ପ୍ରକୃତ ରୋଗ ନିରୂପଣ ହେବ। ଡ଼ା. ସନାତନ ରଥ ମଧ୍ୟ ସେହି ମତ ଦେଲେ। ସେତେବେଳେ ମାତ୍ର ଗୋଟିଏ କ୍ଲିନକ୍‌ରେ (ସୂର୍ଯ୍ୟ କ୍ଲିନକ୍) MRI ଟେଷ୍ଟ ପାଇଁ ମେସିନ୍ ଥିଲା। ଦୁର୍ଭାଗ୍ୟକୁ ସେ ମେସିନ୍‌ଟି ଖରାପ ହୋଇଯାଇଥିଲା। ଡ଼. ସନାତନ ରଥଙ୍କ ପରାମର୍ଶ ଅନୁସାରେ ମାଲୋଗ୍ରାମ ଓ ମାଇଲୋସିଟି ଟେଷ୍ଟ କରାଗଲା। ଦୁର୍ଭାଗ୍ୟକୁ ପଠାଯାଇଥିବା ଡାଇଟି ସ୍ପାଇନାଲ ବଡ଼ର $L_1$ & $L_2$ ମଧ୍ୟରେ ରହିଗଲା। ଏହା ଡାକ୍ତରଙ୍କ ସନ୍ଦେହକୁ ବଢ଼ାଇ ଦେଲା। ମୋର ସାଙ୍ଗ ଡାକ୍ତର ବିମଳ କର ଏହାକୁ କେନସରର ଲକ୍ଷଣ ବୋଲି କହି ନିଶ୍ଚୟ କେଉଁଠାରେ କେନସର ହୋଇଛି ତାର ଏହା ସେକେଣ୍ଡାରି ସିମଟମ୍ ବୋଲି ମତ ଦେଲେ। ଡାଃ ସନାତନ ରଥ ସ୍ପାଇନାଲ କର୍ଡ଼ର ଅପେରସନ୍ କରି ସେକେଣ୍ଡାରି ଇନ୍‌ଫେକସନ୍‌ର ସ୍ଥାନ ନିରୁପଣ କରିବାକୁ ଚାହିଁଲେ। ସୌଭାଗ୍ୟକୁ MRI ମେସିନ୍ ମାସେ ପରେ ଠିକ୍ ହୋଇଗଲା ଓ ଶେଷରେ ରୋଗଟି ଅର୍ଥୋପେଡ଼ିକ୍ସ ଜନିତ ଜଣାପଡ଼ିଲା। ଡଃ. ତେଜେଶ୍ୱର ରାଓଙ୍କ ପରାମର୍ଶ ଅନୁସାରେ ପୁରାବଡ଼ି ସାଇଜ୍ ବେଲ୍ଟ ପିନ୍ଧିବାରୁ ମାସେ ପରେ ଉମା ବିଛଣାରୁ ଉଠିଲା। ମାସେ ପରେ ସେ ଯେଉଁଦିନ ଚାଲିଲା, ସେହିଦିନ ସେ ତଳକୁ ଚାଲିଗଲା, ଆମ ଘରର ପୋଷାକୁକୁର ତାଙ୍କୁ ୪ ମାସ ହେଲା ଦେଖି ନଥିଲା। ଖୁସିରେ ସେ ଦୁଇ ଗୋଡ଼ ଉଠାଇ ଚଢ଼ିଗଲା। ସେଥିରେ ସେ ଭାରସାମ୍ୟ ହରାଇ ତଳେ ପଡ଼ିଗଲେ ଓ ଡାହାଣ ହାତର ଗଣ୍ଠି ପାଖରେ ଗୋଟିଏ ଫ୍ରେକ୍‌ଚର ହୋଇଗଲା। ପୁଣି ଡାହାଣ ହାତ ପ୍ଲାଷ୍ଟର ଓ ଚିକିତ୍ସା ଚାଲିଲା। ୩ ମାସ।

ଏହିଭଳି ଭାବେ ସେପ୍ଟେମ୍ବର ୨୦୦୨ରୁ ଫେବୃୟାରୀ ୨୦୦୩ ପର୍ଯ୍ୟନ୍ତ ୬ ମାସ ବିଛଣାରେ ପଡ଼ିବା ପରେ ସେ ସ୍ୱାଭାବିକ କାର୍ଯ୍ୟ କରିବାକୁ ସକ୍ଷମ ହେଲା।

ଏହି ୬ ମାସ ମଧ୍ୟରେ ମୋର ଅନେକ ବନ୍ଧୁ ଓ ହିତାକାଂକ୍ଷୀ ସାନ୍ତ୍ୱନା ଦେବା ପାଇଁ ଘରକୁ ଆସିଥିଲେ। ୨ ବର୍ଷ ଭିତରେ ଘରକୁ ଦୁଇ ଦୁଇଟି ବିପଦ। ବଡ଼ବୋହୂର ବିୟୋଗ ସାଙ୍ଗକୁ ସ୍ତ୍ରୀ ଶଯ୍ୟାଶାୟୀ । ଦୁଇଟି ଛୋଟପିଲା। ତାଙ୍କ ଦାୟିତ୍ୱ ନେବା ପାଇଁ ଘରେ ଜଣେ ଘରଣୀର ନିତାନ୍ତ ଆବଶ୍ୟକ। ସମସ୍ତେ ଏକ ସ୍ୱରରେ ଉପଦେଶ ଦେଲେ ବୁଲୁର ୨ୟ ବିଭାଘର ପାଇଁ। ବଡ଼ ପୁଅ ବୁଲୁ ଏଥିରେ ମୋଟେ ସମ୍ମତି ଦେଇ ନଥାଏ। ତାର ମତ ପିଲାମାନେ ତ ମା'କୁ ହରାଇଛନ୍ତି, ବାପାଙ୍କୁ ଯେଭଳି ନ ହରାନ୍ତି। ମୋ ସାଙ୍ଗ ଡାକ୍ତର ବିମଳଙ୍କର ଏକାନ୍ତ ଇଚ୍ଛା। ଘର ଚଳିବା ପାଇଁ ବୁଲୁର ୨ୟ ବିଭାଘର ଏକାନ୍ତ ଆବଶ୍ୟକ। ଅନ୍ୟାନ୍ୟ ଆନ୍ତରିକ ସାଙ୍ଗ ନିମାଇବାବୁ, ଜଗନ୍ନାଥ ତ୍ରିପାଠୀ, ପ୍ରାଣକୃଷ୍ଣ ଆଚାର୍ଯ୍ୟ ସେହି ମତ ଦେଲେ। ସମସ୍ତଙ୍କ ଚାପ ଆଗରେ ଶେଷରେ ବୁଲୁ ମୁଣ୍ଡ ନୂଆଇଲା। ଆମର ଦୂରସମ୍ପର୍କୀୟ ବାଣପୁରର ଶଶୀଭୂଷଣ ମହାନ୍ତିଙ୍କ ଝିଅ ସଙ୍ଗେ ୨୦୦୨ ଡିସେମ୍ବର ମାସରେ ତାର ବିଭାଘର ହୋଇଗଲା।

ସାନପୁଅର ବିଭାଘର ୧୯୯୮ ମସିହାରେ ହୋଇଥିଲା। ପ୍ରଥମ ଅବସ୍ଥାରେ ସାନପୁଅ ସମ୍ବିତ ଚାକିରୀ ନ କରି ଗୋଟିଏ ସଫ୍ଟୱେୟାର କମ୍ପାନୀ ୧୯୯୪ ଠାରୁ ୨୦୦୧ ପର୍ଯ୍ୟନ୍ତ ଚଳାଇ ଆସୁଥିଲା। ସେପ୍ଟେମ୍ବର ୧୧ ତାରିଖ ଦିନ ଆମେରିକା ଉପରେ ବୋମା ଆକ୍ରମଣ ଓ ବିଶ୍ୱର ମାନ୍ଦାବସ୍ଥା ଯୋଗୁଁ କମ୍ପ୍ୟୁଟର ସଫଟୱେର୍ ଡ଼େଭଲପମେଣ୍ଟ କ୍ଷେତ୍ରରେ ହଠାତ୍ ଅଧୋଗତି ଆସିଲା। ଟ୍ରେନିଂ ସେଣ୍ଟରକୁ ପିଲା ଆସିବା କମିଗଲା। ଆମେରିକାକୁ ପଠାଯାଉଥିବା ସଫ୍ଟୱେର କମିଗଲା। ତାର ବ୍ୟବସାୟରେ ଘାଟା ଆସିଗଲା। ସେ ବ୍ୟବସାୟୀ ଘରର ପିଲା ନୁହେଁ। ବ୍ୟବସାୟରେ ମାନ୍ଦାବସ୍ଥା ଆସିଲେ ଏଷ୍ଟାବ୍ଲିସ୍‌ମେଣ୍ଟ କମାଇ ଦେଇ ଧିରେ ଧିରେ ଆଗେଇବା ସେ ଶିଖିନାହିଁ। ସେ ବାପାଙ୍କୁ ଚାକିରି କରି ଘର ଚଳାଇବା ଦେଖିଛି। ବ୍ୟବସାୟ କମିଲାଣି ଯେଉଁଭଳି ପଦକ୍ଷେପ ନେବାକଥା ତାକୁ ଜଣାନାହିଁ। ଅଗତ୍ୟା ପ୍ରତିମାସରେ ଲକ୍ଷ ଲକ୍ଷ ଟଙ୍କା କ୍ଷତି ହେବାର ଲାଗିଲା। ବାଧ ହୋଇ ୨୦୦୨ ମାର୍ଚ୍ଚ ମାସରେ ତାକୁ ସମୁଦାୟ ବ୍ୟବସାୟ ବନ୍ଦ କରିଦେଇ ଚାକିରି ଅନ୍ୱେଷଣରେ ଯିବାକୁ ପଡ଼ିଲା। ପାଠ ଛାଡ଼ିବାର

୧୦ ବର୍ଷ ପରେ ଚାକିରି ଖୋଜିବା ବେଳକୁ ମହାଜଟିଳ ସମସ୍ୟା ଦେଖାଦେଲା। ଏହା ଭିତରେ କମ୍ପ୍ୟୁଟର ସାଇନ୍ସ ବହୁତ ଆଗେଇ ଗଲାଣି। ସେଥିପାଇଁ ୨୦୦୨ ମସିହାରେ ସେ ଗୋଟିଏ ଏଡ଼ଭାନ୍ସ କୋର୍ସ ନେଲା। ଯେତେବେଳେ ମନୁଷ୍ୟର ଭାଗ୍ୟ ଉଦୟ ହୁଏ ତାକୁ କେହି ରୋକିପାରେ ନାହିଁ। ଜର୍ମାନ ସଫ୍ଟୱାର କମ୍ପାନୀ ଜଣେ ଅଭିଜ୍ଞ ସଫଟୱାର ଇଞ୍ଜିନିୟର ଖୋଜୁଥିଲା। ସମ୍ପିତର BIO-DATA ଦେଖି ସେମାନେ ବହୁତ ଖୁସି ହେଲେ। ସେ ୧୯୯୧ ରୁ ୨୦୦୨ ମଧ୍ୟରେ ଓଡ଼ିଶା ଷ୍ଟକ୍ ଏକ୍ସଚେଞ୍ଜ, ରାୟଗଡ଼ା ପେପର ମିଲ୍, ବରଗଡ଼ ସୁଗର ମିଲସ୍, ସିସ୍‌ମୋ ହୋଟେଲ ସଂସ୍ଥାରେ ସଫ୍ଟୱାର କାର୍ଯ୍ୟ କରି ସେହି ସଂସ୍ଥାର ସବୁ କାର୍ଯ୍ୟ କରିଥିବା ସାର୍ଟିଫିକେଟ୍ ସହିତ ଆମେରିକାକୁ ପଠାଉଥିବା ସଫଟୱାର ଦେଖି ସେମାନେ ତାକୁ ସଧା ଆସିଷ୍ଟାଣ୍ଟ ମେନେଜର ଭାବେ ଗ୍ରହଣ କଲେ। ତାର ମାସିକ ଦରମା Rs. 55,000 ଟଙ୍କାରେ ସ୍ଥିର କରିଦେଲେ। କାଳକ୍ରମେ ଏହି ଜର୍ମାନ ସଫ୍ଟୱାର କମ୍ପାନୀକୁ ହିନ୍ଦୁସ୍ଥାନ କମ୍ପ୍ୟୁଟର କଣିନେବା ଫଳରେ ତାର ଚାକିରୀରେ ସ୍ଥିରତା ଆସିଯାଇଛି ଓ ସେ ବର୍ତ୍ତମାନ କମ୍ପାନୀର AGM ପଦରେ ପ୍ରତିଷ୍ଠିତ ହୋଇପାରିଛି।

# ବଡ଼ପୁଅ ଜୀବନର ଏକ ଘୂର୍ଣ୍ଣିବାତ୍ୟା

## ୩. ତୃତୀୟ ମହାସମର

ବଡ଼ ପୁଅ ୧୯୮୨ ମସିହାରେ ଇଲେକ୍ଟ୍ରି ଇଞ୍ଜିନିୟର ଡିଗ୍ରୀ ଓ ୧୯୮୮ରେ ମାଷ୍ଟର ଡିଗ୍ରୀ ପାଶ୍ କରିବା ପରେ ପ୍ରଥମେ ତାଳଚେର, ଥର୍ମାଲ, ଇଲେକ୍ଟ୍ରିସିଟି ବୋର୍ଡ଼ ସୁବର୍ଣ୍ଣରେଖା ପ୍ରୋଜେକ୍ଟରେ କାମ କରିବା ପରେ ଇଲେକ୍ଟ୍ରିସିଟି ବୋର୍ଡ଼ କରପୋରେସନ୍ ହେବା ପରେ ପୁରୀ ଇଲେକ୍ଟ୍ରିସିଟ୍ ସବ୍ ଡ଼ିଭିଜନରେ କାମ କରି ଶାନ୍ତିରେ ସମୟ କଟାଇଥିଲା। ଇଲେକ୍ଟ୍ରି ଡ଼ିପାର୍ଟମେଣ୍ଟର ଇଞ୍ଜିନିୟରମାନଙ୍କୁ ସେସ୍‌କୋ, ସାଉଥକୋ, ୱେସ୍‌କୋ, ଗ୍ରୀଡ୍ କରପୋରେସନ୍, ହାଇଡ୍ରୋ ପାୱାର କରପୋରେସନ୍, ସରକାରୀ ଇଲେକ୍ଟ୍ରିକାଲ ବ୍ରେଞ୍ଚ ଥର୍ମାଲ କରପୋରେସନ୍ ଏଭଳି ୮ଟି ବ୍ରାଞ୍ଚରେ ବିଭକ୍ତ କରାଗଲା। ତା'ର ଭାଗ ପଡ଼ିଲା ସେସ୍‌କୋରେ। ୨୦୦୦ ମସିହା ବେଳକୁ ତାର ୧୮ ବର୍ଷ ଚାକିରି ହେଲାଣି, ପଦୋନ୍ନତିର ଚିହ୍ନ ନାହିଁ। ଏଭଳି ପରିସ୍ଥିତିରେ ଯେ କେହି ହତୋତ୍ସାହ ହେବା ସ୍ୱାଭାବିକ। ଏହି ସମୟରେ ତାର ଜୀବନରେ ଏକ ବିରାଟ

ଘୂର୍ଣ୍ଣିବାତ୍ୟାର ସମୟ ଆଭିର୍ଭୂତ ହେଲା। ୧୯୯୮ ମସିହାରେ AES ନାମକ ଏକ ଆମେରିକାନ କମ୍ପାନୀ ସେସ୍‌କୋର ଦାୟିତ୍ୱ ଗ୍ରହଣ କଲେ। ସେମାନେ ଓଡ଼ିଶାର ପରିସ୍ଥିତିକୁ ଆମେରିକା ପରିସ୍ଥିତି ଦୃଷ୍ଟିରୁ ବିଚାର କଲେ। ସେମାନେ ଭାବିଲେ ଓଡ଼ିଶାରେ ଗୋଟିଏ ଆମେରିକା ସୃଷ୍ଟି କରିବେ। ସେମାନେ ବିଜ୍‌ନେସ୍ ଇମ୍ପ୍ରୁଭ୍‌ମେଣ୍ଟ ଯାହାର ପରବର୍ତ୍ତୀ ନାମ ହେଲା ରେଭିନ୍ୟୁ ଇମ୍ପ୍ରୁଭ୍‌ମେଣ୍ଟ୍ କେଡ଼ େର ସୃଷ୍ଟି କରିବାକୁ ସ୍ଥିର କଲେ। ତାଙ୍କ ସର୍ତ୍ତ ରହିଲା, କିଛି ସରକାରୀ ଇଞ୍ଜିନିୟର ଓ ବାହାର କିଛି ବ୍ୟକ୍ତିଙ୍କୁ ନେଇ ଗୋଟିଏ କେଡ଼ର ସୃଷ୍ଟି କରିବେ। ସମସ୍ତଙ୍କୁ ଅଧିକ ଦରମା ଓ ପ୍ରୋମୋସନ୍ ଲୋଭ ଦେଖାଇଲେ। ଖାଲି ସେତିକି ନୁହେଁ ଇଞ୍ଜିନିୟରିଂ ବିଦ୍ୟା ଜଣା ନଥିବା ସାଧାରଣ ଗ୍ରାଜୁଏଟ୍‌ଙ୍କୁ ନିର୍ବାହୀଯନ୍ତ୍ରୀଙ୍କର ଦାୟିତ୍ୱ ଦିଆଗଲା। ସେମାନେ ୨୦/୨୨ ବର୍ଷ କାର୍ଯ୍ୟ କରିଥିବା ଇଞ୍ଜିନିୟରଙ୍କ ଉପରେ ହାକିମାତି ଚଳାଇଲେ। ୨/୩ ବର୍ଷ ଧରି ପ୍ରମୋଶନ ବନ୍ଦ ହୋଇଗଲା। ଚାରିଆଡ଼େ କାର୍ଯ୍ୟରତ ଇଞ୍ଜିନିୟରଙ୍କ ମଧ୍ୟରେ କୋକୁଆଭୟ ସୃଷ୍ଟି ହୋଇଗଲା। ପ୍ରମୋଶନ କଥା ଛାଡ଼ ଚାକିରି କରିବା ଏକ ଦୁର୍ବିସହ ହୋଇପଡ଼ିଲା। ଏହି ସମୟରେ AES ସେସେକୋ କିଛି ଇଞ୍ଜିନିୟରଙ୍କୁ ରେଭିନ୍ୟୁ ଇମ୍ପ୍ରୁଭମେଣ୍ଟ କ୍ୟାଡ଼ରରେ ଭର୍ତ୍ତି କରିବାକୁ ଚାହିଁଲେ। ସେଥିପାଇଁ ଗୋଟିଏ ଇଣ୍ଟରଭିଉ ବୋର୍ଡ଼ ବସିଲା। ସେ ବୋର୍ଡ଼ ୧୨ ଜଣ ଇଞ୍ଜିନିୟରଙ୍କୁ ଯୋଗ୍ୟତା ଓ କାର୍ଯ୍ୟଦକ୍ଷତା ଅନୁସାର ବାଛିଲା। ସେମାନଙ୍କୁ ୨ ଗୁଣ ଟଙ୍କା ଦରମା ଦିଆଗଲା ଓ ପ୍ରମୋଶନ ମଧ୍ୟ ଦିଆଗଲା। କେଡ଼ର ସୃଷ୍ଟି ଓ ସିଲେକସନ୍ ସମୟରେ ମୂଳ ସେସକୋ କେଡ଼ରୁ ଇସ୍ତଫା ଦେବା ପ୍ରଶ୍ନ ନଥିଲା। ପରବର୍ତ୍ତୀ କାଳର ସ୍ତ୍ରୀର କର୍କଟ ରୋଗ ଜନିତ ମନସ୍ତାପ ଓ AES କମ୍ପାନୀର ଅର୍ଥ ଲୋଭ ଓ ପଦୋନ୍ନତି ଲାଭ ତାକୁ ବିପଦକୁ ଟାଣି ନେଇଗଲା। ସେ ନଭେମ୍ବର ମାସରେ AES କମ୍ପାନୀର ଟିମ୍ ଲିଡ଼ର ଭାବେ ଯୋଗଦାନ କଲା। ସେସ୍‌କୋର ଏଭଳି କେଡ଼ର କରିବା ପାଇଁ ନିୟମ ଅଛି ଯେ ଏହା ବୋର୍ଡ଼ର ଅନୁମୋଦନ କ୍ରମେ ସୃଷ୍ଟି ହେବ। କିନ୍ତୁ ଏତେବଡ଼ କମ୍ପାନୀ ବୋର୍ଡ଼ର ଅନୁମୋଦନ ବିନା ଏଭଳି ଏକ କେଡ଼ର ସୃଷ୍ଟି କରୁଛି ବୋଲି କିଏ ଜାଣିବ? ସେସକୋ ବୋର୍ଡ଼ ମିଟିଂରେ ୨୯/୩/ ୨୦୦୧ରେ ଏହି କେଡ଼ରର ଅନୁମୋଦନ ପାଇଁ ଉପସ୍ଥାପନ କରାଗଲା। ଆଶ୍ଚର୍ଯ୍ୟର ବିଷୟ AES କୁ ପଚାରିଗଲା କାହା ଅନୁମୋଦନରେ ସେମାନେ ଏଭଳି ଗୋଟିଏ କେଡ଼ର ସୃଷ୍ଟି କରିଛନ୍ତି। ତୁରନ୍ତ ଏହି କେଡ଼ରକୁ ବନ୍ଦ କରିବାକୁ ବୋର୍ଡ଼ରେ ନିଷ୍ପତ୍ତି ନିଆଗଲା। ବାହାରୁ ନିଆଯାଉଥିବା ଟିମ୍ ଲିଡ଼ର ମାନଙ୍କୁ କଣ୍ଟ୍ରାକ୍ଟ ବେସିସ୍‌ରେ ରଖାଯିବାକୁ

ସ୍ଥିର କରାଗଲା। ଲିଗାଲ୍ ଓପିନିୟନ୍ ନେଇ ସେସକୋ ମୂଳ କେଡ଼ରରୁ ଯାଇଥିବା ଇଞ୍ଜିନିୟରମାନଙ୍କୁ ଥଇଥାନ ପାଇଁ ସୁପାରିସ କରାଗଲା। କିନ୍ତୁ AES କମ୍ପାନୀ ଏହାର କୌଣସି ନିଷ୍ପତ୍ତି ନ ନେଇ ହଠାତ୍ ମେ ମାସରେ ଓଡ଼ିଶା ଛାଡ଼ି ଦିଲ୍ଲୀ ଚାଲିଗଲେ ଓ ୧୨ ଜଣ ଇଞ୍ଜିନିୟର ଯେଉଁମାନେ ଯୋଗ୍ୟତା ବଳରେ AES ରେ ଚାକିରି ପାଇଥିଲେ ତାଙ୍କର ଭବିଷ୍ୟତ ଅନ୍ଧାର ହୋଇଗଲା। ବାର ଜଣ ଯାକ ଟିମ୍ ଲିଡ଼ର AES ର MD ଙ୍କୁ ଦେଖା କରିବାରୁ ୨୦୦୧ ଅଗଷ୍ଟ ମାସରେ ସେମାନଙ୍କୁ ସେସ୍‌କୋ ଛାଡ଼ିବା ସମୟରେ ଯେଉଁ ପଦବୀରେ ରହିଥିଲେ ସେହି ପଦବୀରେ ଅବସ୍ଥାପନ କରିବାକୁ ଆଦେଶ ଦେଲେ। AES ଅଗଷ୍ଟ ମାସରେ ଓଡ଼ିଶା ଛାଡ଼ି ଦେଇ ଅମେରିକା ଫେରିଗଲେ। ତା'ପରେ ସେସ୍‌କୋରେ ଯୋଗ ଦେଇଥିବା ଚିଫ୍ ଏକଜିକ୍ୟୁଟିଭ୍ ଅଫିସର AES ର ଏହି ଆଦେଶକୁ ବାତିଲ କରିଦେଇ ଏକ ନୂତନ ଆଦେଶ ଦେଲେ ଯେ ୧୨ ଜଣ ଟିମ୍ ଲିଡ଼ର ସେସ୍‌କୋ ଛାଡ଼ିବା ଦିନ ଯେଉଁ ପଦବୀରେ ଥିଲେ ସେହି ପଦବୀରେ ଥିବା ସବୁ ଇଞ୍ଜିନିୟରଙ୍କ ତଳେ ରହିବେ। ଏହା ବିରୁଦ୍ଧରେ ୧୨ ଜଣ ଯାକ ଇଞ୍ଜିନିୟର ହାଇକୋର୍ଟର ଆଶ୍ରୟ ନେଲେ। କୋର୍ଟ କେଶ୍ ୨୦୦୧ ଠାରୁ ୨୦୦୯ ପର୍ଯ୍ୟନ୍ତ ଚାଲିଲା। ଏହା ଭିତରେ ସେସ୍‌କୋରେ ବହୁତ ଉଚ୍ଚପଦବୀ ସୃଷ୍ଟି ହୋଇ ଜୁନିୟରମାନେ ପ୍ରମୋଶନ ପାଇବାର ସୁବିଧା ପାଇଲେ। ହାଇକୋର୍ଟ ଏମାନଙ୍କ ମଝିରେ ପ୍ରମୋଶନ ପାଇଁ ସୁପାରିଶ କଲେ ମଧ୍ୟ ସେସ୍‌କୋ ବୋର୍ଡ଼ ଏମାନଙ୍କ ଆପତ୍ତି ପ୍ରତି କର୍ଣ୍ଣପାତ କଲାନାହିଁ। ଗୋଟିଏ ପଟେ ୧୨ଜଣ ଓ ଆରପଟେ ୨୦୦ ଜଣ। ପୁଣି ଅଫିସ୍ ମେନେଜମେଣ୍ଟ ଓ ଲିଗାଲ ସେଲ୍ ତାଙ୍କ କଣ୍ଟ୍ରୋଲରେ। ପୁଣି ତା' ସାଙ୍ଗକୁ ଏମାନଙ୍କର ଓକିଲ ଅନ୍ୟ ହାଇକୋର୍ଟ ଓ ସୁପ୍ରିମ୍‌କୋର୍ଟରେ ହୋଇଥିବା ସମାନ୍ତରାଳ କେଶର ଉଦାହରଣ ଉପସ୍ଥାପନ କଲେ ନାହିଁ। ଏଭଳି ବହୁତ ନଜିର ଥିବାର ଆମେ ପରେ ସନ୍ଧାନ ପାଇଲୁ। କେଶଟି ୯ ବର୍ଷ ଚାଲିଲା। ଚୁକ୍ତିନାମା ପର ଜଜ୍‌ମେଣ୍ଟ ବର୍ଷେ ପରେ ବାହାରିଲା। ଏଣେ ସେସ୍‌କୋର ୬/୭ବର୍ଷର ଚାକିରି କରିଥିବା ଷ୍ଟାଇପେଣ୍ଡେରୀ ଇଞ୍ଜିନିୟର, ଯେଉଁମାନେ ପବ୍ଲିକ୍ ସର୍ଭିସ୍ କମିଶନ ଦ୍ୱାରା ମନୋନୀତ ହୋଇନାହାନ୍ତି ସେମାନଙ୍କର ପଦୋନ୍ନତି ହୋଇ ୩୦ ବର୍ଷ ଚାକିରି କରିଥିବା ଇଞ୍ଜିନିୟରଙ୍କ ଉପର ଅଫିସରଙ୍କ ବସ୍ ହୋଇ ବସିଲେ। ସେମାନେ ଏହି ସୁବିଧାରେ ବିଭିନ୍ନ ଅସଦ୍ ଉପାୟ ଅବଲମ୍ବନ କରି ବିଭାଗ ଉପରେ ଚାପ ପକାଇବାକୁ ଭୁଲିଲେ ନାହିଁ। ବର୍ତ୍ତମାନ ବିଦ୍ୟୁତର ବ୍ୟବହାର ବଢ଼ିବା ସଙ୍ଗେ ସଙ୍ଗେ ଏହାର ମୂଲ୍ୟ ମଧ୍ୟ ବଢ଼ିଛି। ବିଭିନ୍ନ

ଅନୁଷ୍ଠାନ ଅସଦ୍ ଉପାୟରେ ଇଲେକ୍ଟ୍ରିଶକ୍ତି ଚୋରି କରି ସୁବିଧା ପାଉଛନ୍ତି। ତାଙ୍କ ଉପରେ ନୋଟିସ୍ ହେଲେ ସେମାନେ ଗୋଟିଏ କେଶ୍ କରି ଦେଇ ଟ୍ରିବ୍ୟୁନାଲକୁ ବିଚାର ପାଇଁ ନେଇ ଆସୁଛନ୍ତି। ଟ୍ରିବ୍ୟୁନାଲରେ ଥିବା ଇଞ୍ଜିନିୟର ଏହାକୁ ବିଭିନ୍ନ ଆଳ ଦେଖାଇ ଛାଡ଼କରିଦେବା ସମ୍ଭବ। ଏହି ସୁବିଧାର ସଦୁପଯୋଗ ବିଭିନ୍ନ ଉପାୟରେ ଏହି କେଶକୁ ମୋଡ଼ି ଦିଆଗଲା। AES ସରକାରଙ୍କ ସହିତ କରିଥିବା ରାଜିନାମାରେ ଗୋଟିଏ କଣ୍ଡିସନ୍ ଥିଲା ସେମାନେ ତାଙ୍କର ବିଜ୍‌ନେସ୍ ଉନ୍ନତି ପାଇଁ ଯେ କୌଣସି ପଦକ୍ଷେପ ନେଇପାରିବେ। କିନ୍ତୁ AES ସର୍ଭିସ୍‌ରୁଲ୍‌ରେ ପରିଷ୍କାର ଲେଖାଅଛି ଯେ ବୋର୍ଡ଼ର ଅନୁମୋଦନ ବିନା କୌଣସି ପୋଷ୍ଟ ଖୋଲାଯାଇପାରିବ ନି। ତେଣୁ ସର୍ଭିସ୍ ରୁଲ୍‌ର ନିୟମ ଅନୁସାରେ ରେଭିନ୍ୟୁ କେଡ଼ର ସୃଷ୍ଟି ବେନିୟମ। କିନ୍ତୁ ସେସ୍‌କୋ ଓକିଲ ଦର୍ଶାଇଲେ ଯେ ବିଜ୍‌ନେସ୍ ଏଗ୍ରିମେଣ୍ଟ ଅନୁସାରେ ଏହା ନିୟମ ଅନ୍ତର୍ଗତ। ଏହା ଯଦି ନିୟମର ଅନ୍ତର୍ଗତ ତେବେ ବୋର୍ଡ଼ ୨୯.୩.୨୦୦୧ରେ ଏହି କେଡ଼ର୍‌କୁ ବନ୍ଦ କରିଦେଲା ଓ AES କାହିଁକି ଏହା ପ୍ରତିବାଦ ନ କରି ବୋର୍ଡ଼ର ନିର୍ଦ୍ଦେଶକୁ ମାନିଲା। ଏଭଳି ପରିସ୍ଥିତିରେ ୨୦୧୦ ଜୁଲାଇ ୨୮ ତାରିଖ ହାଇକୋର୍ଟର ରାୟ ବାହାରିଲା ଯେ ଏହି ୧୨ ଜଣ ଟିମ୍ ଲିଡ଼ର ହାଇକୋର୍ଟରେ ହାରିଯାଇଛନ୍ତି। ୧୨ ଜଣଙ୍କର ୩୦/୩୫ ବର୍ଷର ଚାକିରୀ ବରବାଦ ହୋଇଯିବ। ଏହି ସମ୍ବାଦ ୧୨ ଜଣ ଇଞ୍ଜିନିୟର ଓ ତାଙ୍କ ପରିବାର ମଧ୍ୟରେ ଏକ ଦୁଃଖର ଛାୟା ଖେଳାଇ ଦେବା ସଂଗେ ସଂଗେ ସେସ୍‌କୋ ତଥା ସମଗ୍ର ବିଦ୍ୟୁତ ବିଭାଗରେ ଏକ ଆଲୋଡ଼ନ ସୃଷ୍ଟି କରିଦେଲା। ଆମ ପରିବାରର ସମସ୍ତେ ହତବାକ୍ ହୋଇପଡ଼ିଲେ। ଆମେ ବାପା ମା' ସ୍ତମ୍ଭୀଭୂତ ହୋଇପଡ଼ିଲୁ, ସାନଭାଇ ଓ ଭଉଣୀମାନେ ସ୍ତବ୍ଧ ହୋଇଗଲେ। ୧୫ ଦିନ ଧରି ମୋ ପାଟିରୁ କଥା ବାହାରିଲା ନାହିଁ। ମୁଁ କୁଆଡ଼େ ନ ଯାଇ ଘରେ ବସିପଡ଼ିଲି। ଗୁରୁ କିଶୋରୀବାବୁଙ୍କ କଥା ମନେପଡ଼ିଲା, ସେ କହିଥିଲେ ବିପଦରେ ଅଧୈର୍ଯ୍ୟ ହେବୁନି। ତାଙ୍କ ପ୍ରଦତ୍ତ ମହାମନ୍ତ୍ର ଜପ କରିବୁ। ଯେ ବିପଦ ଦେଇଛି ସେ ଉଦ୍ଧାର ବାଟ ବତାଇବ। ଅନ୍ଧାର ପରେ ଆଲୁଅ ଆସିବ। ଗୀତାର ମହାନ୍ ବାଣୀ ମନେପଡ଼ିଲା।

**ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତଃ**
**ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମନଂ ସୃଜାମ୍ୟହଂ।**

ସତେ କ'ଣ ଭଗବାନ ମର୍ତ୍ତ୍ୟରେ ଆବିର୍ଭାବ ହୋଇ ମୋ ପୁଅକୁ ଏହି ଦୁଃଖରୁ ଉଦ୍ଧାର କରିବେ ? ହାଇକୋର୍ଟର ବିଚାର ବିରୁଦ୍ଧରେ ସୁପ୍ରିମ୍‌କୋର୍ଟରେ ଆବେଦନ କଲେ

ତା ପାଇଁ S.L.P ଦରକାର। ତାହା ପୁଣି ୧୦୦୦ ପୃଷ୍ଠାର ଏକ ବଡ଼ ନଥି। ଏହା ଗ୍ରହଣଯୋଗ୍ୟ ହେଲେ ବି ବିଚାର ଶେଷ ହେବାକୁ କେତେ ବର୍ଷ ଲାଗିବ କିଏ ଜାଣେ। ହାଇକୋର୍ଟରେ ବିଚାର ପାଇଁ ଲାଗିଗଲା ୧୦ ବର୍ଷ। ସୁପ୍ରିମ୍‌କୋର୍ଟରେ ୧୦ ବର୍ଷ ବିଚାର ଚାଲିଲେ ଚାକିରୀ କାଳ ସରିଯିବ। ଗୋଟିଏ ଛୋଟ ଭୁଲ୍ ପାଇଁ ଏତେବଡ଼ ଦଣ୍ଡ। ସବୁଦିନ ହରିନାମ ଜପ କରୁଥାଏ। ଭାବୁଥାଏ ଭଗବାନ କେବେ ସଦୟ ହେବେ, ୧୨ ଜଣ ଯାକ ଇଞ୍ଜିନିୟରଙ୍କ ସଙ୍ଗେ ବିଚାର ଆଲୋଚନା ସମୟରେ ହଠାତ୍ ଜାଣିଲି ଏହି କେଡ଼େର ଘୋର ବିରୋଧୀ ତତ୍କାଳୀନ ଗ୍ରିଡ୍‌କୋ ଚେୟାରମ୍ୟାନ ସେସ୍‌କୋର ଚେୟାରମ୍ୟାନ ହୋଇଆସିଛନ୍ତି।

ତାଳଚେର ଥର୍ମାଲ୍ କୁ ଏନଟିପିସକୁ ହସ୍ତାନ୍ତର ସମୟରେ ସେଠାରୁ ଫେରିଥିବା ମେକାନିକେଲ୍ ଇଞ୍ଜିନିୟର ମାନଙ୍କୁ ଗ୍ରିଡ଼କୋ ଓ ସେସ୍କୋର ଏକ ଅଭିନବ ଉପାୟରେ ଥଇଥାନ କରିଛନ୍ତି। ମେକାନିକାଲ ଇଞ୍ଜିନିୟରଙ୍କ ପାଇଁ ଏକ ସୁପରଏନୁଏରୀ କେଡ଼ର ସୃଷ୍ଟି ହୋଇଛି। ତାଙ୍କର ସମସାମୟିକ ଇଞ୍ଜିନିୟରଙ୍କ ପଦୋନ୍ନତି ସହିତ ମେକାନିକାଲ ସୁପରଏନୁଏରୀ କେଡ଼ରରେ ଥିବା ମେକାନିକାଲ୍ ଇଞ୍ଜିନିୟର ପଦବୀର ଉନ୍ନତି ଘଟିବ ଓ ମେକାନିକାଲ ଇଞ୍ଜିନିୟରମାନେ ପ୍ରମୋଶନ ପାଇବେ। ମେକାନିକାଲ ଇଞ୍ଜିନିୟର ମାନଙ୍କର ଅବସର ସହିତ ଏହି କେଡ଼େରର ଅବସାନ ଘଟିବ। ଆଲୋଚନା ପ୍ରସଙ୍ଗରେ ମୋର ଜଣେ ବନ୍ଧୁ ଈଶ୍ୱର ଚନ୍ଦ୍ର ଦାସ ମୋତେ ଏଥିପାଇଁ ଉତ୍ସାହିତ କଲେ। ସେ କିଭଳି ତାଳଚେର ଥର୍ମାଲର ସମସ୍ୟାର ସମାଧାନ କଲେ ତା ମଧ୍ୟ କହିଲେ। ସେହି ଅନୁସାରେ ଚେୟାର୍‌ମେନଙ୍କୁ ୧୨ ଜଣ ଯାକ ପୃଥକ୍ ପୃଥକ୍ ପିଟିସନ ଦେଲେ। ଏଥିରେ ଚେୟାରମେନ୍ ବିଦ୍ୟୁତ ସେକ୍ରେଟେରୀ ଓ ଅନ୍ୟାନ୍ୟ ବୋର୍ଡ଼ ମେମ୍ବର ରାଜି ହେଲେ ମାତ୍ର ‌ସେସକୋର ଲିଗାଲ ସେଲ୍‌ରୁ ବିରୋଧ ଆସିଲା। ଏହି ଲିଗାଲ ସେଲ ମୂଳରୁ ଏହି ୧୨ ଜଣଙ୍କ ବିରୋଧୀ। ଭାଗ୍ୟକୁ ଏହି ସମସ୍ୟା ସମାଧାନ ପାଇଁ ତାଳଚେର ଥର୍ମାଲରେ ସମସ୍ୟା ପର୍ଯ୍ୟାଲୋଚନାରୁ ଜଣାପଡ଼ିଲା, ଯେ ସେଠାରେ ଏଡ଼େଭୋକେଟ୍ ଜେନେରାଲଙ୍କ ମତ ଅନୁସାରେ କାର୍ଯ୍ୟ ହେଉଥିଲା। ଏହି ସୁବିଧାର ସୁଯୋଗ ନେଇ ଚେୟାରମେନ୍ ଆଡ଼ଭୋକେଟ୍ ଜେନେରାଲଙ୍କ ମତ ଲୋଡ଼ିଲେ ଏବଂ ସେ ଏହାର ସମାଧାନ ପାଇଁ ସୁପରଏନୁଏଆରି କେଡ଼େର ସୃଷ୍ଟି କରିବାକୁ ମତ ଦେଲେ। ସେହି ଅନୁସାରେ ତା ୨୦/୯/୨୦୧୦ ବୋର୍ଡ଼ ମିଟିଂରେ ୧୨ଟି ରେଭିନ୍ୟୁ ଇମ୍ପ୍ରୁଭ୍‌ମେଣ୍ଟ

ରିହେବିଲିଟେସେନ୍ ସୁପରଏନୁଏରି କେଡ଼ର ସୃଷ୍ଟି ହୋଇ ୧୨ ଜଣ ଯାକ ଇଞ୍ଜିନିୟରଙ୍କୁ ଥାଇଥାନ କରାଗଲା। ୫ ଜଣ ୩ଟି ପ୍ରମୋଶନ ୫ ଜଣ ୨ଟି ପ୍ରମୋଶନ, ୨ ଜଣ ଗୋଟିଏ ପ୍ରମୋଶନ ପାଇଲେ। ସମସ୍ତ ବୋର୍ଡ଼ ମେମ୍ବର ଏକ ସ୍ୱରରେ ଏହାକୁ ସମର୍ଥନ କଲେ ସେହି ଅନୁସାରେ ବଡ଼ପୁଅ ଶୁଭେନ୍ଦୁର ୨ଟି ପଦବୀ ପ୍ରମୋଶନ ହୋଇ ସେ ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ପଦବୀ ପାଇପାରିଲା। ଦୀର୍ଘ ୧୦ ବର୍ଷ ସମସ୍ୟାର ଏକ ପୂର୍ଣ୍ଣଚ୍ଛେଦ ଘଟିଲା। ଏହି ଅଧ୍ୟାୟଟି ପଢ଼ିବା ପରେ ପାଠକେ ବିଚାର କରନ୍ତୁ ଭଗବାନ ସବୁ ଦେଖୁଛନ୍ତି କି ନାହିଁ। ସେ ଅନ୍ୟାୟର ଅବସାନ ପାଇଁ ନିଜେ ନ ଆସିଲେ ମଧ୍ୟ ତାଙ୍କ ଦୂତଙ୍କ ଜରିଆରେ ସମାଧାନ କରୁଛନ୍ତି କି ନାହିଁ ? ଭଗବତ ଗୀତାର ସେହି ଅମରବାଣୀ ଅନ୍ୟାୟର ଅବସାନ ପାଇଁ ଭଗବାନଙ୍କର ଆବିର୍ଭାବ ଯୁଗେ ଯୁଗେ ରହିଥିବ। ନ ହେଲେ ତାଙ୍କର ସୃଷ୍ଟ ରହିବ କିଭଳି ? ଏକ ଅଦୃଶ୍ୟ ଶକ୍ତିର ଇଙ୍ଗିତରେ ମୁଁ ଚାଲିଥାଏ କର୍ତ୍ତବ୍ୟ ପଥରେ। ଜୁଲାଇ ୨୮ ତାରିଖ ଠାରୁ ସେପ୍ଟେମ୍ବର ୨୦ ପର୍ଯ୍ୟନ୍ତ ଗୁରୁଙ୍କର ସେହି ଅଭୟବାଣୀ ସ୍ମରଣ କରି ଅଗ୍ରସର ହେଉଥାଏ। ୧୨ ଜଣ ଯାକ ଇଞ୍ଜିନିୟରଙ୍କୁ ଏକାଠି କରି କେଉଁବାଟରେ ଗଲେ କାର୍ଯ୍ୟଟି ସୁରୁଖୁରରେ ହେବ ବତାଉଥାଏ। ମୋର ବନ୍ଧୁ ଈଶ୍ୱର ବାବୁ ଥାଆନ୍ତି ମୋର ପଥପ୍ରଦର୍ଶକ। କିନ୍ତୁ ସଦାବେଳେ ଉପରୁ ଗୋଟିଏ ନିର୍ଦ୍ଦେଶ ଆସୁଥାଏ, ଆଗେଇ ଚାଲ, ତୁମର ନିଶ୍ଚୟ ଜୟ ହେବ। ତୁମର ପୁଅ ଓ ତାଙ୍କର ସାଙ୍ଗମାନେ କିଛି ଭୁଲ୍ କରି ନାହାନ୍ତି, ସେମାନଙ୍କୁ AES ପଥଭ୍ରଷ୍ଟ କରିଛି। ତୁମର ଜୟ ନିଶ୍ଚିତ। ଏହି ପଥଭ୍ରଷ୍ଟ ଅଭୟବାଣୀ ଆଉ କାହାର ନୁହେଁ। ମୋର ସ୍ୱର୍ଗୀୟ ଗୁରୁ କିଶୋରୀବାବୁଙ୍କର । ତାଙ୍କର ଆଶୀର୍ବାଦ ଜୀବନରେ ମୋର ସବୁ ସମସ୍ୟାର ସମାଧାନ କରିଛି ଓ କରୁଥିବ ମଧ୍ୟ।

ମନୁଷ୍ୟର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସଂଘର୍ଷ ଓ ସଂଗ୍ରାମର ସମ୍ମୁଖୀନ ହେବାକୁ ପଡ଼ିଥାଏ। ତେଣୁ ସଂଗ୍ରାମର କେବେ ଅନ୍ତ ହୁଏ ନାହିଁ। ମୁଁ ସେଥିରୁ ବାଦ୍ ପଡ଼ିବି କିପରି ? ଦୁନିଆର ଘାତ, ପ୍ରତିଘାତ ସଂକଟ, ସଂଗ୍ରାମ ଓ ସଂଘର୍ଷ ମଧ୍ୟରେ ମୁଁ ଜଣେ ଆହତ ସୈନିକ। ପରମେଶ୍ୱରଙ୍କର ଚରଣରେ ଏତିକି ପ୍ରାର୍ଥନା ଯେ ଏହି ପୁସ୍ତକରେ ଯେଉଁ ଅନ୍ତହୀନ ଜୀବନ ସଂଗ୍ରାମର ଅବତାରଣା କରିଛି, ତାହା ଅନ୍ତିମ ସଂଗ୍ରାମରେ ପରିଣତ ହେଉ।

- ସମାପ୍ତ -